ସନ୍ଥକବି ବଳରାମ ଦାସଙ୍କ ବିରଚିତ

# ଦକ୍ଷିଣୀ ବା ଦାଣ୍ଡି

# ରାମାୟଣ

ପ୍ରାଚୀନ ତାଳପତ୍ର ପୋଥିରୁ ଗୃହୀତ

## ଆରଣ୍ୟକ କାଣ୍ଡ

ସଂଗ୍ରାହକ : ୰ ପାରେଶ୍ୱର ଚୌଧୁରୀ

ନୂତନ ମୁଦ୍ରଣ




ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

ଧର୍ମଗ୍ରନ୍ଥ ଷ୍ଟୋର

ପ୍ରତିଷ୍ଠାତା : ୰ ବିଦ୍ୟାଧର ସାହୁ

ପ୍ରୋ: ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୭୫୩୦୦୨

ଫୋନ୍ ନଂ :(୦୬୭୧)୨୫୦୮୨୯୬

## ଦାକ୍ଷିଣୀ ବା ଦାଣ୍ଡି ରାମାୟଣ

# ଆରଣ୍ୟକକାଣ୍ଡ

## ଶ୍ରୀ ଗଣେଶାୟ ନମଃ

ଜୟ ଜୟ ଜଗନ୍ନାଥ ଦେବାଧୀ ଦେବରାଜା
ସଚରାଚର ମେଦିନୀକି ତୁହି ଦିଶୁ ଶୋଭା ।
ଜୟ ଜୟ ଜଗନ୍ନାଥ ଦେବଙ୍କ ଦୁର୍ଲ୍ଲଭ
ଦୁଃଖୀ ଜନମାନଙ୍କର ଅଟେ ଯେ ସୁଲଭ ।
ଜୟ ତୁ ଜଗନ୍ନାଥ ଜଗତ ଜନବନ୍ଧୁ
ଦେବଙ୍କର ଉପରେ ଅଟ ହେ କୃପାସିନ୍ଧୁ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ସବୁଙ୍କରି ଶରୀରେ ଭ୍ରମଣ କର ଶ୍ରୋତା ।
ଜୟତୁ ଜଗନ୍ନାଥ ସକଳ ଜୀବ କଲୁ
ନର ବାନର ଦେବ ଅସୁର ଭିଆଇଲୁ ।
ମତଗର୍ବ ଦେଖିଣ ତୁ ଯେ, ହୋଇଲୁ ଜନମ
ସନ୍ଥଙ୍କୁ ରଖିଣ ମାରି ଦୁଷ୍ଟଜନ ।
ଷଷ୍ଠ ଅବତାର ତୋର ଋଷିର ଘରେ ଜାତ
ପର୍ଶୁରାମ ନାମ ତୋର ହୋଇଲା ବିଖ୍ୟାତ ।
ନର ବାନର ଦେବତା ଅସୁର ଗର୍ବ ଭାଙ୍ଗି
ସପତ ପୁର ଯାକ ସାଧିଲୁ ଏକା ବିନ୍ଧି ।
ସେ ଅବତାରରେ ଜଣାଗଲା ଯେ କରୁଣା
ଏକାଏ ସାଧିଲ ତୁମ୍ଭେ କେବେ ନୋହିଲା ଊଣା
ସପ୍ତମ ଅବତାରେ ଜନକ ରାଜାଘରେ
ପିତା ଦଶରଥ ସିନା ଅଟନ୍ତି ତୋହରେ ।
ଚତୁର୍ଦ୍ଧା ମୁରତି ଧରି ଏବେ ହେଲ ଜାତ
ତିନି ମାତାଙ୍କର ଗର୍ଭେ ତୁମ୍ଭର ସମ୍ଭୁତ ।
ଅଷ୍ଟମ ଅବତାର ଯେଉଁମାନେ ବଳି
ପର୍ଶୁରାମ ରାଜାଙ୍କୁ ନ ପାରିଲେ ମାର ।
ନର ବାନର ଦେବଙ୍କୁ ଯେଉଁ ଦ୍ୟନ୍ତି କଷ୍ଟ
ସେମାନଙ୍କୁ ନାଶିବାକୁ ତୁମ୍ଭେ ହେଲ ଜାତ ।
ତାଡ଼କୀ ବଧକରି ରଖିଲ ଯାଗ ଯାଇ
ଅହଲ୍ୟାକୁ ତାରିଣ ଜାନକୀ ବିଭା ହୋଇ ।
ପର୍ଶୁରାମ ଦେଲା ବଳ ତାଠାରେ ରଖିଲ
ଗୋଲେଖ ରାଧାକୃଷ୍ଣ ବଳ ତା ସଙ୍ଗେ କଲ ।
ଗରି ରାବଣକୁ ମାରିବାକୁ ତୁମ୍ଭର ହେଲା ମନ
ଭାଇ ଭାରିଜାଙ୍କୁ ଘେନି ବନକୁ ଗମନ ।
ଅମଳାଣ ବସନ ଯେ, ସୁବର୍ଣ୍ଣ ଦୁଇଝରି
କାଞ୍ଚନର ଆଟିକା ଅଛଇ ସଙ୍ଗେ ତୋରି ।
ସୁବର୍ଣ୍ଣର ପଲମ ଯେ ଦୁଇଗୋଟି ପୁଣ
ଲୁହାର କୁଠାର ଯେ ଖଟନ୍ତି ଏକା ଜାଣ ।
ସୁବର୍ଣ୍ଣର ଲାଭ ଯେ ଗୋଟିଏ ତୋର ସଙ୍ଗେ
କାଛଟା ପରିହରଣ କଲୁ ତୁ ମନଭାଗେ ।
ଶିର ପରେ ଜଟା ଯେ ବାନ୍ଧିଲ ବେନିଭାଇ
ଶାରଙ୍ଗ ଶିରଧନୁ କରରେ ତୋର ବହି ।
ବୈଷ୍ଣବୀ ଧନୁ ଯେ ସଙ୍ଗରେ ଅଛି ପୁଣ
ସୁବର୍ଣ୍ଣ କଙ୍କଣ ହସ୍ତକୁ ଶୋଭାବନ ।
ଭାଇ ତୁମ୍ଭର ଲକ୍ଷ୍ମଣ ସଙ୍ଗରେ ଛନ୍ତିରହି ।
ଅକ୍ଷୟ ତୂଣ ପିନାକି ଧନୁ ଯେ ସେ ବହି
ଆଳି ମାଳି ସକଳ ତା ଠାରେ ନଦ ନେଇ ।
ତୁମ୍ଭର ବୋଲରେ ଭାଇ ଯେ ବାନ୍ଧଇ
କମଳଣୀ ସୀତୟା ସଙ୍ଗରେ ଘରଣୀ
ସଙ୍ଗରେ ବନକୁ ନେଇଛ ରଘୁମଣି ।

ସେ ବନରେ ରହି ବା କରିବି ବଖାଣ
ପଦମାନ କହିଦେବ ମୋ କଣ୍ଠେ ବସିଣ ।
ବଳରାମ ଦାସ ମୁଁ ଯେ ତୋ ପାଦେ ଶରଣ
ତୁମ୍ଭର ମହିମା ଗୋଟି କରିବି ବଖାଣ ।
ଜୟ ଜୟ ରାମଚନ୍ଦ୍ର ଅନନ୍ତ ଲକ୍ଷ୍ମଣ
ସୁମିତ୍ରା ନନ୍ଦନ ଯେ, ରାଜା କରି ପୁଣ ।
ଶିବଧନୁ ଭଗ୍ନ ବେଳେ ମହିମା ତୋର ଧନ୍ୟ
ପଳାଇ ରାଜାମାନେ ନରହି ମିଥିଳା ଭୁବନ ।
ନୀଳବସ୍ତ୍ର ପରି ହରଣ ଧରି ଧନୁଶର
ବାସୁଦେବ ସଙ୍ଗରେ ସର୍ବଦା ତୋହର ।
ରାଜାଘରେ ଜାତ ହୋଇ ପାଦରେ ଗମନ
ଅସୁରଙ୍କୁ ମାରିବାକୁ ବନ ଆଗମନ ।
ଚନ୍ଦ୍ର ମଣ୍ଡଳକୁ ନିନ୍ଦେ ଶ୍ରୀମୁଖ ତୋହର
କମଳା ସଙ୍ଗେ ନାରାୟଣଙ୍କ ବିହାର ।
ଶୁଦ୍ଧ ସ୍ଫଟିକ ଦନ୍ତୀ ତନୁ ଯେ ତୋର ଶୋଭା
ସର୍ପ ଆକାର କୁଣ୍ଡଳ କର୍ଣ୍ଣ ବେନି ପ୍ରଭା ।
ଶିରରେ ସପ୍ତ ଫେଣା କୀରିଟି ମୁକୁଟ
ବୈଦୁର୍ଯ୍ୟ କଦମ୍ବ ମାଳ କଣ୍ଠରେ ଶୋଭିତ ।
ଜମ୍ବୁନନ୍ଦ ସୁବର୍ଣ୍ଣ ନାନା କମ ପୂରି
ହୃଦରେ ପଦକମାଳା ସପତ ସରି ଘେରି ।
କଟିରେ ମେଖଳା ଯେ ବାମରେ ଯମ ଦାଢ଼
ଚରଣରେ ନୁପୁର ଶବଦ କରେ ଗାଢ଼ ।
ବାମେଣ ବନ୍ଧର ନେତ ବାଯୁବନ୍ଧ ପୁଣ
ବିଦମୁନି କଙ୍କଣ ହସ୍ତରେ ଆଭରଣ ।
ଚନ୍ଦ୍ର କିରଣ ଜିଣି ଶରୀର ଶୋଭାବନ
ଶ୍ୱେତପଦ୍ମ ପ୍ରାୟେ ଦିଶେ ବେନି ଯେ ନୟନ ।
ଅଧର ସୁରଙ୍ଗ ତୋର ବିଜୁଳି ଜ୍ୟୋତି ଜିଣି
ନାସିକା ତିଳ ପୂର୍ଣ୍ଣ ପ୍ରମାଣେ ଶୋଭା ପୁଣି ।
ତୋଳାର ଭିତରେ ଯେ ଭ୍ରମଣ ମଧୁକର
ପୁଷ୍ପକୁ ଦେଖିଲେ ଯେହ୍ନେ କରେ ମତିଭୋଳ ।
ବାମଦେବ ଜାତକରି କାମଦେବ ନାମ
ଅତିବଳ ପ୍ରାକର୍ମେ ଯେ ଅଟଇ ଉତ୍ତମ ।
ନୀଳବସ୍ତ୍ର ପିନ୍ଧିବାରୁ ନାମ ନୀଳାମ୍ବର
ତ୍ରୈଲୋକ୍ୟ ଈଶ୍ୱର ତୁ ଯେ ନାମଇ ଶଙ୍କର ।
ତପରେ ନିର୍ଗୁଣ ତୁମ୍ଭେ ଯୋଗରେ ନିକ୍ଷତା
ତୁମ୍ଭର ଘରଣୀ ଯେ ଅନ୍ନ ବସ୍ତ୍ର ଦାତା ।

ଜଗତ ଭାରାଭର ବହଇ ଯେ ଦହି
ତୁମ୍ଭର କର୍ଣ୍ଣରେ ସେ କୁଣ୍ଡଳ ହୋଇ ରହି ।
ବାମ କର୍ଣ୍ଣେ କୁଣ୍ଡଳ ନାହିଁ ଯେ ତୋହର
ତେଣୁ ସେ ମେରୁ ଗୋଟି ରୁଳକ କର୍ଣ୍ଣର ।
ଏକ ଅହି ତୋର କର୍ଣ୍ଣରେ ଅଛି ରହି
ଏକ ଅହି ସପତ ପୁରକୁ ଧଇଇ ।
ଏକ ଅହି ହୃଦକୁ ପଦକ ମାଳା ହୋଇ
ଏକ ଅହି ମସ୍ତକରେ ସପତଫଣି ଶୋହି ।
ଚରଣେ ଏକ ଅହି ନୂପୁର କାଳେଣି
ଏକ ଅହି ହସ୍ତରେ କଙ୍କଣ ହୋଏ ପୁଣି ।
ଏକ ଅହି ଗୋଟି ଯେ ସଂସାର ଧରାଇ
ଏକରୁ ଅନେକ ରୂପ ହୋଇଣ ଖେଳଇ ।
ଏମନ୍ତେସପତ ମାଳା ସପତଫଣି ତୋର
ତୋହର ମହିମା ତ ଦେବଙ୍କୁ ଅଗୋଚର ।
ବିଷ୍ଣୁର ସଙ୍ଗତେ ଅନନ୍ତ ମୂରତି ଧରି ରହୁ
ଦେବ ସଙ୍ଗେ ତ୍ରିଲୋଚନ ତୁହି ଯେ ବୋଲାଉ ।
ନର ନାରାୟଣ ସଙ୍ଗେ ବୋଲାଉ ଈଶ୍ୱର
ଜୀବମାନଙ୍କ ସଙ୍ଗେ ଅହି ନାମ ତୋର ।
ବାନର ଭାଲୁଙ୍କ ମଧ୍ୟେ ତୋ ନାମ ଈଶ୍ୱର
ତପିଙ୍କ ସଙ୍ଗରେ ଯେ ପଞ୍ଚାନନ ହର ।
ଦୁଷ୍ଟଙ୍କର ସଙ୍ଗରେ ଗରବ ନ ସହୁ
ସନ୍ଥଙ୍କର ସଙ୍ଗରେ ପାଷାଣରୂପ ବହୁ ।
ଭକତି ଲୋକଙ୍କୁ ହେଉ ଧର୍ମଶୀଳ
ଅସୁରମାନଙ୍କ ସଙ୍ଗେ ହେଉ ଦାବାନଳ ।
ଏରୂପେ ସବୁଠାରେ ନାମ ତୋର ବ୍ୟାପି
ସମସ୍ତ କପୋଳେ କର୍ମ ରୂପେ ବସି ।
ସମସ୍ତଙ୍କ ହୃଦୟରେ ଅଟୁ ଜୀବ ପୁଣ
ରକ୍ତ ମାଂସ ଯେ ତୋଠାରୁ ଭିଆଣ ।
ଏମନ୍ତ ପ୍ରତିଜ୍ଞା ଯେ ତୋର ଅଟେ ପୁଣି
ଦୋଷୀକୁ ଦଣ୍ଡ ଦେଉ ତୁହି ସେ ବେଳ ଜାଣି
ଏମନ୍ତେ ସ୍ତୁତିକଲେ ବଳରାମ ଦାସ
ତେଣୁକରି ତ୍ରିଲୋଚନ ହୃଦରେ ପ୍ରକାଶ ।
ଜୟ ତୁମ୍ଭେ ଲକ୍ଷ୍ମଣ ଦେବଙ୍କ ପରେ ଷଣ୍ଢ
ତୋର ଆଶ୍ରିତରେ ଆତଜାତ ଯେ ବ୍ରହ୍ମାଣ୍ଡ ।
ବେଦବର ଛାମୁରେ କହେ ନାରଦ ମୁନି
ତୁମ୍ଭର ନାମ ନିତ୍ୟେ ସ୍ମରେ ପଦ୍ମଯୋନି ।

ବେଦ ବ୍ରହ୍ମା ଛାମୁରେ କହେ ଦେବରଷି
ତୁମ୍ଭର ଚରିତ୍ରକୁ ଅନୁକ୍ଷଣେ ତୋଷି ।
ନାରଦ ମୁନି ସୁମରୁ ନାଗ ରାଜା ଶୁଣି
ତୋର ନାମ ସୁମରି ମେଦିନୀ ଧରେ ପୁଣି ।
ତିଳ ମନ୍ଦା ପ୍ରାୟେ ତାକୁ ଲାଗଇ ଉଶ୍ୱାସ
ତେଣୁ ସେ ତୋର ନାମରେ କରନ୍ତି ବିଶ୍ୱାସ
ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ କହି
ରାମ ଲକ୍ଷ୍ମଣଙ୍କ କଥା କହ ମୁନି ତହିଁ ।
ଶୁଣି କରି ଈଶ୍ୱର ବୋଲନ୍ତି ବଚନ
ଶୁଣ ତୁମ୍ଭେ ଗଉରୀ ଗୋ ତୋଷକରି ମନ ।
ଅଯୋଧ୍ୟା ନଗରରେ ଯେ ଚରିଭାଇ ପୁଣ
ରାମ ଲକ୍ଷ୍ମଣ ଯେ ଭରତ ଶତ୍ରୁଘନ ।
ଆଖଡା ଶାଳରେ ଯେ ସାଧନ୍ତି ନାନା ବିଦ୍ୟା
କ୍ଷତ୍ରି ପିଲାଙ୍କ ସଙ୍ଗେ ଅନେକ ଥାନ୍ତି ଶିଷ୍ୟା ।
ସାଧକ ବିଦ୍ୟାମାନ ସାଧିଲେ ଦେବେ ପୁଣି
ଯାଗ ରଖିବାରୁ ଶୂନ୍ୟରେ ଶୁଭେ ଧ୍ୱନି ।
ମିଥିଳାରେ ଜନକ ଋଷି ସଭା ଠାରେ
ଲକ୍ଷେ ରାଜା ଦର୍ପ ଯେ ଭାଙ୍ଗିଲେ ଦେବହେଳେ
ଶକତି ଦେଖି ରାଜା ପଳାଇଣ ଗଲେ
ଯେ ଯାହାର ନଗ୍ରରେ ଯାଇଣ ରହିଲେ ।
ସମର କରି ରାଜା ନ ପାରିଲେ ବଳେ
ଧନୁଶର ଛାଡ଼ିଣ ପଳାଇଲେ ଡରେ ।
ଶ୍ରୀରାମଙ୍କ ବୋଲରେ ରାଜାଙ୍କ ପ୍ରାଣରକ୍ଷି
ତେଣୁ ତୁମ୍ଭ ନାମ ନରରାଜାଏ ଜପୁଛନ୍ତି ।
ଅଷ୍ଟ ଅବତାରେ ମଥୁରାରେ ଜାତ
ତେଣୁ ତୁମ୍ଭର ନାମ ଅଟେ ବଳବନ୍ତ ।
ବସୁଦେବ ଘରେ ତୁମ୍ଭେ ହୋଇଲେ ଜନମ
ନନ୍ଦଘରେ ଗୋପପୁରେ ରଖିଲେ ନେଇ ପୁଣ
ବାସୁଦେବ ସଙ୍ଗରେ ଯେ ସେ ପୁରେ ବଢ଼ିଣ
ଦଧି ଲବଣୀ ଖାଇ ବାଛୁରୀ ଜଗ ପୁଣ ।
ଷଣ୍ଢା ସକଟାକୁ ଯେ ମାରିଛ ଆପଣ
କାଳନ୍ଦୀ ତଟରେ ବଂଶୀ ବଜାଅ ଘନ ଘନ ।
ତେଣୁ କରି ବଳରାମ ରୂପେ ହେଲେ ଜାତ
ପ୍ରଳମ୍ବା ସୁରକୁ ମାରିଛ ରୋହିଣୀର ସୁତ ।
କଂସ କେଶୀ ବକାସୁର ଯାମଳା ଯେ ଷଣ୍ଢା
ଏମାନଙ୍କୁ ବାସୁଦେବ ମାରିଣ କଲ ଗୁଣ୍ଡା ।

ଅଷ୍ଟମଲ ଯାକ ଯେ ଅଟନ୍ତି ଅଷ୍ଟ ଭାଇ
ମାଲ ସଙ୍ଗେ ଯୁଦ୍ଧ କରି ମାଇଲ ଦୁଇଭାଇ
ଜରାସନ୍ଧ ଅଷ୍ଟାଦଶ ବାର ଧାଡ଼ି ଦେଲା
ଭୀମର ସ୍ୱହସ୍ତେ ତାକୁ ମରାଇଲ ପରା ।
ଦନ୍ତ ବକ୍ର ଶିଶୁପାଳ ସାଲୁ ବକ୍ରୁ ନାଭ
ଏମାନଙ୍କୁ ନାଶ କଲ ସତ୍ୱର ବାସୁଦେବ ।
ରୁକ୍ମିଣୀ କୁବଳିୟା ସୁନାମା କୁମର
ଚଣ୍ଡୁର ମୁଷ୍ଟିକ ଯେ ଅନେକ ମାଲ ତୁଲ ।
ସାତ ସହସ୍ର ମାଲ ଯେ ନବକୋଟି ପଦାତି
ମଥୁରାରେ ଏତେ ବଳ ମାଇଲ ନିପାତି
କଂସ ରାଜାକୁ ଯେ ମାଇଲ ତୁମ୍ଭେ ପୁଣ
ଉଗ୍ରସେନକୁ ରାଜା କରିଛ ଆପଣ ।
ମଥୁରାକୁ ଛାଡ଼ି ପରା ଦ୍ୱାରକାକୁ ଗଲ
ସମୁଦ୍ର ଭିତରେ ଯାଇଣ ଘର କଲ ।
ରୁକ୍ମିଣୀ ସତ୍ୟଭାମା ଜମ୍ବୁବତୀ ମୂଳେ
ବତିଶ ସସ୍ର କନ୍ୟା ବାସୁଦେବର ଠୁଳେ
ଅଷ୍ଟପାଟବଂଶୀ ଯେ ଅଟନ୍ତି ସାରଧାର
ତାଙ୍କ ସଙ୍ଗେ ବିଭା ଯେ ବାସୁଦେବଙ୍କର ।
ପରକ୍ରିୟା ଛାଡ଼ିଣ ସୁକ୍ରିୟା ଘରେ ରହି
ଲକ୍ଷେ ଷାଠିଏ ସସ୍ର ଅଶିଏ ନନ୍ଦନ ଜାତହୋଇ
ଯମ୍ବୁବତୀ ନନ୍ଦନ ଶାମ୍ବ ନାମ ତାର
ହସ୍ତିନାର ରାଜା ଦୁର୍ଯ୍ୟୋଧନ ଦୁଲାଳର ।
ଦୁହିତା ଯୋଗରୁ ମାନ ଗୋବିନ୍ଦ ଯୁଦ୍ଧକରି
ନାରଦ କହିବାରୁ ଜାଣିଲ ହଳଧାରୀ ।
ସେତେବେଳେ ହସ୍ତିନା ଟେକିଲ ବାମକରେ
କୁରାଳ ଚକ୍ର ପ୍ରାୟେ ବୁଲାଇ ହସ୍ତରେ ।
କାଦମ୍ବରୀ ପାନରେ ଅରୁଣ ବର୍ଣ୍ଣ ଆଖି
ସୁତ ପୁରାଣିକ ଯେ ନ ଲେଖେ ତାହାଦେଖି ।
କୋପରେ ଚପୋଡ଼େ ଯେ ମାଇଲା ତାର ଶିରେ
ତେଣୁକରି ସେ ଦୋଷରେ ଗଲେ ଯେ ତୀର୍ଥବନେ
ଅନ୍ତେଣ ପ୍ରଭାସ ତୀର୍ଥ ହୋଇଲା ଗୁପତ
ଏବେ ନୀଳଗିରି ଶିଖରେ ବିଜୟ ତ ।
ଭକତ ଜନଙ୍କ ହିତେ ତୁହି ପ୍ରକାଶ
ଜଗନ୍ନାଥଙ୍କ ଦକ୍ଷିଣ ପାଖରେ ବସିଛ ।
ସେ ଜଗନ୍ନାଥ ଅଟନ୍ତି ପରମ ବ୍ରହ୍ମରାଶି
ଯୋଗିଜନମାନଙ୍କର ଅଟ ଯେ ଭୁଜସି ।

ସର୍ବଜନ ନିସ୍ତାରଣ କମଳା ବିଳାସ
ଜଗନ୍ନାଥ ଚରଣେ ମୁଁ ଶରଣ ବଳରାମ ଦାସ
ସିନ୍ଧୁର ଦୁହିତା ଘେନି ସଙ୍ଗରେ ହେଲ ଜାତ
ଏତେତ ଜାନକୀ ଘେନି ବନେ ଉପଗତ
ଯେ ଜାନକୀ ଅଟନ୍ତି ସାକ୍ଷାତେ କମଳା
ତାହାର ହେତୁରୁ ଦୈତ୍ୟେ ମରିବେ ପରା ।
ସେହି ସୀତା ଘେନି ତୁ ଯେ ବନକୁ ବାହାର
ନିଶ୍ଚୟ ଦୈତ୍ୟକୁଳ ହୋଇବେ ବଧସାର ।
ସେ ଦେବୀ କ୍ରୋଧରେ ଦୈତ୍ୟ ଯେ ହେବନାଶ
ଏଥିର ସକାଶରେ ବନରେ ପ୍ରବେଶ ।
ଶୁଣ ହେ ସ୍ୱଛଜନେ ଶ୍ରୀରାମର କଥା
ପାର୍ବତୀ ଆଗରେ ଯାହା କହିଲେ ପଞ୍ଚମଥା ।
ଶାମ ବେଦ କଥା ଅଟେ ପର୍ବତ ଦୁଲାଣୀ
ନୟନ କେଶରୀ ଯେ ଅସୁର ଦ୍ୱିଜପୁଣି ।
କେଉଁ ଦେଶେ ଘର ତାର କେମନ୍ତେ ଜାଣିଲା
ଶ୍ରୀରାମର ଚରିତ କେମନ୍ତେ ବଖାଣିଲା ।
ଏହା ମୋତେ ସଂକ୍ଷେପି କହ ତ୍ରିଲୋଚନ
ଶୁଣିକରି ଈଶ୍ୱର କହନ୍ତି ବଚନ ।
ଦେବ ନାଟକ ଶ୍ଳୋକ ଶାମବେଦରୁ ବାହାର
ପ୍ରଥମ ଶ୍ଳୋକ କଲେ ବାଲ୍ମୀକି ମୁନିବର ।
ସାତଶ ପଞ୍ଚାଶ ଯେ ଶ୍ଳୋକ କଲେ ସାର
ରାବଣର ଅର୍ଥକୁ ରଚିଲେ ମୁନିବର ।
ଆଦ୍ୟର ଦୁଇ କାଣ୍ଡ ଶ୍ଳୋକେ ସମାପତ
ପଞ୍ଚସସ୍ର ପଦକଲେ ମୃତବନ୍ତ ।
ତୃତୀୟ କାଣ୍ଡ ମୁନି ଆସିକରି ପୁଣ
ରଚିବାକୁ ମନରେ କଲେ ବିଚାରିଣ ।
ତାହା ଜାଣି ନାରଦ ମିଳିଲେ ତାର ପାଶ
ଦେଖିଣ ବାଲମିକ ହୋଇଲେ ହରଷ ।
ବୋଇଲେ ରାମାୟଣ ଗ୍ରନ୍ଥ ମୁଁ ବିଚାରି
ଆଦ୍ୟରୁ ଦ୍ୱିତୀୟ କାଣ୍ଡ ସଂପୂର୍ଣ୍ଣ ହେଲା ମୋରି
ତୃତୀୟ କାଣ୍ଡ କରିବି ମନେ ବିଚାରଇ
ଭଲ ଯୋଗରେ ଭେଟ ପାଇଲି ତୁମ୍ଭକୁଇଁ ।
ନାରଦ ବୋଇଲେ ଶୁଣି ତେତିକି ତୁମ୍ଭର
ଆରଣ୍ୟକ କାଣ୍ଡ ତୁମ୍ଭେ ପ୍ରକାଶ ନ କର ।
ବିଡ଼ମ୍ବଣ ଅଭୂଷଣ ଶ୍ରୀରାମ ସୀତାର
ସେ କଥା ବର୍ଣ୍ଣିବ ଯେବେ ସ୍ୱର୍ଗପୁର ।

ଶୁଣିଣ ବାଲମିକ ସ୍ତମ୍ଭୀଭୂତ ହେଲେ
ରାମାୟଣ ଗ୍ରନ୍ଥକୁ ସେଠାରୁ ତେଜିଲେ ।
ମନାକରି ନାରଦ ଯେ ବେଗେ ଚଳିଗଲେ
ଲଙ୍କା ଗଡ଼ରେ ଯାଇ ପ୍ରବେଶ ହୋଇଲେ ।
ନବୀନ କେଶରୀ ଯେ ଦ୍ୱିଜବର ଘରେ
ପ୍ରବେଶ ହୋଇଲେ ମୁନି ଅତି ହରଷରେ ।
ଦେଖିଣ ଅସୁର ଦ୍ୱିଜ ପାଦ ପୂଜା କଲା
ଗଙ୍ଗାଜଳ ଘେନିଣ ଚରଣ ଧୋଇ ଦେଲା ।
ମୃଗ ଛାଲ ଉପରେ ଦ୍ୱିଜଏ ମୁନିବର
କରଯୋଡ଼ି ଦ୍ୱିଜବର କହଇ ସୁସ୍ୱର ।
କେଉଁଣେ ବିଜେକଲ ମୁନି ମୋର ବଡ଼ଭାଗ୍ୟ
ଭଲଯୋଗେ ପ୍ରବେଶ ହୋଇଲେ ତୁମ୍ଭେ ଆଜ ।
ରାମଚନ୍ଦ୍ର ଜାତ ହେଲେ ରାବଣ ଯିବ ନାଶ
ଲକ୍ଷ୍ମଣ ସୀତା ଅଇଲେ ବନବାସ ।
ଚିତ୍ରକୂଟ ପର୍ବତେ ଅଛନ୍ତି ରାମରାଣ
ଚଉଦ ବରଷ ଗଲେ ରାବଣ ମରେ ପୁଣ ।
ସେ କଥାକୁ ମୋର ମନେ ହେଉଛି ବିଚାର
ରାମାୟଣ ଗ୍ରନ୍ଥ ମୁଁ ଯେ କରିବି ବିଚାର ।
ନାରଦ ବୋଇଲେ ତୁମ୍ଭେ ଶୁଣି ଦ୍ୱିଜବର
ସେ କଥା କହିବାକୁ ଅଇଲି ତୋର ପୁର ।
ଆଦ୍ୟକାଣ୍ଡ ଦ୍ୱିତୀୟକାଣ୍ଡ ବାଲମିକ କଲେ
ଶାମ ବେଦରୁ ବେଦ ନାଟକ ଲେଖିଲେ ।
ସେଠାରୁ ମୁନିଙ୍କି ମୁଁ ମନାକଲି ପୁଣ
ତୋରଠାକୁ ଅଇଲି ଶୁଣ ମୋ ବଚନ ।
ଆରଣ୍ୟକ କିଷ୍କିନ୍ଧ୍ୟା ସିନ୍ଦୁରା ତିନିକାଣ୍ଡ
ରଚନା କର ଦ୍ୱିଜ ରହୁ ଏ ବ୍ରହ୍ମାଣ୍ଡ ।
ସୁନାଟକ ଶ୍ଳୋକ ସାତଶ ପଞ୍ଚାଶରେ
ଏ ତିନି କାଣ୍ଡ ଲେଖିବୁ ବିଚାରି ମନରେ ।
ଏତେ କହି ନାରଦ ସ୍ୱର୍ଗକୁ ଚଳିଗଲେ
ଆରଣ୍ୟକଠାରୁ ନବୀନ କେଶରୀ ରଚିଲେ ।
ଶ୍ରୀରାମ ଲକ୍ଷ୍ମଣ ସୀତା ଚିତ୍ରକୂଟ କଥା
ପାର୍ବତୀଙ୍କି ଯାହା କହିଲେ ପଞ୍ଚମଥା ।
ଶାମବେଦ କଥା ପୁଚ୍ଛେ ପର୍ବତ ଦୁଲଣୀ
ଶ୍ରୀରାମ ମହିମା ତୁମ୍ଭେ କହ ଶୂଳପାଣି ।
ମୋର ସେ କଥାରେ ମନ ହୁଏ ଯେ ଶ୍ରୋତା
ତିନିଜଣ ବନଗଲେ କି କଲେ ବ୍ୟବସ୍ଥା ।

ସେ କଥା ଶରଧାରେ କହଇ ମୁଁ ପୁଣ
ଜଗନ୍ନାଥ ପ୍ରସନ୍ନ ହୋଇଲେ ମୋର ମନ ।
ଆରଣ୍ୟକ କାଣ୍ଡ ସେ ଯେ ଅମୃତ ରାମବାଣୀ
ଈଶ୍ୱରଙ୍କୁ କରଯୋଡ଼ି କହେ ଗଉରୀ ପୁଣି ।
ପାର୍ବତୀ ପଚ୍ଚରନ୍ତି ଶୁଣ ପଞ୍ଚାନନ
ଭରତ ଫେରିଣ ଗଲେ ରାଜ୍ୟ ପୁଣ ।
ଭରତ ସେଠାରୁ ଯେ ବାହୁଡ଼ିଣ ଗଲେ
ସେଠାବରୁ ଶ୍ରୀରାମ କେବଣ କୃତ୍ୟ କଲେ ।
ଏ କଥା ସଂକ୍ଷେପି କରି କହ ତ୍ରିପୁରାରି
ଶୁଣିବାକୁ ଶରଧା ବଳିଲା ମୋହରି ।
ବୋଲନ୍ତି ସଦାଶିବ ଶୁଣ ଶାକମ୍ଭରୀ
ଭରତ ବାହୁଡ଼ିଲା ପାଦୁକା ଦୁଇଧରି ।
ପ୍ରଥମ ଦିନ ସେ ଯେ ଯମୁନା କୂଳେ ରହି
ଶାମ ବଟକୁ ଦର୍ଶନ କଲେ ତହିଁ ଯାଇ ।
ସେ ବଟର ଚ଼ରିପାଶେ କଲେ ସେ ଭ୍ରମଣ
ବୋଇଲେ ମୋ ବଚନ ସିଦ୍ଧ ହେଉ ପୁଣ ।
ଏତେ କହି ଭରତ ବାଞ୍ଛାବଟ ତଳେ
କରଯୋଡ଼ି ଉଭା ଯେ ହୋଇଲା ସେଠାରେ ।
ବିଚ଼ରିଲା ବଟମୂଳେ ଶ୍ରୀରାମ ସୁଖୀ ହୁନ୍ତୁ
ଚଉଦ ବରଷ ଗଲେ ଅଯୋଧ୍ୟା ରାଜା ହୁନ୍ତୁ ।
ଚଉଦ ବରଷରେ ଆସନ୍ତୁ ନିଜ ପୁର
ମୋରଠାରେ ସୁଦୟା କରନ୍ତୁ ରଘୁବୀର ।
ମାତା କହିଲା ଦୋଷ ମୋଠାରୁ କ୍ଷମାଦେଉ
ତ୍ରୈଲୋକ୍ୟନାଥ ସେ ଯେ କ୍ରୋଧ ମୋର ନୋହୁ
ଏତେ କହି ମନବାଞ୍ଛା କଲେ ଭ୍ରତବୀର
ବାଞ୍ଛା ବଟରୁ ପୁଷ୍ପ ପଡ଼ିଲା ଖସିତଳ ।
ଦେଖିଣ ଭରତ ଯେ ପୁଷ୍ପକୁ କରେଧରି
ଶିରରେ ଲଗାଇଣ ରଖିଲା ଯତ୍ନକରି ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ବଟର ତଳୁ ଭ୍ରତ ଫେରିଲା ବେଗେଟି ।
ଫେରିବାର ଦେଖିକରି ଶତ୍ରୁ ଘନ ଗଲା
ଶାମବଟକୁ ଯାଇ ପ୍ରଦକ୍ଷିଣ କଲା ।
ସେ ବଟ ଚରଣ ତଳେ ଓଳଗି ଶୋଏ ବୀର
ଉଠିଶିରେ କରଦେଇ କହଇ ଉତ୍ତର ।
ଶ୍ରୀରାମ ଲକ୍ଷ୍ମଣ ସୀତା ଗଲେ ବନବାସ
ପିତାଙ୍କର ସତ୍ୟ ଯେ ପାଳିଲେ ରଘୁ ଶିଷ୍ୟ ।
ସେ ଆମ୍ଭର ପ୍ରଭୁ ଆମ୍ଭେ ତାର ଦାସ
ଚଉଦ ବରଷ ବନେ ନ ପାନ୍ତୁ ସେ ପ୍ରାସ ।
ମୋଠାରେ ସଦବୁଦ୍ଧି କରିଥିବେ ପୁଣ
ହୃଦରେ ଅବିଗୁଣ ନ ଧରିବେ ରାମ ରାଣ ।
ଗଲାବେଳେ ବିରସ ଆସିଲାବେଳେ ସୁଖୀହୁନ୍ତୁ
ଯେମନ୍ତ ତ୍ରିପୁର ଲୋକେ ସଙ୍ଗ ନ ଛାଡ଼ନ୍ତୁ ।
ସମସ୍ତଙ୍କ ପରେ ସାର ହେବ ନାରାୟଣ
ତ୍ରୈଲୋକ୍ୟରେ ମହିମା ବିଖ୍ୟାତ ହେବ ପୁଣ ।
ଅବିଗୁଣ କଥା ଆଉ ମନରେ ନଥିବ
ଶାନ୍ତଶୀଳ ମୂର୍ତ୍ତି ହେବେ ରାମଚନ୍ଦ୍ର ଦେବ ।
ଏହିମତେ ଶତ୍ରୁଘନ ମନରେ ବିଚ଼ରି
କରଯୋଡ଼ି ନମସ୍କାର ବଟ ଚରଣେ କରି
ପଶ୍ଚିମ ଭାଗରେ ବୀର ଯାଇ ହେଲା ଛିଡ଼ା
ସେ ବଟରୁ ଶ୍ୱେତ ପୁଷ୍ପ ଯେତେ ଖସେ ପରା ।
ଦେଖିଣ ଶତ୍ରୁଘନ ପୁଷ୍ପ ଯାଇ ଧରି
ମସ୍ତକର କେଶରେ ଖୋସିଲେ ନେଇ କରି ।
ସେଠାରୁ ଶତ୍ରୁଘନ ଅଇଲେକ ବେଗେ
ଦେଖିଣ ରାମ ମାତା ଗଲେ ଉଦବେଗେ ।
ଶାମ ବଟକୁ ସେ ପ୍ରଦକ୍ଷିଣ କଲେ
କରଯୋଡ଼ି ବଟମୂଳେ କୌଶଲ୍ୟା ଛିଡ଼ାହେଲେ
ବୋଇଲେ ବନକୁ ଗଲେ ପୁତ୍ରବଧୂ ମୋର
କିଛି ଦୋଷ କରିନାହିଁ ଶ୍ରୀରାମ ମୋହର ।
ବିନାଦୋଷେ ସପତଣୀ ତାକୁ ହିଂସା କଲା
ମୋର ପୁତ୍ର ବଧୂକୁ ବନକୁ ପେଶିଲା ।
ସ୍ୱାମୀଙ୍କି ନଷ୍ଟକଲା ପାପିଷ୍ଟ ଚ଼ଣ୍ଡାଳୁଣୀ
ଏ ଦୋଷକୁ ସତେ ବୀରେ ଭୋଗକରୁ ପୁଣି ।
ତିନିପୁରେ ଅପଖ୍ୟାତି ପାଉ ସେ ରାଢ଼େଣୀ
ଦୁଃଖରେ ଦିନସରୁ ସୁଖ ନଲଭୁ ପୁଣି ।
ଶ୍ରୀରାମ ଜାନକୀ ମୋର ହୁଅନ୍ତୁ ଜଗଜ୍ଜିତା
ଶ୍ରୀରାମ ନାମ ଗୋଟି ସଂସାରେ ମୋକ୍ଷଦାତା ।
ସର୍ବ ଶୁଭେ ଅଯୋଧ୍ୟା ଆସନ୍ତୁ ପୁତ୍ରବଧୂ
ତିନି ପୁରେ ମହିମା ବିଖ୍ୟାତ ହେଉ ସାଧୁ ।
ଏମନ୍ତ ବିଚ଼ରି ବାଞ୍ଛା ସେଠାବରେ କଲେ
ବସନ୍ତ ବର୍ଣ୍ଣର ଫୁଲ ସେ ବଟୁ ଖସିଲେ ।
ସେ ପୁଷ୍ପକୁ ଘେନିଣ ଚଳିଲେ ରାମ ମାତା
ବିଚ଼ରିଲା ମନରେ ବାଞ୍ଛା ହେବ ଶ୍ରୋତା ।

ରାମ ମାତା ଆସିବାରୁ ଭରତ ମାତା ଗଲେ
ଶାମଳ ବଟକୁ ସେ ପ୍ରଦକ୍ଷିଣ କଲେ ।
କରଯୋଡ଼ି ପଶ୍ଚିମ ଭାଗରେ ହେଲେ ଛିଡ଼ା
ବୋଇଲେ ଭୋ ବଟ ସୁଦୟା ଏବେ କର ।
ପୁତ୍ର ମୋର ରାଜା ହେବେ ମୁହିଁ ହେବି ସୁଖି
ଶ୍ରୀରାମ ମୋତେ ପ୍ରଶଂସା ଜନରେ କରିବେଟି
ସ୍ୱଦେହ ଘେନି କରି ସ୍ୱାମୀ ସଙ୍ଗେ ଯିବି
ଏହି ବାଞ୍ଛା ପୂର୍ଣ୍ଣ ଏବେ ହେଉ ବୋଲି ସେବି
ଏକେ ବୋଲି ଓଳଗି ମେଲାଏ ଭରତମାତା
ବଟରୁ ଖସିଲା ଫୁଲ ରଙ୍ଗ ଯେ ଶୋଭିତା ।
ସେ ପୁଷ୍ପକୁ ଘେନିଣ ଅଇଲା ବେଗ କରି
କୈକେୟୀ ଆସିବାରୁ ସୁମିତ୍ରା ଗଲେ ଚଳି ।
ଶାମ ବଟକୁ ସେ ଯେ ନମସ୍କାର କଲା
ବେନିଥର ପରିଯନ୍ତେ ପ୍ରଦକ୍ଷିଣ କଲା ।
କରଯୋଡ଼ି ଉତ୍ତର ଭାଗରେ ଛିଡ଼ାହେଲା
ବାଞ୍ଛା ସିଦ୍ଧ ହେଉ ମୋର ବଟକୁ ଜଣାଇଲା
ଲକ୍ଷ୍ମଣ କୁମର ମୋର ହେଉ ବଳବନ୍ତ
ଶ୍ରୀରାମ ଜାନକୀଠାରେ ନୋହିବ ବିମନ୍ତ ।
ତିନିପୁରେ ପ୍ରଶଂସା ପାଇବ ମୋର ବଳା
ଚଉଦ ବରଷ ବନ ସୁଖରେ ନ୍ୟନ୍ତୁ ତୋରା ।
ଆସିଣ ଘରିଭାଇ ଏକମେଳ ହୁନ୍ତୁ
ଅଯୋଧ୍ୟାକୁ ଚଳି ରାଜ୍ୟେ ରାଜପଣ ପାନ୍ତୁ ।
ଏମନ୍ତ ବାଞ୍ଛା ତହିଁରେ କଲେକ ସୁମିତ୍ରା
ସେ ବଟ ପରେ ବସି ଶାରୀ କହେ କଥା ।
ବୋଇଲେ ତୋର ବାଞ୍ଛା ସିଦ୍ଧ ହେଉ ଏବେ
ଯେଉଁ କଥା ବିଚାର ଦେଖିବ ସର୍ବ ଶୁଭେ ।
ଶୁଣିକରି ସୁମିତ୍ରା ସେଠାରୁ ଚଳିଆସି
ଦେଖିକରି ଲୀଳାବତୀ ଗଲେ ବେଗେ ଉଠି ।
ଶାମ ବଟକୁ ଯାଇ ପ୍ରଦକ୍ଷିଣ କଲେ
ଗଛମୂଳେ ଓଳଗି ସ୍ୱତୀ ଯେ ଶୋଇଲେ ।
କରଯୋଡ଼ି ଜଣାଏ ବଟର ସନ୍ନିଧାନେ
ରାମ ଲକ୍ଷ୍ମଣ ସୀତା ଆସିବେ ତୋଷମନେ ।
ନର ବାନର ଋଷି ଦେବତା ସଙ୍ଗେ ଥିବେ
ଦୈତ୍ୟକୁ ମାରି ରମା ଆସିବେ ସର୍ବଶୁଭେ ।
ରାକ୍ଷସ ରାଜାଗଣ ସଙ୍ଗରେ ଥିବ ପୁଣ
ଅଭିଷେକ ହେବେ ରାମ ସଭିଙ୍କି ଘେନିଣ ।

ସକଳ ସପତଣୀ ଦେଖିବେ ତୋଷ ହୋଇ
ହରଷରେ ଦିନ ଯେ ନେବେ ସର୍ବେ ରହି ।
ଏକଥା ମାନଙ୍କୁ ମୁଁ ନ ଦେଖିବି ପୁଣ
ସ୍ୱାମୀଙ୍କି ଦେଖିଲେ ମୁଁ ଯିବି ସଙ୍ଗତେଣ ।
ଶତ୍ରୁଘ୍ନ କୁମର ମୋର ହେବ ଜଗଜିତା
ମୃତ୍ୟୁପରେ ରାଜ୍ୟରେ ରାଜପଣେ ଶ୍ରୋତା ।
ଏହି ବାଞ୍ଛା ସେଠାରେ ଲୀଳାବତୀ କଲା
ସେ ବଟ ପରେ ଶାରୀ ବସିଣ ଯେ ଥିଲା ।
ବୋଇଲା ତୋର ବାଞ୍ଛା ହୋଇବଟି ମୂଳ
ବହୁତ ଯଶ ତୋତେ ହୋଇବ ନିଜପୁର ।
ଧବଳ ଛତି ତୋର ଶିରରେ ଦେବଭଜା
ଚଉଦ ବରଷ ପରିଯନ୍ତେ ରାଜପଣେ ଶୋଭା ।
ଶ୍ରୀରାମ ଗଲେ ବନ ଭରତ ଯେ ହେବ ରାଜା
ନଗ୍ର ପ୍ରଜା ପାଳିବୁଟି ବେଗେ ତୁ ଏଥୁ ଯାଧା ।
ଦେବତାଏ ତୋତେ ପୂଣି କରିବେ ପ୍ରଶଂସା
ଏହି ସବୁ କଥା ତୁହି ମନରେ ଧରିଥା ।
ପୁତ୍ରକୁଘେନି ଅସୁର ମାରିବେ ଦେଖିବୁ ରାମସୀତା
ଶୁଣିଣ ଲୀଳାବତୀ ହୋଇଲା ଶୋଭିତା ।
ଫେରିଣ ବଟ ତଳକୁ ବେଗେ ଚଳିଗଲା
ଦେଖିଣ କଳାବତୀ ସେଠାରୁ ଉଠିଲା ।
ସପତଣୀ ମାନଙ୍କୁ ଘେନିଣ ସଙ୍ଗରେ
ପ୍ରବେଶ ହୋଇଲା ଯାଇ ଶାମ ବଟ ଠାରେ ।
ଶାମ ବଟଠାରେ ମିଳିଲେ ସର୍ବେ ଯାଇ
ବଟକୁ ପ୍ରଦକ୍ଷିଣ କଲେ ବେଗେ ଯାଇ ।
ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘନ ପୁଣ
ଘରିଭାଇଙ୍କି ଯଶ ଶୁଭ ଦିଅ ପୁଣ ।
ଘରି ପୁତ୍ରଙ୍କ ଆଗରେ ଆମ୍ଭର ପ୍ରାଣ ଯାଉ
ସ୍ୱାମୀଙ୍କର ସଙ୍ଗରେ ନିଶ୍ଚିନ୍ତେ ଆମ୍ଭେ ରହୁ ।
ସ୍ୱଦେହ ଘେନି ଆମ୍ଭେ ଯାଉ ଯେ ମର୍ତ୍ତ୍ୟପୁରୁ
ଏହି ବର ମାଗୁ ଆମ୍ଭେ ବାଞ୍ଛା କଳ୍ପତରୁ ।
ଏମନ୍ତ ବାଞ୍ଛା କରି ଓଳଗି ସେ ହୋଇଲେ
ନମସ୍କାର କରିଣ ସମସ୍ତେ ଚଳିଗଲେ ।
ରାଣୀ ହଂସ ଯିବାରୁ ପଦାତି ବଳ ଆସି
ବଟକୁ ଓଳଗି ହୋଇ କହୁଛନ୍ତି ବସି ।
ଶ୍ରୀରାମ ବନରୁ ଆସି ଅଯୋଧ୍ୟାରେ ରାଜା ହେଉ
ଆମ୍ଭଙ୍କୁ ପାଳି ସୁଖେ ଯଶ ମାନ ନେଉ ।

ଏତେବୋଲି ପଦାତି ବଳ ଚଳି ଗଲେ
ରଥି ସେନାପତି ଯେ ଆସିଣ ମିଳିଲେ ।
ଶାମ ବଟକୁ ସେ କଲେ ଦରଶନ
ଓଳଗି ସେ ହୋଇଣ ବଟକୁ ଦେଖିଣ ।
ବୋଇଲେ ରାମ ଲକ୍ଷ୍ମଣ ସର୍ବଶୁଭେ ଆସୁ
ଆମ୍ଭମାନଙ୍କୁ ମଧୁର କହି ମନ ତୋଷୁ ।
ଏହି ବର ଆମ୍ଭଙ୍କୁ ଦିଅ ବଟ ରାଜା
ଏତେବୋଲି ସେନାପତି ବଟ କଲେ ତେଜ୍ୟା
ସେମାନେ ଆସିବାରୁ ମନ୍ତ୍ରୀ ଯେ ସାମନ୍ତ
ବଟଙ୍କୁ ଦର୍ଶନ ସେ କଲେକ ତୁରିତ ।
ବୋଇଲେ ବାଞ୍ଛାବଟ କାର୍ଯ୍ୟସିଦ୍ଧି କର
ରାମ ଲକ୍ଷ୍ମଣଙ୍କୁ ଅଣାଅ ସତ୍ୱର ।
ତାଙ୍କର ଶ୍ରୀମୁଖ ଚାହିଁ ଦିନ ଆମ୍ଭେ ନେଉଁ
ଏନିଚିନ୍ତା ଆମ୍ଭର ହୃଦରୁ ତେଜ୍ୟାହେଉ ।
ଏତେ କହି ସାମନ୍ତ ମନ୍ତ୍ରୀ ଚଳିଗଲେ
କଶ୍ୟପ, କାମଦେବ, ଋଷି ଯେ ଅଇଲେ ।
ଶାମବଟ ତଳେ ଯେ ହେଲେ ପରବେଶ
ନମସ୍କାର କଲେ ଯେ ହୋଇଣ ସନ୍ତୋଷ ।
ପ୍ରଦକ୍ଷିଣ କରି ସେ ବୋଇଲେ ବଟକୁ
ବାଞ୍ଛାସିଦ୍ଧ କର ଆମ୍ଭର ମନକୁ ।
ଶ୍ରୀରାମ ଲକ୍ଷ୍ମଣ ଯାଇ ବେଗେ ଘେନିଆସ
ଅଯୋଧ୍ୟା ନଗ୍ରରେ ହୁଅନ୍ତୁ ନରେଶ ।
ତେବେ ଆମ୍ଭର ହେବ ହେ ଶୁଭ ଯୋଗ ।
ସଂସାରକୁ ସୁଯୋଗ ଦିଶିବ ସୁଲଭ
ତେବେ ଯେ ଆମ୍ଭର ରହିବ ଯଶ ପୁଣ
ଏତେକହି ଫେରିଣ ଋଷି ଗଲେ ପୁଣ ।
ବଶିଷ୍ଠ ଋଷି ବଟମୂଳରେ ପୁଣ ବସି
ପ୍ରଦକ୍ଷିଣ କରି ଯେ ପୂର୍ବମୁଖେ ବସି ।
ଅଜପା ମନ୍ତ୍ରକୁ ଯେ ଜପନ୍ତି ମୁନିବର
ଗତ ଅଷ୍ଟଉତ୍ତର ମଳେ ଜପସାର ।
ଉଠିଣ ନମସ୍କାର ବଟକୁ ପୁଣକଲେ
ବଟଙ୍କ ମୂଳେ ସତ୍ୟ ବଚନ ପ୍ରକାଶିଲେ ।
ବୋଇଲେ ରାମାୟଣ ଯୁଦ୍ଧ ମୁଁ ଦେଖିବି
ଏ ଜନ୍ମଗୋଟି ମୋର ସୁଖି ଯେ ଲଭିବି ।
ବାସୁଦେବ ଦରଶନ ଦେବ ଯେ ମୋତେପୁଣ
ତେବେ ସେ କାଳେ ମୁହିଁ ଲଭିବି କାରଣ ।

ଶାରୀ ପକ୍ଷୀ ବୋଇଲେ ବଟର ଶିଖେ ଥାଇ
ଚଉଦବରଷ ଗଲେ ଦେଖିବ ତୁମ୍ଭେ ଯାଇଁ ।
ରାମାୟଣ ଯୁଦ୍ଧର ଶେଷରେ ହେବ ହେ ସବୁ
ପ୍ରଘଟ ନ କରିବୁ ଗୁପ୍ତରେ ରଖିଥିବୁ ।
ଲକ୍ଷେ ରାଜା ସଙ୍ଗେ ଘେନି ଯିବ ଲଙ୍କାଗଡ଼
ରାମାୟଣ ଯୁଦ୍ଧକୁ ଦେଖିବୁହିଁ ଦୃଢ଼ ।
ଆଗରୁ ଦୁଇ ରାବଣ ଯାଇଥିଲେ ମରି
ଆଉ ଦୁଇ ରାବଣ ଯୁଦ୍ଧ ଦେଖିବୁହିଁ କରି ।
ସେଠାରୁ ଅଯୋଧ୍ୟାକୁ ଆସିବ ସର୍ବେ ପୁଣ
ବତିଶ ବରଷ ରାମ ହୋଇବେ ରାଜା ପୁଣ ।
ରାମ ନାମ ଶୁଣିବୁ ଦରଶନ କରିବୁ
ବଇକୁଣ୍ଠ ପୁରେ ଯାଇ ନିଶ୍ଚିନ୍ତେ ବସିବୁ ।
ଶୁଣିଲେ ବଶିଷ୍ଠ ଯେ ଶାରୀର ବଚନ
ସେଠାରୁ ସନ୍ତୋଷ ଯେ ହୋଇଲେକ ପୁଣ ।
ବଶିଷ୍ଠ ଆସିବାରୁ ଅଯୋଧ୍ୟା ନରନାରୀ
ବଟର ମୂଳେ ଯାଇଁ ସମସ୍ତେ ବିହରି ।
ମାନ୍ୟଧର୍ମ କରିଣ ସର୍ବେ ବୋଲନ୍ତି ରାମ ଆସୁ
ଆମ୍ଭମାନଙ୍କୁ ସୁଖେ ନିଜରାଜ୍ୟେ ରଖୁ ।
ଶ୍ରୀରାମ ରୂପଗୋଟି ଦେଖିବୁ ପ୍ରତିଦିନ
ଏହି ବର ଆମ୍ଭଙ୍କୁ ଦିଅ ବଟ ପୁଣ ।
ଏମନ୍ତ ବର ମାଗି ଅଇଲେ ନରନାରୀ
ବଟର ଦର୍ଶନରେ ଆନନ୍ଦ ସଭିଙ୍କର ।
ସେ ବଟ ସଭିଙ୍କର ହୃଦରେ ପରଶନ
ତେଣୁ ଯେ ହରଷ ହୋଇଲେ ସର୍ବଜନ ।
ଗଙ୍ଗାକୂଳ ପ୍ରୟୋଗ କୂଳରେ ବଟରହିଁ
ଯେ ଯାହା ମନବାଞ୍ଛା ପ୍ରାପତ ହୁଏ ତହିଁ ।
ତେଣୁକରି ବୋଲାଏ ବାଞ୍ଛାବଟ ଜାଣ
ଜାହ୍ନବୀ ମେରୁରୁ ଅଇଲାବେଳେ ପୁଣ ।
ସେ ବଟକୁ ଦର୍ଶନ କଲେକ ତରୁଣୀ
ବାଞ୍ଛାକରି ବରଣ ହେଲେ ସେ ଯେ ନାରୀ ।
ପୂର୍ବେ ଭାଗିରଥୀ ବଟତଳେ ତପ କରି
ତେଣୁ ସେ ବାସୁଦେବଙ୍କୁ ପାଇଲେକ ପୁଣି ।
ମେରୁରୁ ଗଙ୍ଗାକୁ ବୁହାଇତ ଆଣିଲେ
ପିତୃଙ୍କୁ ଉଦ୍ଧାରିଣ ଆପେ ସ୍ୱର୍ଗଗଲେ ।
ସେହିଦିନୁ ଧବଳାଙ୍ଗୀ ଗଙ୍ଗା ବୋଲାଇଣ
ପାର୍ବତୀ ବୋଲନ୍ତି ତୁମ୍ଭେ ଶୁଣ ପଞ୍ଚାନନ ।

ସେ ବାଞ୍ଛାବଟ ହେଲେ କେଉଁଠାରୁ ଜନ୍ମ
ବୃକ୍ଷ ହୋଇଣ ଏଡ଼େ ପ୍ରତିଷ୍ଠା ଅଟେ ପୁଣ ।
ସୁମରିଲେ ଫଳ ଯେ ଦିଅନ୍ତି ତରୁବର
ସୁମରିଲା ଜନେ ଫଳ ପାଆନ୍ତି ତାହାର ।
କେମନ୍ତେ ଜଣାଗଲା କେ କଲା ପ୍ରକାଶ
ସେଥିରେ କଥା ମୋତେ ଲାଗିଲା ସନ୍ଦେଶ ।
ସେହି କଥା ଗୋଟି ମୋତେ କୁହ ପ୍ରାଣେଶ୍ୱର
ଶୁଣିବାକୁ ପ୍ରାଣ ମୋର ହେଉଛି ଅସ୍ଥିର ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଯେତେବେଳେ ନାରାୟଣ ସଞ୍ଚରିଲେ ପୃଥ୍ୱୀ ।
ସପତ ପୁରକରି କଲେ ସେ ରଚନା
ସାତପୁରେ ସାତ ବଟ ଆଦ୍ୟେ କଲେ ସିନା ।
ମଞ୍ଚରେ ବାଞ୍ଛାବଟ ଆଦ୍ୟରେ ରୋପିଲେ
ସ୍ୱର୍ଗରେ ସିଦ୍ଧବଟ ନେଇଣ ଥାପିଲେ ।
ପାତାଳେ ବଂଶୀବଟ କଲେ ସେ ଭିଆଣ
ସୁତଳେ ରଖିଲେ ଦେବନାଶନ ବଟପୁଣ ।
ପାତାଳ ପୁରରେ ଅର୍କଟ ନେଇ ରଖି
କୃତାଳରେ ପଲାସ ବଟ କଲେ ଥାପି ।
ଅନ୍ତରାଳେ ରଖିଲେ ନିକୁମ୍ଭିଲା ବଟ
ସାତପୁରେ ପୁଣେ ଥାପିଲେ ସାତବଟ ।
ତେଣୁକରି ଆଦ୍ୟ ଜନମ ତରୁ ହୋଇ
ସାତ ତରୁ ଉତ୍ତାରୁ ବ୍ରହ୍ମାଣ୍ଡ ଜାତ ହୋଇ ।
ଦେବଙ୍କ ଉତ୍ତାରୁ ନର ଯେ ବାନର
ନର ବାନର ଉତ୍ତାରୁ ସକଳ ଜୀବସାର ।
ଆଦ୍ୟେ ବିଧାତା ଯେ ହେବେ ଜାତହୋଇ
ଦେବତା ଜାତହେବାରୁ ଅସୁର ଦେହବହି ।
ଅସୁର ବେଦବର ଉଦ୍ଧରି ଶେଷ
ବେଦବରଜ ଜାତରୁ ରାତ୍ରି ଯେ ଦିବସ ।
ରାତ୍ର ଦିବସ ହେବାରୁ ଧର୍ମ ଅଧର୍ମ ଜାତ
ଅର୍ଧମ ଧର୍ମରୁ ପୁଣି ଜଗତେ ବିଖ୍ୟାତ ।
ସେଠାରୁ ପରମେଶ୍ୱର ମୋତେ ଯେ କହିଲେ
ସମସ୍ତଙ୍କୁ ନୀତି ପଡ଼ି ଦେବୁ ତୁ ବୋଇଲେ ।
ବ୍ରହ୍ମାଙ୍କୁ ବୋଇଲେ ସୃଷ୍ଟି ଆତଜାତ କର
କହିଣ ନିରଞ୍ଜନ ଶୋଇଲେ ଶଯ୍ୟାର ।
ତେଣୁକରି ମୁହିଁ ସପତ ରୂପ ହେଲି
ସପତ ପୁରେ ପଡ଼ିଦାତା ବୋଲାଇଲି ।

ସେ ବଟଙ୍କୁ ଆପେ ମୁହିଁ କଲି ଯେ ପ୍ରକାଶ
ସେହି ବଟ ମୁଁ ବସି ତପଜିତ ।
ଶତେ ବରଷ ପର୍ଯ୍ୟନ୍ତେ ସେଠାରେ ତପକଲି
ବାଞ୍ଛା କରିବାରୁ ମୁହିଁ ତେବେ ସେ ପାଇଲି ।
ବେଦବର ମୋଠାରୁ ଦେଖିଣ ପୁଣ ଗଲେ
ସେହି ବଟ ମୂଳରେ ଯାଇଣ ତପକଲେ ।
ଗାୟତ୍ରୀ ସାବିତ୍ରୀଙ୍କ ଲଭିଲେ ସେ ପୁଣ
ଦେବେ ବାଞ୍ଛା କରିଣ ହୋଇଲେ ନିର୍ଗୁଣ ।
ସେ ବଟର ବାଞ୍ଛା ଗୋ ଏମନ୍ତ ଭାବେ ଜାଣ
ଶୁଣିକରି ପାର୍ବତୀ ସନ୍ତୋଷ କଲେ ମନ ।
ବୋଇଲେ ଈଶ୍ୱର ହେ ଭରତ କି କଲା
ସେକଥା ମୋର ଆଗେ କହ ଏବେ ପରା ।
ଈଶ୍ୱର ବୋଇଲେ ଯେ ଶୁଣ ଗୋ ଭଗବତୀ
ବଟର ମୂଳେ ସମସ୍ତେ କଲେ ବାଞ୍ଛା ସ୍ତୁତି ।
ଗୁହ ନାମେ ଶବର ସଙ୍ଗେ ଯାଇଥିଲା
ଭରତଙ୍କ ସଙ୍ଗରେ ସେହୁ ଲେଉଟିଲା ।
ସେହି ଶବର ବଟଙ୍କୁ କଲା ଦରଶନ
ପ୍ରତିକ୍ଷଣ କରିଣ କରଯୋଡ଼ି ପୁଣ ।
ବଟର ମୂଳରେ ଯେ ବାଞ୍ଛା ପୁଣ କଲା
ଶ୍ରୀରାମରେ ଭଗତି ହେବି ମନେ ବିଚାରିଲା ।
ମଲେ ସ୍ୱର୍ଗେଯିବି ଜୀଇଲେ ଯଶ ମୋର
ଶ୍ରୀରାମଠାରୁ ଭାବନା ଛାଡ଼ୁ ମନର ।
ଏମନ୍ତ ବିଚାରି ଯେ ଶବର ଚଳିଗଲା
ଭରତ ମେଳରେ ଯାଇ ପ୍ରବେଶ ହୋଇଲା ।
ଯମୁନା ପାରି ହେବାରୁ ଉପାୟ ବାନ୍ଧିଲା
ଏକୂଳ ବୃକ୍ଷ ଦଉଡ଼ି ଆର କୂଳେ ନେଲା ।
ହାଣ୍ଡିର ଭେଳାରେ ସେ ଝପକଲା ପୁଣି
ସେଥିପରେ ସୈନ୍ୟବଳ ପାରି ହେଲେଜାଣି ।
ଯମୁନା ପାରିହୋଇ ଗଲେ ପଥ ବାହି
ପ୍ରୟାଗ ତୀର୍ଥରୁ ସେ ରାମ ପଦଧ୍ୟାୟୀ ।
ଅଗମ୍ୟ ବନରେ ସେ ପଶିଲେକ ଯାଇ
ସମସ୍ତେ ଚଳନ୍ତି ଯେ ମନରେ ଦୁଃଖ ବହି ।
ତିନିଦିନେ ଗଙ୍ଗାକୂଳେ ହେଲେ ପରବେଶ
ପାରିହେବା ପାଇଁ ମନେ କରନ୍ତି ସନ୍ଦେଶ ।
ଗୁହନାମେ ଶବରଙ୍କୁ ଭରତ କହେ ବାଣୀ
କେମନ୍ତେ ପ୍ରକାରେ ଗଙ୍ଗା ପାରିହେବା ପୁଣି ।

ଶବର ବୋଇଲେ ଦେବ କିଛି ନ ବିଚାର
ଭେଳା ନାବ ଦେବି ମୁହିଁ ସର୍ବେ ହେବ ପାର ।
ଏତେ ବୋଲି ଶବର କନ୍ଧକୁ ଭେଦିଦେଲା
କେରୁଆ ନାବ ଆଣ ବୋଲିଣ ବୋଇଲା ।
ରାଜାଠାରୁ ପରଜା ଶୁଣିଣ ବେଗେ ଗଲେ
ସହସ୍ରେକ ନାବ ଯେ ଯାଇଣ ଆଣିଲେ ।
ସେ ନାବରେ ବସିଣ ସମସ୍ତେ ହେଲେ ପାରି
ଗଙ୍ଗାର ଆରକୂଳେ ସମସ୍ତ ଉତରି ।
ଗୁହନାମେ ଶବର ସିଙ୍ଗ ନାମେ ପୁର
ସେଥିରେ ପ୍ରବେଶ ହେଲେ ଯାଇ ଭ୍ରଥବୀର ।
ଗ୍ରାମର ପୂର୍ବଭାଗେ ରହିଲେ ସକଳ
ଶବର ପକ୍ୱଫଳ ଦେଲାକ ଅପାର ।
ପାଚିଲା ପଣସ ଯେ କଦଳୀ ନାରୀକେଳ
ନାନାବର୍ଣ୍ଣ ଫଳ ମୂଳ ଦେଲାକ ଅପାର ।
ଭ୍ରଥର ସୈନ୍ୟ ବଳ ଭୋଜନ ତହିଁ କଲେ
ଶବରକୁ ପ୍ରଶଂସା ଯେ ସୈନ୍ୟବଳ କଲେ ।
ଧନ୍ୟ ଧନ୍ୟ ଶବର ଅଟେ ତୋର ପୁର ।
ଏତେ ବଳକୁ ଭୋଜନ ଦେଲୁ ଯେ ସତ୍ୱର ।
ଅମୃତ ଭୋଜନ ଯେ ଆମକୁ ଆଣି ଦେଲୁ
ଆପଣାର ବଂଧୁ ପ୍ରାଏ ଚରଚ୍ଚ ତୁହି କଲୁ ।
ଭଲା ଭଲା ରାମଚନ୍ଦ୍ର ଦଶରଥ ସୁତ
ଗୁହନାମେ ଶବର ଅଟେ ତୋ ମଇତ୍ର ।
ତୋର ସକାଶେ ଆମ୍ଭେ ହୋଇଲୁ ଯେ ସୁଖି
କେଣେ ଲୁଚଇଲେ ଯେ ଶ୍ୟାମଳ ରୂପଗୋଟି ।
ଏତେ ବୋଲି ନରନାରୀ କରନ୍ତି ପ୍ରଶଂସା
ଭ୍ରଥ, ଶତୃଘ୍ନ ଶୁଣି ହରଷେ ହେଲେ ଚେତା ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଗଉରୀ
ଗୁହନାମେ ଶବର ଭରତ ପାଶେ ମିଳି ।
କରଯୋଡ଼ି ଶବର କହଇ ବଚନ
ମୋଠାରେ ସୁଦୟା କର ଅଯୋଧ୍ୟା ରାଜନ ।
ବନର ଫଳ ମୂଳ ଆଣିକିଛି ଦେଲି
ତୋର ସୈନ୍ୟ ବଳଙ୍କର ମନ ମୁଁ ତୋଷିଲି
ଏବେ ଦୁଇ ଯେ ମାତା ଗଣ ଘେନି
ମୋର ଗ୍ରାମ ମୁଣ୍ଡରେ ମଣ୍ଡପ ଅଛି ପୁଣି ।
ସେଠାରେ ବିଜେକର ମୋଠାରେ ଯେବେଦୟା
ଶ୍ରୀରାମ ସାନୁଜ ମୋତେ ନକର ହେ ମାୟା ।
ରାମ ଲକ୍ଷ୍ମଣ ସୀତା ଗଲାବେଳେ ପୁଣ
ସେଠାରେ ଫଳ ମୂଳ କଲେକ ଭୋଜନ ।
ଶୁଣିକରି ଭ୍ରଥ ମନେ ସନ୍ତୋଷ ହୋଇଲା
ଶତୃଘନକୁ ଘେନି ବେଗେ ଚଳିଗଲା ।
ମଣ୍ଡପର ଭିତରେ ପ୍ରବେଶ ବେନିଭାଇ
ନିର୍ମଳ ଶଉଚ ଯେ ଦେଖିଣ ତୋଷହୋଇ ।
ମନରେ ବିଚାରେ ଭ୍ରଥ ଶ୍ରୀରାମ ଏଥି ଥିଲେ
ଶବର ମନତୋଷି ବନକୁ ବିଜେ କଲେ ।
ଶତୃଘନକୁ ବୋଇଲେ ଚଳିଲେ ତୁରିତ
ମାତା ଗଣକୁ ରାଇଣ ଆଣ ଏଠାବେ ତ ।
ଶୁଣିଣ ଶତ୍ରୁଘନ ବେଗେ ଚଳିଗଲା
ସକଳ ମାତା ଗଣଙ୍କୁ ଘେନିଣ ଅଇଲା ।
ସେ ମଣ୍ଡପରେ ସମସ୍ତେ ହୋଇଲେ ପ୍ରବେଶ
ଅମୃତ ଦ୍ରବ୍ୟ ଆଣିଦେଲା ଶବରର ଈଶ ।
ସମସ୍ତେ ଭୁଞ୍ଜି ସୁସ୍ଥ ହୋଇଲେ ସେଠାରେ
ରଥୀ ସେନାପତି ଯେ ସାମନ୍ତ ପାତ୍ର ତୁଲେ ।
ବଶିଷ୍ଠଙ୍କ ସଙ୍ଗତେ ଯେତେକ ଋଷି ଥିଲେ
କଶ୍ୟପ, ବାମଦେବ ସମସ୍ତେ ଭୁଞ୍ଜିଲେ ।
ସମସ୍ତ ସୁସ୍ଥ ହେବାରୁ ବେନିଭାଇ ଭୁଞ୍ଜି
ସମସ୍ତେ ପ୍ରଶଂସା ଶବରରେ ବୁଝିବୁଝି ।
ବୋଇଲେ ଶବର ଜାତି ଅଟୁରେ ତୁହି ପୁଣ
ଏତେ ସୈନ୍ୟ ବଳଙ୍କୁ ଚରଚ୍ଚ କଲୁ ପୁଣ ।
ଏମନ୍ତ ବିଚାରି ଭ୍ରଥ ଶତୃଘନରେ କହି
ଏ ଶବର ଆମ୍ଭର ଉପକାରି ହୋଇ ।
ଏ ଶବର ମନ ଯେ ତୋଷିବା ଆମ୍ଭେ ଜାଣ
ଏହାକୁ ଏ ବନରେ କରିବା ରାଜା ଜାଣ ।
ଶ୍ରୀରାମଙ୍କ ମଇତ୍ର ଏ ଆମ୍ଭଙ୍କୁ ବଡ଼ଭଲ
ଘେନି ଆସ ଶବରକୁ ବେଗେ ତୁହି ଚଳ ।
ଶୁଣିଣ ଶତୃଘନ ବେଗେ ଚଳିଗଲା
ଗୁହ ନାମେ ଶବରକୁ ଯାଇଣ କହିଲା ।
ବୋଇଲା ପାତ୍ର ମନ୍ତ୍ରୀ ପରଜା ବନ୍ଧୁଜନ
ବେଗେ ଘେନିକରି ଆସ ହେ ରାଜନ ।
ଭରତ ଠାକୁର ଆଜ୍ଞାଦେଲେ ତୋତେ
ତୋର ସଙ୍ଗେ କଥାହେଲେ ଯିବେ ସେ ତୁରିତେ
ଶୁଣିଣ ଶବର ଯେ ବେଗେ ଚଳିଗଲା ।
ପାତ୍ର, ମନ୍ତ୍ରୀ, ପରଜା ସୈନ୍ୟବଳ ନେଲା ।

ଭରଥ ଆଗରେ ଯେ ହୋଇଲେ ପ୍ରବେଶ
ଦେଖିଣ କୈକେୟୀ ଯେ ହେଲେ ବଡ଼ ତୋଷ
ବୋଇଲେ ଏ ରାଜ୍ୟରେ ରାଜନ ତୁ ହେବୁ
ଆମ୍ଭଙ୍କୁ ପଚରା ସଙ୍ଖୋଳା କରୁଥିବୁ ।
ଶ୍ରୀରାମ ଆସିବାଯାଏଁ ଆମ୍ଭେଟି ନିରେଖ
ବୁଦ୍ଧି ବଳ ଆମ୍ଭର ହୋଇଲା ଏବେ ଧିକ ।
ଶୁଣିଣ ସରବ ଯେ ଯୋଡ଼ି ବେନିକର
ମୋରଠାରେ ଏହି ବୁଦ୍ଧି ସୁଦୟା ଦେବୀଙ୍କର ।
ଅଯୋଧ୍ୟାଠାକୁର ତୁଯେ ତୋତେକରିବା ଲଘିତ
ତୁ ଯାହା ବୋଲିବୁ ତାହା କରିବି ନିୟତ ।
ଶୁଣିଣ ଭ୍ରଥବୀର ଶତ୍ରୁଘ୍ନରେ କହି
ଏ ଶବର ମୁଣ୍ଡରେ ପାଟ ବାନ୍ଧ ନେଇ ।
ଶୁଣିଣ ଶତ୍ରୁଘ୍ନ ବେଗେ ଉଠିଗଲା
ଗୁହନାମ ଶବର ଶିରରେ ପାଟଦେଲା ।
ଗଙ୍ଗାଜଳ ମସ୍ତକରେ ଢାଳିଲେ ନେଇକରି
ବୋଇଲେ ଆଜଠାରୁ ହୋଇଲୁ ଦଣ୍ଡଧାରୀ
ପରଜା ସୈନ୍ୟ ବଳଙ୍କୁ ଚାହିଁଣ ବୋଇଲେ
ତୁମ୍ଭେ ରାଜା ଏ ଯେ ଗଜେନ୍ଦ୍ର ପୁତ୍ର ହେଲେ ।
ଏହାର ବୋଲରେ ସକଳେ ତୁମ୍ଭେ ଥିବ
ଏହାକୁ ନ ମାନିଲେ ନିଶ୍ଚୟ ମରିବ ।
ଶୁଣିଣ ସର୍ବଜନେ ହୋଇଲେ ହରଷ
ବୋଇଲେ ତୁମ୍ଭର ବୋଲ ନୁହଇ କାଳେ ନାଶ
ଛତିସାନି ଯୋଗୀ ଯେ ପାତ୍ର ମନ୍ତ୍ରୀ ତୁଲେ
କନ୍ଧ ଶବର ଯେ ଖଟିଲେ ପାଦତଳେ ।
ଶାଢୀ ବାନ୍ଧିଣ ଶବର ଯେ ବେଗେ ଚଳିଗଲା
ଲକ୍ଷେକ ମାଣିକ୍ୟ ଯେ ଦର୍ଶନ କରିଦେଲା
ସହସ୍ରେକ କନ୍ଧ ଯେ ସଜହେଲେ ପୁଣି
ସଜହୋଇ ଭ୍ରତ ସଙ୍ଗେ ବାହାର ଦେଲେ ପୁଣି
ତାହାର ଭାରିଯା ନାମ ଅଟେ କାଦମ୍ବରୀ
ଲକ୍ଷେ ସୁବର୍ଣ୍ଣ ଘେନି ବେଗେ ଯାଇ ମିଳି ।
ଶ୍ରୀରାମ ମାତାମାନଙ୍କୁ କଲା ଦରଶନ
ଓଳଗି ମେଲାଇଣ ପଶିଲା ଶରଣ ।
ବୋଲେ ମୋତେ ଦୟାକର ଅଯୋଧ୍ୟାଠାକୁରାଣୀ
ମୁହିଁ ତୁମ୍ଭ ଚରଣେ ଶରଣଗଲି ପୁଣି ।
ଶୁଣିକରି ରାମ ମାତା ବୋଇଲେ ତାହାରେ
ତୁହି ତ ବଧୂ ଅଟୁ ଧର୍ମରେ ମୋହରେ ।
ଶ୍ରୀରାମଚନ୍ଦ୍ର ମୋର ତୋ ସଙ୍ଗେ ମିତ୍ରହେଲା
ସେହିଦିନୁ ଧର୍ମରେ ମୋର ବନ୍ଧୁ ଅଟୁ ପରା ।
ଶୁଣିଣ ଶବରଣୀ ସନ୍ତୋଷ ମନରେ
ମେଲାଣି ମାଗିଣ ସେ ଗଲା ନିଜପୁରେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ସେଠାରେ ରଜନୀ ଯେ ବଞ୍ଚିଲେ ଭ୍ରଥଟି
ପ୍ରଭାତୁ ଅଯୋଧ୍ୟାକୁ କରନ୍ତି ଗମନ
ସାତଦିନେ ଅଯୋଧ୍ୟାରେ ମିଳିଲେ ଯାଇଣ ।
ନନ୍ଦି ଗ୍ରାମରେ ଯାଇଁ ହେଲେ ପରବେଶ
ସେଠାବକୁ ଅଯୋଧ୍ୟା ଅଟେ ବେନିକୋଶ ।
ଯାତ୍ରା ଦାଣ୍ଡ ମୁଣ୍ଡଠାରେ ନନ୍ଦିଗ୍ରାମ ଜାଣ
ସେହି ଦାଣ୍ଡ ଅଯୋଧ୍ୟାରେ ବଡ଼ଦାଣ୍ଡ ମୁଣ ।
ଭ୍ରଥ ବୀର ବୋଇଲେ ବଶିଷ୍ଠଙ୍କୁ ଚାହିଁ
ଅଯୋଧ୍ୟାକୁ ଯିବାକୁ ମୋହର ମନନାହିଁ ।
ଏଠାରେ ରହି ଭିଆଇବି ନଗ୍ରପୁର
ତୁମ୍ଭେ ଯେ ସମସ୍ତେ ଅଯୋଧ୍ୟାକୁ ଚଳ ।
ଚଉଦ ବରଷଯାଏ ଏଠାରେ ରହିବି
ଶ୍ରୀରାମଙ୍କୁ ଦେଖିଲେ ଅଯୋଧ୍ୟାକୁ ଯିବି ।
ତିନି ମାତା ସଙ୍ଗରେ ସକଳ ମାତାଗଣ
ନିଜ ନବରେ ସତ୍ୱରେ ଚଳ ଯା ବହନ ।
ମୋହର ଜନନୀ ଯେ ଅଟେ ଦୋଷକାରୀ
ମୋହର ସଙ୍ଗେ ଥାଇ ଦିନ ସେହୁ ହରି ।
ରାଜ୍ୟର ଜଞ୍ଜାଳରେ ମୋର କାର୍ଯ୍ୟନାହିଁ
ପାତ୍ର, ମନ୍ତ୍ରୀ, ବଶିଷ୍ଠ ରାଜ୍ୟ ବୁଝଯାଇ ।
ରାମ ନାମ ଜପିଣ ସାରିବି ମୁଁ ଯେ ଦିନ
ଶ୍ରୀରାମ ପାଦୁକାକୁ ନିଏ ମୁଁ ଦରଶନ ।
ଭରତ ବୀର ବୋଲେ ଶୁଣ ଗୋ ମାତାତୁହି
ମୋହର ଜନନୀ ଚିନ୍ତାରେ ଭାରିହୋଇ ।
ଅସତ୍ୟ କଥା ସବୁ ତାଠାରେ ପ୍ରବେଶ
ଝୁରି ଝୁରି ତା ଦେହରେ ନ ରହ ରକ୍ତମାଂସ
ଆମ୍ଭ ମାତା ପୁତ୍ରଙ୍କର ଛାଡ଼ ତୁମ୍ଭେ ଆଶ
ଏତେକହି ଭ୍ରଥବୀର ଛାଡ଼େ ରାଜା ଆଶ ।
ଶୁଣିକରି ନୀଳାବତୀ ବୋଇଲେ ବଚନ
ରାଜା ସିନା ମରିଗଲେ ପୁତ୍ରତ ଗଲେ ବନ
ଏକଥାମାନ ସବୁ ତୋ ମାତା ଅରଜିଲା
ବିପତ୍ତି ବେଳରେ ଏବେ ଛାଡ଼ିଲୁରେ ଚଳା ।

ଆମ୍ଭର ସ୍ୱାମୀ ଯେବେ ନିଧନ ହୋଇଲେ
ପୁତ୍ର ବଧୂ ଯେବେ ଆମ୍ଭଙ୍କୁ ତେଜ୍ୟା କଲେ ।
ଏ ରାଜ୍ୟ ବୁଝିବି ରାମ ଆସିବା ଯାଏ
ଆମ୍ଭରାଜ୍ୟେ ପ୍ରଜା କିମ୍ପା ହୋଇବ ଉଦୟେ ।
ଏତେବୋଲି ଲୀଳାବତୀ କହନ୍ତି ବଚନ
ଶୁଣି କରି ଭ୍ରଥ ଯେ ହେଲେ ତୋଷମନ ।
ବୋଇଲେ ତୁ ଜନନୀ ପାଳ ଯା ଭୁବନ
ଶୁଣିକରି ଲୀଳାବତୀ ବୋଇଲେ ବଚନ ।
ଶ୍ରୀରାମର ଶ୍ୱେତ ଛତ୍ର ମୋ ଆଗେ ଏବେ ଯାଉ
ଶୁଣିକରି ଭ୍ରଥ ପାତ୍ର ମନ୍ତ୍ରୀ ଆଣିଦେଉ ।
ସାମନ୍ତ ବାମଦେବ କଶ୍ୟପ ଆଣେ ପୁଣି
ବଶିଷ୍ଠ ଅଇଲେ ଯେ ସୈନ୍ୟବଳ ଘେନି ।
ମାତାଗଣ ବାହାର ଯେ ହେଲେ ତତକାଳେ
ଚାନ୍ଦୋଳାରେ ଚଢ଼ିଣ ସକଳ ମାତାଗଲେ ।
ଲୀଳାବତୀ ଛତ୍ର ଯେ ଆଗରେ ଟେକିଲେ
ଅଯୋଧ୍ୟା ନଗ୍ରକୁ ଯେ ସମସ୍ତେ ଚଳିଗଲେ ।
ନିଜ ନବରେ ମାତାଏ ହେଲେ ପରବେଶ
ଶତ୍ରୁଘନ ସଙ୍ଗତରେ ଅଛନ୍ତି ବିଶେଷ ।
ଲୀଳାବତୀ ବୋଇଲେ ଶୁଣରେ ସାନୁଜ
ତେଜ ଦେଖାଇ ଆକଟ କରିବୁ ଏ ରାଜ୍ୟ ।
ଗଳା ମାଳା ଦୁହେଁ ଯେ ଅଟଇ ସମାନ
ସେ କଥାକୁ ଭାଳିଲେ ନ ସରେ ପୁଣଦିନ ।
ରାଜ୍ୟକୁ ସମ୍ଭାଳି ରଖିଲେ ସିନା ଭଲ
ଶ୍ରୀରାମ ଆସିଲା ବେଳକୁ ହୋଇବ କୁଶଳ ।
ତୁ ବାବୁରେ ମୋହର ବୋଲ ଏବେକର
ପାତ୍ର, ମନ୍ତ୍ରୀ, ସେନାପତି, ରଥିଙ୍କି ତିଆର ।
ପଦାତି ହସ୍ତୀ ପୁଣ ସାରେଣି ଅଶ୍ୱଜାଣ
ପରଜାର ଲୋକଙ୍କୁ କର ତିଆରଣ ।
ମାଣକେ କାହଣେ କରକୁ ବୃତ୍ତିଦିଅ
ମନ୍ତ୍ରୀଙ୍କ ଘେନି ପରଜାଙ୍କ ମନନିଅ ।
ଗୁହାରି ହାରି ବୁଝିଣ ମୋତେ ତୁ କହିବୁ
ଅସାଧ ହେଲେ କେହି ମୋତେ ତୁ ଜଣାଇବୁ
ଭରଥ ସନ୍ନିଧାନେ ଥିବୁ ପ୍ରତିଦିନ
ତାହାର କଥାରେ ତୁ ଆଜ୍ଞାକାରୀ ଜାଣ ।
ବିଷ୍ଣୁ ପ୍ରତିମା ଶିବ ପ୍ରତିମା ପୂଜାକର
ନିତ୍ୟେ ରାମ ମାତାଙ୍କୁ ଆସିଣ ସଙ୍ଖୋଳ ।
ଗ୍ରାମ ଦେବତୀମାନଙ୍କୁ କରାଅ ସନ୍ତୋଷ
ଦେବୀମାନେ ତୋଷ ହେଲେ ଆମ୍ଭର ହେବ ଯଶ ।
ଶୁଣିଣ ଶତ୍ରୁଘନ ମାତାର ବଚନେ
ନମସ୍କାର କରିଣ ଚଳିଲା ବହନେ ।
କଉସୁଲା ସୁମିତ୍ରାଙ୍କୁ ନମସ୍କାର କଲା
ସକଳ ମାତାଙ୍କର ଚରଣେ ନମିଲା ।
ସୁମନ୍ତ ମନ୍ତ୍ରୀଙ୍କି ଘେନିଣ ବେଗେ ଚଳି
ପ୍ରଥମେ ବିଷ୍ଣୁ ପ୍ରତିମା ପୂଜିଲା ଯାଇକରି ।
ଯାଇଣ ସେବାକରି ଲୋକଙ୍କୁ ଡକାଇଲା
ସେବାରେ ନିଯୁକ୍ତ ହୁଅ ଆଜ୍ଞା କରାଇଲା ।
ବିଷ୍ଣୁ ପ୍ରତିମାକୁ ଯେ କରାଇ ବେଶ ପୁଣ
ପ୍ରସନ୍ନରେ ଦେବତାଙ୍କୁ କଲେ ଦରଶନ ।
ଶିବ ପ୍ରତିମାମାନଙ୍କୁ ଏହିରୂପେ କରି
ପୂଜା ବେଶ କରାଇ ସେବକ ତିଆରି ।
ଗ୍ରାମ ଦେବତୀମାନଙ୍କୁ ସନ୍ତୋଷ କରାଇଲ
ବୋଦା ଛାଗଳ ଦେଇଣ ତାହାଙ୍କୁ ତୋଷିଲ ।
ବିରଞ୍ଚି ନାରାୟଣ ଅଟେ ଇଷ୍ଟ ପୁଣ
ଛତିଶା ନିଯୋଗ ଖଟଣୀ କରାଇଣ ।
ତିନି ଧୂପ ପାଞ୍ଚ ଅବକାଶରେ ଭଜ
ଦିନକୁ ଷାଠିଏ ପଉଟୀ ସଂଯୋଗ ।
ବାଦ୍ୟର ନିଶାଣ ଶଙ୍ଖ ମହୁରୀ କାହାଳୀ
ବୀର ବାଜା ତେଲଙ୍ଗି ମହୁରୀ ସ୍ୱରକରି ।
ବାମଦେବ ଋଷିଙ୍କି ଡକାଇ ବହନ
ସେ ଦେଉଳେ ପରିଜା ପଣ ଦେଲ ପୁଣ ।
ସେଠାରୁ ଯାଇଣ ପାଦାନ୍ତି ବଳକଲେ ତାଜା
ସାଧକ ସାଧନ ଯେ ସବୁଠାରେ ସୁଧା ।
ଦେଶେ ଘୋଷେ ନବରେ ଆଖଡା ଘରକରି
ସେନାପତି ରଥମାନେ ତହିଁରେ ସାଧେ ଫେରି ।
ସାରେଣ ସ୍ୱାନ ଅଶ୍ୱ ହସ୍ତୀପରକାର
ଏମାନଙ୍କ ଚରଣକୁ ବୁଝିଲେ ସତ୍ୱର ।
ବରତନି ଲୋକଙ୍କୁ ବରତନ ଦେଲା
ଘାସ ପାଣି ଦାନା ଉତ୍ତମ ଖଞ୍ଜାଗଲା ।
ସମସ୍ତଙ୍କୁ ଆକଟରେ ରଖିଲା ଶତ୍ରୁଘନ
ଦୁଃଖୀ ଦରିଦ୍ରଙ୍କୁ ଦେଲେ ଅନ୍ନ ବସ୍ତ୍ର ଦାନ ।
ମନ୍ତ୍ରୀଙ୍କି ଘେନିଣ ବେଗେ ଚଳିଗଲା
ଭରତର ଛାମୁରେ ଯାଇଣ ମିଳିଲା ।

ପାତ୍ର ମନ୍ତ୍ରୀ ବଶିଷ୍ଠ ଋଷିଙ୍କି ସଙ୍ଗେ ଘେନି
ଭରତଙ୍କ ଚରଣେ ନମିଲା ଯାଇ ପୁଣି ।
ଦେଖିଣ ଭରତ ଯେ ପରମ ତୋଷ ହେଲା
ଜନନୀମାନେ ରହିବା ସୁଖହିଁ ଦେଖିଲା ।
ଦେବତା ଦେବୀଙ୍କି କଲୁ ଉଜ୍ଜଳ ସକଳ
ସେବାକାରୀ ଜନଙ୍କୁ ରଖ କି ପ୍ରକାର ।
ହାତୀ ରଥି ଅଶ୍ୱ ଯେ ସାରେଣି ସେନା ସୈନ୍ୟ
ସରଦା ସେନାପତି ଜଗିଲେ ସର୍ବସ୍ଥାନ ।
ଶତ୍ରୁଘନ ବୋଇଲେ ଯେ ସମସ୍ତ କୁଶଳ
ଜନନୀ ପରଜାଙ୍କୁ ପାଳଇ ରାଜ୍ୟର ।
ତୁମ୍ଭେ ଏବେ ସ୍ୱାମୀ ଚିନ୍ତା ଯେ ନ କର
ଭଲ ପଣେ ଥିଲେ ସିନା ରାଜ୍ୟରେ ହେବ ସାର
ଭରତ ବୋଇଲା ଶୁଣ ହେ ସାନୁଜ
ଶ୍ରୀରାମ ଠାକୁର ଯେ ଦେବାଧି ଦେବରାଜ ।
ମୁହିଁ ସିନା ଘାର ଧାଙ୍ ସେ ମୋ ଠାକର
ଜନନୀ ଅବିଗୁଣେ ଗଲେ ବନଘୋର ।
ମୋତେ ନିନ୍ଦାହେଲା ଜନନୀ ହେଲେ ଦୋଷୀ
ସେ କଥାରେ ଚିନ୍ତା ମୋର ରହେ ଅହର୍ନିଶି ।
ରାମଚନ୍ଦ୍ର ଯେତେବେଳେ ରାଜ୍ୟେ ରାଜା ହେବେ
ମୋହଠାରୁ ବିପତ୍ତି ତେବେସିନା ଯିବେ ।
ସୁମନ୍ତକୁ ବୋଇଲେ ଅଣାଅ ବିଶ୍ୱକର୍ମା
ଦେଉଳ ଅଟାଳୀ ତୋଳନ୍ତୁ ଏଥିକିନା ।
ନାନା ବର୍ଣ୍ଣରେ ଘର ନବର ଭିଆଇବେ ।
ଶ୍ରୀରାମ ପାଦୁକାକୁ ରଖିବି ସଦଭାବେ ।
ରାଜ୍ୟରେ ଧେଣ୍ଡୁରା ଯେ ଫେରାଅ ବହନ
ପାଦୁକା ରାଜାଙ୍କୁ ଏବେ ଭଜନ୍ତୁ ସର୍ବଜନ ।
ଶୁଣିଣ ଶତ୍ରୁଘନ ମନ୍ତ୍ରୀ ଚଳିଗଲେ
ରାଜ୍ୟରେ ଧେଣ୍ଡୁରା ଯାଇଣ ଦିଆଇଲେ ।
ବୋଇଲେ ଏ ରାଜ୍ୟ ଶ୍ରୀରାମ କଠାଉ
ଭଜ ତୁମ୍ଭେ ସମସ୍ତେ ରାଜା ହୋନ୍ତୁ ସେହୁ ।
ରାଜ୍ୟର ଭଲମନ୍ଦ ବୁଝନ୍ତୁ ନୀଳାବତୀ ।
ଶତ୍ରୁଘନ ବୁଝନ୍ତୁ ସୈନ୍ୟଙ୍କର ରୀତି ।
ତପ କରିବାରେ ଭ୍ରଥ ରହେ ପୁଣ
ଏହିକଥା କହି ରାଜ୍ୟେ ଦେଲେ ସେ ଘୋଷଣ
ଘୋଷଣାକାରୀ ଘୋଷଣା ଦେଇଣ ଅଇଲେ
ବିଦ୍ଧାଣି ଘେନି ନନ୍ଦି ଗ୍ରାମରେ ମିଳିଲେ ।

ଦେଉଳ ଅଟାଳୀ ଯେ ତୋଳିଲେ ବହନ
ନାନାରଙ୍ଗେ ନବର କଲେ ସେ ଯତନ ।
ଭରତ ପାଇଁ ସେଥିରେ ନବର ଭିଆଇଲେ
ନବରକୁ ପବିତ୍ର କରି ଜଣାଇଲେ ।
ଶ୍ରୀରାମ କଠାଉକୁ ନେଲେ ଚଉଦୋଳେ
ବିଜେ କରାଇଲେ ଯେ ଦେଉଳ ଭିତରେ ।
ସିଂହାସନ ଉପରେ ରଖାଇ ଯତ୍ନକରି
ଫୁଲ ପାଣି ପୂଜା ଯତନେ ତାକୁ ଭରି ।
ଦେଇଣ ଭ୍ରଥବୀର ସନ୍ତୋଷ ହୋଇଲେ
ଜନନୀଙ୍କି ଘେନି ନିଜ ନବରେ ରହିଲେ ।
ମନ୍ତ୍ରୀଙ୍କି ବୋଇଲେ ଭ୍ରଥ ଶୁଣ ମୋ ବଚନ
ଛଡ଼ରସେ ଭୋଜନ କରାଇ ଦିଜେ ପୁଣ ।
କାନଶିରି ଶାଗ ଯେ ବଗଡ଼ା ଅନ୍ନ ମୋର
ପ୍ରତିଦିନ ମୋତେ ଦେବ ସୂପକାର ।
ଶୁଣିକରି ସୂପକାର ସେହିରୂପେ ଦେଲା
ଶାକ ଅନ୍ନ ଭୁଞ୍ଜି ଭ୍ରଥ ସନ୍ତୋଷ ହୋଇଲା ।
ସନ୍ନ୍ୟାସ ବେଶଧରି ଭ୍ରଥ ତପ କରି
ରାଜ୍ୟଭାର ତେଜ୍ୟା କରି ଶ୍ରୀରାମ ନାମଧରି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଶତ୍ରୁଘନକୁ ଡକାଏ ଭ୍ରଥ ନାମେ ଯତୀ ।
ରାଜ୍ୟର ଭଲମନ୍ଦ ତାଠାରେ ସମର୍ପିଲା
ଅଯୋଧ୍ୟା ରାଜ୍ୟକୁ ପାଳ ବୋଲିଣ ବୋଇଲା ।
ବଶିଷ୍ଠ ଋଷି ସମସ୍ତ କରିବେ ଭିଆଣ
ସୁମନ୍ତ ମନ୍ତ୍ରୀ ତହିଁରେ ରାଜ୍ୟରେ କାରଣ ।
ବାମଦେବ ଯାବାଳୀ କଶ୍ୟପ ସେଠି ଥିଲେ
ଶତ୍ରୁଘନ ଘେନି ସେ ପରଜା ପାଳିଲେ
ମାତାଗଣମାନଙ୍କୁ ସଙ୍ଗରେ ରଖିପୁଣ
ଭଲମନ୍ଦ ନୀଳାବତୀ ମାତା ବୁଝେ ଜାଣ ।
ଦ୍ୱିତୀୟ ଅଯୋଧ୍ୟା ପ୍ରାଏ ନନ୍ଦିଗ୍ରାମ ହେଲେ
ହଟାରି ବଜାରି ସୈନ୍ୟବଳ ଯେ ରହିଲେ ।
ଲାଗିଲା ଚହଳ ଯେ ନନ୍ଦି ନାମେ ଗ୍ରାମ
ତେଣେ ଅଯୋଧ୍ୟା ଗହଳ ଲାଗିଲା ଉତ୍ତମ ।
ଏହିରୂପେ ଭରତ ରହିଲେକ ଭଲେ
ସକଳ ସୈନ୍ୟବଳ ପରଜା ପାଳିଲେ ।
ବାଟୁଳୀ ଧନୁଧରି ଭ୍ରତ ଅନ୍ଧାରି ବିଜେକଲେ
ଆପଣା ରାଜ୍ୟେ ବୁଲଇ ରଜନୀର କାଳେ ।

ଦିବସରେ ତପକରି ଶାକ ଅନ୍ନ ଭକ୍ଷି
ରାମ ନାମ ସୁମରଣା କରୁଥାଇ ନିତି ।
ଏମନ୍ତେ ଅଯୋଧ୍ୟା ବିଚରି ପ୍ରତିପାଳି
କାହାରି ସଙ୍ଗରେ ନୁହଇ ଖଣ୍ଡିଆଳୀ ।
ଏଥୁ ଅନନ୍ତରେ ପାର୍ବତୀ କହେ ବାଣୀ
ଶୁଣ ହେ ସଦାଶିବ ତ୍ରୈଲୋକ୍ୟ ଅନ୍ତର୍ଯ୍ୟାମୀ
ଗୁହ ନାମେ ଶବର ଯେହୁ ଅଟେ ପୁଣ
ଶ୍ରୀରାମଠାରେ ଭକ୍ତି କିମ୍ପା ହେଲା ଜାଣ ।
ବୈକୁଣ୍ଠର ବାସୁଦେବ ଶ୍ରୀରାମ ନାମେ ଜାତ
ପୂର୍ବରେ ଯେଉଁତପ କଲାକ ଶବର ତ ।
ଈଶ୍ୱର ବୋଇଲେ ଯେ ଶୁଣ ଭଗବତୀ
ପୂର୍ବରେ ଶବର ଯେ ଅଟେ ବଡ଼ ଜାତି ।
ବ୍ରାହ୍ମଣ କୁଳେ ଜାତ ନାମ ବିଦ୍ୟାଧର
ଅନ୍ତ ନବରରେ ଅଟେ ତାର ଘର ।
ଚରିବେଦ ନବ ବ୍ୟାକରଣ ଜାଣି
ବୟାଳିଶ ବେଦ ମନ୍ତ୍ର ଯେ ବଖାଣି ।
ତାରଠାରେ ଅନେକ ଶିଷ୍ୟ ଯାଇ ମିଳେ
ବିଦ୍ୟାଗୁରୁ ଅଟନ୍ତି ସେ ଶିଷ୍ୟଙ୍କ ଉପରେ ।
ଅନେକ ବିଦ୍ୟା ଶିଷ୍ୟଙ୍କୁ ଶିଖାଏ ବ୍ରାହ୍ମଣ
ପୂର୍ଣ୍ଣକରି ବିଦ୍ୟା କାହାକୁ ନ ଦିଏ ପୁଣ ।
ବିଦ୍ୟାଚୋରି କରିବାରୁ ତାଠାରେ ହେଲା ଦୋଷ
କେବଳ ହରେ ମନ୍ତରେ କରଇ ବିଶ୍ୱାସ ।
ସେହି ଦୋଷୁ ଶବର ଘରେ ଜାତ ହେଲା
ଜୀବ ମାରି ପେଟ ପୋଷେ ଶବରର ବଳା ।
ମାତା ପିତା ତାର ଯେ ହୋଇଲେ ନିଧନ
ସିଙ୍ଗକା ନବରେ ତାର ଘର ଅଟେ ପୁଣ ।
କନ୍ଧ ଶବରଙ୍କ ପରେ ଅଟେ ସେ ଗୁରୁଟି
କାଳେ ପ୍ରାପତ ତାକୁ ହୋଇଲାକ ସୃଷ୍ଟି ।
କନ୍ଧ ଶବର ବିଚରି ତାକୁ ରାଜକଲେ
ବିଶାଶତ ଯୋଜନେ ପୃଥ୍ୱୀରେ ରାଜାଭଲେ ।
ପୂର୍ବରୁ ହରିନାମ ଯେହୁ ସେ ଭଜିଥିଲା
ହରିଜନ ହୋଇଣ ସେ ସୁଖହ ଲଭିଲା ।
ଏବେ ସେ ଶ୍ରୀରାମର ସଙ୍ଗେ ହେଲା ଭେଟ
ପୂର୍ବରୁ ବିଶ୍ୱାସରେ ହୋଇଲା ମଇତ୍ର ।
ତେଣୁକରି ଶ୍ରୀହରି ତାଙ୍କୁ ସୁଖଦେଲେ
ପୂର୍ବରେ ଭକତ ଅଟେ ସେ ଶ୍ରୀରାମରେ ।

ଶୁଣିଲେ ପାର୍ବତୀ ଈଶ୍ୱର ବଚନ
ବୋଇଲେ ଏ ଉତ୍ତାରୁ କିସ କଲେ ପୁଣ ।
ଶ୍ରୀରାମ ଲକ୍ଷ୍ମଣ ଜାନକୀ ଚିତ୍ରକୂଟେ ଥିଲେ
ସେ କଥା ମୋର ଆଗେ କହ ତୁମ୍ଭେ ଭଲେ ।
ପାର୍ବତୀ ବୋଇଲେ ମୁଁ ଶୁଣିଲି ସର୍ବକଥା
ତିନିପକ୍ଷ ହେଲା ରାମର ବ୍ୟବସ୍ଥା ।
ଜାନକୀ ଅଟନ୍ତି ପୁଣି ସ୍ତିରୀ ଯେ ଅବଳା
ଗ୍ରାମକୁ ନ ଯାଇ ସେ ବନରେ କରେ ଲୀଳା ।
ପକ୍ଷକେ ରଜସ୍ୱଳା ହୁଏ ସେହୁ ନାରୀ
ନମହତା ରଜକାରୀ ସଙ୍ଗରେ ନାହିଁ ତାରି ।
କେମନ୍ତେ ଅଙ୍ଗତାର ଶୁଦ୍ଧହୁଏ ପୁଣ
ସେ କଥା ମୋର ଆଗେ କହ ତ୍ରିଲୋଚନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ପ୍ରଥମ ଦିନ ଶ୍ରୀରାମ ଅଙ୍ଗରେ ସୈନ୍ୟଯାନ୍ତି ।
ଦ୍ୱିତୀୟ ଦିନ ସୈନ୍ୟ ସକଳେ ଯେ ଫେରି
ସିଙ୍ଗବେଣୀ ପୁରେ ରାମ ପାଞ୍ଚଦିନେ ମିଳି ।
ବାରଦିନେ ଭରଦ୍ୱାଜ ଋଷି ମଠେ ହେଲେ
ଚଉଦ ଦିନେ ଶାମଳ ବଟକୁ ଦେଖିଲେ ।
ଚିତ୍ରକୂଟରେ ସତର ଦିନରେ ପ୍ରବେଶ
ପ୍ରଥମରୁ ସେହିଦିନ ପାରିଧି ପ୍ରକାଶ ।
ଲକ୍ଷ୍ମଣ ପାରିଧିକି ସେହିଦିନ ପୁଣ ଗଲା
କସ୍ତୁରୀ ଜୀବ ଗୋଟି ସେ ପୁଣ ମାଇଲା ।
ଭାରକରି ସଉମିତ୍ରୀ ଆଣିଲେକ ପୁଣ
ଜାନକୀ ଦେଖିଣ ହରଷ କଲେ ମନ ।
ବୋଲନ୍ତି ସଉମିତ୍ରୀ ଏ ଜୀବମାନଙ୍କ ନାମକିସ
ଲକ୍ଷ୍ମଣ ବୋଲନ୍ତି ଏ କସ୍ତୁରୀ ଜୀବ ତ ।
କଟାରୀ ଧରି ଲକ୍ଷ୍ମଣ ତାହାକୁ କେଳାଇ
ଏ ମାଂସକୁ ସୁବର୍ଣ୍ଣର ପଲମେ ରଖାଇ ।
ଅସ୍ଥି ଛାଲ ସବୁ ଯେ ବନସ୍ତେ ନିବେଶିଲା
ଖଣନ୍ତି ଘେନି ଲକ୍ଷ୍ମଣ ଚୂଲା ଗୋଟି କଲା ।
ହାତୀ ଭଙ୍ଗା କାଷ୍ଠ ଯେ ଆଣିଲା ଯାଇକରି
ଦେଖିଣ ଜାନକୀ ଯେ ବେଗେ ସ୍ନାନକରି ।
ସ୍ନାନ କରି ସତୀ ଯେ ପିନ୍ଧିଲେ ଅମଳାଣ
ଲକ୍ଷ୍ମଣ ବୋଇଲେ ମୋର କଥା ଶୁଣ ।
କୁଠାର ଘେନିକରି ଯାଅ ତୁମ୍ଭେ ବେଗ
ବଡ଼ବେଣୁ ବୃକ୍ଷ ତୁମ୍ଭେ ଅଣାଅ ନଗଦ ।

ଶୁଣିକରି ଲକ୍ଷ୍ମଣ ଯେ ବେଗେ ଚଳିଗଲେ
ବେଣୁ ବୃକ୍ଷ ଗୋଟିଏ କାଟିଣ ଆଣିଲେ ।
ଜାନକୀ ବୋଇଲେ ଯେ ରନ୍ଧ୍ର ଦେଖି ତାର
ତିନିଗୋଟି ନଳ ଯେ ସଜାଡ଼ ବେଗର ।
ଶୁଣିକରି ଲକ୍ଷ୍ମଣ ନଳ ସଜାଡ଼ିଲେ
ଦେଖିକରି ଜାନକୀ ମାଂଏସ ସାଇତିଲେ ।
ଝକମକ ପଥରରୁ କାଢ଼ିଲେ ଅଗ୍ନି ପୁଣ
କାଠ ଲଗାଇଣ ଥାପିଲେ ହୁତାସନ ।
ଝରଜାଳ ଦେଇ ଯେ ପଲମ ବସାଇଲେ
ଚିକଣ ଜାଳି ବାଟି ଭିତରେ ରଖିଲେ ।
ମାଂସକୁ ସୁପକ୍ୱରେ ବ୍ୟଞ୍ଜନ କଲେ ପୁଣ
ବନର କନ୍ଦମୂଳ କଲେ ସେ ରନ୍ଧନ ।
କସ୍ତୁରୀ ଚିକଣକୁ ବାଏଁଣ ନଳେ ରଖି
ତିନିଗୋଟି ଖଲି ଯେ ଲକ୍ଷ୍ମଣ ସିଏଁ ବସି ।
ବେନି ଗୋଟି ଖଲିରେ ବସିଲେ ବେନିଭାଇ
ମନର ସନ୍ତୋଷରେ ଭୋଜନ କଲେ ତହିଁ ।
ଭୋଜନ ସାରିଣ ଯେ ଆଞ୍ଚୋମନ କଲେ
ମୃଗ ଛାଲ ଉପରେ ଯାଇଣ ବସିଲେ ।
ଦୁଇଭାଇ ଉଠିବାରୁ ଜାନକୀ ଉଠେ ପୁଣ
ଭୁଞ୍ଜିଣ ସନ୍ତୋଷ ଯେ ଜାନକୀ କେମା ଜାଣ ।
ଆଞ୍ଚୋମନ ସାରିଣ ଯେ ଭୋଜନ ସ୍ଥାନେ ଯାଇ
ପବିତ୍ର କଲେ ଦେବୀ ନିର ସିଞ୍ଚି ତହିଁ ।
ସେହି କଷାଫଳ ଭୁଞ୍ଜିଣ ତୋଷ ହେଲେ
ଏଥୁ ଅନନ୍ତରେ ଶୁଣ ଦେବୀ ଭଲେ ।
ଦିନ ଶେଷ ହେବାରୁ ଜାନକୀ ସୁବେଶ
ଶ୍ରୀରାମ ବସିଣ ଯେ ଶାମଳିଲେ କେଶ ।
ଜୁଡ଼ା ବାନ୍ଧି ଝୁମ୍ପା ଯେ ଚଉଁରୀ ଭଣ୍ଡି ନେଲେ
ଫୁଲମାଳ ଗୁନ୍ଥିଣ ଜୁଡ଼ାରେ ବେଢ଼ାଇଲେ ।
ଲକ୍ଷ୍ମଣକୁ ବୋଇଲେ ଚଳ ହେ ସଉମିତ୍ରୀ
ଲତାର ଉହାଡ଼ରୁ କୁଙ୍କୁମ ଆଣ ତୁଟି ।
ଶୁଣିକରି ଲକ୍ଷ୍ମଣ ବେଗେ ଚଳିଗଲେ
ଖଣନ୍ତି ଧରିଣ କୁଙ୍କୁମ ଖୋଳିଣ ଆଣିଲେ ।
ଜାନକୀର ଛାମୁରେ ଦେଲେ ନେଇ କରି
ଦେଖିଣ ଜାନକୀ ଶୀଳାରେ ନେଇ ଘୋରି ।
କୁଙ୍କୁମ ସଙ୍ଗତରେ କସ୍ତୁରୀ ଚିକ୍‌କଣ
ମିଶ୍ରିତ କରି ଜାନକୀ ଅଙ୍ଗରେବୋଳେ ପୁଣ ।
ଦେଖିଣ ଶ୍ରୀରାମ ଯେ ବନକୁ ଚଳିଗଲେ
ଅଗର ଚନ୍ଦନ ଯେ ବନରୁ ଆଣିଲେ ।
ଘୋରିଣ ଗଦାଧାରୀ ବୋଳିଲେ ସୀତା ଅଙ୍ଗେ
ଦେଖିଣ ଜାନକୀ ଆନନ୍ଦ ପ୍ରୀତି ରଙ୍ଗେ ।
ନୟନରେ ଅଞ୍ଜନ ମସ୍ତକେ ସିନ୍ଦୂର
ଲଗାଇଣ ସତୀ ଯେ ହୋଇଲା ନିର୍ମଳ ।
ବେଶ ହୋଇ ସତୀ ଯେ ଲତା ଉହାଡ଼ରେ
ଯାଇଣ ବସିଲେ ମୃଗ ଛାଲର ଉପରେ ।
ଦିନ ଶେଷ ହୁଅନ୍ତେ ଯେ ହୋଇଲା ରଜନୀ
ସଜଳସ ଗୁଣ୍ଡିରେ ଆଲୋକ କର ପୁଣି ।
କନ୍ଦମୂଳ ମାଂସ ଯେ କଲେକ ଭୋଜନ
ଆଞ୍ଚୋମନ ସାରି ମନରେ ତୋଷ ପୁଣ ।
କଷାଫଳ ଭୁଞ୍ଜିଣ ସନ୍ତୋଷ ହୋଇଲେ
କୋମଳ ପତ୍ର ଲକ୍ଷ୍ମଣ ଆଣିଣ ଶଯ୍ୟାକଲେ ।
ପତ୍ରର ଶଯ୍ୟାପରେ ଶ୍ରୀରାମ ସୀତା ପୁଣ
ଶୟନ କଲେ ତହିଁ ନିର୍ଭେ ବେନିଜନ ।
ଧନୁଶର ଧରିଣ ଲକ୍ଷ୍ମଣ ଜଗିରହି
ଜାନକୀ ଶ୍ରୀରାମର ବିନୋଦେ ଲୀଳା ତହିଁ ।
ନାନା ରଙ୍ଗେ ରମଣ ସୁରତି ଲୀଳା କଲେ
ହରଷ ଭାବେ ତହିଁ ରଜନୀ ପୁହାଇଲେ ।
ବେନିଘଡ଼ି ରଜନୀ ଥାଇଣ ଜାନକୀ
ଶ୍ରୀରାମର ପାଶରୁ ଉଠିଗଲେ ବେଗି ।
ଏହି ସମୟରେ ଯେ ରଜନୀ ପାହିଲା
ପୂର୍ବେ ଦିନକର ନାଥ ଉଦୟ ହୋଇଲା ।
ସେ ଦିନ ଶ୍ରୀରାମ ଯେ ପାରିଧିକି ଗଲେ
ଜାନକୀଙ୍କି ଲକ୍ଷ୍ମଣ ଜଗିଣ ରହିଲେ ।
ଏଥୁ ଅନନ୍ତରେ ଗୋ ପାର୍ବତୀ ଦେବୀ ଶୁଣ
ସେ ଦିନ ରଜସ୍ୱଳା ଜାନକୀ ହେଲେ ପୁଣ ।
ଶ୍ରୀରାମଚନ୍ଦ୍ର ଯେ ବନକୁ ଯାଇଥିଲେ
ମୃଗ ଗୋଟିଏ ମାରି ଲେଉଟି ଅଇଲେ ।
ଲକ୍ଷ୍ମଣ ପାଶରେ ନେଇ ଦେଲେ ପୁଣ
ଦେଖିଣ ଲକ୍ଷ୍ମଣ କଟାରୀ ଧରେ ଜାଣ ।
ମୃଗକୁ ଛାଲିଣ ଯେ ମାଂଏସ କେଲାଇ
ଅସ୍ଥି ଚର୍ମ ବନରେ ନିବେଶିଲେ ନେଇ ।
ଦେଖିଣ ଜାନକୀ ଯେ ଶ୍ରୀରାମ ଆଗେ କହି
ଅଶଉଚ ହୋଇଲା ଆଜ ମୋର ଦେହୀ ।

ଶୁଣିକରି ଶ୍ରୀରାମ ଲକ୍ଷ୍ମଣଙ୍କୁ କହି
ଆଜ ପାକ ଭାଇରେ କର ତୁହି ଯାଇଁ ।
ଜାନକୀ ଅସଉଚ ଛୁଇଁବ ନାହିଁ ପୁଣି
ଶୁଣିକରି ଲକ୍ଷ୍ମଣ ହରଷ ହେଲେ ଜାଣି ।
ହାତୀ ଭଙ୍ଗା କାଠରୁ ଗୁଡ଼ିଏକ ଆଣି
ପଲାଶ ପତ୍ର ଗୁଡ଼ିଏ ତୋଳି ତହୁଁ ଆଣି ।
ତିନିଗୋଟି ଖଲି ଯେ ତିନିଗୋଟି ଦନା
ଭିଆଣ କରି ଲକ୍ଷ୍ମଣ ଚଳିଲେ ବେଗେସିନା ।
ନଳରେ ଜଳ ଦେଖି ବାହାରୁ ଭୂମି ଗଲା
ସେହିଜଳେ ଆସିଣ ଯେ ସଉଚ ହୋଇଲା ।
ହସ୍ତ ପବିତ୍ର କରି ପାଦ ଧୌତ କଲା
ମନ୍ଦାଗ୍ନୀ ନଦୀ କୂଳରେ ଯାଇଣ ମିଳିଲା ।
ସ୍ନାହାନ କରିଣ ଶଉଚ ପୁଣି ହେଲା
ସନ୍ଧ୍ୟା ତର୍ପଣ ଯେ ସେଠାରେ ସାରିଲା ।
ନିତ୍ୟ କର୍ମ ସାରି ପର୍ଣ୍ଣକୁଟୀରେ ମିଳେ ଆସି
ଅମଳାଣ ପିନ୍ଧିଣ ହୋଇଲା ବଡ଼ ତୋଷି ।
ପାନ କରିବାକୁ ସେହି ସଧିରେ ଚଳନ୍ତି
ଭାଇ କହିଥିବା କଥା ମନେ ବିଚାରନ୍ତି ।
ଅନଳ ବାହାର କରି ଜାଳନ୍ତେ ପ୍ରଖର
ସୁବର୍ଣ୍ଣ ପଲମେ ପକ୍ୱ ମାଂସ ସେ ସତ୍ୱର ।
ପୁଣି କନ୍ଦମୂଳ ସେ ଯେ କଲେକ ରନ୍ଧନ
ସୁବର୍ଣ୍ଣ ଝରିରେ ଆଣିଲେ ନୀର ପୁଣ ।
ତିନିଠାବ କରିଣ ବାଢ଼େ ସଉମିତ୍ରୀ
ତିନିଠାବେ ତିନିଜଣ ଭୋଜନ କରନ୍ତି ।
ଭୋଜନ ସାରିଣ ସେ ଆଞ୍ଚୋମନ କଲେ
କଷାଫଳ ଭୁଞ୍ଜିଣ ସେ ସନ୍ତୋଷ ହୋଇଲେ ।
ଏହିରୂପେ ଚାରିଦିନ ଗଲା ସେଥି ବହି
ଲକ୍ଷ୍ମଣ ଆଗେ ରାମ ଡାକିଲେ ପୁଣ ତହିଁ ।
ଶ୍ରୀରାମଚନ୍ଦ୍ର ବୋଇଲେ ଶୁଣ ସଉମିତ୍ରୀ
ଜାନକୀ ଜଞ୍ଜାଳତ ଆମ୍ଭର ହେଲା ଏଥି ।
ବନସ୍ତ ଭିତର ଏ ନୁହେଁ ଗ୍ରାମ ଦେଶ
ରଜକାରୀ ନମହତା ନାହାନ୍ତି ଆମ୍ଭ ପାଶ ।
ଦେଶ ଘୋଷ ନଯିବା ପିତାଙ୍କ ସତ୍ୟପୁଣ
କେମନ୍ତେ ଜାନକୀ ଦେହ ହୋଇବ ଶୁଦ୍ଧ ଜାଣ
ଲକ୍ଷ୍ମଣ ବୋଇଲେ ଦେବ ଚିନ୍ତା ତ ନକର
ଜାନକୀ ଅଯୋନୀ ଅଟେ ସଂସାରରେ ସାର ।
ଏକଥା ତାହାର ମୁଁ ଶୁଣିଛି ଅନ୍ତପୁରେ
ସାନବଧୂ ତୁମ୍ଭର କହିଛି ମୋ ଆଗରେ ।
ବଡ଼ବଧୂ ଜାନକୀ ଅଟନ୍ତି ତୁମ୍ଭର
ପନ୍ଦର ଦିନେ ପାଳି ଅଗ୍ନି ସ୍ନାନ ତାହାଙ୍କର ।
ରଜକାରୀ ତାଙ୍କର ବସନ ନ ଛୁଅଁଇ
ନମହତାର ଘରଣୀ ତାହାଙ୍କୁ ନ ଖଟଇ ।
ଆପେ ସେ ଯେ ଶଉଚ ହୁଅଇ ଅଗ୍ନିରେ
ଏହି କଥା ଶୁଣିଛି ମୁହିଁ ଅନ୍ତପୁରେ ।
ଏଠାରେ ସେ କଥାକୁ ପ୍ରତ୍ୟକ୍ଷେ ଦେଖିବା
କେମନ୍ତେ ଅଗ୍ନିରେ ସ୍ନାନ କରନ୍ତି ଜନକର ଜେମା
ଏ ସମସ୍ତ କଥା କହି ବୀର ଯେ ଲକ୍ଷ୍ମଣ
ଶ୍ରୀରାମଙ୍କୁ ଚାହିଁଥାନ୍ତି ହୋଇ ଯେ ମଉନ ।
ଶୁଣିକରି ଶ୍ରୀରାମ ପରମ ତୋଷ ହେଲେ
ସତେକି ଏକଥା କରିବ ସୀତା ଭଲେ ।
ଏମନ୍ତ ବିଚାରି ରାମ କୋଦଣ୍ଡ ଧରି ଚଳି
କସ୍ତୁରୀ ଜୀବ ଗୋଟି ଆଣିଲେକ ମାରି ।
ଦେଖିକରି ସଉମିତ୍ରୀ ବେଗେ କୋଳାଇଲେ
ମାଂସରଖି ସ୍ଥିରଚର୍ମକୁ ଭିନ୍ନଭିନ୍ନ କଲେ ।
ସୁବର୍ଣ୍ଣ ପଲମରେ ରଖିଲା ମାଏଂସତ
ଅସ୍ଥି ଚର୍ମ ବନରେ ଫିଙ୍ଗିଲେ ତ୍ୱରିତ ।
ହାତୀଭଙ୍ଗା କାଠ ଯେ ଗୁଡ଼ିଏ ଆଣିଲେ
ଶିଆଳି ପତ୍ରରେ ଦନା ପୁଣି କଲେ ।
ସକଳ ସଂଯୁକ୍ତ ଦେଖିଣ ଜାନକୀ
ଜାନକୀ ଲକ୍ଷ୍ମଣଙ୍କୁ ବୋଇଲେ ଶୁଣ ସଉମିତ୍ରୀ
ଶୁଖିଲା ତୃଣରେ ନେଇ ଲଗାଅ ଅନଳ
ଉଚ୍ଚୁର ହେଉଛିଟି ସ୍ନାହାନର ବେଳ ।
ଶୁଣିକରି ସଉମିତ୍ରୀ ଅନଳ ଲଗାଇଲେ
ପ୍ରଖର ଅନଳ ଉଜ୍ଜ୍ୱଳେ ଜଳିଲେ ।
ଦେଖିକରି ଜାନକୀ ପଶିଲେ ଅନଳେ
ଘଡ଼ିଏ ପରିଯନ୍ତେ ରହିଲେ ସେଥିରେ ।
ଅଶଉଚ ଦେହ ତାଙ୍କ ଶଉଚ ହୋଇଲା
ଅନଳ ଭିତରୁ ଦେବୀ ବାହାର ହୋଇଲା ।
ଯେତେବେଳେ ଅନଳରୁ ହୋଇଲେ ବାହାର
ଦହିଲା ସୁବର୍ଣ୍ଣ ପ୍ରାୟେ ବିରାଜେ ଜ୍ୟୋତି ତାର
ଦେଖିକରି ଶ୍ରୀରାମ ଯେ ସନ୍ତୋଷ ହୋଇଲେ
ନିଶ୍ଚୟେ କମଳା ବୋଲିଣ ବୋଇଲେ ।

ଅଗ୍ନିର ଭିତରୁ ଯେ ବାହାରି ଜାନକୀ
ଅଗ୍ନିକୁ ନମସ୍କାର ହୋଇଲେ ତଡ଼ତି ।
ବୋଇଲେ ଅନଳ ତୁ ଦୟା କରିଥିବୁ
ଯାହା ପାକ କରିବି ଅମୃତ ପ୍ରାୟ ହେବୁ ।
ଏତେକହି ଦେବୀ ଯେ ସେଠାରୁ ଅଇଲେ
ଶ୍ରୀରାମ ଚରଣରେ ନମସ୍କାର କଲେ ।
ଦେଖିଣ ସଉମିତ୍ରୀ ବେଗେ ଉଠିକରି
ଜାନକୀର ଚରଣରେ ପଡ଼ିଲେ ଗଡ଼ ଘାଲି
ଜାନକୀ ବୋଇଲେ ତୁମ୍ଭେ ଅଟ ପ୍ରାଣ ମୋର
ସବୁଦିନେ ତୁହି ମୋତେ କରୁ ଉପକାର ।
ଉଠ ଉଠ ଲକ୍ଷ୍ମଣ ହେ ସକଳ ଯଶ ପାଅ
ମୋର ସ୍ୱାମୀ ତୋହଠାରେ କରନ୍ତୁ ଅତିସ୍ନେହ
ମୋହର ଯେ ତୋହଠାରେ ଥାଉ ସଦବୁଦ୍ଧି
କେବେହେଁ ତୋଠାରେ ନୋହୁ ମୋ କୁବୁଦ୍ଧି ।
ଯେତେବେଳେ ତୋଠାରେ ମୁଁ କୁବୁଦ୍ଧି ବିଚରିବି
ସ୍ୱାମୀର ସଙ୍ଗରୁ ମୁଁ ଯେ ଅନ୍ତର ହୋଇବି ।
ଏମନ୍ତ ବଚନ ଯହୁଁ କହେ ବଇଦେହୀ
ଲକ୍ଷ୍ମଣଙ୍କ ମନରେ ସନ୍ତୋଷ ଭାବ ହୋଇ ।
ଏତେ କହି ବଇଦେହୀ ବେଗେ ଚଳିଗଲେ
ଚୁଲାରେ ପଲମ ଥୋଇ ପାକ ସମ୍ପାଦିଲେ ।
ମାଏଁସ ରନ୍ଧନ କରି କନ୍ଦମୂଳ ରଖି
ବେନି ଠାବ କରିଣ ପରଷି ଦେଲେ ବେଗି
ଶ୍ରୀରାମ ଲକ୍ଷ୍ମଣ ବସି କଲେକ ଭୋଜନ
ଆମୋଞ୍ଚନ ସାରି ଭୁଞ୍ଜିଲେ କଷାଫଳମାନ ।
ଶ୍ରୀରାମ ପତ୍ରରେ ସୀତା କଲେ ଭୋଜନ
ଆଞ୍ଚୋମନ ସାରିଣ ସନ୍ତୋଷେ ଦେବୀ ମନ
ଉଚିଷ୍ଟ କାଢ଼ିଣ ଯେ ପବିତ୍ର ସ୍ଥାନ କଲେ
ହରଷରେ ଦେବୀ ଯେ ସେ ଦିନ ସାରିଲେ ।
ବେନିଘଡ଼ି ବେଳ ଅଛି ରାମ ପାଶ ଗଲେ
ଦେଖିକରି ଶ୍ରୀରାମ ପ୍ରଶଂସା ତାଙ୍କୁ କଲେ ।
ଜାନୁପରେ ବସାଇ ଶାମଳି ଦେଲେ ବାଳ
ଜୁଡ଼ା ବାନ୍ଧି ଝୁମ୍ପା ଯେ ଦେଲେ ତାରପର ।
ମାଣିକ୍ୟର ଝରା କାଠି ସୁବର୍ଣ୍ଣର ମୁଦି
ଫୁଲମାଳ ଗୁନ୍ଥିକରି ଜୁଡ଼ାପରେ ଲଦି ।
ସ୍ୱାମୀର ପାଶରୁ ଯେ ଜାନକୀ ଉଠିଗଲେ
ନୟନେ ଅଞ୍ଜନ କପୋଳେ ସିନ୍ଦୂର ଘେନିଲେ
ପୂର୍ବ ପ୍ରାୟେ ବଇଦେହୀ ହୋଇଲେ ସୁବେଶ
ଦିବସ ଶେଷଗଲା ରଜନୀ ପ୍ରବେଶ ।
ଯାମିନୀରେ ପାକ ଯେ କଲେ ବଇଦେହୀ
ତିନିଜଣ ଭୁଞ୍ଜିଣ ସନ୍ତୋଷ ହେଲେ ତହିଁ ।
ରଜନୀରେ ପର୍ଣ୍ଣ କୁଟୀ ଭିତରେ ରାମ ଶୋଇ
ଜାନକୀ ଘେନିଣ ରାମ ଅନେକ ବିଳସଇ ।
ଧନୁଶର ଧରିଣ ଲକ୍ଷ୍ମଣ ଜଗି ରହି
ଶର୍ବରୀ ଶେଷ ହୁଅନ୍ତେ ରବି ଯେ ଉଦେହୋଇ
ତହିଁ ସାତଦିନେ ଭରତ ତପକୁ ଆବେଶ
ଶ୍ରୀରାମରେ ନିରାଶ ଶୁଣିଲେ କୈକେୟୀର ଶିଷ୍ୟ
ଫେରି କରି ଅଯୋଧ୍ୟାକୁ ସେହି ଚଳିଗଲେ
ଚିତ୍ରକୂଟ ଉପରେ ଶ୍ରୀରାମ ରହିଲେ ।
ଭରତ ଆସିବାରୁ ରାମଚନ୍ଦ୍ର ପୁଣ
ପିତୃଙ୍କୁ ତର୍ପଣ ପାଣି ଦେଲେ ରାମ ବାଣ ।
ଏଗାରଦିନ ପର୍ଯ୍ୟନ୍ତେ ପାଳିଲେ ଦିନପୂର୍ଣ୍ଣ
ମାଂସ ଭୋଜନ ନ କଲେ ତିନି ପ୍ରାଣୀ ।
ବାରଦିନ ଗଣ୍ଡା ଗୋଟିଏ ମାରି ଆଣି
ଗଣ୍ଡା ମାଂସେ ପିତୃଙ୍କୁ ପିଣ୍ଡ ଦେଲେ ପୁଣି ।
ପିତୃଙ୍କୁ ଶ୍ରାଦ୍ଧଦେଇ ସନ୍ତୋଷ ସେ ହେଲେ
ସେହିଦିନ ପାକରେ ସେ ମାଂସ ଭୁଞ୍ଜିଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ପିତୃଶ୍ରାଦ୍ଧଦିନ କେଉଁ ଆସେ ପୁଣ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ସେହିଦିନ ନାରଦ ସ୍ୱର୍ଗରୁ ଅଇଲେଟି ।
ଶ୍ରୀରାମଙ୍କୁ ଦେଖିବା ପାଇଁ ଆସିଥିଲେ
ପିତୃଶ୍ରାଦ୍ଧ କର୍ମ ଯେ ସେଠାରେ ସେ କଲେ ।
ଶ୍ରୀରାମ ମନତୋଷି ସ୍ୱର୍ଗପୁର ଗଲେ
ବେଦବରଙ୍କ ଆଗରେ ସେ କଥା କହିଲେ ।
ଶୁଣିକରି ବେଦବର ହରଷ ହୋଇଲେ
ଦଶରଥ ଶ୍ରୀରାମ ହସ୍ତରୁ ପିଣ୍ଡ ନେଲେ ।
ପାର୍ବତୀ ବୋଇଲେ ଯେ ସେଠାରୁ କିସ ହେଲା
ସେ କଥାକୁ ମୋହ ଆଗେ କହ ସ୍ୱାମୀ ପରା ।
ଶ୍ରୀରାମ ଲକ୍ଷ୍ମଣ ସୀତା ତିନିଜଣ ପୁଣ
ବନସ୍ତରେ ରହିଣ କି କଲେ ସେହୁ ଜାଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ତିନିଜଣ ରହି ଚିତ୍ରକୂଟରେ ବିହରି ।

ମଦାଗ୍ନି ନଦୀରେ ସେ କରନ୍ତି ସ୍ନାହାନ
ଜାନକୀ ସଙ୍ଗେ ରାମ କରନ୍ତି ଲୀଳା ପୁଣ ।
ନିତ୍ୟ ମୃଗ ମାରିଣ ଭୋଜନ କରନ୍ତି
ଅନ୍ନ ଭୋଜନ ପାସୋରି ମାଂସରେ ଦିନ ନ୍ୟନ୍ତି
ଦିନେକ ଶ୍ରୀରାମ ଯେ ବନକୁ ବୁଲି ଗଲେ
ତପିଙ୍କର ତପ ଦେଖିଣ ତୋଷ ହେଲେ ।
ଶ୍ରୀରାମଙ୍କୁ ଦେଖିବାରୁ ତପୀ ଭୟ କଲେ
ଏକକୁ ଆରେକ ସେ ଠରାଠରି ହେଲେ ।
କେଉଁଠାର ରାଜା ଏ ଏଠାକୁ ଆସନ୍ତି
ବନଜୀବମାନ ଏ କେମନ୍ତେ ନାଶନ୍ତି ।
ଆମ୍ଭେମାନେ ଏଥି ଥିଲେ ନିଶ୍ଚେ ହେବ ଦ୍ୱନ୍ଦ୍ୱ
ଅସୁରେ ଆସି ଏଥ କରିବେ ପ୍ରମାଦ ।
କିସ ବୁଦ୍ଧି କରିବା ଯିବା କେଉଁକତି
ଏ ବଚନ ଶୁଣିଣ ବୋଲନ୍ତି ଦାଶରଥି ।
କିମ୍ପାଇଁ ମୁନିମାନେ ବିକଳ ମନହୁଅ
କେବଣ କାରଣେ ତୁମ୍ଭେ ଭୟ ଭୀତ ପାଅ
ମୁନି ବୋଲନ୍ତି ତୁମ୍ଭଙ୍କୁ ଦେଖି ଭୟ କଲୁ
ତେଣୁକରି ଆମ୍ଭାଙ୍କୁ ଶଙ୍କା ବିଚାରିଲୁ ।
ଧନୁଶର ଧରି ତୁ ବିପିନେ ବିହରୁ
ମୃଗ କସ୍ତୁରୀ କୁଆ ଖୁରୁଙ୍ଗ ବଧକରୁ ।
ସନ୍ଥଜନମାନଙ୍କର ନୁହଇ ଏ ଗତି
ଦୁଷ୍ଟଜନମାନେ ସର୍ବେ ଜନ୍ତୁଙ୍କୁ ହିଂସନ୍ତି
ଶ୍ରୀରାମ ବୋଇଲେ ମୁନି କିମ୍ପା ମୋତେ ନିନ୍ଦ
ମୁହିଁତ ଏଠାରେ କରିନାହିଁ କିଛି ଦ୍ୱନ୍ଦ୍ୱ ।
କାହିଁପାଇଁ ତୁମ୍ଭେମାନେ ହେଉଛ ଆରତ
କିଛି ଦୁଷ୍ଟପଣ ମୋର ଦେଖିଲ ତପୋବନ୍ତ ।
ଆମ୍ଭେ ତିନିଜଣ ତୁମ୍ଭର ଆଶ୍ରେ ଥାଉ
ମାଂସ କନ୍ଦମୂଳ ଖାଇଣ ଦିନ ନେଉ ।
ଏଥିରେ ଆମ୍ଭର କି ଦେଖିଲ ଦୁଷ୍ଟପଣ
ତୁମ୍ଭଙ୍କୁ ଦେଖି ଆମ୍ଭେ କଲୁ ହରଷ ମନ ।
ଅଯୋଧ୍ୟା ରାଜ୍ୟରେ ଅଟେ ଆମ୍ଭଘର
ଦଶରଥ ନୃପତି ପିତା ଅଟେ ଯେ ଆମ୍ଭର ।
ତିନି ମାତାଠାରୁ ଆମ୍ଭେ ଚାରିଭାଇ ଜାତ
କୈକେୟୀ କଉଶଲ୍ୟା ସୁମିତ୍ରା ନାମେ ସେ ତ ।
ମୁହିଁ ଜ୍ୟେଷ୍ଠ ଶ୍ରୀରାମ କନିଷ୍ଠ ଶତ୍ରୁଘନ
ଭରତ ଲକ୍ଷ୍ମଣ ଦୁହେଁ ମଧ ଅଟେ ଜାଣ ।

କୈକେୟ ଗର୍ଭରୁ ଭରଥ ଜାତ ହେଲା
ଜ୍ୟେଷ୍ଠାରାଣୀ କୈକେୟୀ ପ୍ରିୟା ଅଟେ ପରା ।
ସାନ ମୋ ଜନନୀଠାରୁ ଦୁହେଁ ଜାତହେଲେ
ଲକ୍ଷ୍ମଣ ଜନନୀ ନାମ ସୁମିତ୍ରା ଅଟେ ଭଲେ
ପିତା ମୋର ମୋତେ ରାଜା କରିବାକୁ ମନ
କୈକେୟୀ ଜନନୀ ମୋର ନିରୋଧିଲା ପୁଣ ।
ମୋ ପିତାଙ୍କୁ ଜନନୀ ସତ୍ୟ କରାଇଲା
ଭରଥ ରାଜ୍ୟରେ ଯେ ନୃପତି ହେବ ଭଲା ।
ଶ୍ରୀରାମ ଲକ୍ଷ୍ମଣ ଯେ ଜାନକୀ ତିନିଜଣ
ଚଉଦ ବରଷ ରାମ ବନକୁ ଯାଉ ପୁଣ ।
ପିତା ସତ୍ୟ ପାଳି ଆମ୍ଭେ ବନକୁ ଅଇଲୁ
ଦେଶ ଗ୍ରାମକୁ ନ ଯାଇ ବନରେ ରହିଲୁ ।
ତେଣୁକରି ଆମ୍ଭେ ଦୁଃଖୀ ଅଟୁ ପୁଣ
ତୁମ୍ଭର ଭରସାରେ ବନେ ବୁଲୁ ଜାଣ ।
ମୋହର ଘରଣୀ ତ ଅଟନ୍ତି ଜାନକୀ
ଜନକ ଋଷିଙ୍କର ଅଟେ ଦୁହିତାଟି ।
ସେ ଜନକ ଋଷି ଘର ଅଟଇ ମିଥିଳା
ଶିବଧନୁ ସ୍ୱୟମ୍ବର କଲା ଋଷିବଳା ।
ସେ ଧନୁକୁ ଆମଞ୍ଚି ତାଙ୍କୁ ବିଭାହେଲି
ମୋର କର୍ମ ଦୋଷରୁ ବନକୁ ଅଇଲି ।
ମୋହର କର୍ମ ହୀନେ ତୁମ୍ଭେ ଛାଡ଼ ବନ
ନୁହଇ ଦୁଷ୍ଟ ମୁହିଁ ସନ୍ଥରେ କାରଣ ।
ଶୁଣି ମୁନିମାନେ ରାମଙ୍କୁ କହନ୍ତି ପୁଣି
ଏ ବନରେ ଅସୁରେ ଭ୍ରମନ୍ତି ବେଳ ଜାଣି ।
ସେ ଅସୁରମାନଙ୍କ ଭୟରେ ଆମ୍ଭେ ଡରି
ତେଣୁକରି ଆମ୍ଭର ମନରେ ଶଙ୍କା କରି
ଶ୍ରୀରାମ ବୋଲନ୍ତି ତୁମ୍ଭେ ଶୁଣ ବ୍ରହ୍ମଚାରୀ
ଦୈତ୍ୟଙ୍କର ତୁମ୍ଭଙ୍କୁ ଭୟ ନ ସଞ୍ଚରି ।
ମୁନିମାନେ ବୋଲନ୍ତି ଶୁଣ ହେ ରାଜପୁତ୍ର
ସାବତ ଜନନୀର ହିଂସାପଣ ଏତ ।
ତୁମ୍ଭର ଭାଇ ତୁମ୍ଭକୁ କିସ ଯେ ବୋଇଲା
ଭାଇ ତୁମ୍ଭର କି ତୁମ୍ଭ ସଙ୍ଗେ କଳିକଲା ।
ଶ୍ରୀରାମ ବୋଇଲେ ଆମ୍ଭେ ଆସିବାରଦିନ
ଆମ୍ଭଙ୍କୁ ନଦେଖି ପିତା ହାରିଲେ ଜୀବନ ।
ଭରତ ଶତ୍ରୁଘନ ଅଜାଘରେ ଥିଲେ
ପାତ୍ର ମନ୍ତ୍ରୀ ଦୁହେଁ ବିଚାରି ତାହାଙ୍କୁ ଅଣାଇଲେ

ଆମ୍ଭର ବନେ ଆସିବା ପିତା ମୃତ୍ୟୁ ଦେଖି
ଜନନୀଙ୍କି ଅନେକ ଧିକ୍କାର କଲେ ସେଟି ।
ପିତାଙ୍କୁ ଭସ୍ମ କରାଇ ମୋରଠାକୁ ଆସି
ଅନେକ ପ୍ରକାରେ ମୋତେ କହିଲେ ସେ ତୋଷି
ପିତା ସତ୍ୟ ପାଳି ମୁଁ ନଗଲି ଲେଉଟି
ଦେବତାଏ ଉପରୁ କହିଲେ ବଚନଟି ।
ବୋଇଲେ ହେ ଶ୍ରୀରାମ ନଯାଅ ଫେରି ଦେଶ
ସତ୍ୟକୁ ଲଙ୍ଘିଲେ ତୋତେ ହେବ ବଡ଼ ଦୋଷ
ପିତା ନର୍କ ଯିବେ ତୋର ହେଲେ ଦୋଷକାରୀ
ସତ୍ୟରେ ପୃଥିବୀ ଯେ ବାସୁକୀ ଅଛି ଧରି ।
ସତ୍ୟରେ ମେଘମାନେ ବରଷନ୍ତି ଜଳ
ସତ୍ୟରେ ଧେନୁମାନେ ଦେଉଛନ୍ତି କ୍ଷୀର ।
ସତ୍ୟରେ ତରୁମାନେ ଫଳୁଛନ୍ତି ଫଳ
ସତ୍ୟରେ ସାଗର ନ ଲଘଇ କୂଳ ।
ସତ୍ୟରେ ଚନ୍ଦ୍ର ସୂର୍ଯ୍ୟ ହୁଅନ୍ତି ଆତଯାତ
ସତ୍ୟରେ ଦିବସ ଯେ ରଜନୀ ପରାପତ ।
ତୁମ୍ଭେ ସତ୍ୟ ନ ଲଙ୍ଘ ହେ ରଘୁକୁଳପତି
ଯୁଗେ ଯୁଗେ ରହିଥାଉ ତୁମ୍ଭର ଏ କୀର୍ତି ।
ଏମନ୍ତ ବଚନ କହିଲେ ଦେବେ ଯହୁଁ
ଭରଥ ଆସି ମୋତେ ପ୍ରବୋଧ କଲା ତହୁଁ ।
ମୋଠାରୁ ବେନି ପାଦୁକା ଘେନି ଚଳିଗଲା
ଅଯୋଧ୍ୟା ଦେଶେ ରାଜା କେବେହେଁ ନୋହିଲା
ମୋହର ପାଦୁକାକୁ ରାଜା କଲେ ତହିଁ
ଦୁଃଖରେ ଦିନ ନେଲା ଭରଥ ନାମେ ଭାଇ ।
ମୁନିମାନେ ବୋଇଲେ ସେ କଥା ଗୋଚର
ଯୋଗବଳେ ତାହା ଆମ୍ଭେ ଜାଣିଛୁ ସକଳ ।
ଦେବତାଏ କୂଟକରି ମନ୍ଥରା ଭେଦିଦେଲେ
କୈକେୟୀ ରାଣୀ କହି ମାତା ଜାତ କଲେ ।
ଦୁଷ୍ଟପଣ ଦେଖି ତାର ତୁମ୍ଭେ ଆସ ବନ
ଆୟୁଷ ଥାଉଁ ପିତା ହୋଇଲେ ନିଧନ ।
କୁଳଧର୍ମ ରଖିଲା ଯେ କୈକେୟୀର ସୁତ
ପିତାମହ ମାତା ଦୁଷ୍ଟ ସବୁକଲା ଶାନ୍ତ ।
ତୋହର ପାଦୁକାକୁ ରାଜା ସେଥି କରି
ମାତା ତୋର ଲୀଳାବତୀ ପରଜା ଜନପାଳି ।
ଏକଥାମାନ ଆମ୍ଭେ ଯୋଗବଳେ ଜାଣୁ
ତୁ ଅଛୁ ଏ ବନେ ବୋଲି ଏ କଥା ନ ଜାଣୁ ।

ପୁଣ୍ୟବନ୍ତ ପୁରୁଷ ଏଥିରେ ନ ରହ
ଅନେକ ବିପତ୍ତି ଏଥି ପଡ଼ିବ ଶୁଣିଥାଅ ।
ଅସୁରଙ୍କର ଏହି ଅଟଇ ଚରାଭୂଇଁ
ଅକାରଣେ ଏଥିରେ ଦଣ୍ଡହେବ ପୁଣି ।
ମୁନିଙ୍କ ବଚନ ଶୁଣି ବୋଇଲେ ରଘୁନାଥ
ଏହି ଧନୁଶର ମୁଁ ଯେ ଧରିଅଛି ହସ୍ତ ।
ଏକା ନାରାଚକେ ମାରିବି ଅସୁର
ମାରି ନ ପାରିଲେ ମୁଁ ନୁହଇ ରଘୁବୀର ।
ମୋ ସାମ୍ନରେ ଯେ ପଡ଼ିଲେ ଅସୁରେ ଜାଣବେ
ଏସନକ ମଧ୍ୟେ ତୁମ୍ଭେ ମାଗିଅ ବରସବେ ।
ମୋର ନାମ ଶ୍ରୀରାମ ଲକ୍ଷ୍ମଣ ଅଛି ସଙ୍ଗେ
ଜନକ ଦୁହିତା ଘେନି ବୁଲଇ ବନବାସେ ।
କିମ୍ପାଇଁ ଛାଡ଼ ତୁମ୍ଭେ ନଦୀ ମନ୍ଦାଗ୍ନି
ଭୟ ନକର ତୁମ୍ଭେ ଆମ୍ଭ ତପୋଧନ ।
ରକ୍ଷ ଗଣ ନ ଡରିଲେ ରାମଚନ୍ଦ୍ର ଏଥି
ମରିବେ ଅସୁର ଏଥି ସୁର ହେବ ମାନ ।
ଶ୍ରୀରାମ ମୁନିମାନଙ୍କୁ ନମସ୍କାର କଲେ
ନିଜ ମଢ଼ିଆରେ ଯେ ପ୍ରବେଶ ଯାଇଁ ହେଲେ
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଅପୂର୍ବ କଥା ରସ ଶୁଣ ହେ ଦେଇ ମତି ।
ଶ୍ରୀରାମ ବଚନ ଶୁଣି ମୁନି ଯେ ହରଷ
ମନ୍ଦାଗ୍ନି କୂଳେ ଥିଲେ ଋଷି ବାରସସ୍ର ।
ଯହୁଁ ରଘୁନାଥ ପ୍ରତିଜ୍ଞା ବହୁତ କଲେ
ତପିମାନେ ସେଠାରୁ ଭୟମନ କଲେ ।
ସର୍ବ ଋଷି ରୁଣ୍ଡହୋଇ ସେଠାରେ ଭାଳନ୍ତି
ଅସୁରମାନେ ଆମ୍ଭଙ୍କୁ ଜିଆଇବେ କିଏ ଘାନ୍ତି ।
ବିଗରିବେ ଆମ୍ଭମାନଙ୍କୁ ମାରିବା ନିମନ୍ତେ
ଧନୁର୍ଦ୍ଧାରୀ ଗୋଟିଏ ଆସିଣ ଅଛି ଏଥେ ।
ଅବିଗୁଣ ଘେନି ହରିବେ ଆମ୍ଭ ପ୍ରାଣ
ଏକଥା ନିଶ୍ଚୟ ହେବ ସମସ୍ତେ ତୁମ୍ଭେ ଜାଣ ।
ଚଳ ଚିତ୍ରକୂଟ ଗିରି ଆମ୍ଭେ ଛାଡ଼ି ଯିବା
ଅନ୍ୟ ଅରଣ୍ୟରେ ଯେ ନିଶ୍ଚିନ୍ତେ ଦିନ ନେବା
ଏତେ ବୋଲି ସେଠାରୁ ତପିମାନେ ଚଳେ
ଘୋର ବିପିନରେ ଯାଇ ସେ ରହିଲେ ।
ଆରଦିନ ସେଠାକୁ ଚଳେ ଦାଶରଥି
ତପେ ପଚାରିଲେ ମୁନି ନାହାନ୍ତି ସେ ଏଥି

କେବଣ କାରଣେ ସେ ଗଲେ ଏବେ କାହିଁ
ଏକା ହୋଇ ଆମ୍ଭେ କିମ୍ପା ଥିବା ଏଥେ ରହି ।
ଉଦ୍‌ବେଗ ହେଲା ପୁଣି ଶ୍ରୀରାମର ମନ
ନିଜ ଆଶ୍ରମେ ଚଳିଲେ ନ ରହେ ଦୁଃଖ ପୁଣ
ଋଷିମାନେ ଯିବାର ଲକ୍ଷ୍ମଣେ ରାମ କହି
ମୁନିମାନେ କିମ୍ପା ଏ ବନରୁ ପଳାଇ ।
ମଢ଼ିଆମାନ ତୁଛା ଦେଖିଲି ମୁଁ ପୁଣି ·
ଏଥି ଆମ୍ଭେ କେମନ୍ତେ ରହିବା ତିନିପ୍ରାଣୀ ।
ଲକ୍ଷ୍ମଣ ବୋଲନ୍ତି ସ୍ୱାମୀ ନୁହ ହେ ବିକାର
ଦେଖିବା ଏ ବନରେ କିଏ ସେ ପାରିବାର ।
ବନରେ ବାଘ ଆମ୍ଭର କାହାକୁ ହେ ଡର
କେ କରିବ ଦ୍ୱନ୍ଦ୍ୱ ଆସୁ ଛାମୁକୁ ମୋହର ।
ବ୍ୟାଘ୍ର, ଭାଲୁ, ସିଂହକି ଆସିବେ ହସ୍ତୀବଳ
ନୋହିଲେ ଦୈତ୍ୟବଳ ଆସିବେ ଏଥିର ।
ମୁନି ପଳାଇଲେ ଆମ୍ଭଙ୍କୁ ଦେଖି ସିନା
ବିଚାରିଲେ ଏଥିରେ ହୋଇବେ ଦ୍ୱନ୍ଦ୍ୱସିନା ।
କେ କରିବ ଦ୍ୱନ୍ଦ୍ୱ ଯେ ଆସୁ ଆମ୍ଭ ପାଶ
ଶୁଣିକରି ରାମଚନ୍ଦ୍ର ମନ କଲେ ତୋଷ ।
ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ଭରୀ
ଜାନକୀଙ୍କି ଚାହିଁଣ ବୋଲନ୍ତି ଚାପଧାରୀ ।
ବନବାସର କଥା ଶୁଣ ଗୋ ସଙ୍ଗାତୁଣୀ
ଏ ବନ ମାନଙ୍କରେ ପ୍ରମାଦ ବଡ଼ ଜାଣି ।
ଆମ୍ଭଙ୍କୁ ଦେଖି ଋଷିମାନେ ପଳାଇଲେ
ଅସୁରେ ଗୋଳ କରିବେ ବୋଲି ଭୟକଲେ
ଅନେକ ପ୍ରକାରେ ଯେ ମୁହିଁ ତାଙ୍କୁ କହି
ମୋର କଥା ଯତି ପରତେ ନ ଯାଇ ।
ମେଳହୋଇ ସର୍ବେ ଦେଖ ଅନ୍ୟ ବନେ ଯାନ୍ତି
କେବଣ ବୁଦ୍ଧି ଆମ୍ଭେ କରିବା ଏଥି ସତୀ ।
କଳାର ବୋଲ ତୁ ନ କଲୁରେ ସଖି
ତୁହି ସିନା ଏବେ ଗୋ ହୋଇଲୁ ନିରିମାଖି
ଗଜଦନ୍ତ ପଲଙ୍କ ତେଜିଲୁ ମୋର ପାଇଁ
ଥାଇ ଦାସୀ ପରିବାରୀ ଛାଡ଼ିଲୁ ଏବେ ସହୀ ।
ଶାଶୁମାନଙ୍କୁ ଛାଡ଼ିଣ ମୋ ସଙ୍ଗେ ଅଇଲୁ
କେଉଁ ସୁଖ ବନଲତା ଗିରିରେ ପାଇଲୁ ।
ଶ୍ରୀରାମ ବଚନ ଶୁଣି ବୋଲନ୍ତି ଜାନକୀ
କିମ୍ପାଇଁ ଭାଳେଣି ତୁମ୍ଭେ କର ରଘୁପତି ।

ତିନିପୁର ମଧ୍ୟରେ ଅଟ ତୁମ୍ଭେ ସାର
ଏମନ୍ତ କଥା କିମ୍ପା କହ ମୋ ଆଗର ।
ଜାନକୀ ବଚନ ଶୁଣି ରାମ ତୋଷ ହେଲେ
ଜାନକୀର କଥା ରାମ ମନରେ ଗୁଣିଲେ ।
ଏମନ୍ତ ଶୁଣି ରାମ ଉପରକୁ ଚାହିଁ
ଏହା ମୋର କରମରେ ଲେଖିଥିଲୁ ବିହି ।
କେମନ୍ତେ କେଉଁଠାରେ ରହିବି ମୁଁ ଏବେ
ମୁନିମାନେ କହିଲେ ଅସୁର ଭୂମି ଏ ଯେ ।
ଲକ୍ଷ୍ମଣ ବୋଲନ୍ତି ତୁମ୍ଭେ ଶୁଣ ଦାଶରଥି
ଦେବତାମାନେ କୂଟ କରିଣ ଆଣିଛନ୍ତି ।
ଦେଖିଲ ଭରତଭାଇ ଧର୍ମକୁ ନ ଲଙ୍ଘିଲା
ତୁମ୍ଭେ ନ ଗଲାକୁ ସେ ପାଦୁକା ଘେନିଗଲା ।
ପାଦୁକା ରାଜାକରି ବସାଇ ଅଯୋଧ୍ୟାରେ
ଯତି ବେଶଧର ମଠ ନନ୍ଦି ଯେ ଗ୍ରାମରେ ।
ଜାନକୀ ଯାଇଥିଲେ ହୋଇଣ ଥାନ୍ତେ ରାଜା
ସେକଥାମାନଙ୍କୁ ତୁମ୍ଭେ ସକଳ କଲ ତେଜ୍ୟା
ନଜାଣି ମୁନିମାନେ ଭୟରେ ପଳାଇଲେ
ଆମ୍ଭର ପୁରୁଷାର୍ଥ ଏଣୁ ଯେ ନ ଦେଖିଲେ ।
ଲକ୍ଷ୍ମଣ ବଚନ ଶୁଣି ସନ୍ତୋଷ ଦାଶରଥି
ବିଚାରିଲେ ରାକ୍ଷସକୁ ମାରିବି ବିକୋଟି ।
ଦୁଷ୍ଟକୁ ମାରି ଯେବେ ସନ୍ଥକୁ ପାଳିବା
ତେବେ ସିନା ଦେବତାଙ୍କୁ ଦମ୍ଭରେ ରଖିବା ।
ଏମନ୍ତ ବିଚାର ସେ କଲେ ରଘୁନାଥ
ବୋଇଲେ ଏ ବନରୁ ଯିବା ଯେ ତୁରିତ ।
ଧର୍ମକୁ ସୁମରି ସେ ଉଠିଲେ ଦାଶରଥି
କରେ ଧନୁ ସସ୍ତ୍ର ଯେ ପ୍ରଚଣ୍ଡ ସୂର୍ଯ୍ୟ ଜ୍ୟୋତି
ସୀତାଙ୍କୁ ସଙ୍ଗେ ଘେନି ଲକ୍ଷ୍ମଣ ତିନିଜଣ
ତତକ୍ଷଣେ ଛାଡ଼ିଲେ ଚିତ୍ରକୂଟ ବନ ।
ଘୋରବନ ଲତାରେ ପଥ ବହିଗଲେ
ବନ ଜନ୍ତୁମାନଙ୍କୁ ବାଟରେ ଦେଖିଲେ ।
ବରେହ ସ୍ୱୟମ୍ବର ମୃଗ ଯୁଥ ଯୁଥ
ସୀତାର ଭୁଜଧରି ଦେଖାନ୍ତି ରଘୁନାଥ ।
ପ୍ରାଣର ବଲ୍ଲଭୀ ଏ ବନ ଜୀବ ଚାହାଁ
ଶୟନ ଘରେ ତୋର ଚିତ୍ରପଟେ ଯାହା ।
ସେ ଚିତ୍ରପଟମାନ ଦେଖିଲେ କରୁ ଭୀତି
ଏବେ ପ୍ରତ୍ୟକ୍ଷରେ ଯେ ଦେଖିଲୁ ମହାସତୀ ।

ଦେଖ ଦେଖ ମୟୂର ଲୀଳା କରେ ତହିଁ
ବନର ଗୋରୁମାନେ ଚରନ୍ତି ଦେଖ ତୁହି ।
ଚମର ଯୂଥ ଯୂଥ ପର୍ବତେ ଉଠନ୍ତି
ଗିରିର ଶିଖରେ ଦେଖ ସିଂହ ଖେଳୁଛନ୍ତି ।
ଚଉଦନ୍ତ ସଙ୍ଗେ ଦେଖ ଚରନ୍ତି କରୀବର
ଶୁକର ପଲି ଦିଶନ୍ତି ଜାଣି ମେଳମାଳ ।
ଶଶାଙ୍କ ସଙ୍ଗରେ ଖୁରୁଙ୍ଗ ମେଳ ହୋଇ
ବନଜୀବ ଚରନ୍ତି ହିଂସାଭାବ ବହି ।
ଖୁରୁଙ୍ଗ ବୋଲିଣ ସେ ଯେ ବନଜୀବ ଗୋଟି
ଝାଡ଼ା ହେଲାବେଳେ ତାର ମଳଦ୍ୱାରଫାଟି ।
ଗହନ ବନରେ ଯେ ବିକଳେ ରାବଦେଇ
ପଥ ଚଳିଯାନ୍ତେ ସୀତା ରଘୁନାଥଙ୍କୁ ଚାହିଁ ।
ବନରେ ଶ୍ରୀରାମ ଯେ ପଥ ବାହିଗଲେ
ଅତ୍ରୀ ମହାଋଷିଙ୍କର ଆଶ୍ରମେ ମିଳିଲେ ।
ରାମଲକ୍ଷ୍ମଣସୀତାଙ୍କୁ ଦେଖି ମୁନି ଆନନ୍ଦ ହୋଇଲେ
ମୁନିଙ୍କି ଦେଖି ତିନିଜଣ ଓଳଗି ମେଲାଇଲେ
ଶ୍ରୀରାମ ଲକ୍ଷ୍ମଣ ସୀତା ଦେଖିଣ ତିନିଜଣ
ଆନନ୍ଦରେ ମୁନିମାନେ କଲେ ସୁକଲ୍ୟାଣ ।
ଶ୍ରୀରାମ ହସ୍ତଧରି ମଠକୁ ଘେନିଗଲେ
ମଢ଼ିଆରେ ବସାଇଣ ଗଉରବ କଲେ ।
ଆଜର ସୁଫଳ ହୋଇଲା ମୋର ଦିନ
ପ୍ରତ୍ୟକ୍ଷରେ ଦେଖିଲି ମୁଁ ଶ୍ରୀବସ୍ତର ଚିହ୍ନ ।
ଏତେ କହି ମୁନି ଯେ କନ୍ଦମୂଳ ଦେଇ
କ୍ଷୁଧା ତୋତେ କରୁଥିବ ଭୁଞ୍ଜ ଉଦୁପୋଇ
ଶୁଣିକରି ଶ୍ରୀରାମ ମନରେ ହେଲେ ତୋଷ
ତିନିଜଣ କନ୍ଦମୂଳ ସେଠାରେ କଲେ ଗ୍ରାସ
ଆଞ୍ଚୋବନ ସାରିଣ ଭୁଞ୍ଜି ବସିଲେ ରଘୁପତି
କଷାଫଳ ଆଣିଣ ଭୁଞ୍ଜାଇଲେ ଯତି ।
ରାମଙ୍କୁ ଚାହିଁଣ ସେ ଯେ ପୁଚ୍ଛନ୍ତି ବ୍ରହ୍ମଚାରୀ
ସକଳ କୁଶଳଟି କହ ଚାପଧାରୀ ।
ଭୋ ରଘୁନନ୍ଦନ ତୁମ୍ଭେ ଅଇଲ କିମ୍ପା ବନ
ଅଯୋଧ୍ୟା ରାଜପଣକୁ ତୁମ୍ଭେ ତ ଭାର୍ଜନ ।
ଦଶରଥ ରାଜା ତୋତେ ମୂର୍ଚ୍ଛିଲା କେମନ୍ତେ
ବନକୁ ରାଜା ପେଶିଲା କେବଣହିଁ ମତେ ।
ବଶିଷ୍ଠ ଋଷି ଥାଇ କେମନ୍ତେ ଏହା କଲା
ମୁନିଙ୍କର ବାଣୀ ଶୁଣି ଶ୍ରୀରାମ ବୋଇଲା ।

ଭୋ ମୁନି ଦେବ ହେ ଯାହା ପଚାରିଲ ମୋତେ
ସାବଧାନେ ଶୁଣ ମୁଁ କହୁଅଛି ତୋତେ ।
ପିତା ମୋର ମୋତେ ଯେ ରାଜ୍ୟଦେବା କଲା
ଅଭିଷେକ ବିଧାନ ପୁଣ ଭିଆଇଲା ।
ରାତ୍ର ପାହିଲେ ଶିରେ ଦେଇଥାନ୍ତେ ପାଟ
ମଣ୍ଡଣି କରିଥିଲେ ନଗ୍ର, ଘର, ରାଷ୍ଟ୍ର
କୈକେୟୀ ଜନନୀ ଯେ ବାରତା ପାଇଲା
ପିତାଙ୍କୁ ମୋହର ଯେ ସତ୍ୟ କରାଇଲା ।
ଭରଥ ରାଜା ହୋଇ ପାଳିବେ ଏ ଦେଶ
ଶ୍ରୀରାମ ବନଯିବେ ଚଉଦ ବରଷ ।
ତେଣୁ ଲକ୍ଷ୍ମଣ ସୀତା ସଙ୍ଗେ ଘେନି ଆସି
ଶାମ ବଟମୂଳେ ଜଟା ବାନ୍ଧିଲି ମୁଁ ବସି ।
ସେହିଠାରେ ବିପିନକୁ ଅଇଲି ମୁଁ ପୁଣ
ସଙ୍ଗେଛନ୍ତି ଲକ୍ଷ୍ମଣ ସୀତା ଏବେ ଜାଣ ।
ମୋହର ଆସନ୍ତେ ତେଣେ ପିତା ନାଶଗଲା
ଭରତ ଅଯୋଧ୍ୟାରେ ନୃପତି ନୋହିଲା ।
ଚିତ୍ରକୂଟ ଗିରିପରେ ଭେଟ ହେଲେ ମୋତେ
ବାହୁଡ଼ାଇ ନେବେ ବୋଲି ଆସିଲେ ସମସ୍ତେ ।
ପିତାର ସତ୍ୟପାଳି ବାହୁଡ଼ି ନ ଗଲି
ପ୍ରବୋଧ କରି ଭ୍ରଥଙ୍କୁ ପାଦୁକା ଦୁଇ ଦେଲି
କଠାଉ ଘେନିଣ ମୋର ବାହୁଡ଼ିଣ ଗଲେ
ଶ୍ୱେତଛତ୍ର, ପାଦୁକା ଉପରେ ଧରାଇଲେ ।
ପାଦୁକା ମୋର ହେଲା ଅଯୋଧ୍ୟାରେ ରାଜା
ସିଂହାସନରେ ବସାଇ ତାଙ୍କୁ କଲେ ପୂଜା ।
ଶୁଣିଣ ଅତ୍ରୀ ମୁନି ବିସ୍ମୟ ହୁଅନ୍ତି
ଶ୍ରୀରାମଙ୍କୁ ବହୁତ ପ୍ରଶଂସା କରନ୍ତି ।
ଧନ୍ୟରେ ଚାପଧାରୀ ଧନ୍ୟ ତୋର ଗୁଣ
ପିତାର ସତ୍ୟପାଳି ଛାଡ଼ିଲୁ ରାଜପଣ ।
ଏ ମହୀମଣ୍ଡଳେ ତୋତେ କେହିନାହିଁ ସରି
ତୁହିତ ଶ୍ରୀରାମ ସାକ୍ଷାତେ ଶ୍ରୀହରି ।
ନୃପତି ପତିକି ତୋତେ ହୁଏ ଅପୂରୁବ
ଜନ୍ତା ଜନ୍ତା ରାମ ହେ ଦେବବର ଦେବ ।
ଏତେ କହି ମୁନି ଯେ ବସିଲେ ଯୋଗଧ୍ୟାନେ
ବୋଇଲେ ବନବାସ ଦେବଙ୍କର ଜ୍ଞାନେ ।
ମନେ ମନେ ଆନନ୍ଦ ହେଲେ ମହାଋଷି
ଶ୍ରୀରାମଙ୍କୁ କଥା ଯେ କହିଲେ ଆଶ୍ୱାସି ।

ବୋଇଲେ ଶ୍ରୀରାମ ତୁମ୍ଭେ ନକର ମନେଚିନ୍ତା
ଏ ସଂସାରକୁ ତୁମ୍ଭେ ଅଟ ହେ କରତା ।
ଦଇତେ ପ୍ରବଳ ବାବୁ ଏଥିରେ ଅନୀତି
କିମ୍ପା ତୁମ୍ଭେ ଏ ବନକୁ ଅଇଲ ରଘୁପତି ।
ଅତ୍ରୀ ଋଷିଙ୍କ ଭାରିଯା ଅନୁଛାୟା ରାଣୀ
ସୀତୟା ଯାଇଣ ତାଙ୍କୁ ମାନ୍ୟକଲେ ପୁଣି ।
କଲ୍ୟାଣ କଲେ ତାଙ୍କୁ ଋଷିଙ୍କର ନାରୀ
ଭିତରକୁ ଘେନିଗଲେ ସୀତାଙ୍କ ଭୂଜଧରି ।
ମୃଗଛାଲ ଉପରେ ବସିଲେ ବେନିଜନ
କୁଶଳ ପୁଛାପୁଛି ହୁଅନ୍ତି ଅନୁଆନ ।
ଅନୁଛାୟା ବୋଇଲେ ସୀତାଙ୍କ ମୁଖଋହିଁ
ମହାସତୀ ଲକ୍ଷ୍ମଣ ଗୋ ଅଛି ତୋର ଢହିଁ ।
ବିଧବା ନୋହିବୁ ମାଗୋ ଏ ପୁଣ ତୋରଅଛି
ଶ୍ରୀମନ୍ତ ସୁନ୍ଦରୀ ତୁ ସ୍ୱୟଂ କମଳାକ୍ଷୀ ।
କଥାଏ ପଋରିବି କହିବୁ ଯେବେ ସୀତା
ମୁହିଁ ପୁଣି ପୂର୍ବେ ପାଇଛି ବାରତା ।
ଜନମ ହେଲୁ ତୁ ଯେ କେବଣ ପ୍ରକାର
ସ୍ୱରୂପ କହ ତୁହି ମୋହର ଆଗର ।
ତୁହି ଜନ୍ମ ହେବାରୁ ମୁଁ ଅଛି ଶ୍ରଦ୍ଧାକରି
ତୁ ସତ୍ୟ କହିଲେ ପ୍ରତେ ଯିବି ଗୋ ସୁନ୍ଦରୀ
ଶୁଣିକରି ବଇଦେହୀ ବୋଲନ୍ତି ବଚନ
ସାବଧାନେ ମୋର ଜନ୍ମ ତୁମ୍ଭେ ଶୁଣ ପୁଣ ।
ମିଥିଳା ନବରେ ଯେ ଜନକର ଘରେ
ବରଷକେ ଋଷିମାନେ ରୁଣ୍ଡ ହୋନ୍ତି ଥରେ ।
ମୋତେ ଦେଖି ସର୍ବ ଋଷି ଆନନ୍ଦ ହୁଅନ୍ତି
ଆସ ଆସ ବୋଲି ସୀତା ମୋତେ ସେ ଡାକନ୍ତି
ବୋଲନ୍ତି ଆଗୋ ସୀତା ଧନ୍ୟ ତୋର ଜନ୍ମ
ତୋହରି ଯୋଗୁଁ ଦେଖିବୁଁ ଆମ୍ଭେ ପରବ୍ରହ୍ମ
ପିତାବୀର୍ଯ୍ୟେ ମାତା ରଜ ବେନି ସଂଯୁକ୍ତରେ
ବିହି ତୋତେ ଜାତକଲେ ବସୁଧା ଭିତରେ ।
ଅପୁତ୍ରିକ ହୋଇଣ ଜନକ ଋଷିଥିଲେ
ବେଦବର ଆସିକରି ତା କର୍ଣ୍ଣେ କହିଲେ ।
ବୋଇଲେ ଜନକ ଶୁଣ ଆମ୍ଭର ଏ ବାଣୀ
ଏ ଭୂମି ଖଣ୍ଡି ଚଷିଲେ ପାଇବୁ କମଳିନୀ
ସେହିଦିନୁ ପିତା ମୋର ଅନେକ ତପ କଲେ
ପୁତ୍ର ନୋହିଲା ବୋଲି ସନ୍ତାପି ହୋଇଲେ ।

ଅମନାୟଗଣେ ବୋଧ କଲେ ତାଙ୍କୁ ପୁଣ
ତେବେ ସେ ପିତା ମୋର ହରଷ କଲେ ମନ
ନକର ଶୋଚନା ତୁମ୍ଭେ ମିଥିଳା ନୃପବର
ଯାଗ ବିଧାନ ତୁମ୍ଭେ ବେଗେ ସଜକର ।
ଶୁଣିକରି ପିତା ମୋର ସର୍ବ ଭିଆଇଲେ
ଯାଗଶାଳ ଭୂମି ପୁଣି ଲଙ୍ଗଳେ ଶୋଧିଲେ ।
ଏହି ସମୟରେ ଆସି ମେନକା ଅପସରୀ
ଶାପରେ ମର୍ତ୍ତ୍ୟପୁରେ ଥିଲେ ଯେ ଅବତରି ।
ମୁକ୍ତ ହୋଇ ଯାନ୍ତେ ଯେ ବିମାନ ଆରୋହୀ
ଗଗନର ମାର୍ଗରେ ଚଳେ ଋନ୍ଦମୁହାଁ ।
ଦଶଦିଗରେ ତେଜ ବିକାଶେ ପୁଣି ତାର
ଶୂନ୍ୟରେ ଦେଖି ତାତ ଜାଣିଲେ ମୋହର ।
ମନେ ବିଋରିଲେ ଏହି ପ୍ରକାରେ ଦୁହିତା
ନିଶ୍ଚୟ ପ୍ରାପତ ମୋତେ କରନ୍ତେ ବିଧାତା
ମୋ ପିତା ମନବାଞ୍ଛା ଜାଣି ଅପସରୀ
ଆକାଶେ ଥାଇ ତାଙ୍କୁ କହେ ଡାକକରି ।
ତୁ ହେ ଜନକ ଋଷି ବିଋର କଲୁ ଯାହା
ମୋର ସେମାନେ ଦୁହିତା ମନରେ କଲୁଋହା ।
ଏ ମର୍ତ୍ତ୍ୟ ପୁରରେ ମୁଁ ଥିଲି ଅବତରି
ସ୍ୱର୍ଗକୁ ଯାଉଛି ମୁଁ ଶାପକୁ ପାରିକରି ।
ନୋହିଲେ ଜନ୍ମ ମୁହିଁ ହଅନ୍ତି ତୋର ଘରେ
କଥା ରହିଥାଆନ୍ତା ଏ ମହୀ ମଣ୍ଡଳେ ।
ମୁଁ ଯାହାର ଦାସୀପଣକୁ ନ ଯୋଗାଇ
ସେ ତୋତେ ପ୍ରାପତ ହୋଇବ ଶୁଣ ତୁହି ।
ଆଜର ଭିତରେ ତୋତେ ପ୍ରାପତ ହୋଇବ
ଅଯୋନି ସମ୍ଭୁତ ଯେ ଛୁଅଁନ୍ତେ ଯୁବା ହେବ
ଏଗାର ବରଷ ଷଡ଼ମାସ ବାରଦିନ ଶେଷେ
ଦୁହିତାକୁ ବର ଯେ ମିଳିବ ଦେବଅଂଶେ ।
ଏ ବଚନ କହି ସେ ସ୍ୱର୍ଗକୁ ଚଳିଗଲା
ଶୁଣିକରି ପିତା ମୋର ପରମତୋଷହେଲା ।
ଏହି ସମୟରେ ଯେ ଘାତ୍ରଭୂମି ଶୋଧି
ତଳମାଟି ଉପରକୁ ପାଲଟେ ସେ ବିଧି ।
ସୁବର୍ଣ୍ଣର ମଞ୍ଜୁଷ ଯେ ଲାଗେ ଫାଳ ମୁନେ
ରଖିଲେ ଲଙ୍ଗଳ ସେ ଦେଖିଲେ ସ୍ଥାନେ ।
ଫଳର ମୁନରେ ଯେ ମଞ୍ଜୁଷ ଉକୁଟିଲା
ସେ ଭୂମି ଖୋଳାଇଣ ମଞ୍ଜୁଷ କଢ଼ାଇଲା ।

ସେ ମଞ୍ଜୁଷକୁ ଦେଖିଣ ହରଷ ମୋର ପିତା
କଞ୍ଚି ଘେନି ମଞ୍ଜୁଷ ଫେଡ଼ିଲେ ଋଷିପିତା ।
ମଞ୍ଜୁଷ ଫେଡ଼ିବାରୁ ଦେଖିଲେ ସେ ମୋତେ
ହଂସୁଲୀ ତୁଳିପରେ ମୁଁ ଶୋଇଥିଲି ସେଥେ ।
ଅମଳାଣ ବସନ ଉପରୁ କଢ଼ାଇଲେ
ନୟନରେ ରୂପ ମୋର ବିରୋଳେ ଦେଖିଲେ ।
ସମସ୍ତେ ଦେଖିବାରୁ ଚେତା ହେଲି ମୁହିଁ
ରୋଦନ କରି ମୁଁ ଯେ ମଞ୍ଜୁଷରେ ଥାଇ ।
ମୋହର ରୋଦନ ଶୁଣିଣ ପିତା ମୋର
ମଞ୍ଜୁଷ ଭିତରୁ ମୋତେ କଲେ ଯେ ବାହାର
କୋଳେ ଧରିବାରୁ ହେଲି ଯୁବା ଯେ ଶରୀର
ପିତା କୋଳରୁ ମୁଁ ଯେ ଉଠିଲି ଧାତିକାର ।
ଅମଳାଣ ଶାଢ଼ୀଗୋଟି ପହରଣ ହେଲି
ସର୍ବଋଷି ପୁତ୍ର ଦେଖି ଆନନ୍ଦ ହୋଇଲି ।
କମଳା ବୋଲିଣ ସେ ମୋତେ ବିଚାରିଲେ
ବୋଇଲେ ଅଯୋନି ସମ୍ଭୁତ ଅଟେ ଭଲେ
ବିଷ୍ଣୁର ପାଟରାଣୀ ନିଶ୍ଚୟେ ଅଟଇ
ଏମନ୍ତ ବିଚାରି ଦୁର୍ବାସା ଋଷି ଥାଇ ।
ମୋହର ଆଗରେ ଋଷି ବଚନ ଭାଷନ୍ତି
ଶୁଣ ଗୋ ଦୁହିତା ତୁ ବୈକୁଣ୍ଠର ସ୍ଥିତି ।
ବିଷ୍ଣୁ ପାଟରାଣୀ ତୁ ଅଟୁ ଗୋ ସାକ୍ଷାତେ
ଅସୁରଙ୍କୁ ମାରିବାକୁ ଜାତ ହେଲୁ ଏଥେ ।
ବୈକୁଣ୍ଠର ନାଥ ଜାତ ହୋଇଲେଣି ପୁଣ
ପାଞ୍ଚମାସ ଆଠଦିନ ହୋଇଲା ଲେଖାରେଣ ।
ଏଗାର ବରଷ ଷଡ଼୍‌ମାସେ ସେ ଭେଟିବେ
ଶିବଧନୁ ଭାଙ୍ଗିଣ ତୋତେ ବିଭାହେବେ
ତୁ ଋଷିନନ୍ଦିନୀ ସେ ରାଜପୁତ୍ର ଜାଣ
ଏମନ୍ତେ ଦୁଇକୁଳ ଭେଟହେବ ଜାଣ ।
ଶୁଣିଥା ଆଜକୁ ଏଗାର ବରଷ ପରିଯନ୍ତେ
ଧନୁଯାଗ ସ୍ୱୟମ୍ବର କରିବେ ପିତା ତୋତେ ।
ଯେ ଧନୁ ତୋଳିବ ତାହାକୁ ତୋତେ ଦେବେ
ସେ କଥାକୁ ପିତା ତୋର ସତ୍ୟ କରିଥିବେ ।
ଏବେ ତୁ ମୋର ବୋଲ କରିବୁ କୁମାରୀ
ପକ୍ଷକରେ ଅଶଉଚ ଥରେ ହେବୁ ନାରୀ ।
ଶୁଦ୍ଧସ୍ନାନ ଦିନ ତୁ ନ ଯିବୁ ଜଳଘାଟେ
ଅଗ୍ନି ଲଗାଇଣ ତୁ ପଶିବୁ ତୁରିତେ ।
ତୋର ଶରୀରେ ତୁହି ସୁଗନ୍ଧ ଲେପି ହୋଇ
ଅଗ୍ନିରେ ସ୍ନାନ ତୁ ଗୋ କରିବୁ ଚନ୍ଦ୍ରମୁହିଁ ।
ତେବେ ଗୋ ଶରୀର ତୋର ହୋଇବ ନିର୍ମଳ
ପରମ ସାଧବୀ ବୋଲି ବୋଲିବେ ସକଳ ।
ତେବେ ତୋର ପିତା ସିନା ନିୟତ କରିବ
ଶିବଧନୁ ଯେ ଭାଙ୍ଗିବ ତୋତେ ତାକୁ ଦେବ
ଶୁଣିଣ ମନରେ ମୁଁ ହରଷ ହୋଇଲି
ମୁନିଙ୍କ ଚରଣେ ମୁଁ ଓଳଗି ହୋଇଲି ।
ସେ ଋଷି ମୋତେ ଯେ କଲେ ସୁକଲ୍ୟାଣ
ବୋଇଲେ ବାସୁଦେବଙ୍କୁ ବେଗେ ଲଭ ପୁଣ
ଏଥୁ ଅନନ୍ତରେ ଗୋ ଶୁଣ ଶାକମ୍ଭରୀ
ଅନେକ ଋଷି ଯେ ସେଠାରେ ଥିଲେ ମେଳି ।
ସମସ୍ତେ ଜାଣିଲେ ସେ ଦୁର୍ବାସା କହିବାରୁ
ବିଚାରିଲେ ଏକଥା ଅଟେ ମହାମେରୁ ।
ଦୁର୍ବାସାଙ୍କୁ ଗଉରବ କରିଣ ସେ ରଖିଲେ ।
ପିତାଙ୍କୁ ପଚାରି ଯେ ମୋର ନାମ ଦେଲେ ।
ବୋଇଲେ ହେ ଭୂମିରୁ ଦୁହିତା ହେଲା ଜାତ
ସୀତା ନାମ ଏହାର ହୋଇଲା ଏବେତ ।
ନାମ ଦେଇ ଋଷିମାନେ ହରଷ ହୋଇଲେ
ମୋର ପିତାଙ୍କୁ ସେ ଡାକିଣ କହିଲେ ।
ବୋଇଲେ ଦୁହିତା ତୋର ହେଲା ଯୁବାପୁଣ
ନିକାଞ୍ଚନ ସ୍ଥାନରେ ରଖ ନୃପରାଣ ।
ଚଉଦିନେ ଶଉଚ ହେବ ତୋ କୁମାରୀ
ତେବେ ସେ ତୋର ପୁରେ ବିହରଣ କରି ।
ଦୁର୍ବାସା କହିଲେ ତାର ଦୁହିତା ଗୁଣମାନ
ନିଶ୍ଚୟ କମଳା ସେ ଅଟଇ ସୀତା ଜାଣ ।
ଶୁଦ୍ଧସ୍ନାନ ଦିନ ତୋର ଦୁହିତା ସ୍ନାନ କରି
ଅଗ୍ନିରେ ସ୍ନାନ ଯେ କରିବ ବିଷ୍ଣୁନାରୀ ।
ତେବେ ସେ ତାର ଅଙ୍ଗ ହୋଇବ ପବିତ୍ର
ବ୍ରହ୍ମଋଷି ବଚନେ ଜାଣିଲେ ସମସ୍ତ ।
ଏମନ୍ତ କହିବାରୁ ପିତା ମୋର ଗଲା
ମୋତେ ଘେନି ଜନନୀର ଆଗରେ ମିଳିଲା ।
ସର୍ବକଥା ଜନନୀ କହିଲା ମୋହର
ନିକାଞ୍ଚନ ଘରେ ମୋତେ ରଖିଲେ ମାତା ମୋର
ଯାଗଶାଳ ସେଠାରୁ ଶୋଧାବନ୍ଧ ହେଲା
ସକଳ ଋଷି ଯାଇ ସ୍ନାନ କଲେ ପରା ।

ଦ୍ୱିତୀୟ ସ୍ନାନସାରି ସମସ୍ତେ ତୋଷ ହେଲେ
ଫଳମୂଳ ଭୁଞ୍ଜିଣ ହରଷ ହୋଇଲେ ।
ଏଥୁ ଅନନ୍ତରେ ତୁ ଗୋ ଶୁଣ ଭଗବତୀ
ସେଥିରେ ଚରିଦିନ ବହିଗଲା ସେଥି ।
ଜାନକୀ ନିମଗ୍ନ ଘରରୁ ବାହାରିଲେ
କର୍ପୁର ଚନ୍ଦନ ଯେ ଅଙ୍ଗରେ ବୋଳିହେଲେ
ହଳଦୀ ଗୁଆ ଘୃତ ଯେ ଅଙ୍ଗରେ ଲେପିଣ
ଦାସୀଗଣ ଘେନି ମୁଁ ଯେ ବାହାରି ଆସେ ପୁଣ
ଋଷିଗଣମାନେ ମୋର ସ୍ନାନ ଦେଖିବାକୁ
କାଠ ଲଗାଇଣ ଲଗାନ୍ତି ଅନଳକୁ ।
ପ୍ରଜ୍ୱଳିତ ହୋଇ ଯହୁଁ ଜଳିଲା ବହ୍ନି
ଦୁର୍ବାସା ବୋଇଲେ ସୀତା ଶୁଣ ମୋର ବାଣୀ
ପଶ ତୁ ଅନଳରେ ହୁଅ ତୁ ନିର୍ମଳ
ଦେଖନ୍ତୁ ସର୍ବଋଷି ତୋହରି କଥା ଭଲ ।
ତେବେ ତୋର କଥା ଯେ ବିଖ୍ୟାତ ହୋଇବ
ଏ ଜନ୍ମେ ବାସୁଦେବ ଜନ୍ମିବେ ନିଶ୍ଚେ ଶୁଭ
ଶୁଣିଣ ସେ ବଚନ ପରମ ତୋଷ ହେଲି
ଅନଳର ଭିତରେ ଯାଇଣ ପଶିଲି ।
ଅଗ୍ନିଦେବତା ମୋତେ କହିଲେ ସେଥିରେ
ତୋର ସ୍ୱାମୀ ଜାତ ହେଲେ ଅଯୋଧ୍ୟାନଗରେ
ଦଶରଥ ଜ୍ୟେଷ୍ଠପୁତ୍ର ନାମ ତାର ରାମ
ଭରତ ଶତୃଘନ ଲକ୍ଷ୍ମଣ ଭାଇ ପୁଣ ।
ଚତୁର୍ଦ୍ଧା ମୂରତି ଯେ ହୋଇଲେ ବାସୁଦେବ
ଦଶରଥ କାଳରେ ଜନମ ସର୍ବଶୁଭ ।
ଏଗାର ବରଷ ଷଡ଼ମାସରେ ତୋତେ ବିଭା ହେବେ
ଶିବଧନୁ ଭାଙ୍ଗି ସେ ତୋତେ ଘେନିଯିବେ ।
ଅସୁର ମାରିବାକୁ ହୋଇଛନ୍ତି ଜାତ
ଦେବତାମାନଙ୍କୁ ଯେ କରିବେ ନିଶ୍ଚିନ୍ତ ।
ଏମନ୍ତ ବଚନ ମୋତେ ଅନଳଦେବ କହି
ପୁଣି ବୋଇଲେ ଏ କଥା ପ୍ରତେ ରଖ ଯାଇ ।
ରାମ ଲକ୍ଷ୍ମଣଙ୍କୁ ତୁ ଦେଖିବୁ ଯେତେବେଳେ
ମୋର କଥା ସତ ବୋଲି ମାନିବୁ ସେକାଳେ ।
ଏତେ କହିକରି ଯେ ମୋତେ ଶାଢ଼ୀ ଦେଲେ
ପିନ୍ଧ ଗୋ କମଳିନୀ ବୋଲିଣ ବୋଇଲେ ।
ଅନଳର ବଚନରେ ପିନ୍ଧିଲି ମୁଁ ଶାଢ଼ୀ
ଅଗ୍ନିର ଭିତରୁ ମୁଁ ଅଇଲି ବାହୁଡ଼ି ।

ଗତୁଁ ଶତେ ଗୁଣ ମୁଁ ହୋଇଲି ଉଜ୍ଜ୍ୱଳ
ଦେଖିଣ ସକଳ ଋଷି ମନରେ ନିର୍ମଳ ।
ସକଳ ଋଷିଙ୍କି ମୁଁ ନମସ୍କାର ହେଲି
ଜନନୀ ଆଗରେ ମୁଁ ଯାଇଣ ମିଳିଲି ।
ଦେଖିକରି ଜନନୀ କୋଳରେ ବସାଇଲେ
ମୁଖରେ ଚୁମ୍ବ ଦେଇ ଶୀତଳ କହିଲେ ।
ଦଧିଅନ୍ନ ମୋତେ ଆଣି ଦେଲେ ପୁଣ
ଭୋଜନ କରି ମୁଁ ଯେ ହେଲି ତୋଷମନ ।
ସହସ୍ରେ ଦାସୀ ମୋତେ ଖଟିବାକୁ ଆଣି ।
ଜନନୀ ସମର୍ପିଲା ମୋହର ପାଶେ ପୁଣି ।
ଦାସୀମାନେ ମୋତେ ଯେ କଲେକ ଆଦର
ସମସ୍ତେ ଖଟିଥାନ୍ତି ଚରଣେ ଆମ୍ଭର ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଗଉରୀ
ସୀତୟା ସେଠାରୁ ଯେ ଗଲେ ଅନ୍ତଃପୁରୀ ।
ପିତା ଜନକ ତାର ଋଷିମାନଙ୍କୁ କହି
ତୁମ୍ଭେ ସମସ୍ତ ଋଷି ଅଛ ମେଳ ହୋଇ ।
ଏ ଦୁହିତା ମୋର ଜନ୍ମରୁ ଯୁବା ହେଲା
ଅଶଉଚ ହେବାରୁ ଅଗ୍ନିରେ ସ୍ନାନ କଲା ।
ଦୁର୍ବାସା ଋଷି ବୋଇଲେ ଅଟଇ କମଳିନୀ
ସ୍ୱାମୀ ଜାତ ନୋହୁ ସୀତା ଜାତ ପୁଣି ।
କେମନ୍ତେ ନାରାୟଣ ମୁଁ ଚିହ୍ନିବି ପୁଣ
ଅନେକ ପ୍ରତାପୀ ଅଟନ୍ତି ପୁରେଣ ।
ଏଥି ସକାଶରେ ମୋର ମନ ହୋଇ
ପ୍ରମାଣ କଲେ ସିନା ବିଷ୍ଣୁଙ୍କୁ ଦେଖିବଇଁ ।
ଶିବ ଶରାସନ ଯେ ଅଛି ମୋର ପୁରେ
ପ୍ରମାଣ କରୁଛି ମୁଁ ତୁମ୍ଭର ଆଗରେ ।
ଯେ ଧନୁକୁ ଧରିବି ତାକୁ ଦେବି ସୀତା
ଏ କଥା ଗୋଟି ମୋର ନିୟମ ଜଗଜ୍ଜିତା ।
ଶୁଣିଣ ସକଳ ଋଷି ସନ୍ତୋଷ ହୋଇଲେ
ଧନୁଯାଗ କରି ବୋଲି ସକଳ ବୋଇଲେ
ଦୁର୍ବାସା ବୋଇଲେ ଶୁଣ ହେ ଜନକ
ବରଷକେ ଧନୁଯାଗ କର ତୁମ୍ଭେ ଏକ ।
ଯାଗରେ ସ୍ୱୟମ୍ବର କରିବ ତୁମ୍ଭେ ପୁଣ
ପ୍ରଜାଗଣେ ବରଣ କରିବ ଋଷିଗଣ ।
ନରବାନର ଅସୁର ଆସିବେ ଏଥେ ପୁଣ
ଯେ ଶରାସନ ଧରିବ ସେହି ନାରାୟଣ ।

ତାହାକୁ ଜାଣିକରି ହେବୁଟୁ ଦୁହିତା
ତେବେ ତୁ ବାସୁଦେବ ଦେଖିବୁ ଜଗଜ୍ଜିତା ।
ଶୁଣିକରି ପିତା ମୋର ମୁନିଙ୍କ ବଚନ
ବରଷକେ ସ୍ୱୟମ୍ବର କରନ୍ତି ରାଜାପୁଣ ।
ଏଗାର ବରଷଯାଏଁ କଲେ ସ୍ୱୟମ୍ବର
ପ୍ରଥମେ ଲକ୍ଷେ ରାଜା ଅଇଲେ ସେ ପୁର ।
ଶରାସନ କେହି ଯେ ନ ପାଇଲେ ତୋଳି
ଶିବ ଶରାସନକୁ ସମସ୍ତେ ଗଲେ ଡରି ।
ଦ୍ୱିତୀୟ ଚାରିରାବଣ ଅଇଲେକ ପୁଣ
ତିନିପୁର ରାକ୍ଷସଙ୍କୁ ସଙ୍ଗେ ଘେନି ଜାଣ ।
ଶିବ ଧନୁକୁ କେହି ତୋଳି ନ ପାରିଲେ
ତିନିପୁର ରଷି ଆସି ସେଠାରେ ମିଳିଲେ ।
ଶରାସନକୁ ଦେଖି ସମସ୍ତେ ଗଲେ ଘୁଞ୍ଚି
ବାନର ବଳ ଘେନିଣ ବାନର ରାଜା ଆସି ।
ଜଗତେ ବଳିୟାର ଅଟଇ ବାଳୀ ରାଜା
ଶରାସନ ଦେଖିଣ ନ ରହେ ସେହୁ ରାଜା
ସ୍ୱର୍ଗରେ ଦେବତାଏ ବିଚାର କରି ପୁଣ
ସୁର ରାଜା ଘେନିଣ ମିଳିଲେ ସର୍ବେଜାଣ ।
ଶିବ ଶରାସନକୁ ଦେଖିଣ ଭୟକଲେ
ନମସ୍କାର କରିଣ ସ୍ୱର୍ଗପୁର ଗଲେ ।
ନର ନାରାୟଣ ଆସିଲେ ଥରେ ପୁଣ
ଛୁଅନ୍ତେ ଶରାସନ ହେଲା ହତଜ୍ଞାନ ।
ଦଣ୍ଡେ ନ ରହିଣ ସେହୁ ପଳାଇଣ ଗଲେ
ପର୍ଶୁରାମ ଅଇଲେ ଜାଣିଣ ଏକବେଳେ ।
ଶରାସନ ଧରନ୍ତେ ହୋଇଲେ ଅଜ୍ଞାନ
ଚେତନା ପାଇଣ ସେ ପଳାଇ ଗଲା ପୁଣ ।
ଏହିମତେ ଦଶବରଷ ସ୍ୱୟମ୍ବର ଗଲା
ଏଗାର ବରଷ ଆସି ପ୍ରବେଶ ହୋଇଲା ।
ଯାଗ କରିବାକୁ ଯେ ବିଶ୍ୱାମିତ୍ର ମନ
ତିନିଥର ପରିଯନ୍ତେ କଲାକ ଭିଆଣ ।
ତାହାର ବଳକୁ ଅସୁର ବଳ ନାଶି
ସକଳ ପଦାର୍ଥ ଯେ ଯୂର କଲେ ଆସି ।
ଦେଖିକରି ବିଶ୍ୱାମିତ୍ର ମନେ କ୍ରୋଧ ହେଲା
କେ ରଖିବ ଯାଗ ବୋଲି ଯୋଗରେ ବସିଲା
ଜାଣିଲେ ଦଶରଥର ଘରେ ନାରାୟଣ
ଅସୁର ମାରିବାକୁ ହୋଇଛନ୍ତି ଜନ୍ମ ।

ତେଣୁ କରି ଅଯୋଧ୍ୟା ପୁରକୁ ବେଗେ ଗଲା
ଦଶରଥଙ୍କୁ କହିଣ ରାମ ଲକ୍ଷ୍ମଣେ କହିଲା ।
ବାଟରେ ଧନୁର୍ବିଦ୍ୟା ଦେଲା ତାଙ୍କୁ ପୁଣ
ବାଟରେ ତାଡ଼କୀ ମାଇଲେ ରାମରାଣ ।
ତାଡ଼କୀର ଭାଇ ଯେ ତାଡ଼କା ନାମେ ସୁର
ଜନ୍ମକାଳେ ମାଇଲେ ଈଶ୍ୱରଙ୍କ ବାଳ ।
ସେଠାରୁ ଶ୍ରୀରାମ ଯେ ଯାଗ ରକ୍ଷା କଲେ
ନବକୋଟି ଅସୁର ସେଥିରେ ମାରିଲେ ।
ଯାଗ ପୂର୍ଣ୍ଣ ହେବାରୁ ରଷି ସଙ୍ଗେ ତାଙ୍କୁଘେନି
ମିଥିଳା ନଗରକୁ ଅଇଲେ ବେଗେ ପୁଣି ।
ଗଉତମ ସାପରେ ଅହଲ୍ୟା ପାଷାଣ
ପାଷାଣେ ଚରଣ ଲଦି ମନୁଷ୍ୟ କଲେ ପୁଣ
ଗଉତମ ରଷି ଆଗରେନେଇ ଦେଲେ
ଦେଖିକରି ଗଉତମ ଅନେକ ତୋଷ ହେଲେ
ସେଠାରୁ ମିଥିଳାପୁରେ ହେଲେ ପରବେଶ
ଶିବଧନୁ ଦେଖିଣ ଧଇଲେ ରଘୁଶିଷ୍ୟ ।
ଗୁଣ ଚଢ଼ାଇଣ ଟଙ୍କାର ନାଦ କଲେ
ଧନୁ ଆମଞ୍ଚିଣ ଶରାସନକୁ ଭାଙ୍ଗିଲେ ।
ତେଣେ ସେ ପିତାରମୋର ନିୟମ ପୂର୍ଣ୍ଣହେଲା
ଦଶରଥ ରାଜାଙ୍କୁ ଡକାଇ ଆଣିଲା ।
ଚାରି ଭାଇଙ୍କ ଚାରି ଦୁହିତା ବିଭାଦେଲେ
ଶ୍ରୀରାମଙ୍କ ପାଶରେ ନେଇ ସମର୍ପିଲେ ।
ସେଠାରୁ ଶ୍ରୀରାମ ଯେ ନିଜ ପୁରେ ଗଲେ
ବାଟରେ ପର୍ଶୁରାମଙ୍କୁ ଭେଟରେ ଜିଣିଲେ ।
ଅଯୋଧ୍ୟାରେ ବେନି ବରଷ ରହି ପୁଣ
ରାଜ୍ୟ ଦେବାକୁ ପିତା ବିଚାର କଲେ ମନ ।
ଭରତର ଜନନୀ ସତ୍ୟ କରାଇଲା
ଶ୍ରୀରାମ ବନ ଯାଉ ବୋଲିଣ ବୋଇଲା ।
ଚଉଦ ବରଷ ମୋ ଭ୍ରତ ହେବ ରାଜା
ସେ କଥା ଶୁଣି ଶ୍ରୀରାମ ଅଯୋଧ୍ୟା କଲେ ତେଜ୍ୟା
ଚିତ୍ରକୂଟ ପର୍ବତେ ରହିଲୁଁ ଆସି କରି
ବାରଦିନେ ମୋ ଶ୍ୱଶୁର ନ ଦେଖି ଗଲେମରି
ଭରଥ ଶତ୍ରୁଘନ ଅଜାଘରେ ଥିଲେ
ବଶିଷ୍ଠ ତାଙ୍କଠାକୁ ଦୂତ ବରଗିଲେ ।
ଅଠର ଦିନେ ସେମାନେ ପାଇଲେ ବାରତା
ଅଯୋଧ୍ୟାକୁ ଆସିଣ କଲେ ବଡ଼ ଚିନ୍ତା ।

ଆସି ପିତାଙ୍କୁ ଅଗ୍ନିରେ ଭସ୍ମ କରାଇଲେ
ଭାଇଙ୍କୁ ନେବେବୋଲି ବନକୁ ଅଇଲେ ।
ସତ୍ୟ ଲଘି ଶ୍ରୀରାମ ଯେ ନଗଲେ ଅଯୋଧାକୁ
ବଶିଷ୍ଠ କହିଲେ ଯେ ଶ୍ରୀରାମଚନ୍ଦ୍ରଙ୍କୁ ।
ବୋଇଲେ ଭରଥ କେବେହେଁ ରାଜା ନୁହେଁ
ବୁଝାଇ ଆମ୍ଭେମାନେ କହିଲୁଁ ଯେ ସ୍ନେହେ ।
ଭାଇ ତୋର ଭରଥ ଆମ୍ଭଙ୍କୁ ବୋଇଲା
ସିଂହର ସ୍ଥାନକୁ ଶୃଗାଳ ରାଜି ହେଲା ।
ମୁହିଁ ତାର ଦାସ ସେ ଅଟେ ମୋର ପ୍ରଭୁ
ଯାହାର ନାମଗୋଟି ଅଟଇ କୃପାସିନ୍ଧୁ ।
କେଉଁ ରାମ ନାମ ତାରକା ମନ୍ତ୍ର ହୋଇ
ସେହି ରାମ ନାମ ଜପି କାକ ଅମର ହୁଅଇ ।
ଯେଉଁ ନାମ ଈଶ୍ୱର ବ୍ୟାଧିକି କ୍ଷମାକଲା
ସେହି ରାମନାମ ଘୋଷି ଗୋହତ୍ୟା ପାରଗଲା
ମାତୃହରଣ ଦୋଷ ସେହି ନାମରେ ପାରଯାଇ
ତାହାର ସିଂହାସନ ମୋତେ ଯେ ଯୋଗାଇ ।
ସିଂହାସନ ଉପରେ ବସିଲେ ଯାଇ କ୍ଷଣେ
ଶରୀର ଫାଟିଯିବ ନରହିବ ଏଣେ ।
ଏମନ୍ତ ବୋଲିଣ ସେ କହିଲେ ସଦଜ୍ଞାନ
କେବେହେଁ ରାଜା ଯେ ନୁହଇ ଭ୍ରଥ ପୁଣ ।
ଶୁଣିକରି ରମା ତାହାକୁ ଦୟାକଲେ
ପିତା ସତ୍ୟ ଲଙ୍ଘିତ ମୁଁ ନୋହିବି ବୋଇଲେ
ଚରଣ ପାଦୁକା ସେ ତାର ହସ୍ତେ ଦେଲେ
ଏ ପାଦୁକା ରାଜାକର ବୋଲିଣ ବୋଇଲେ ।
ଶୁଣିଣ ଭରଥ ସେ ପାଦୁକା ଘେନି ଚଳି
ଅଯୋଧା ନଗ୍ରରେ ମିଳିଲେ ଯାଇ କରି ।
ଶ୍ୱେତ ଛତ୍ର ଟେକାଇ ପାଦୁକା ରାଜା କଲେ
ଲୀଳାବତୀ ଜନନୀକୁ ରାଜ୍ୟ ସମର୍ପିଲେ ।
ଚିତ୍ରକୂଟ ଗିରିପରେ ରହିଲୁଁ ଚାରିମାସ
ସେଠାରୁ ତୁମ୍ଭ ମଠରେ ହେଲୁଁ ପରବେଶ ।
ଋଷିଆଣୀ ବୋଇଲେ ତୁ କିମ୍ପା ନରହିଲୁ
ଝାଡ଼ବନସ୍ତ କନ୍ଦର କିମ୍ପାଇ ଅଇଲୁ ।
ଜାନକୀବୋଇଲେ ମୋର ସ୍ୱାମୀରେ ସ୍ନେହ ହେଲା
ଅଯୋଧା ନବରେ ମୋର ମନ ନ ରହିଲା ।
ଶୁଣିକରି ଋଷିଆଣୀ ବୋଲନ୍ତି ବଚନ
ବନରେ ଅନେକ କଷ୍ଟ ପାଇବୁ ଯେ ପୁଣ ।

ଏମନ୍ତେ ବେନିଜନ କଥା ସେଥି ହେଲେ
ସେହିଠାରେ ଜାନକୀ ଯେ ବିଳାପ ପୁଣ କଲେ
ଋଷିର ଝିଅ ମୁଁ ଯେ ରାଜାର ଭୁଆସୁଣି
ରାମ ରାଜା ହୋଇଥିଲେ ହୁଅନ୍ତି ପାଟରାଣୀ ।
ସେମାନେ ମୋର ଏବେ କେଉଁକତି ଗଲା
ବିଧାତା ଆଣି ମୋତେ ବନରେ ବୁଲାଇଲା ।
ଅନୁଛାୟା ବୋଇଲେ ନ ଭାଳ ଗୋ ସତୀ
ଜଗତର କରତା ଅଟନ୍ତି ତୋର ପତି ।
ରାଜପଣ ତାହାକୁ ନୁହଇ ଅପୂରୁବ
ବନସ୍ତକୁ ଆସିଅଛି ଅସୁର ନାଶିବ ।
ତୁହି ଏବେ ଚିନ୍ତା ଗୋ ନକର ଶଶୀମୁଖି
ଦେହ ବହିଥିଲେ ସୁଖ, ଦୁଃଖ ଲାଗିଅଛି ।
ଯେବଣ ସ୍ୱାମୀଙ୍କର ଧରିଛୁ ତୁ ହସ୍ତ
ଜଗତ ସଂସାରକୁ ଅଟନ୍ତି ସେ ନାଥ ।
ତୁ ଅଟୁ କମଳା ଯେ ବରୁଣ ଦୁଲ୍ଲଣୀ
ଲକ୍ଷ୍ମଣ ଦିଅର ଅଟେ ଶୂଳଧାରୀ ପୁଣି ।
ଭ୍ରଥ ଦିଅର ତୋର ସୁଦର୍ଶନ ଚକ୍ର ।
ଶତ୍ରୁଘନ ଅଟେ ଯେ ଡାହାଣ ବ୍ରତ ଶଙ୍ଖ ।
ଦଶରଥ ରାଜା କଶ୍ୟପ ଋଷି ପୁଣ
କଉଶଲ୍ୟା, କୈକେୟୀ, ସୁମିତ୍ରା ତିନି ଜାଣ ।
ହେତୀ ଯେ ପ୍ରହେତୀ ଜନମିଛନ୍ତି ପୁଣ
ସବୁଦିନେ ଦେବଙ୍କର ଜନନୀ ହେତୀ ଜାଣ ।
ପ୍ରହେତୀ ଅଟଇ ଯେ ଅସୁରଙ୍କ ମାତା
ଦୁଇ ସପତଣୀଙ୍କର ଏମନ୍ତ ବ୍ୟବସ୍ଥା ।
ତେଣୁ କୈକେୟୀରାଣୀ ଅଟଇ ଅସହଣି
ତୋହର ଗିରସ୍ତକୁ ଛନ୍ଦ କଲା ପୁଣି ।
ଦେବେ ଉପାୟ କଲେ ଅସୁରଙ୍କ ପାଇଁ
ସ୍ୱୟଂ ନାରାୟଣ ଯେ ଅଟନ୍ତି ତୋର ସାଇଁ ।
ତୁ କିମ୍ପା ମହାସତୀ ଦୁଃଖ ମନେଧରୁ
ତୋର ଇଚ୍ଛାକଲେ ଗୋ ବ୍ରହ୍ମାଣ୍ଡ ଦହିପାରୁ ।
ତୁହି ତ କମଳା ଗୋ ବିଷ୍ଣୁ ପାଟରାଣୀ
ନିର୍ମଳ ବଦନ ତୋର ଦୁଃଖ ବିନାଶିନୀ ।
ବୈକୁଣ୍ଠ ଠାକୁରାଣୀ ଅଟୁ ତୁହି ପୁଣ
ତୋତେ ଯେ ସୁମରନ୍ତି ସକଳ ତପିଜନ ।
ତୁ ବୋଇଲୁ ବିଧାତା ପେଷିଲା ମୋତେ ବନ
ଦେବତାଏ ଭିଆଣ କରୁଛନ୍ତି ଜାଣ ।

କହିକରି ଅନୁଛାୟା ତୁନି ଯେ ହୋଇଲେ
ଜନକ ଦୁହିତା ପୁଣି ତାହାଙ୍କୁ ପଚାରିଲେ ।
ନୋହିଲେ ଜନନୀ ତୁମ୍ଭେ ଜାଣିଲ କେଉଁଠାରୁ
ସଞ୍ଚପି କରି କହ ମୋର ମନ ସ୍ଥିରୁ ।
ଅନୁଛାୟା ବୋଲେ ଶୁଣ ଆଗୋ ମାତ
ଏଠାକୁ ଦିନେ ଆସେ ସନାତନ ସୁତ ।
ତାଙ୍କ ସଙ୍ଗେ ଅଇଲେ ବହୁତ ଋଷିଗଣ
ନାରଦ ବ୍ୟାସଦେବ ଅଙ୍ଗିରା ଭୃଗୁ ଭୂଷଣ ।
ବୋଇଲେ ଦେବତାଏ ନିଶ୍ଚିନ୍ତ ହୋଇବ
ଦଶରଥ ଘରେ ଜାତ ହେବେ ବାସୁଦେବ ।
ଦେବତାଙ୍କୁ ସୁଖଦେଇ ଅସୁର ନାଶିବେ
ବନସ୍ତରେ ଋଷିଗଣ ନିଶ୍ଚିନ୍ତେ ରହିବେ ।
ଦୁଷ୍ଟଙ୍କୁ ନିବାରି ଯେ ସନ୍ଥଙ୍କୁ ରଖେ ପୁଣ
ଚତୁର୍ଦ୍ଧାରୂପେ ଜାତ ପ୍ରଭୁ ନାରାୟଣ ।
ତାଙ୍କଠାରୁ ଏ ବଚନ ଶୁଣିଅଛି ପୁଣି
ସେଦିନୁ ଜାଣିଛି ମୁଁ ଅଟୁ ତୁ ଠାକୁରାଣୀ ।
ଅଭୂଷଣ ଋଷିଙ୍କର ସବୁକଥା ସତ
ବ୍ରହ୍ମା ହେଲା କାଳରେ ସେ ହୋଇଛନ୍ତି ଜାତ ।
ଏତେବୋଲି ଅନୁଛାୟା ଭିତର ପୁରଗଲେ
ଚୁମ୍ବନ ଦେଇ ସୀତାଙ୍କୁ ପ୍ରବୋଧି କହିଲେ ।
ଆଶ୍ୱାସନା ପାଇ ଦେବୀ କଲେ ନମସ୍କାର
ସୁଲକ୍ଷଣୀ, ସାଧବୀ ହୋଇ ଯିବ ନିଜପୁର ।
ଭିତର ପୁରକୁ ସେ ଅନୁଛାୟା ଗଲେ
ଅମଳାଣ ଶାଢ଼ୀ ସୀତା ହସ୍ତରେ ନେଇ ଦେଲେ ।
ଷୋଡ଼ଶବିଧି ପ୍ରକାରେ ସୀତାଙ୍କୁ ପୂଜାକରି
ବହୁତ ପ୍ରଶଂସା ସୀତାଙ୍କୁ ଅନୁଛାୟା କରି ।
ବୋଇଲେ ବସନ ସୁରଙ୍ଗ ପାଟଶାଢ଼ୀ
ଅମଳାଣ ବସନ ମଳିନ ନୁହେଁ ଫେଡ଼ି ।
ଚିକ୍‌କଣ ଲାଗିଲେ ହୁଏ ବଡ଼ଉଜ
ପିନ୍ଧିଲେ ପ୍ରତିଦିନ ଦିଶୁଥାଇ ତେଜ ।
ଅଗ୍ନି, ପବନ ଜଳରେ ନୁହଇ ମଳିନ
ସମୁଦ୍ର ମନ୍ଥନ କାଳେ ଏ ଶାଢ଼ୀ ଜାତପୁଣ ।
ବେଦବରଙ୍କୁ ନେଇ ଦେବରାଜ ପୂଜାକଲା
କାଳେଣ ବିଧାତା ଯେ ଏ କଷ୍ଟଆଣି ଦେଲା ।
ମର୍ତ୍ତ୍ୟପୁରେ ଶ୍ରେଷ୍ଠତୀର୍ଥ ଅଟଇ ପ୍ରୟାଗ
ସେହିଠାରେ ବିଚରି ବ୍ରହ୍ମାକଲେ ଯାଗ ।

ସେ ଯାଗରେ ଆଚର୍ଯ୍ୟ ହେଲେ ମୋର ସ୍ୱାମୀ
ବରଣ କଲେ ମୁନି ବିଧାତା ତୋଷେ ପୁଣି ।
ଦୁଇଖଣ୍ଡ ଶାଢୀ ଦୁଇଖଣ୍ଡ ବସନ ବ୍ରହ୍ମା ଦେଲା
ନୀଳ, ଧବଳ ଯେ ଦିଶେ ବଡ଼ ତ୍ୱରା ।
ଦେଇଣ ବିଧାତା ଯେ ବୋଇଲେ ବଚନ
ଏତିନି ଶାଢ଼ୀ ନିର୍ମଳ ଅଟେ ତୁମ୍ଭେ ଜାଣ ।
ପ୍ରତିଦିନ ଧୋଇଲେ ଯେ ଦିଶୁଥିବ ଉଜ୍ଜ
ଶତେ ବରଷ ଯାଏ ବଳାଉଥିବ ତେଜ ।
ଏ ତିନି ବସନକୁ ଯତନେ ରଖିଥିବୁ
ଯେ ଯେବେ ମାଗିଲେ ତୁମ୍ଭେ କାହାକୁ ନଦେବୁ ।
ନମସ୍କାର କରି ସୀତା ଘେନିଏ ଦେଲେ
ଅମୃତ ପାକ ନେଇ ସୀତାର ଛୁଆଁଇଲେ ।
ଏ ବସ୍ତ୍ରଥିଲେ ଦେଖିବୁ ନାରାୟଣ ଲକ୍ଷ୍ମୀଧରା
ଏତେକହି ସମର୍ପିଲେ ସୋଧା ଅତି ତ୍ୱରା ।
ଶ୍ରୀହରିଙ୍କି ଦେଖଣେ ମୁକତ ହୋଇଯିବୁ
ଅନ୍ତେ ବଇକୁଣ୍ଠରେ ଯାଇଣ ବସିବୁ ।
ଯୋନିର ଦୁଆରେ ଆଉ ଜନମ ନୋହିବୁ
ଅଯୋନି ସମ୍ଭୂତରେ ସକଳ ଜାଣିବୁ ।
ସେ ଯାଗକୁ ସମାପତି କରି ତପସ୍ୱରୀ
ଅତି ଯତନରେ ମୋତେ ଆଣିଦେଲେ ଶାଢ଼ୀ
ବୋଇଲେ ଅନୁଛାୟା ସମ୍ଭାଳି ରଖିଥିବୁ
ଶ୍ରୀରାମ ଲକ୍ଷ୍ମଣ ଦେଖିଲେ ଏହାଦେବୁ ।
ମୁଁ ତାକୁ ନ ପିନ୍ଧିଣ ଅଛଇ ସାଇତି
ଗଉରୀ ବିଭାକାଳେ ହେମବନ୍ତକୁ ଗଲିଟି ।
ଏହି ଶାଢ଼ୀ ଗୋଟି ଯେ ମସ୍ତକେ ଉଢ଼ଣ
ଉଢ଼ଣ ଦେଲାବେଳେ ଉଜ୍ଜ୍ୱଳ ଦିଶେ ତ୍ରିଭୁବନ
ବସ୍ତ୍ର ଦେଖି ମାଗିଲେ ହେମବନ୍ତର ଆତ୍ମଜା
ତେଣୁ ହରଗଉରୀ ମୁହିଁ କଲି ପୂଜା ।
ଶଙ୍କର ବୋଇଲେ ଏ ନୋହେ କଥା କିଛି
ବ୍ରହ୍ମା ଏ ବସନ ଋଷିଙ୍କି ଦେଇଅଛି ।
ବେଦବର ମୁନିଙ୍କି ଯାଗରେ ବରିଲା
ଦକ୍ଷିଣା କରି ଶାଢ଼ୀ ତିନିଖଣ୍ଡି ଦେଲା ।
ଦେବବର ଅଟନ୍ତି ଆମ୍ଭର ସୋଦର
ଯାଗରେ ଆଚର୍ଯ୍ୟ ଯେବଣ ମୁନିବର ।
ଆମ୍ଭର ଦାନ ଦେବାର ଅଟେ ଏହୁ ବସ୍ତ୍ର
ଏ ବସ୍ତ୍ରକୁ ଗଉରୀ ନକର ତୁମ୍ଭେ ଆଣି ।

ତୁମ୍ଭେ ମନକଲେ ଦେବ ଭଣ୍ଡାରୁ ଅଣାଇବା
ଇନ୍ଦ୍ରଙ୍କୁ ଗୁହିଁଣ ଯେ ବୋଲନ୍ତି ସୁରଦେବା ।
ଏହି ସଦୃଶରେ ଯେ ବେନି ଶାଢ଼ୀ ଆଣ
ଶୁଣିକରି ସୁରରାଜା ଆଣିଲେ ତକ୍ଷଣ ।
ଏଗାର ଖଣ୍ଡି ଶାଢ଼ୀ ଇନ୍ଦ୍ର ଆଣି ଦେଲେ ଜାଣ
ଗୋଟିଏ ଶାଢ଼ୀ ସେଥିରୁ ଗଉରୀକି ଦେଲେପୁଣ
ବୋଇଲେ ଏ ଶାଢ଼ୀକୁ ତୁମ୍ଭେ ଯେ ପିନ୍ଧିବ
ତୁମ୍ଭର ଶାଢୀ ଗୋଟି ସାଇତି ରଖିବ ।
ଏଗାରଯୁଗରେ ଯେ ଦେଖିବ ନାରାୟଣ
ଦଶରଥ ଘରେ ଜାତ ଚତୁର୍ଦ୍ଧାରୂପେ ଜାଣ ।
ସତ୍ୟରେ ତିନିଜଣ ଯିବେ ବନବାସ
ଦେଖିଲେ ଷଡ଼ବସ୍ତ୍ର ଦେବୁ ହୋଇ ତୋଷ ।
ଜାନୀକିଙ୍କି ଦୁଇଶାଢ଼ୀ ରାମଙ୍କୁ ଦେବୁ ନେଇ
ଦୁଇଗୋଟି ବସନ ଯେ ଲକ୍ଷ୍ମଣଙ୍କୁ ଦେଇ ।
ଦୁଇଭାଇ ଏ ବସନ କାଛଟା ରଙ୍ଗ ପିନ୍ଧି
ବୃକ୍ଷର ବଲ୍‌କଳ ପ୍ରାୟ ସର୍ବଜନ ବୁଝି ।
ଶୁଣିକରି ଗଉରୀ ମନରେ ତୃପତି
ଏ ବସ୍ତ୍ରର ମହିମା ତୁ ଶୁଣିଲୁ ଜାନକୀ ।
ସେ ଦିନରୁ ଶାଢ଼ୀ ସାଇତି ରଖିଅଛି
ତୋହର ଆସିବାକୁ ବାଟ ଗୁହିଁ ଅଛି ।
ମୁନିମାନେ ମେଳହେଲେ ଯେବଣର ଦିନେ
ଶାସ୍ତ୍ରରେ ବଖାଣନ୍ତି ତୋହର ଆଗମନେ ।
ମୁହିଁ ପୁଣି ସାଇତି ଯେ ଶାଢ଼ୀ ଅଛି ଥୋଇ
ମୁକତ ଲଭିଲି ଯେ ବସନ ତୋତେ ଦେଇ ।
ତୁ ମୋତେ ସୁଦୟା ଗୋ କରଟି ଏବେ ସୀତା
ସର୍ବ ଦେବ ଉପରେ ଅଟୁ ତୁ ଯେ ମାତା ।
ଏ ଶାଢ଼ୀ ଯତନ କରି ନିତି ପିନ୍ଧୁ ଥିବୁ
ଯେଉଁ ଦିନ ଶାଢ଼ୀକି ତୁହି ନ ପିନ୍ଧିବୁ ।
ମୋହର ବୋଲ ମାଗେ ଥିବୁ ପ୍ରତିପାଳି
ଯେଉଁ ଦିନ ନ ପିନ୍ଧିବୁ ଜନକ କୁମାରୀ ।
ସେ ଦିନ ତୋତେ ଯେ ବିପତ୍ତି ପଡ଼ିବ
ଏ ମୋହର ବଚନ ପ୍ରତିପାଳି ଥିବ ।
ବନବାସ ସରିବାଯାଏ ଶାଢ଼ୀ ପିନ୍ଧୁଥିବୁ
ବନବାସ ସରିଲେ ତୁ ପାଟରେ ବସିବୁ ।
ଯେତେବେଳେ ତୋତେ ନୂତନ ଶାଢ଼ୀ ମିଳି
ଏ ଶାଢ଼ୀ ସାଇତିବୁ ଯତନ ଭାବ କରି ।

ବୈକୁଣ୍ଠପୁର ଗଲେ ବଧୂଙ୍କୁ ଦେଇଯିବୁ
ଏ କଥା ଗୋଟି ଜାନକୀ ପାସୋର ନ କରିବୁ
ବନବାସେ ଏକଦିନ ନ ପିନ୍ଧିଲେ ପୁଣ
ଚଉଦ ମାସ ବନ୍ଦିରେ ପଡ଼ିବୁ ନିଷ୍ଚେ ଜାଣ ।
ଜାନକୀ ବୋଇଲେ ଯେବେ ହେବ ଅଶଉଚ ।
ଏ ଶାଢ଼ୀକି ପିନ୍ଧିବି କେମନ୍ତେ ନିଅତ ।
ଅନୁଛାୟା ବୋଇଲେ ତହିଁରେ ଦୋଷ ନାହିଁ
ଅଗ୍ନି ସ୍ନାନ କଲାବେଳେ ଉଜ୍ଜଳ ହେବ ସେହି
ସର୍ବଦା ନୂଆ ଯେ ପୁରୁଣା ନୋହେ ଶାଢି
ପିନ୍ଧିଲେ ଜଗତ ଯେ ମୋହରି ଏକୁ ବଡି ।
ଶତେ ବରଷରେ ନ ଲାଗେ ଏଥେ ମଳି
ଇଚ୍ଛା ହେଲେ ଅଗ୍ନିରେ ଦେବୁତୁ ପଖାଳି ।
ତୋର ମନ ଯେବେ ହୋଇବ ଗୋ ସୀତା
ଅଗ୍ନିରେ ପଖାଳିବୁ ତୁ ନୁହଇ କଥା ମିଥ୍ୟା ।
ବାର ଆଦିତ୍ୟର ପ୍ରାୟେ ଏହାର ବର୍ଣ୍ଣ ଦିଶି
ବସ୍ତ୍ରକୁ କରେ ଧରିଣ ସୀତା ଦେବୀ ହସି ।
ଏତେକହି ଅନୁଛାୟା ଗଲେ ଭିତରକୁ
ପଥର ଗୋଟି ଦେଲେ ଆଣି ସୀତୟାଙ୍କୁ ।
ବୋଇଲେ ଏ ପଥର ସଙ୍ଗତେ ରଖିଥିବୁ
ପାକ ସମ୍ପାଦି ସାରିଲେ ସେଥିରେ ଛୁଆଁଇବୁ
ସର୍ବଦା ନୂଆ ଯେ ପୁରୁଣା ନୋହେ ଶାଢୀ
ପିନ୍ଧିଲେ ଜଗତ ଯେ ମୋହର ଏକୁ ବଢ଼ି ।
ଶତେ ବରଷରେ ନଲାଗେ ଏଥି ମଳି
ଇଚ୍ଛା ହେଲେ·ଅଗ୍ନିରେ ଦେବୁଟି ପଖାଳି ।
ତୋର ମନ ଯେବେ ହୋଇବ ଗୋ ସୀତା
ଅଗ୍ନିରେ ପଖାଳିବୁ ତୁ ନୁହଇ କଥା ମିଥ୍ୟା ।
ବାର ଆଦିତ୍ୟ ପ୍ରାୟେ ଏହାର ବର୍ଣ୍ଣ ଦିଶି
ବସ୍ତ୍ରକୁ କରେ ଧରିଣ ସୀତା ଦେବୀ ହସି ।
ଏତେ କହି ଅନୁଛାୟା ଗଲେ ଭିତରକୁ
ପଥର ଗୋଟି ଆଣି ଦେଲେ ସୀତୟାଙ୍କୁ ।
ବୋଇଲେ ଏ ପଥର ସଙ୍ଗେ ରଖିଥିବୁ
ପାକ ସମ୍ପାଦି ସାରିଲେ ସେଥିରେ ଛୁଆଁଇବୁ ।
ଫଳ ମୂଳ ମାଏଁସ ରାନ୍ଧିଲେ ସ୍ୱାଦହେବ
ମସଲା ଲୁଣ ବେଶ୍ୱର ଦେଲାପ୍ରାୟେ ଯେ ଲାଗିବ
ଶାଢୀ ପଥର ଯେ ଜାନକୀ କରେ ଧରି
ଅନୁଛାୟା ଜନନୀଙ୍କି ନମସ୍କାର କରି ।

ପୁଣି ପଚାରିଲେ ଯେ ଜନକ କୁମାରୀ
ବ୍ରହ୍ମା ବିଷ୍ଣୁ ସଦାଶିବ ଅଟେ ଏକସରି ।
ଭୋ ମାତ ମାହେଶ୍ୱରୀ କହିଲ ଯା ସତ
ମୁଁ କେଣେ ନେବି ପୁଣି ବ୍ରହ୍ମାଙ୍କର ବିତ୍ତ ।
ରାମ ତୋତେ କୋପ ଯେ କରିବେ ଏହାଶୁଣି
ଏ ବଚନ ଶୁଣି କରି ବୋଲେ ଋଷିଆଣୀ ।
ତୁହି ଜାନକୀ ଯେ ଋଷିର ଦୁହିତା
ଆମ୍ଭେ ଋଷିଆଣୀ ଯେ ତୁମ୍ଭର ଅଟୁ ମାତା ।
ଜନନୀର ବିତ୍ତକି ଝିଅର ଅଗ୍ରାହିଜ
ଏଥକୁ ଭ୍ରାନ୍ତି ତୁ ଯେ ନକର ଆତ୍ମଜ ।
ଏତେବୋଲି ଅନୁଛାୟା ସୀତା ଭୁଜଧରି
ଅନେକ ପ୍ରକାର ପ୍ରବୋଧ ତାଙ୍କୁ କରି ।
ସେଠାରୁ ଜାନକୀ ବେଗେ ଚଳିଗଲେ
ଶ୍ରୀରାମଙ୍କ ଆଗେ ଯାଇଁ ପ୍ରବେଶ ହୋଇଲେ ।
ହସ ହସ ହୋଇଣ କହେ ଚନ୍ଦ୍ରମୁହିଁ
ଜନନୀ ମୋତେ ଆଣି ଦେଲେ ଯେ ବଧାଇ ।
ଅତୁଟ ଅମଳାଣ ଶାଢ଼ୀବସ୍ତ୍ର ଦେଲେ
କାକର ମନବୋଧ ମୋହର ନିବାରିଲେ ।
ପବିତ୍ର ପାଷାଣ ଖଣ୍ଡିଏ ମୋତେ ଦେଲେ
ପାକ ନିର୍ଭା କରିଣ ଛୁଆଇଁବୁ ଭଲେ ।
ସୁପକ୍ୱ ବ୍ୟଞ୍ଜନ ଶାଳୀ ଅନ୍ନ ପ୍ରାୟେ
ଭୁଞ୍ଜିଲା ବେଳେ ଲାଗିବ ତୁମ୍ଭଙ୍କୁ ସେ ପ୍ରାୟେ
ଶତେ ବରଷ ପର୍ଯ୍ୟନ୍ତ ଏ ଶାଢ଼ୀ ପିନ୍ଧିବୁ
ମନ ହେଲାବେଳେ ଯେ ଅଗ୍ନିରେ ଧୋଇବୁ ।
ଜଳ ପବନରେ ସେ ଯେ ନୋହେ ଏହୁ ଭସ୍ମ
ଏତେବୋଲି ବେନି ଶାଢ଼ୀଦେଲେ ମୋର ହସ୍ତ
ପୁଣି ତହିଁ ବସ୍ତ୍ର ଯେ ଆଣିଦେଲେ ମୋତେ
ବୋଇଲେ ସ୍ୱାମୀ ଦିଅରଙ୍କୁ ଦେବୁ ଯେ ତୁରିତେ
ଚଉଦ ବରଷ ଯେ ବନରେ ବ୍ରହ୍ମଚାରୀ
ଚଉର୍ଯ୍ୟ ବେଶରେ ସେ ବୁଲିଲେ ବନେଫେରି
ଏ ବସନମାନଙ୍କୁ କାଛଟା କରି ପିନ୍ଧି
ଗଛର ବକଳ ପ୍ରାୟେ ଦିଶେ ଫାନ୍ଦ ଫାନ୍ଦି ।
ଏତେ କହିଣ ଯେ ମୋର ହସ୍ତେ ଦେଲେ
ଅନେକ ପ୍ରକାରେ ମୋତେ ବୁଝାଇ କହିଲେ ।
ରାମଚନ୍ଦ୍ର ବୋଇଲେ ହେ ହେଲା ବଡ଼ ସୁଖ
ପିନ୍ଧିଣ ପିତା ମାତାଙ୍କୁ ଓଳଗି ତୁରିତ ।

ଶୁଣିକରି ଜାନକୀ ଯେ ଶାଢ଼ୀକି ପିନ୍ଧିଲେ
ମୁନିଙ୍କ ଚରଣେ ଯାଇଁଣ ଓଳଗିଲେ ।
ଋଷି ବୋଇଲେ ସତୀଗୋ ସ୍ୱାମୀରେ ଭକ୍ତିହେବୁ
ସାଧବୀ ରୂପଧରି ବୈକୁଣ୍ଠପୁର ଯିବୁ ।
ସେଠାରୁ ବଇଦେହୀ ବେଗେ ଚଳିଗଲା
ଅନୁଛାୟା ଜନନୀର ଚରଣେ ନମିଲା ।
ଅନୁଛାୟା ବୋଇଲେ ତୁ ସବୁଦିନେ ସୁଖୀ
ସତାବନ ବରଷ ହୋଇବ ବଡ଼ ଦୁଃଖୀ ।
ବନରେ ଚଉଦ ମାସ ପିତାଘରେ ବାର
ବୈକୁଣ୍ଠ ପୁରେ ବୟାଳିଶ ବରଷ କଠୋର ।
ଜାନକୀ ବୋଇଲେ କିମ୍ପା ଏ ଦୁଃଖହେବ ମୋର
ଅନୁଛାୟା ବୋଇଲେ ନିରୋଧ କଲୁ ବର ।
ବାସୁଦେବ ପୁରୁଷଙ୍କୁ ଏକ ବ୍ରତୀ କଲୁ
ନିଜ ଦାସୀମାନଙ୍କୁ ଅନାସ୍ଥା କରାଇଲୁ ।
ସେ ଦୋଷେ ସତାବନ ବରଷ ନାହିଁ ଭୋଗ
ବନେ ଚଉଦ ବରଷ ହେବ କଷ୍ଟଯୋଗ ।
ଶେଷରେ ଛପନ ବରଷ କଷ୍ଟ ତୋର
ଅନେକ ସୁଖରେ ଯିବ ତୋର ଦିନକାଳ ।
ଏ କଥାକୁ ମନେ ଚେତା ତୁହି ରଖିଥିବୁ
ମୋର କହିବାରୁ ତୋର ଅସୁଖ ନ ପାଇବୁ ।
ଜାନକୀ ବୋଇଲେ ଯେ ଜାଣିଲ କେଉଁଠାରୁ
ଅନୁଛାୟା ବୋଇଲେ କପିଳ ଋଷିଠାରୁ ।
ଶୁଣିକରି ଜାନକୀ ମନରେ ଚିନ୍ତାକଲା
ସଖୀମାନଙ୍କ ଆଶା ମୋଠାରେ ଭୋଗହେଲା ।
ସେଠାରୁ ବଇଦେହୀ ଅଇଲେକ ପୁଣ
ରାମଚନ୍ଦ୍ର ଆଗରେ ମିଳିଲେ ଯାଇଁଣ ।
ଅନୁଛାୟା କଥା ଯେ ପ୍ରକାଶ ନ କଲେ
ଗୁପତେ ସେ କଥାକୁ ହୃଦରେ ରଖିଲେ
ଧବଳ ବସ୍ତ୍ରଦୁଇ ଶ୍ରୀରାମ କରେ ଦେଲେ
ନୀଳ ବସ୍ତ୍ରଦୁଇ ନେଇ ଲକ୍ଷ୍ମଣେ ସମର୍ପିଲେ ।
ଦୁଇଭାଇ ଦେଖିଣ ଅମଳାଣ ତୋଷହେଲେ
କାଛଟାର ପ୍ରକାରେ ବସନ ପିନ୍ଧିଲେ ।
ଦୁଇଭାଇ ପିନ୍ଧିଲେ ଅମଳାଣ ପୁଣ
ଜାନକୀର ଏକ ଶାଢ଼ୀ ରଖିଲେ କେତେଦିନ ।
ରାମଚନ୍ଦ୍ର ବୋଇଲେ ରହିଲୁ ଚାରିମାସ
ଦଶସହସ୍ର ଋଷି ଥିଲେ ମନ୍ଦାଗ୍ନିର ପାଶ ।

ଆମ୍ଭଙ୍କୁ ଦେଖିଣ ସେଠାରୁ ଚଳିଗଲେ
ଯେତେପ୍ରକାର କହିଲୁଁ କେବେହେ ନରହିଲେ
ଅତ୍ରୀ ମୁନି କହିଲେ ଶୁଣ ହେ ରାମାରାଣ
କାଳ ଯୁଗକୁ ସେଥିରେ କିସ ରଖି ପୁଣ ।
ଚିତ୍ରକୂଟ ଶିଖରେ ମଦାଗ୍ନିରେ କୂଳେ
ତୋ ସଙ୍ଗରେ ଦେବତା ପୂଜାକଲୁକି ସେଠାରେ ।
ପାଷାଣ ମୂର୍ତ୍ତି କିମ୍ବା ନକଲୁ ଜୀବନ୍ୟାସ
ଅନ୍ୟ ଯୁଗମାନଙ୍କୁ ସେହୁ ଅଟେ ତୀର୍ଥ ।
ରାମଚନ୍ଦ୍ର ବୋଇଲେ ସେ କଥା ଜଣାନାହିଁ
ଋଷିମାନେ ନ ଯିବାରୁ ଆମ୍ଭେ ଅଇଲୁ ପଳାଇ
ଅତ୍ରୀ ମୁନି ବୋଇଲେ ମୋର ବୋଲକର
ପକ୍ଷକେ ଏ କଳିଙ୍ଗ ପୂଜିବ କୁଶଳ ।
ମାସକେ ଏକଦେବୀ ପାଷାଣ ଲେଖିକରି
ଜୀବନ୍ୟାସ କରି ତୁ ପୂଜିବୁ ଚାପଧରୀ ।
ଶ୍ରୀରାମ ବୋଇଲେ ମୋତେ ଦିଅ ଜୀବନ୍ୟାସ ମନ୍ତ୍ର
ମୃତ ସଞ୍ଜିବନୀ ମନ୍ତ୍ର ଦିଅ ହେ ତୁରିତ ।
ଶୁଣିକରି ଅତ୍ରୀମୁନି ଦୁଇ ମନ୍ତ୍ର ଦେଲେ
ଶିବ ପଞ୍ଚାକ୍ଷର ମନ୍ତ୍ର ପୁଣି ଶିଖାଇଲେ ।
ବୋଇଲେ ଏ ମନ୍ତ୍ରରେ ଶିବଙ୍କୁ ପୂଜାକରି
ଫଳ ପାଷାଣ ପୂଜିଲେ ହେବ ଶୂଳଧାରୀ ।
ପୁଣି ସେ ମୁନି ଗୋପାଳ ନାରାୟଣ ମନ୍ତ୍ରଦେଲେ
ନାରାୟଣଙ୍କୁ ଏ ମନ୍ତ୍ରେ ପୂଜିବ ବୋଇଲେ ।
ଶେଷେ ଉପଚାର ମନ୍ତ୍ର ଦେଲେ କହି
ଏ ମନ୍ତ୍ରେ ପୂଜାକରିବ ଶାକମ୍ଭରୀ କହି ।
ପକ୍ଷକେ ଲିଙ୍ଗପୂଜା ମାସକେ ଦେବୀ ପୁଣି
ଷଡ଼ମାସେ ନାରାୟଣ ପ୍ରତିମା ପୂଜା ଜାଣି ।
ତେବେ ତୋର ନାମ ଯେ ରହିବ ସଦାକାଳେ
ଏତେବୋଲି ମୁନି ଯେ କହିଲେ ଶ୍ରୀରାମରେ ।
ଏହି ପ୍ରାୟେ ଲକ୍ଷ୍ମଣ କରିବା ପୂଜା ପୁଣ
ଶୁଣିଣ ସନ୍ତୋଷ ଯେ ହୋଇଲେ ରଘୁରାଣ ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଗଉରୀ
ଏହି ସମୟରେ ସେ ମୁନିଗଣେ ମିଳି ।
ଦଶସସ୍ର ଋଷି ଯେ ପ୍ରବେଶ ହେଲେ ଯାଇଁ
ଅତ୍ରୀମୁନି ହରଷ ହୋଇଣ ବିଚାରଇ ।
ଭଲ ଯୋଗେ ଋଷିଗଣ ଅଇଲେ ସକଳ
ଦେଖିକରି ରାମଚନ୍ଦ୍ର ନମିଲେ ପୟର ।

ଶ୍ରୀରାମ ଲକ୍ଷ୍ମଣ ସୀତାଙ୍କୁ ଦେଖି ମୁନି
ଏ ତିନିଜଣ ଚିତ୍ରକୂଟେ ଥିଲେ ପୁଣି ।
ମୁନିମାନେ ବୋଇଲେ ଶୁଣ ବ୍ରହ୍ମଋଷି
ଏ ତିନିଜଣ କିଏ କହ ହେ ବିଶେଷି ।
ଅତ୍ରୀ ଋଷି ବୋଇଲେ ଏହିଟି ନାରାୟଣ
ଅସୁର ମାରିବାକୁ ମାନବରେ ଜନ୍ମ ।
ସିନ୍ଧୁ ରାଜା ଦୁହିତା ଅଟେ କମଳିନୀ
ଧବଳ ରୂପ ଗୋଟି ଅନନ୍ତ ଅଟେ ପୁଣି ।
ଋଷି ବୋଇଲେ ଦେଖିଥିଲୁ ଚିତ୍ରକୂଟ ପରେ
ଶ୍ରୀରାମ ଲକ୍ଷ୍ମଣ ବୋଲି କହିଲେ ଆମ୍ଭରେ ।
ଆମ୍ଭେମାନେ ବିଚାରିଲୁ ଏଥିରେ ହେବ ଦ୍ୱନ୍ଦ୍ୱ
ଏମନ୍ତ ବିଚାରି ଆମ୍ଭେ ଛାଡ଼ିଲୁ ଗିରିକନ୍ଦ ।
ଅତ୍ରୀ ଋଷି ବୋଇଲେ ତୁମ୍ଭର ନାହିଁ ଜ୍ଞାନ
ଯାହାକୁ ନିତ୍ୟ ସୁମରି ସେହିଟି ଏହୁ ପୁଣ ।
ଶୁଣିଣ ସକଳ ମୁନି ସନ୍ତୋଷ ହୋଇଲେ
ଶ୍ରୀରାମଚନ୍ଦ୍ରଙ୍କୁ ଅତ୍ରୀ ମୁନି ଯେ କହିଲେ ।
ଚିତ୍ରକୂଟ ଯାଏ ତୁମ୍ଭେ ଚଳ ତିନିଜଣ
ସେଠାରେ ଏକ ତୀର୍ଥ କରିବ ପ୍ରମାଣ ।
ଏକଥା ଶୁଣି ଶ୍ରୀରାମ ସନ୍ତୋଷ ହୋଇଲେ
ତୁମ୍ଭର ବୋଲ କିମ୍ପା ଭାଙ୍ଗିବୁ ବୋଇଲେ ।
ଜାନକୀ ଲକ୍ଷ୍ମଣଙ୍କୁ ସଙ୍ଗରେ ଘେନି ପୁଣ
ବାହାର ହୋଇଲେ ରାମ ସେଠାରୁ ତକ୍ଷଣ ।
ଦେଖିଣ ଅତ୍ରୀ ମୁନି ବାହାର ବେଗେ ପୁଣି
ସଙ୍ଗରେ ଦଶସସ୍ର ଋଷି ଯେ ଗଲେ ଜାଣି ।
ଦଶସସ୍ର ଋଷିଆଣି ଅନୁଛାୟା ସଙ୍ଗେ
ଦାସୀ ପରିବାରୀ ଘେନି ବିଜେକଲେ ରଙ୍ଗେ
ଅଶୀସସ ଶିଷ୍ୟ ଯେ ତାଙ୍କ ସଙ୍ଗେ ଗଲେ
ଦୁଇଦିନେ ଚିତ୍ରକୂଟ ଗିରିରେ ମିଳିଲେ ।
ଯେଉଁଠାରେ ଆଗ ରାମ ମଢ଼ିଆ କରିଥିଲେ
ଯେଉଁଠାରେ ମାଂସକୁ କାକ ଝାମ୍ପ ଦେଲେ ।
ସେ ସ୍ଥାନରେ ପ୍ରବେଶ ଦଶରଥ ବାଳ
ସେ ମଢ଼ିଆ ଉଜ୍ଜ୍ୱଳ କଲେ ସୁମିତ୍ରାର ବାଳ
ସେ ସ୍ଥାନରେ ସର୍ବଋଷି ରହେ ମେଳହୋଇ
ଅନୁଛାୟାର ସଙ୍ଗତରେ ଋଷିଆଣୀ ରହି ।
ଜାନକୀ ରହିଲେ ଯେ ତାହାଙ୍କ ସଙ୍ଗରେ
ଗିରିପରେ ଗହଳ ଶୁଭଇ ଚହଳେ ।

ଶିଷ୍ୟମାନେ ଯାଇଣ ଆଣିଲେ ଫଳମୂଳ
ଭୋଜନ କଲେ ଯେ ସନ୍ତୋଷ ସକଳ ।
ଏମନ୍ତ ସମୟରେ ହୋଇଲା ରଜନୀ
ଶ୍ରୀରାମଙ୍କୁ କହିଲେ ମୁନି ଋଚୁବାଣୀ ।
ବିଶ୍ୱକର୍ମା ସୁମରଣା ରାମ କରନ୍ତି ମନରେ
ନଉସସ୍ର ଘର ଯେ ଭିଅନ୍ତୁ ଯତନରେ ।
ଶୁଣିକରି ରାମଚନ୍ଦ୍ର ସନ୍ତୋଷ ହୋଇଲେ
ଆସନ ଶୁଦ୍ଧି କରି ତହିଁରେ ବସିଲେ ।
ବିଶ୍ୱକର୍ମା ସୁମରଣା ରାମ କରନ୍ତି ମନରେ
ଆସିଣ ବିଶ୍ୱକର୍ମା ମିଳିଲେ ତକ୍ଷଣରେ ।
ଶ୍ରୀରାମଙ୍କ ପାଶରେ ହୋଇଲା ଆସି ଉଭା
ଚିତ୍ରକୂଟ ଗିରି ଯେ ଦିଶେ ବଡ଼ ଶୋଭା ।
ଚନ୍ଦ୍ର ଉଦେ ପରାଏ ଯେ ଦିଶିଲା କିରଣ
ଦେଖିଣ ଶ୍ରୀରାମ ଯେ ହରଷ କଲେ ମନ ।
ବିଶ୍ୱକର୍ମା ବୋଇଲେ କିମ୍ପା ସୁମର ରାମରାଣ
ରାମଚନ୍ଦ୍ର ବୋଇଲେ ନଗର ଭିଆ ପୁଣ ।
ଏହିଠାରୁ ମଦାଗ୍ନି କୂଳକୁ ବୋଲି ନଗ୍ର
ତିନି କ୍ରୋଶ ପରିଯନ୍ତେ ହେବ ଜାଣ ଦୀର୍ଘ ।
ପ୍ରତି କୋଣେ ଓସାର ଶୁଣୁ ତୁ ଧଇର୍ଯ୍ୟ
ତିଆରି କର ତୁହି ଏମନ୍ତେ ରାଜା ମାର୍ଗ ।
ଶୁଣିକରି ବିଶ୍ୱକର୍ମା ବେଗେ ଚଳିଗଲା
ନଗ୍ର ଗୋଟିଏ ଯେ ସେଥିରେ ମଣ୍ଡାଇଲା ।
ମଣ୍ଡଳ ଆକାର କରି କଲାକ ନଗ୍ର ପୁଣ
ମଧ୍ୟରେ ଗିରି ଗୋଟି ରହିଲା ତହିଁ ଜାଣ ।
ମଦାଗ୍ନି କୂଳକୁ ବୋଲି କଲେ ଦୁଇ ବାଟ
ଦୁଇ ବାଟ ପାଷାଣ ପାବଛ ତୁରିତ ।
ମଦାଗ୍ନି ଭିତରକୁ ପାବଛ କଲେ ଉଭବ
ନଉସସ୍ର ଘରକରି ନଗ୍ରକୁ କଲେ ତେଜ ।
ଘରେ ଘରେ ଦୁଆର ପାବଛ ବଡ଼ ଶୋଭା
ବଡ଼ ଦାଣ୍ଡଗୋଟି ତହିଁରେ କଲେ ନିର୍ଭା ।
ପାଷାଣରେ ଦେଉଳ ଗୋଟିଏ ପୁଣ କଲା
ମଣ୍ଡପ, ମୁଖଶାଳୀ, ମୋହନ ତିଆରିଲା ।
ଚରିପାଶେ ବେଢାଯେ ଗୋଟିଏ କରିପୁଣ
ଚରିଗୋଟି ଦୁଆର କଲେକ ଭିଆଣ ।
ସିଂହ, ଶାର୍ଦ୍ଦୋଳ, ସ୍ଥାପିଲେ ଚରିଦ୍ୱାର
ଦେଉଳ ଭିତର ସିଂହାସନର ଉପର ।

ଶ୍ୟାମଳ ବର୍ଣ୍ଣରେ ବାଢ଼େ ରାମରୂପ କରି
ଚଳିଲା ବିଶ୍ୱକର୍ମା ବେଗେ ସ୍ୱର୍ଗ ପୁରୀ ।
ରଜନୀ ପାହିଲା ଯେ ଉଠିଲେ ସକଳ
ଦେଖି ନଗ୍ରଗୋଟି ମଣ୍ଡଳ ଆକାର ।
ମଧ୍ୟରେ ଗିରିବର ଅଛଇ ଯତନେ
ନଉସ୍ରସ ଘର ଯେ ହୋଇଛି ଭିନ୍ନେ ଭିନ୍ନେ
ଦାଣ୍ଡ ପରିମଳ ଅଟେ ବଡ଼ ପୁଣ
ମଦାଗ୍ନି ଭିତରକୁ ପାବଛ ଭିଆଣ ।
ସୁବର୍ଣ୍ଣର ଚଉରା ଯେ ଠାଡ଼ି ଠାଡ଼ି ଶୋଭା
ସେଥିପରେ ତୁଳସୀ ଗଛ ବଡ ଧ୍ୱଜା ।
ମନ୍ଦିର ଗୋଟିଏ ଯେ ହୋଇଛି ନିର୍ମାଣ
ସେଥିରେ କାକ ରାମ ରୂପ ଲେଖା ପୁଣ ।
ଦେଖିଣ ସକଳ ମୁନି ହରଷ ହୋଇଲେ
ଅତ୍ରୀ ମୁନି ସଙ୍ଗତେ ରାମ ନଗର ଦେଖିଲେ ।
ମୁନି ଗୋଟିକେ ରାମ ଘର ଗୋଟିଏ ଦେଲେ
ନଉସସ୍ର ଘରେ ନଉସସ୍ର ଋଷି ଯେ ରହିଲେ
ଋଷିଆଣୀ ମାନେ ଯେଝାଘରେ ରହିଲେକ ପୁଣି
ଘରମାନ ପ୍ରତିଷ୍ଠା କଲେ ମୁନି ଜାଣି ।
ଅତ୍ରୀ ମୁନି ଗୋଟିଏ ମଠରେ ରହିଲେ
ଅନୁଛାୟା ସେଠାରେ ପ୍ରବେଶ ହୋଇଲେ ।
ରାମ ଲକ୍ଷ୍ମଣ ଯେ ସୀତା ସଙ୍ଗେ ଘେନି
ମଦାଗ୍ନି ଜଳରେ ସ୍ନାନ କଲେ ପୁଣି ।
ପାଷାଣ ଦେଉଳଠାରେ ପ୍ରବେଶ ତିନିଜଣ
ବେଦଧ୍ୱନି କଲେ ମୁନି ସେଠାରେ ଯାଇଣ ।
ଅତ୍ରି ମୁନି ଶ୍ରୀରାମ ଭିତରେ ଯାଇଁ ବସି
ଦେଖିକରି ସନ୍ତୋଷ ହୋଇଲେ କମଳାକ୍ଷୀ ।
ସମସ୍ତଙ୍କ ପଛରେ ବହନ ପୁଣ ଗଲେ
କାକ ରାମଙ୍କୁ ଦର୍ଶନ କଲେ ଯାଇଁ ଉଲେ ।
ଦେଖିଣ ସଉମିତ୍ରୀ ହେଲେ ତୋଷମନ
ଫଳମୂଳ ଆଣି ପୂଜାକଲେ ତାଙ୍କୁ ଜାଣି
ରାମଚନ୍ଦ୍ର ବୋଇଲେ ତୁମ୍ଭେ ମୁନିମାନେ ଶୁଣ
ଏ କାକ ରାମଙ୍କୁ ପୂଜିବ ତୁମ୍ଭେ ପୁଣ ।
ଜଣକେ ଦିନେ ଯେବେଏଁ କରିବ ସେବାପୂଜା
ନାରାୟଣ ରୂପ ଏହି ତୀର୍ଥକୁ ଅଟେ ଜେତା ।
ମୁନିମାନେ ବୋଇଲେ ଶୁଣହେ ଶ୍ରୀରାମ
ଏଠେ ତେ ଚନ୍ଦନ [illegible] ।

ଗହଳ ଦେଖିଣ ଅସୁରେ ଦୁଷ୍ଟପଣ
ଏ ସ୍ଥାନେ ରହିଲେ କେ ହୋଇବ ନିଧନ ।
କୂଟ ବଚନ ବୋଇଲେ ବାନର ତାଙ୍କୁ ନାଶି
ଏମନ୍ତ ଶାପଦେଲେ ଶ୍ରୀରାମ ତାଙ୍କୁ ହସି ।
ଶୁଣିଣ ଋଷିମାନେ ସନ୍ତୋଷ ହୋଇଲେ
ଫଳମୂଳ କାଢ଼ି ରାମରେ ପୂଜାକଲେ ।
ବେନି ଦିନ ବେନିରାତି ସେଥିରେ ବହିଗଲା
ଅତ୍ରୀମୁନି ଆଗରେ ଶ୍ରୀରାମ ଜଣାଇଲା ।
ବୋଇଲେ ଆମ୍ଭେ ଏବେ ଯାଉଛୁ ମୁନି ବନ
ସୁକଲ୍ୟାଣ କରୁଥିବ ଆମ୍ଭଙ୍କୁ ତୁମ୍ଭେ ପୁଣ ।
ଅନୁଛାୟାଙ୍କ ଛାମୁରେ ଜାନକୀ ଜଣାଇଲେ
ସ୍ୱାମୀର ସଙ୍ଗରେ ବନ ଯାଉଛି ବୋଇଲେ ।
ତୁ ମୋହର ଜନନୀ ହୁଅଗୋ ପ୍ରସନ୍ନ
ଏତେ କହି ବଇଦେହୀ ଓଳଗି ହେଲେ ପୁଣ
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସ୍ୱର୍ଗରୁ ଯାନ ଆସି ମିଳିଲା ତଡ଼ତି ।
ଅତ୍ରୀ ମହାଋଷିଙ୍କି ବୋଇଲେ ଦେବଦୂତ
ବଇକୁଣ୍ଠପୁର ଯିବା ବସହୋ ତୁରିତ ।
ଶ୍ରୀରାମଙ୍କୁ ବେଗେ କର ପ୍ରଦକ୍ଷିଣ
ଶ୍ରୀରାମ ଛୁଇଁଲେ ହୋଇବୁ ପ୍ରଦକ୍ଷିଣ
ବଇକୁଣ୍ଠପୁରେ ଯାଇ ନିଶ୍ଚିନ୍ତେ ବସିବୁ
ଶ୍ରୀରାମ ବାସୁଦେବ ଅଟେ ସେ ଦେଖି ବାବୁ ।
ଶୁଣିଣ ଅତ୍ରୀମୁନି ଶ୍ରୀରାମଙ୍କୁ ଚାହିଁ
ପୁରୁଣା ତନୁଗୋଟି କେଣେ ଗଲା କାହିଁ ।
ନବ ଯଉବନ ରୂପ କ୍ଷଣେ ସେ ହେଲା
ଶ୍ରୀରାମଙ୍କୁ ପ୍ରଦକ୍ଷିଣ କରିଣ ଭାବିଲା ।
ବୋଇଲା ନାରାୟଣ ସୁଦୟା କର ମୋତେ
ଯାଉଅଛି ତୋର ପୁର ରହିବି ନିଶ୍ଚିନ୍ତେ ।
ଯୋନିରେ ଜାତ ନୋହିବି କରୁଣା ମୋତେ କର
ଏତେ ବୋଲି ଋଷି ଯାଇଁ ବସିଲେ ରଥର ।
ଶ୍ରୀରାମଚନ୍ଦ୍ର ବୋଇଲେ ଯାହା ବିଚାରିଲ
ସେହୁ କଥା ତୁମ୍ଭଙ୍କୁ ପ୍ରପାତ ହେଉ ଭଲ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସ୍ୱାମୀ ଯିବାରୁ ଅନୁଛାୟା ମନରେ ବିଚାରି ।
ଉଠିକରି ଜାନକୀ ପ୍ରଦକ୍ଷିଣ କଲେ
କୋଳରେ ବସାଇଣ ଚୁମ୍ବନ ପୁଣ ଦେଲେ ।

ବୋଇଲେ ମାତ ଗୋ ଯାଉଛି ପୁଣ ଏବେ
ମୋହଠାରେ ସୁଦୟା କରିଥିବୁ ଭାବେ ।
ଭ୍ରଥର ସଙ୍ଗେ ମୁଁ ଯେ କରୁଛି ଗମନ
ଶ୍ରୀହରି ପାଟଣାରେ ରହିବୁ ଯାଇଁ ପୁଣ ।
ବୈକୁଣ୍ଠକୁ ଗଲେ ମୋତେ ସଙ୍ଖୋଳିବି ଥରେ
ଅନୁଗ୍ରହ କରି ଯିବି ସ୍ୱାମୀର ସଙ୍ଗରେ ।
ଶୁଣିକରି ଜାନକୀ ପରମତୋଷ ହେଲେ
ଯାଅ ସ୍ୱାମୀ ସଙ୍ଗରେ ବଚନ କହିଲେ ।
ଜାନକୀ କହିବାରୁ ଅନୁଛାୟା ପୁଣି
ବାରଙ୍ଗନା ଯୁବାରୂପ ହେଲେ ତତକ୍ଷଣି ।
ରଥ ଉପରେ ଯାଇଁ ସ୍ୱାମୀର ସଙ୍ଗେ ବସି
ଦେଖିକରି ଦାସୀମାନେ ଜାନକୀ ପାଦେ ଖଟି
ଜାନକୀ ବୋଇଲେ ତୁମ୍ଭେ ଯାଅ ଯତିଙ୍କ ସଙ୍ଗେ
ଶୁଣିଣ ଦାସୀମାନେ ଦେହ ଛାଡ଼ିଲେ ବେଗେ
ନୂତନ ରୂପଧରି ରଥରେ ଯାଇଁ ବସି
ଅନୁଛାୟା ଚରଣେ ଯାଇଣ ବେଗେ ଖଟି ।
ଦେଖିଣ ଶିଷ୍ୟଗଣ ଶ୍ରୀରାମ ପାଦେ ପଡ଼ି
ରାମ ବୋଇଲେ ଯିବାକୁ କି ଲୋଡ଼ି ।
ଶିଷ୍ୟମାନେ ବୋଇଲେ କହିଲେ ଯାଆନ୍ତୁ
ରାମ ବୋଇଲେ ଯାଅ ଭ୍ରାନ୍ତି ଏବେ ତୁଟୁ ।
ଶୁଣିଣ ବେନି ନବସହସ୍ର ଶିଷ୍ୟ ଚଳିଗଲେ
ନୂତନ ବେଶ ଧରି ସେ ରଥରେ ବସିଲେ ।
ଖଦି ଚାମର ପଙ୍ଖା ଢାଳନ୍ତି ଅପାର
ଆଲଟ ବିଞ୍ଚଣ ସେ ବିଞ୍ଚନ୍ତି ଧୀର ଧୀର ।
ହରିବୋଲ ରାମ ତାଳି କଲେକ କୀର୍ତ୍ତନ
ଉଠିଲା ବେଗେ ଯାନ ଗର୍ଜ୍ଜନ କରି ପୁଣ ।
ଦେଖୁ ଦେଖୁ ରଥ ଯେ ଅଦୃଶ ହୋଇଲା
ଶ୍ରୀହରି ପାଟଣାରେ ଯାଇଣ ମିଳିଲା ।
ଯେଉଁଠାରେ ହରିନାମ ହେଉଛି ବିକାକିଣା
ଦେଖିକରି ଅତ୍ରୀମୁନି ହୋଇଲା ପୁରୁଣା ।
ଅନୁଛାୟାଙ୍କୁ ବୋଇଲେ ରାମ ଦୟାକଲା
ଅନନ୍ତ ଶୟନ ପରେ ଆମ୍ଭଙ୍କୁ ସ୍ଥାନ ଦେଲା ।
ଲୁଚି ଯାଇଛିକି ନାବେ ନୀଳେନ୍ଦ୍ରି ମୁଖ ଗୋଟି
ଗୋଟିଏ ରୁମକୁ କୋଟିଏ ଦେବତା ଧାଉଥାନ୍ତି
ମୋତେ ଯେ କରୁଣା ସାଗର ଦୟାକଲେ
ନିଜପୁରେ ଆଣି ମୋତେ ଅନେକ ସୁଖଦେଲେ

ଏମନ୍ତ ବିଚାରନ୍ତେ ନବର ଦ୍ୱାରେ ମିଳି
ଦେବଦୂତେ ବୋଇଲେ ଉତ୍ତର ବ୍ରହ୍ମଚାରୀ ।
ଦେବଯାନ ଏଥର ନବହିବ ତୋତେ
ତୋର ନବରେ ମିଳିଲୁ ଯାଅ ତୁ ତୁରିତେ ।
ଶୁଣିଣ ଅନୁଛାୟା ଋଷିଙ୍କ କରଧରି
ରଥରୁ ଓହ୍ଲାଇ ଗଲେ ବ୍ରହ୍ମଚାରୀ ।
ବ୍ରହ୍ମଚାରୀର ପଛରେ ଶିଷ୍ୟଗଣ ଗଲେ
ଅନୁଛାୟା ସଙ୍ଗରେ ଦାସୀମାନେ ଚଳେ
ଅଷ୍ଟରନେ ପୋଏଳା ପୁରରେ ପରବେଶ
ଭକତ ଜନମାନେ ସଙ୍ଖୋଳେ ବିଶେଷ ।
ନୃତ୍ୟରଙ୍ଗ ସଂକୀର୍ତ୍ତନ ସେଠାରେ ଗୋଳହେଲା
ଅଚିନ୍ତା ବୈକୁଣ୍ଠପୁରେ ମୁନି ଯେ ରହିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦୁଇଦିନ ସେଠାରେ ରହିଲେ ରଘୁପତି ।
ଋଷିମାନଙ୍କୁ ସକଳେ ମନାଇ କହିଲେ
ଆମ୍ଭେ ଯାଉଛୁ ବୋଲି ବାହାର ଯେ ହେଲେ
ଜାନକୀ ଋଷିଆଣୀ ମାନଙ୍କୁ ସଙ୍ଖୋଳିଣ
ସ୍ୱାମୀଙ୍କର ସଙ୍ଗରେ ବାହାର ହେଲେ ପୁଣ ।
ସମସ୍ତ ଋଷିଙ୍କି ଲକ୍ଷ୍ମଣ ମାନ୍ୟକଲେ
ଚିତ୍ରକୂଟ ଛାଡ଼ି ତିନିଜଣଯାକ ଗଲେ ।
ଦଣ୍ଡକାଅରଣ୍ୟରେ ପ୍ରବେଶ ହୋଇଲେ
ସେଥିରେ ତପୋବନ୍ତ ଅନେକ ଦେଖିଲେ ।
ସେମାନଙ୍କୁ ଦେଖିଣ ନମସ୍କାର କଲେ
ସୁକଲ୍ୟାଣ ସେମାନଙ୍କୁ ତପି ଯେ ବାଞ୍ଛିଲେ ।
ତୁମ୍ଭେ ଶ୍ରୀରାମ ଅଟ ସୀତୟାର କାନ୍ତ
ଏତେ କହିଣ ସର୍ବେ ଉଠିଲେ ତପୋବନ୍ତ ।
ଅର୍ଘ୍ୟ ନେଇଦେଲେ ପୂଜାବିଧି ଘେନି
ଷଡ଼ରସ ପ୍ରକାରେ ପୂଜା କରନ୍ତି ବ୍ରହ୍ମମୁନି ।
ସୀତୟାର ମୁଖ ଦେଖି ବୋଲନ୍ତି ବଚନ
କେଉଁଯାଗେ ଏ ପୁରୁଷ ଲଭିଲୁ ତୁ ଯେ ଜାଣ
ଧନ୍ୟ ଧନ୍ୟ ସୀତୟାଗୋ ଧନ୍ୟ ତୋର ରୂପ
ତୋହର ରୂପକୁ ସରି ନୁହନ୍ତି ସ୍ୱରୂପ ।
ଏ ରାମଙ୍କୁ ଘେନିଣ ତୁ କରୁଛୁ ବଇଭୋଗ
କେଉଁ ପୁଣ୍ୟେ କରିଥିଲୁ ତୋତେହେଲା ଯୋଗ
ଆମ୍ଭେମାନେ ଯେବେ ଗୋ ଯୁବତୀ ହୋଇଥାନ୍ତୁ
ଏ ରଘୁନାଥଙ୍କୁ ଦାସୀପଣରେ ଖଟିଥାନ୍ତୁ ।

ଏତେବୋଲି ଅସ୍ଥିର ହୃଦୟ ପୁଣ କଲେ
ଶ୍ରୀରାମଚନ୍ଦ୍ର ଶିରରେ ଅର୍ଘ୍ୟ ନେଇ ଦେଲେ ।
ଗଉରବ କରିଣ ପୁହାଏ ସେ ଦିନ
ଫଳମୂଳ ଦେଇଣ ତୋଷକଲେ ମନ ।
ସେଦିନ ଶ୍ରୀରାମ ଯେ ରହିଲେ ସେଠାରେ
ବେଢ଼ିକରି ଋଷି ସର୍ବେ ତାଙ୍କର ସଙ୍ଗରେ ।
ଦାସୀଜନ ପ୍ରାୟେକ ମନରେ ବିଚାରିଲେ
ଧିକ ଧିକ ଆମ୍ଭ ଜନ୍ମ ମନରେ ବିଚାରିଲେ ।
ଋଷିଙ୍କର ମନକୁ ଜାଣିଲେ ଦାଶରଥି
ବତିଶି ସସ୍ର ଋଷିଙ୍କି ବହିଲେ ପ୍ରଶଂସି ।
ବୋଇଲେ ଯେଉଁକଥା ମନରେ ଭାବିଲ
ଆରଜନ୍ମେ ସେକଥା ଲଭିବ ତୁମ୍ଭେ ଭଲ ।
ଷୋଳଯୁଗ ଗଲେ ମୁଁ ଯେ ମଞ୍ଚରେ ହେବିଜାତ
ଏ ଲକ୍ଷ୍ମଣ ହୋଇଥିବ ମୋର ଜ୍ୟେଷ୍ଠଭ୍ରାତ ।
ଏକ ବ୍ରତ ନୋହିବି ଯେ ସେ ଅବତାରରେ
ଅନେକ ନାରୀଙ୍କୁ ମୁଁ ମୋହିବି ସେ ଯୁଗରେ ।
ଯାଦବକୁଳେ ଜାତ ହୋଇବି ଯାଇକରି
ଗୋପପୁରେ ରହିବି କଂସକୁ ଡରିକରି ।
ଗୋପାଳୁଣୀ ଷୋଳସସ୍ର ସେଥିରେ ରମିବି
ମୋହନ ମୁରଲୀ ବାଇ ସଭିଙ୍କି ମୋହିବି ।
ଜାନକୀ ଦାସୀମାନେ ହେବେ ଗୋପାଳୁଣୀ
ସେମାନେ ମୋତେ ଦେଖି କରିବେ ଭାବପୁଣି ।
ଏ ଜାନକୀ ଗୋପାଳ ଅଂଶେ ଜାତ ହେବ
ଅଯୋନି ସମ୍ଭୁତ ତା ସେଠାରେ ଲଭିବ ।
ବୃଷଭାନୁ ଗୋପାଳ ନେବ ପଦ୍ମବନୁ
ଜଳରୁ ଉତପତି ହେବ ଏହା ତନୁ ।
ମନୁ ଶେଣା ଗୋପାଳ ପୁତ୍ରକୁ ବିଭାହେବ
ସେ ପୁରୁଷ ଏହାର ନପୁଂସକ ଥିବ ।
ତେଣୁକରି ଏନାରୀ ଲଭିବ ମୋର ଅଙ୍ଗ
ପରକ୍ରିୟା ଘରେ ହୋଇବ ପ୍ରୀତିସଙ୍ଗ ।
ଏଗାର ବରଷ ଯେ ଷଡ଼ମାସକ ଗୁଣ
ମୋର ସଙ୍ଗ ବେହରଣ ପ୍ରୀତରେ ହେବଟାଣ ।
ଯାକୁ ଘେନି ରାମ ମୁଁ ବିନୋଦ ତହିଁ କରି
ପୂର୍ଣ୍ଣ ରାହାସ ସେଠାରେ କୁଞ୍ଜବନେ କରି ।
ସେଦିନଠାରୁ ନାମ ଏହାର ରାଧିକା
ମୋରନାମ ଶ୍ରୀକୃଷ୍ଣ ଯେ ସେ ଯନ୍ତ୍ରେ ଚିକା ।

କଂସ କେଶୀ ନାଶି ମୁଁ ପ୍ରବଳ ହୋଇବି
ମୋହନ ମୁରଲୀ ବାଇ ଉଚ୍ଚାଟ କରାଇବି ।
ତୁମ୍ଭେମାନେ ଯାଇଣ ଦେବତାଙ୍କ କୋଳେ
ଷୋଳସସ୍ର କନ୍ୟା ତୁମ୍ଭେ ଜାତ ସ୍ୱର୍ଗପୁରେ ।
ସୁର ଦେବରାଜା ନେଇ ତୁମ୍ଭଙ୍କୁ ଦେବ
ତୁମ୍ଭଙ୍କୁ ଭୋଗ ମୁହିଁ କରିବି ଘେନି ଭାବ ।
ମଥୁରାରେ ତେର ଯେ ବରଷ ଷଡ଼ମାସ
ତୁମ୍ଭଙ୍କୁ ଘେନି ଲୀଳା କରିବି ବିଳାସ ।
ସେଠାରୁ ଦ୍ୱାରକାରେ ପ୍ରବେଶ ଯାଇଁ ହେବି
ପରକ୍ରିୟା ଭାବକୁ ସେଠାରୁ ତେଜିବି ।
ସ୍ୱକ୍ରିୟା ଘରରେ ମୁଁ ହେବି ପରବେଶ
ଶତେ ବରଷ ପର୍ଯ୍ୟନ୍ତ ହେବ ମୋ ବିଳାସ ।
ବତିଶ ସସ୍ର କନ୍ୟା ସ୍ୱକ୍ରିୟା ଘରେ ଜାତ
ତାଙ୍କଠାରୁ ପୁତ୍ର ନାତି ହୋଇବେ ସମ୍ଭୁତ ।
ଏଣୁ ଦାସୀଗଣ ଯେ ଗୋପାଳେ ସମ୍ଭୁତ
କମଳା ଅଂଶରେ ଯେ ଯୁବତୀ ସସ୍ର ଜାତ ।
ତେଣୁ ସେ ସ୍ୱକ୍ରିୟାରେ ହୋଇବେ ପରାପତ
କମଳା ସେଥିରୁ ରୁକ୍ମିଣୀ ନାମେ ଖ୍ୟାତ ।
ତାହ୍ୱତଳ ଅଷ୍ଟପାଟ ବଂଶୀ ଯେ ସମ୍ଭୁତ
ସେମାନଙ୍କୁ ଘେନି ଲୀଳା କରିବି ମୁହିଁତ ।
ତାଙ୍କ ତଳରେ ବତିଶ ସସ୍ର ଅଟେ ପୁଣ
ସେ କନ୍ୟାମାନେ ମୋତେ ଲଭିବେ ତୁମ୍ଭେ ଜାଣ
ମୁନିମାନେ ବୋଇଲେ କହିଲ କଥାଛନ୍ଦ
କମଳା ଓ ରୁକ୍ମିଣୀ ହେବେ ପ୍ରତିବୋଧ ।
କମଳା ଅଂଶରେ ଜାତ ଅଷ୍ଟପାଟ ହେବେ
ତାଙ୍କର ଅଂଶରୁ ଅନେକ କନ୍ୟା ସମ୍ଭବିବେ ।
ପରକ୍ରିୟା ଘରେ ଦେବେ କମଳା ଅଂଶ ନାହିଁ
ସେହିଭାବ ଲୀଳାଗୋଟି ନିଷ୍କଳକୁ ଯାଇ ।
ଶ୍ରୀରାମ ବୋଇଲେ ପରକ୍ରିୟାରେ ମାୟାରୂପ
କମଳାଙ୍କ ଅଂଶରେ ରାଧିକା ହେବେ ଜାତ ।
ଷୋଳ ସହସ୍ର ଗୋପାଳୁଣୀ ତାଂ ଅଂଶଧର ପୁଣ
ମୋର ସଙ୍ଗେ ଭାବ ଲୀଳା କରିବେ ତୁମ୍ଭେଜାଣ
ଛାୟା ଅଂଶେ କମଳାର ତ୍ରିପୁରା ଜାତହେବ
ତାହାର ଅଂଶରେ ତୁମ୍ଭେ ସମସ୍ତେ ଜନ୍ମିବ ।
ମୋର ସଙ୍ଗରେ ତେର ବରଷ କରିବ ଲୀଳା
ତେବେ ସେ ମନୋରଥ ସମ୍ପୂର୍ଣ୍ଣ ହେବପରା ।

ସବୁଦିନେ କମଳା ତିନି ଅଂଶରେ ଜାତ
ଛାୟା ମାୟା ଦେହ ହୁଅଇ ପ୍ରକଟ ।
ଗୋପରେ ମାୟାରୂପ ମଥୁରାରେ ଛାୟା ଜାଣ
ଦ୍ୱାରକାରେ ନିଜରୂପ ହୋଇବ ଘଟନ ।
ମୁନିମାନେ ବୋଇଲେ ଏ ଜନ୍ମେ କାହିଁ ତାହା
ଏକରୂପ ଜାନକୀ କମଳା ତୋର ପ୍ରିୟା ।
ରାମଚନ୍ଦ୍ର ବୋଇଲେ ଶୁଣ ହେ ଋଷିଗଣ
ମୁନି ଘରେ ନିଜରୂପ କମଳା ଜାତ ପୁଣ ।
ମାୟାରୂପେ ଗୋଟି ତାର ଅସୁର କୁଳେଜାତ
ଛାୟା ରୂପଗୋଟି ଜମ୍ବୁ ନଦୀରେ ପ୍ରକଟ ।
ଛାୟା ମାୟା ବେନି ରୂପ ଏ ଜନ୍ମେ ଲଭିବେ
କେବଳ ମୋତେ ଆଶ୍ରେ କରିଣ ଦିନନେବେ ।
ମୁନିମାନେ ବୋଇଲେ ସୁଦୟା ଯେବେକଲ
ନିର୍ଦ୍ଦୟ ଭାବ କିମ୍ପା ହୃଦରେ ରଖିଲ ।
କର ତୁମ୍ଭେ ଅନୁଗ୍ରହ ଯାଉଛୁ ଆମ୍ଭେ ପୁଣ
ଷୋଳଯୂଣ ପରିଯନ୍ତେ ସ୍ୱର୍ଗରେ ରହୁ ଜାଣ
ଶ୍ରୀରାମ ବୋଇଲେ ଯେବେ ଯିବାକୁ ମନହେଲା
ଆଜ ତୁମ୍ଭେ ସ୍ୱର୍ଗରେ ନିଶ୍ଚିନ୍ତେ ରହ ପରା ।
ଶୁଣିକରି ମୁନିମାନେ ସନ୍ତୋଷ ହୋଇଲେ
ଯିବାର ଉଦ୍‌ଯୋଗ ସମସ୍ତ ଋଷିକଲେ ।
ଏହି ସମୟରେ ଆସେ ଶୂନ୍ୟରୁ ବିମାନ
ଆସିଣ ସେଠାରେ ଯେ ମିଳିଲା ତତକ୍ଷଣ ।
ଦେଖିଣ ମୁନିମାନେ ବିମାନେ ଯାଇ ବସି
ଶ୍ରୀରାମର ନାମ ହୃଦପଦ୍ମେ ଘୋଷି ।
ଉଠିଲା ବିମାନ ଯେ ଘୋର ନାଦକରି
ତତକ୍ଷଣେ ପ୍ରବେଶ ହେଲା ସ୍ୱର୍ଗପୁରୀ ।
ଦେଖୁ ଦେଖୁ ଅଦୃଶ୍ୟ ହୋଇ ଚଳିଗଲା
ଅଚିନ୍ତା ସ୍ୱର୍ଗପୁରେ ଯାଇଁଣ ମିଳିଲା ।
ସୁରରାଜା ଆସିଣ ନମସ୍କାର କଲା
ବିଶ୍ୱକର୍ମା ଡାକି ନଗର ଭିଆଇଲା ।
ନୂତନ ନବରେ ଋଷି ରହିଲେ ପୁଣଯାଇ
ରାମନାମ ତାରକ ହୃଦରେ ଧିଆଇ ।
ପାର୍ବତୀ ବୋଇଲେ ଯେ ସେଠାରୁ କିସହେଲା
ସେକଥା ମୋହ ଆଗେ କହ ତୁମ୍ଭେ ପରା ।
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ
ହେମାଳ ଗିରିରେ ଶ୍ରୀରାମ ବିହରି ।

ଷୋଳସହସ୍ର ଋଷି ଯେ ସେଠାରେ ରହିଥିଲେ
ଶ୍ରୀରାମ ଆଗରେ ସ୍ୱର୍ଗକୁ ଚଳିଗଲେ ।
ସକଳ ମୁନି ଯିବାରୁ ସେ ସ୍ଥାନ ଶୂନ୍ୟହେଲା
ଲକ୍ଷ୍ମଣ ଜାନକୀ ଘେନି ରାମ ବିଚରିଲା ।
ବୋଇଲେ ଏ ସ୍ଥାନରେ ପକ୍ଷକେ ସମ୍ପୂର୍ଣ୍ଣ
ଅତ୍ରୀମୁନି ମୋତେ ଯେ କହିଛନ୍ତି ପୁଣ ।
ପକ୍ଷେକରେ ମହେଶ୍ୱର ମାସକେ ଦେବୀ ଅଙ୍ଗ
ଷଡ଼ମାସେ ନାରାୟଣ ପ୍ରତିମା ପୂଜାହେବ ।
ଏମନ୍ତ ବିଚାରି ମୁକୁତା ପାଷାଣ ବେଗେଆଣି
ଜୀବନ୍ୟାସ କରି ତାକୁ ପୂଜିଲେ ରଘୁମଣି ।
ଅଭିଷେକ କରିଣ ନମସ୍କାର କଲେ
ସେ ବାଣ ଲିଙ୍ଗ ନାମ ମୁକ୍ତେଶ୍ୱର ଦେଲେ ।
ସେଠାରୁ ତିନିଜଣ ବେଗେ ଚଳିଗଲେ
ହେମଗିରି କନ୍ଦରକୁ ସେଠାରେ ତେଜ୍ୟାକଲେ
ଆଗରେ ଶ୍ରୀରାମ ଯେ ପଛରେ ଲକ୍ଷ୍ମଣ
ମଧ୍ୟରେ ଜାନକୀ ଏମନ୍ତ ତିନିଜଣ ।
ଅରଣ୍ୟର ଭିତରେ ଯେ, ପଥ ବହି ଯାନ୍ତି
ଶ୍ରୀରାମ ଲକ୍ଷ୍ମଣ ଧନୁଶର ଧରିଛନ୍ତି ।
ଯାନ୍ତେଣ ଦେଖିଲେ ଯେ ବିରାସୁଧ ବୀର
କଳାମେଘ ପରାଏ ଯେ, ଶରୀର ତାହାର ।
ଶକିର୍ଣ୍ଣ ମଝାକୁ ଯେ ପଟାନ୍ତର କିଣି
ଭୟଙ୍କର ରୂପ ତାର ପର୍ବତ ପ୍ରାୟେ ଦିଶି ।
ଦୃଭାର ଦଇତ ସେ ଅତି ଭୟଙ୍କର
ରକ୍ତବର୍ଣ୍ଣ ନୟନ ଯେ ରଞ୍ଜନ କଜ୍ୱଳ ।
ବିକଟାଳ ବଦନ ପିଙ୍ଗଳ କେଶ ତାର
ଶରୀରି ଶୃଙ୍ଗ ପ୍ରାୟେ ଦିଶଇ ଶରୀର ।
ତାଳବୃକ୍ଷ ପ୍ରାୟେ ତାର ନାସିକା ପୁଡ଼ାଦୁଇ
ଅଣଚଶ ପବନ କି ନିଃଶ୍ୱାସ ତାର ବହି ।
ବାଟରେ ଉଭାହୋଇ ଅଛଇ ଶୂଳଧରି
ସୀତାଙ୍କୁ ଦେଖିଣ ଯେ, ସେ ଧାଏଁ ଖରକରି
କୋଳକରି ରାକ୍ଷସ ଆଣେ କରଧରି
ଦେଖି କୋଳକଲେ ଲକ୍ଷ୍ମଣ ଯାଇକରି ।
ଧନୁ ଯେ ଯୋଚିକରି ବିନ୍ଧିଲେ ପୁଣ ବାଣ
ଦଇତର ଅଙ୍ଗରେ ବାଜି ତତକ୍ଷଣ ।
ସେ ନାରାଚ ଦୈତ୍ୟ ଯେ ସହିଲା ପିଠିଦେଇ ।
ଲକ୍ଷ୍ମଣଙ୍କୁ ଶୂଳ ଯେ ମାଇଲା ପୁଣ ନେଇ ।

ଦେଖିଣ ଶ୍ରୀରାମ ଯେ ବାବଲ ଶର ପେଶି
ଅଙ୍ଗରେ ନବାକୁ ସେ ଶରକୁ ବିନାଶି ।
ଶୁଣ ଗୋ ହେମବନ୍ତ ଅପୂର୍ବ ରସବାଣୀ
ଏକାଦୈତ୍ୟ ସଙ୍ଗରେ ଦୁଇ ଯେ ଭାଇ ପୁଣି ।
ଦୈତ୍ୟର ଉପରକୁ ବିନ୍ଧିଲେ ଟାଣକରି
ବାଣ ଘାତେ ସୀତା ଛାଡ଼ି ପଳାଏ ଦୈତ୍ୟାଡ଼ରି
ଶ୍ରୀରାମଙ୍କୁ ଚାହିଁ ଦୈତ୍ୟ ବୋଲଇ ବଚନ
ମୋର କଥା ଏବେ ଶୁଣ ହେ ରଘୁରାଣ ।
ବନର ଯୋଗୀ ତୁ ଯେ ବନରେ ବୁଲୁଥିଣ
କେଉଁ ଦେଶୁଁ ଏ ସୁନ୍ଦରୀ ଆଣିଛୁ ସଙ୍ଗୋଣ ।
ଯୋଗିଆଣୀ ପ୍ରାୟେତ ନ ଦିଶେ ଏହୁ ନାରୀ
ନର ଅସୁର ପୁରେ ନାହିଁ ଏ ସୁନ୍ଦରୀ ।
ମାଣିକ୍ୟ ବର୍ଣ୍ଣଜାତ ଦାନ୍ତରେ ଯୋଗିଆଣୀ
ହୀରା ମାଣିକ୍ୟ ଚୁଡ଼ା ହସ୍ତରେ ଅଛି ଘେନି ।
ଅମଳାଣ ଶାଢ଼ୀତ ପିନ୍ଧିଛି ସୁନ୍ଦରୀ
କେଉଁ କୁଳେ ଜାତ ଏ କାହାର ଅଟେ ନାରୀ
ବିରାୟୁଧ ବଚନ ଶୁଣିଣ ଦାଶରଥି
ବୋଇଲେ ଅସୁର ଶୁଣ ସ୍ଥିରକରି ମତି ।
ଜନକ ଋଷିର ଯେ ଅଟଇ କୁମାରୀ
ଦଶରଥ ନନ୍ଦନ ନାମ ରଘୁଧାରୀ ।
ଶିବଧନୁ ଭାଙ୍ଗିଣ ସୀତା ବିଭାହେଲେ
ବାଟରେ ପର୍ଶୁରାମ ଜିଣିଲେକ ତାଙ୍କେ ।
ପିତା ସତ୍ୟ ପାଳିଣ ଅଇଲେ ବନବାସ
ଭାଇ ଭାରିଯା ସଙ୍ଗରେ ଆଣିଲେ ରଘୁଶିଷ୍ୟ ।
ବନରେ ବୁଲୁଛନ୍ତି ଅତି କଷ୍ଟେଦିନ
ତୁ ଏବେ ଭେଟ ପଡ଼ିଲୁ ଆସି ଏହିବନ ।
ତୋର ପାଞ୍ଜି ଏବେ ପୋଛିବ ଜନ୍ତୁରାଣ
ତୁ କିମ୍ପା ଏ ବନରେ କରୁଛୁ ଭ୍ରମଣ ।
ଶୁଣିକରି ବିରାୟୁଧ କହିଲା ବଚନ
ଶୁଣ ଶୁଣ ଶ୍ରୀରାମ ହେ ମୋହର ବଚନ ।
ପୂର୍ବରେ ହେ ଶ୍ରୀରାମ ମୁଁ ଅଟଇ ଗନ୍ଧର୍ବ
ସୁଖ ଭୋଗ ପାଇଣ ମୁଁ ହୋଇଲି ଗନ୍ଧର୍ବ ।
କୁବେରକୁ ଦେଖିଣ ମୁଁ ଉପହାସ କଲି
ଚକ୍ଷୁ ତୋର ଦୁର୍ବଳ ଯେ [illegible]
ଶୁଣିକରି ନିଧିପତି କ୍ରୋଧରେ [illegible]
ତୁମ୍ଭେ ଯେ ବିରୂପ ହୁଅ [illegible]

ଶାପକୁ ଭୟ କରିଣ ହୋଇଲି ଭଗତି
ଶୁଣିକରି ପ୍ରସନ୍ନ ହୋଇଲା ନିଧିପତି ।
ବୋଇଲେ ଏହିକ୍ଷଣି ମର୍ତ୍ତ୍ୟପୁର ଯିବୁ
ବିରୂପ ରୂପ ଧରି ବନରେ ବୁଲିବୁ ।
ଘରି ରାବଣ ମାରିବାକୁ ଜନମ ହେବେ ହରି
ଦଶରଥ ପୁତ୍ରହେବେ ମାନବ ରୂପ ଧରି
ଚତୁର୍ଦ୍ଧାର ମୂରତି ହୋଇ ହୋଇବେ ସେ ଜାତ
ପିତାର ସତ୍ୟ ପାଳି ବନକୁ ଯିବେ ସେତ ।
ଶ୍ରୀରାମ ନାମ ବହିବେ ଦଶରଥ ବଳା
ଜାନକୀ ନାମ ବହିବେ ତାଙ୍କର ଅବଳା
ସାନୁଜ ଭାଇ ଲକ୍ଷ୍ମଣ ମେଳ ତିନି ଜଣ
ବନସ୍ତେ ଭେଟିବେ ତୋତେ ଦଣ୍ଡକା ଅରଣ୍ୟ
ଦେଖିଲେ ରାଘବଙ୍କୁ ଅର୍ଜିବୁ ଯେବେ ଦ୍ରୋହ
ତାହାର ଘରଣୀକି କରିବୁ ଯେ ସ୍ନେହ ।
ଦୁଇ ଭାଇଙ୍କ ମେଳରୁ ଜାନକୀ ଧରିନେବୁ
ଦେଖିକରି ଶ୍ରୀରାମ ମନେ କ୍ରୋଧ ହେବେ ବାବୁ
ତେବେ ସେ ଦାଶରଥି ମାରିବେ ତୋତେ ବାଣ
ଶ୍ରୀରାମ ବାଣେ ମୁକତ ହୋଇବୁରେ ପୁଣ ।
ଏମନ୍ତ ବଚନ କହି ବିଶ୍ରବାର ସୁତ
ଶୁଣିକରି ଶ୍ରୀରାମ ସ୍ଥିର କଲେ ଚିତ୍ତ ।
ଏଥୁ ଅନନ୍ତରେ ଯେ ଦୈତ୍ୟ କହେ ପୁଣ
ଦଣ୍ଡକା ଅରଣ୍ୟ ଏ ଅଟେ ରଘୁନାନ ।
ଦଇତ୍ୟେ ଅନୁବ୍ରତେ ବୁଲୁଥାନ୍ତି ଏଥ
ଦେଖିଲେ ତୋ ସଙ୍ଗେ ଦ୍ୱନ୍ଦ୍ୱ କରିବେ ବହୁତ ।
ଆହୁରି କଥାଏ ଯେ ମୋହଠାରୁ ଶୁଣ
ଦଣ୍ଡକାରଣ୍ୟେ ଋଷି ଅଛନ୍ତି ଯେ ପୁଣ ।
ତୋତେ ଦେଖିବାକୁ ଯେ ସ୍ୱରଭଙ୍ଗ ଋଷି
ଆଶାକରି ବନରେ ଯୁଗେ ହେଲା ଅଛି ।
ତାଙ୍କର ଆଶ୍ରମକୁ ଚଳ ତିନିଜଣ
ସକଳ କଥା ତୋତେ କହିବେ ସେ ପୁଣ ।
ଏତେ କହି ବିରାୟୁଧ ସ୍ୱର୍ଗପୁର ଗଲା
ଶ୍ରୀରାମର ବାଣେ ଯେ ମୁକତ ଲଭିଲା ।
ଯହୁଁ ସେ ବିରାୟୁଧ କଲା ଦେହ ଛାଡ଼ି
ରଘୁନାଥ ସେଠାରୁ ମନରେ ବିଚାରି ।
ବୋଇଲେ ଏ ବନକୁ ତେଜ୍ୟା କରିଯିବା
ଏବନେ ରହିଲେ ଦ୍ୱନ୍ଦ୍ୱ ଉପୁଜଇ ଅବା ।

ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ସେ ବିରାୟୁଧ ଅଟେ ଗନ୍ଧର୍ବ ଜାତି ପୁଣ ।
ନିଧିପତି ଶାପରେ ଅସୁର ହୋଇଥିଲା
ଶ୍ରୀରାମ ବାଣ ବାଜନ୍ତେ ମୁକତ ହୋଇଲା ।
କେଉଁ ଗନ୍ଧର୍ବ ଅଟଇ କାହାର ନନ୍ଦନ
ସେ କଥା ମୋର ଆଗେ କୁହ ତ୍ରିଲୋଚନ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
କଉରବ ଗନ୍ଧର୍ବର ବିଶ୍ରବା ଅଟେ ନାତି ।
ବିଶ୍ରବା ଗନ୍ଧର୍ବ ଠାରୁ ବିରାୟୁଧ ଯେ ସମ୍ଭୁତ
କାଳେ ସେହି ଗନ୍ଧର୍ବ କଲେ ଉପଦର୍ପ ।
ତେଣୁ ସେ ମର୍ତ୍ତ୍ୟପୁରେ ରହିଲା ତିନିଯୁଗ
ଶ୍ରୀରାମଙ୍କୁ ଦେଖିଣ ଲଭିଲେ ମୁକ୍ତିଭାବ ।
ମୁକତ ହୋଇଣ ସେ ପିତାର ପୁରଗଲା
ପିତା ମାତାଙ୍କୁ ସେ ନମସ୍କାର କଲା ।
ନିଶ୍ଚିନ୍ତେ ସ୍ୱର୍ଗପୁରେ ରହେ ବିରାୟୁଧ
ସବୁଠାରେ ଭବୁସି ହୋଇଲା ତାର ହୃଦ ।
ପାର୍ବତୀ ବୋଇଲେ ଯେ ସେଠାରୁ କିସ ହେଲା
ଶ୍ରୀରାମ ସେ ବନରୁ କେଣିକି ପୁଣ ଗଲା ।
ଈଶ୍ୱର ବୋଇଲେ ଯେ ଶୁଣ ଶାକମ୍ଭରୀ
ବିରାୟୁଧ ଠାରୁ ଯେ ଶ୍ରୀରାମ ଶୁଣିକରି ।
ଦଣ୍ଡକା ଅରଣ୍ୟରୁ ଗଲେ ଅପସରି
ଶ୍ରୀରାମ ଲକ୍ଷ୍ମଣ ଯେ ଜାନକୀ ଘେନିକରି ।
ଶରଭଙ୍ଗ ଋଷିଠାକୁ ପଥ ବହିଯାନ୍ତି
ବାଟରେ ଯାଉଁ ଯାଉଁ ଇନ୍ଦ୍ରଙ୍କୁ ଦେଖନ୍ତି ।
ଦେଖିଣ ବାସବ ଯେ ସମାର୍ଜନା କରି
ଶ୍ରୀରାମ ସେହିଠାରୁ ଗଲେକ ତତପରି ।
ଇନ୍ଦ୍ର ବିଚାରିଲେ ଏହିକି ରଘୁନାଥ
ଅସୁର ବଳକୁ ଏ କରିବେ ନିପାତ ।
ଏଥର ଦେବତାଏ ସ୍ୱର୍ଗରେ ସୁଖେ ରହି
ମୁନିମାନେ ଆହୁତି ଅଗ୍ନି ମୁଖେ ଦେଇ ।
ଆମ୍ଭପାଇଁ ଦେବରାଜ ଏତେ ଦୁଃଖ ସହି
କନ୍ଧ ଶବରଙ୍କ ପ୍ରାୟେ ବନରେ ବୁଲଇ ।
ନିରଞ୍ଜନ ସ୍ୱରୂପ ଏ ଦାଶରଥି
ଚିହ୍ନିବେକି ନ ଚିହ୍ନିବେ କରଇ ମାୟାଦେଖି
ଏତେବୋଲି ବାସବ ଯେ ଗୋଟିଏ ସିଂହହେଲା
ପର୍ବତ ପ୍ରାୟେ ରୂପ ପ୍ରକାଶ ଯେ କଲା ।

ଗର୍ଜନ ନାଦକରି ତର୍ଜନ କଲା ପୁଣି
ଶ୍ରୀରାମର ଆଗରେ ମିଳିଲା ତତକ୍ଷଣି ।
ଦେଖିକରି ରାମ ଯେ ଧଇଲେ କୋଦଣ୍ଡ
ଶରବାଛି ଗୁଣରେ ବସାଇଲେ ବେଗ ।
ତାଦେଖି ସିଂହ ରୂପ ଛାଡ଼ିଲେ ବାସବ
ମଞ୍ଜାରି ରୂପ ହୋଇ ଆଗରେ ଛିଡ଼ାଦନ୍ତ ।
ଲକ୍ଷ୍ମଣ ବୋଇଲେ ଦେବ ବିଚିତ୍ର କଥା ହେବ
ସିଂହ ରୂପ ଛାଡ଼ିଲା ମଞ୍ଜାରି ରୂପ ଭାବ ।
ଦେଖିଲେ ଶ୍ରୀରାମ ଯେ ମଞ୍ଜାରି ସ୍ୱରୂପ
ସିଂହର ଶରକାଢ଼ି ଯୋଚିଲେ ସେ ତୀକ୍ଷ ।
ଦେଖିଣ ପୁରନ୍ଦର ମଞ୍ଜାରି ରୂପତେଜି
ଶାର୍ଦ୍ଦୋଳ ରୂପ ହୋଇ ରଫଡ଼ି ଯେ ଗଳଗାଜି
ଦେଖିଣ ଶ୍ରୀରାମ ଯେ ମଞ୍ଜାରି ଶରକାଢ଼ି
ତୀକ୍ଷଣର ନାରାଚକୁ ଧନୁରେ ଗୁଣଭିଡ଼ି ।
ଲକ୍ଷ୍ମଣ ବୋଇଲେ ଯେ ଅଟଇ ଅସୁର
କ୍ଷଣକେ ଭୃଗୁରୁପି ହେଉଛି ମାୟାଧର ।
ମାର ଦେବ ଏହାକୁ ବିଚାର ନ କର
ଶ୍ରୀରାମ ବୋଇଲେ ହୁଅରେ ବାବୁସ୍ଥିର ।
କେତେ ରୂପରେ ମାୟା ରୂପ ସେ ହୋଇବ
ମାଇଲେ ମଲାତ ନ ଦେଖି ତାର ଭାବ ।
ଶୁଣିକରି ବାସବ ଇନ୍ଦୁର ରୂପଧରି
ହେଙ୍ଗୁଳ ବର୍ଣ୍ଣ ଶରୀର ରୋମ ତା ଟାଙ୍କୁରି ।
ଶର ଅଧାନ କରନ୍ତେ ରାମଚନ୍ଦ୍ର ପୁଣ
ଇନ୍ଦୁର ରୂପ ଗୋଟି ଛାଡ଼ିଲେ ସୁରରାଣ ।
ହସ୍ତୀରୂପ ଗୋଟିଏ ଯେ ହେଲେ ତତକ୍ଷଣ
ଜାନକୀ ବୋଇଲେ ହସ୍ତୀ ଆଗରେ ଉଭାପୁଣ ।
ଅସମ୍ଭବ କଥା ଏହୁ ବନେ ଦେଖାଗଲା
ଶ୍ରୀରାମ ବୋଲନ୍ତି ତୁମ୍ଭେ ଶୁଣ ଗୋ ଅବଳା ।
ଦୈତ୍ୟମାନେ ଜାଣନ୍ତି ବହୁତ ଉପାୟେ
ଦେଖୁ ଦେଖୁ ନାନାରୂପ ହୁନ୍ତି ମେଘପ୍ରାୟେ ।
ଏମନ୍ତ କଥା ହୁଅନ୍ତେ ଶୁଣିଲେ ବାସବ
ସାତ ନାଗ ରୂପ ଗୋଟି ହେଲେକ ବେଗ ।
ଶୃଗାଳ ରୂପ ଗୋଟି ହେଲା ସେହୁ ପୁଣ
ଦେଖିଣ ରଘୁନାଥ ଟଙ୍କାର କଲେ ଗୁଣ ।
ସୁରରାଜା ବିଚାରି ଶୃଗାଳ ରୂପତେଜି
ସ୍ୱୟମ୍ଭର ରୂପ ଯେ ହୁଏ ଗଳଗାଜି ।

ଲକ୍ଷ୍ମଣ ବୋଲନ୍ତି ସ୍ୱାମୀ କିମ୍ପାଇ ନ ମାର
ଶ୍ରୀରାମ ବୋଲନ୍ତି ଶର ହୋଇବ ନାରଖାର ।
ରୂପକୁ ଦେଖିଣ ସିନା ବିନ୍ଧିବା ଆମ୍ଭେ ବାଣ
ରୂପ ନ ଦେଖିଣ ଶର ଫେରିବା ବହନ ।
ଏମନ୍ତ ସମୟେ ପୁଣ ଜୀବ ରୂପ ଗଲା
ଦୈତ୍ୟରୂପ ଗୋଟି ଇନ୍ଦ୍ର ପ୍ରକାଶ ପୁଣ କଲା
ଦେଖିକରି ଶ୍ରୀରାମ ଧନୁ ଆମୋଞ୍ଚିଲେ
ଧନୁଗୁଣେ କାବଳ ଶର ବସାଇଲେ ।
ଦେଖିକରି ବାସବ ଦୈତ୍ୟରୂପ ତେଜି
ବ୍ରହ୍ମମୁନି ଗୋଟି ଯେ ହେଲେ ମାନେ ହେଜି ।
ଶ୍ରୀରାମ ଲକ୍ଷ୍ମଣ ସୀତା ଦେଖିକଣ ପୁଣ
ଦେଖିଲେ କହେ ସୁତ୍ର ଯେ ବ୍ରାହ୍ମଣ ।
ଶରକୁ ଅଧାନ ରାମ ନ କଲେଟି ପୁଣ
ଇନ୍ଦ୍ର ବିଚାରିଲା ଯେବେ ହେବେ କ୍ରୋଧଧନ ।
ମନରେ ସୁମରିଲେ ଶୁଣ ଐରାବତ
ଧବଳ ରୂପ ପର୍ବତ ପ୍ରାଏ ଦିଶେ ଯେ ସମ୍ଭୁତ ।
ଋଷି ରୂପ ଛାଡ଼ିଲେ ନିଜରୂପ ଧରି
ଶ୍ରୀରାମ ଚରଣେ ଯାଇ ମାନ୍ୟ ଧର୍ମ କରି ।
ବୋଇଲେ ନମସ୍ତେ ଦେବ ଦେବ ନାରାୟଣ
ଦୋଷ ମୋ କ୍ଷମାକର ତ୍ରୈଲୋକ୍ୟ ନିରଞ୍ଜନ
ନମସ୍ତେ ସଂସାର ସାର ନିରଞ୍ଜନ ରୂପ
ନମସ୍ତେ ଦୁଷ୍ଟଙ୍କୁ ନାଶି ସନ୍ଥଙ୍କୁ ରଖୁତ ।
ତୋ ରଖିବାରେ ଆମ୍ଭେ ସକଳ ଦେବତା
ଅସୁରଙ୍କ ଭୟରେ ଆମ୍ଭଙ୍କୁ ରଖନ୍ତା ।
ଏ ଜନ୍ମରେ ଶଙ୍ଖ ଚକ୍ର ନବହିଲୁ ହସ୍ତ
ଗରୁଡ଼ ବାହାନ ପୁଣ ତେଜି ରଘୁନାଥ ।
ରାବଣ ମାରିବା କାଳେ ନନ୍ଦିଘୋଷ ଚଢ଼ି
ଲଙ୍କାରେ ଭୁବନ ଦେଖି ପଡ଼ିବ ଯେ ହୁରି ।
ତେର ବରଷ ଦଶମାସେ ରାବଣ ନାଶଯିବ
ଶରି ରାବଣ ରୂପ ଯେ ସେଠାରୁ ସରିବ ।
ଚଉଦ ମାସରେ ତୋର ଅଜ୍ଞାନ ଘୋଟିବ
ସେ କଥାକୁ ହୃଦରେ ଚେତନା ରଖିଥିବ ।
ଏତେ କହି ବାସବ ଯେ ନମସ୍କାର କଲା
ଶ୍ରୀରାମ ବୋଇଲେ ତୁଚେ ଦେବତା ଜ ଚଳା ।
ଏତେ ଛଳକଥା କିମ୍ପା ମୋଠରେ ଦିଅ ଛଳୁ
ଦେବରାଜ ହୋଇଣ ତୁ ଅନ୍ୟାୟ ଯେ କଲୁ ।

କ୍ରୋଧରେ ଶର ଯେବେ ମାରିଥାନ୍ତି ମୁହିଁ ।
ସ୍ୱର୍ଗେ ରାଜପଣ କରନ୍ତୁକି ହୋ ଯାଇ ।
ସୁରରାଜା ବୋଇଲେ ତୁ ତ୍ରୈଲୋକ୍ୟ ଈଶ୍ୱର
ତୋତେଟି କେଉଁକଥା ଅଟଇ ଉବାର ।
ବିଚାରିଲେ କ୍ଷୀର ସାଗରେ ତୁ ଥାନ୍ତୁ
ହସ୍ତ ବଢ଼ାଇଲେ ତୁ ଦୁଷ୍ଟଙ୍କୁ ନାଶନ୍ତୁ ।
ଦୁଷ୍ଟଜନ ନିବାରଣ ମନ୍ତ୍ରର ସକାଶେ
ଅବତାର ହୋଇଛ ମାନବ ସ୍ୱରୂପେ ।
ଶୁଣିକରି ଶ୍ରୀରାମ ପରମ ତୋଷ ହେଲେ
ଯାଅବୋଲି ସ୍ୱର୍ଗପୁର ବାସବଙ୍କୁ ଯେ ବୋଇଲେ
ଶୁଣିକରି ବାସବ ବେଗେ ଚଳିଗଲା
ଐରାବତ ଚଢ଼ିଣ ସ୍ୱର୍ଗରେ ମିଳିଲା ।
ଏଥୁଅନନ୍ତରେ ଯେ ସେଠାରୁ ଶ୍ରୀରାମ
ବାସବ ଚଳିବାରୁ ଚଳିଲେ ତିନିଜଣ ।
ଶରଭଙ୍ଗ ମୁନିଙ୍କର ଆଶ୍ରମରେ ମିଳି
ଦେଖିଲେ ଅନେକ ଋଷିଛନ୍ତି ସେଠାରେ ଘେରି
ଦେଖିଣ ମୁନିମାନେ ପୂଜାବିଧି କଲେ
ପାର୍ବତୀଙ୍କ ଆଗରେ ଈଶ୍ୱର କହିଲେ ।
ବୋଲନ୍ତି ଶଙ୍କର ତୁ ଶୁଣ ଶାକମ୍ଭରୀ
ମାନବ ଜନ୍ମରେ ରାମ ଜାନକୀ ଧରି କରି ।
ରାମ, ଲକ୍ଷ୍ମଣ, ସୀତା ତିନିଜଣ ପୁଣ
ଶରଭଙ୍ଗ ଋଷିଙ୍କି କଲେ ମାନ୍ୟ ଧର୍ମ ।
ସୁକଲ୍ୟାଣ କରି ଋଷି ଆନନ୍ଦ ହୋଇଲେ
ପାଶରେ ବସାଇ ତାଙ୍କୁ ଋଷି ପଚାରିଲେ ।
କିମ୍ପାଇ ରାମ ବନେ ଅଇଲ ତିନିଜଣ
ଭରଥ କିମ୍ପା ଆସେ ସଙ୍ଗରେ ଘେନି ସୈନ୍ୟ
ଭୋ ଶ୍ରୀରାମ ତୋହର ପବିତ୍ର ମୁଖଦେଖି
ବ୍ରହ୍ମଲୋକେ ବସିବି ମୁଁ ଏଦେହ ଉପେକ୍ଷି ।
ସୁରପତି ମୋତେ ଯେ ଘେନିଣ ଆସିଥିଲା
ମୋହର ନଗଲାରୁ ବାହୁଡ଼ି ସେ ଗଲା ।
ତୋତେ ମୁହିଁ ଦେଖିବି ବୋଲିଣ ରଘୁସାଇଁ
ବ୍ରହ୍ମଲୋକେ ନ ଯାଇ ଅଛଇ ବାଟଚାହିଁ ।
ତୁହି ସେ ପରମ ବ୍ରହ୍ମ ମୁହିଁ ସେ ଜାଣଇ
ରାତ୍ର ଦିବସେ ତୋ ଚରିତ୍ର ବଖାଣଇ ।
ଶ୍ରୀରାମ ବୋଇଲେ ମୁନି ମୋରଠାରୁ ଶୁଣ
ଇନ୍ଦ୍ରହିଁ ବାଟରେ ଭେଟ ହେଲେ ମୋତେଜାଣ
କେତେ ପ୍ରାଏ ଜୀବ ହୋଇ ମୋତେ ମାୟାକଲା
ଧନୁଶର ଧରନ୍ତେ ସ୍ୱର୍ଗକୁ ଚଳିଗଲା ।
ଭରଥ ଆସିବା କଥା ପଚାରିଲେ ମୋତେ
ସେ କଥା ଏକମନେ ଶୁଣ ମୁଁ କହୁ ତୋତେ ।
ଭରଥ ଶତ୍ରୁଘନ ଅଜାଘରେ ଥିଲେ
ପିତା ମୋତେ ଅଭିଷେକ କରିବା ବିଚାରିଲେ
କୈକେଇ ଜନନୀ ମୋର ସେ କଥା ନିଷେଧିଲା
ମୋର ପୁତ୍ର ରାଜା ହେଉ ସତ୍ୟ କରାଇଲା ।
ତେଣୁ କରି ପିତା ସତ୍ୟ କଲେ ଯାଉ ବନ
ଭାଇ ଭାରିଯା ଘେନି ଅଇଲି ମୁହିଁ ପୁଣ ।
ନଦେଖି ପିତା ମୋତେ ବିକଳ ମନ ହେଲେ
ବାର ଦିନେ ଦେହ ଛାଡ଼ି ସ୍ୱର୍ଗକୁ ଚଳିଗଲେ ।
ଭରଥ ଶତ୍ରୁଘନ ପାଇଲେ ବାରତା
ମାତାଙ୍କୁ ଗାଳି ଦେଇ ପିତାରେ ଭଗତା ।
ପିତାଙ୍କର ଶରୀର ଅଗ୍ନିରେ ଭସ୍ମକଲା
ସୈନ୍ୟବଳ ଘେନି ମୋର ପାଶକୁ ଅଇଲା ।
ମୁହିଁ ନଗଲାରୁ ମୋର ପାଦୁକା ନେଲେ ପୁଣ
ମୋହର ପାଦୁକାକୁ ରାଜା କଲେ ଜାଣ ।
ମୋର ନାମ ସୁମରି ବଞ୍ଚଇ ଦିନ ସେହି
ରାଜାର ଭଲମନ୍ଦ ଲୀଳାବତୀ ଜନନୀ ବୁଝଇ ।
ଶୁଣିଣ କହନ୍ତି ଯେ ଶରଭଙ୍ଗ ମୁନି
ଦେବକୁଟେ ବନକୁ ଅଇଲ ରଘୁମଣି ।
ଅସୁର ମାରିବାକୁ ହୋଇଛ ଅବତାର
ନିରାଶ୍ରୟ କରିଣ ଅସୁର ସଂହାର ।
ମୁଁ ତୋତେ ଦେଖିଲି ଏବେ ଯିବି ସ୍ୱର୍ଗପୁର
ମୋତେ ତୁ ସୁଦୟା କରିଥିବୁ ରଘୁବୀର ।
ରାମ, ଲକ୍ଷ୍ମଣ, ସୀତାଙ୍କୁ କୋଳରେ ବସାଇଲେ
ମୁଖରେ ଚୁମ୍ବନ ଦେଇ ଶୀତଳ କହିଲେ ।
ଶ୍ରୀରାମ ଲକ୍ଷ୍ମଣ ନାମ ତିନିଥର ପଢ଼ି
ପିଣ୍ଡରୁ ପ୍ରାଣଗୋଟି ବେଗେ ଗଲା ଛାଡ଼ି ।
ସ୍ୱର୍ଗର ବିମାନ ତେତେକ୍ଷଣ ମିଳି
ଅପସରି କିନ୍ନରି ଦିଅନ୍ତି ହୁଳହୁଳି ।
ନୃତ୍ୟକାରିମାନେ କରନ୍ତି ନୃତ୍ୟପୁଣ
ସେବାକାରିମାନେ ଆଗରେ ରଘୁ ଜାଣ ।
ହରିବୋଲ ରାମତାଳି ଶବଦ ସଂକୀର୍ତ୍ତନ
ଶଙ୍ଖ ମହୁରୀ ଶବଦେ ପୁରେ ଦିଗମାନ ।

ସେ ବିମାନ ଉପରେ ମୁନି ଯାଇ ବସି
ଦେବତନୁ ଧରିଣ ରୂପ ଯେ ପ୍ରକାଶି ।
ଜୟ ଜୟ ଶବଦ ଶୁଭିଲାକ ଟାଣ
ଉଠିଲା ଯାନ ଯେ ଗର୍ଜନ କରି ପୁଣ ।
ସ୍ୱର୍ଗପୁରେ ଯାଇଣ ପ୍ରବେଶ ହୋଇଲା
ବ୍ରହ୍ମମୁନି ସଙ୍ଗତରେ ନିଶ୍ଚିନ୍ତେ ରହିଲା ।
ସେକଥା ଦେଖି ରାମ ଆନନ୍ଦ ହୋଇଲେ
ଜାନକୀଙ୍କୁ ରଖିକରି ଦୁଇଭାଇ ଗଲେ ।
ଋଷିଙ୍କ ମୃତ୍ୟୁ ଶବ ନେଲେ କନ୍ଧେ ବହି
ହସ୍ତୀଭଙ୍ଗା କାଠ ଯେ ଠୁଳ କଲେ ନେଇ ।
ଋଷିଙ୍କର ଶବକୁ ଅଗ୍ନିରେ ଭସ୍ମ କଲେ
ପାଣିବୁଡ଼ ତିନିଜଣ ସେହିଠାରେ ଦେଲେ ।
ତର୍ପଣ କରି ତିଳ ଜଳ ଦାନ ଦେଇ
ସେହିଠାରୁ ତିନିଜଣ ବେଗେ ଚଳିଯାଇ ।
ଜାନକୀ ମନୋହାରୀ ଭାଇ ଯେ ଲକ୍ଷ୍ମଣ
ବାଟରେ ଯାଉଁ ଯାଉଁ ଦେଖନ୍ତି ଜୀବମାନ ।
ଟଭା, ବେଲ, ବଉଳ, ମହୁଲ, ଶାଳ, ଆମ୍ବ
ବକୁଳ ଲବଙ୍ଗ ଭଇଁଚ ଉଦମ୍ବ ।
ଡିମ୍ବିର ମନ୍ଦାର ଅଶୋକ ଖଜୁରୀ
ଆଙ୍କୁ ଧଳ ଆଙ୍କୁ କମଳା ଫଳ ଫଳି ।
ଜଟା ବଇଁଶି ପୁଣ କସି ପାଳଧୁଆ
ସିମିଳି ସୁନାରୀ ବଣ ଭଇଁଚ ତେଣ୍ଟୁଆ ।
ଚମ୍ପା ନାଗେଶ୍ୱର ଯେ କରୁଣା କେତକୀ
ମଲ୍ଲୀ ଛୁରୀଅନା ପୋଲାଙ୍ଗ ମାଳତୀ ।
କରୁଣା କତଶଅର ବିଧୁକ ତରାଟ
ପାଟଳି ଗଙ୍ଗ ଶିଉଳି ମଧୁକରାଏଟ ।
ବୀରଭଦ୍ର କଇଁଥ କୁନ୍ଦ ଯେ ଅନୁଗସ
ଦେଖିଣ ତିନିଜଣ ହୋଇଲେ ହରଷ ।
ବନର ଜନ୍ତୁମାନେ ଦେଖନ୍ତି ଅପାର
ଗହନ ବିପିନ ଯେ ସେ ଦିଶେ ଭୟଙ୍କର ।
ରାମ ଲକ୍ଷ୍ମଣ ଯେ ସୀତା ଜଣ ତିନି
ଯାଇଣ ଦେଖିଲେ ଯେ ସୁତକ୍ଷଣ ମୁନି ।
ଦେଖିଣ ମହାମୁନି ଶ୍ରୀରାମ ପୂଜାକଲେ
ଗଉରବ କରିଣ କନ୍ଦମୂଳ ଦେଲେ ।
ଶ୍ରୀରାମ ବିଶ୍ରାମ କରି ତହିଁରେ ରହିଲେ
ସାତଦିନ ଯେ ସେଠାରେ ଦିନ ନେଲେ ।
ଚାରିମାସ ଚିତ୍ରକୂଟେ ତହିଁ ରହିଥିଲେ
ରାମ ଲକ୍ଷ୍ମଣ ସୀତା ହରଷେ ଚଳିଗଲେ ।
ସୁତୀକ୍ଷ୍ଣ ମୁନି ମଠେ ମାସେ ରହିଲେ ଯେ ପୁଣ
ସେଠାରେ ରାମ ଯେ ହରଷେ ନେଲେ ଦିନ ।
ମୁନିମାନେ ପୁଣି ଯେ ଅରଣ୍ୟରେ ଥିଲେ
ଶ୍ରୀରାମଙ୍କୁ ଦେଖିବାକୁ ହରଷେ ଅଇଲେ ।
ତପିଜନମାନଙ୍କୁ ଦେଖିଲେ ରଘୁପତି
ପ୍ରଣମ୍ୟ କରିଣ ଯେ ବସିଲେ ତାଙ୍କ କତି ।
ମୁନିମାନଙ୍କୁ ସୁତୀକ୍ଷ୍ଣ ବୋଇଲେ ଏହିଯେ ଶ୍ରୀରାମ
ଏହାଙ୍କୁ ପଟାନ୍ତର ନୁହନ୍ତି ଯେ କାମ ।
ସୁତୀକ୍ଷ୍ଣ ମୁନି କହନ୍ତି ଯେ ବଳବନ୍ତ ସୂର୍ଯ୍ୟବଂଶୀ
ଆମ୍ଭର ଭାଗ୍ୟ ବଳରେ ତାହାଙ୍କୁ ଆମ୍ଭେ ଦେଖି
ଅସୁରଙ୍କ ଭୟ ନ ପାରୁ ଆମ୍ଭେ ସହି
ତେଣୁ ଭାଳି ମନରେ ଅଇଲୁ ତୋତେକହି ।
ସୁତୀକ୍ଷ୍ଣ ମୁନି ବୋଲେ ଶ୍ରୀରାମ ତୁମେ ଦେଖ
ଦୁସ୍ତର ପରମା ଯେ ମୁନିପାନ୍ତି ଦୁଃଖ ।
ଶୁଣିକରି ରଘୁନାଥ ପ୍ରତିଜ୍ଞା ପୂର୍ଣିକଲେ
ଦେଖିଲେ ଅସୁର ଯେ ମାରିବୁ ବୋଇଲେ ।
ତୁମ୍ଭେ ମୁନିମାନେ ଯେ ନକର କିଛି ଚିନ୍ତା
ଏସନକ ବୋଲିଣ ବୋଇଲେ ଜଗନ୍ନିତା ।
ଶୁଣିକରି ମୁନିମାନେ ଶ୍ରୀରାମ ହେଲେ ତୋଷ
ଆନନ୍ଦରେ ଗଲେ ଆଶ୍ରମେ ତୁରିତ ସେ ।
ସୁତୀକ୍ଷ୍ଣ ମୁନିଙ୍କ ପାଶରେ ରାମ ରହି
କୋଦଣ୍ଡ ଧରି ରାମ ବନରେ ବୁଲଇ ।
ଦୁଷ୍ଟଜୀବ ଦେଖିଲେ କରଇ ତାକୁ ନାଶ
ଅସୁରଙ୍କୁ ସେ ବନୁ କରନ୍ତି ଦେଖି ଶେଷ ।
କରଯୋଡ଼ି ରାମଙ୍କୁ ଜାନକୀ ତିଆରିଲେ
କିମ୍ପାଇ ବନରେ ବୁଲଯେ ବୋଇଲେ ।
ଅକାରଣେ ମନ୍ଦ ଅର୍ଜୁଛ ତୁମ୍ଭେ କିମ୍ପା
ଦଶଦୋଷ ଛାଡ଼ିଣ ବନରେ ବୁଲ ଏକା ।
ଇଷ୍ଟ ବନ୍ଧୁ କୁଟୁମ୍ବ ନଗରେହେଁ ଆମ୍ଭ ମୁଖ
ବନସ୍ତରେ ବୁଲି ତୁମ୍ଭେ ପାଇବ ବଡ଼ ଦୁଃଖ ।
ଫଳ ମୂଳ ଆମ୍ଭର ହେଉଅଛି ଗ୍ରାସ
କନ୍ଦର ଝରଣା ପାଣିକି କଲଇଁ ଆମ୍ଭେ ଆସ ।
ପଲଙ୍କ ସୁପାତି ଛାଡ଼ି ଭୂମିରେ ଶୟନ
ପରକୁ ଅହନ୍ତା କରି ନୁହଇ ବିଧାନ ।

ଅସୁରମାନେ ଆମ୍ଭର ନୁହନ୍ତି କେହି ଦୋଷୀ
ସଙ୍ଗରେ ରଥ ଗଜ ସୈନ୍ୟ ନାହିଁ କିଛି ।
କାହାକୁ ଘେନି ସମର କରିବା ଆମ୍ଭେ ତ
ଦଇତେ ବଡ଼ ମାୟାବି କରିବେ ଅନର୍ଥ ।
ରାକ୍ଷସ ଆମ୍ଭର କି ନେଉଛନ୍ତି ଦେଶ
କି ଅବା ଆମ୍ଭରି ହରିନେଲେ ଧନ ବସ୍ତ୍ର ।
ଦେବେ ଦୈତ୍ୟେଦ୍ୱନ୍ଦେ ଯେ ତାଙ୍କର ଉଚିତ
ଏକଥା ଯୋଗାଏ ଆମ୍ଭଙ୍କୁ କଦାଶ୍ଚିତ ।
ଦନୁଜ ମାରିବାକୁ ଆମ୍ଭର କିସ କାର୍ଯ୍ୟ ଅଛି
ଏହି କଥା ଭଲ ନୁହେଁ ଶୁଣ ଦାଶରଥି ।
ଦେବତାଏ ଆମ୍ଭର ଭଗାରି ଅଟନ୍ତି
କୈକେୟୀ ମନ୍ଥୁଡ଼ିକି ଶିଖାଇ ଦେଇଛନ୍ତି ।
ଆମ୍ଭର ଭୂପତି ପଣ ଦେବତା ନାଶ କଲେ ।
ଭ୍ରଥ ନେଇ ଅଇଲାକୁ ଶୂନ୍ୟରେ ଡାକ ଦେଲେ
ନୋହିଲେ ପିତା କିମ୍ପା ନାଶ ଯାନ୍ତେ ପୁଣ
ଖଳ ବଳ କିମ୍ପା ଆମ୍ଭ ରାଜ୍ୟରେ ହୋନ୍ତା ପୁଣ ।
ଏ ବନରେ ତୁମ୍ଭେ କିମ୍ପା ବୁଲନ୍ତି ତିନି ଜଣ ।
ନିର୍ଝର ପାଣି ଖାଇ ବଞ୍ଚୁଥା କିମ୍ପା ଦିନ ।
ମୁନିମାନେ ଆମ୍ଭଙ୍କୁ ବନରେ ହୋନ୍ତେ ସାହା
ଦେଖି ଆଦର ଆମ୍ଭଙ୍କୁ କରନ୍ତି ପୁଣ୍ୟ ଦେହା ।
ବଇଦେହୀ ବଚନ ଶୁଣି ରଘୁନାଥ
କୋଦଣ୍ଡ ତୋଳିଣ ଯେ ଧଇଲେ ନିଜ ହସ୍ତ ।
ନିଶରେ ହସ୍ତ ଦେଇ କରନ୍ତି ଗାରିମା
ସନ୍ଥପାଳି ଦୁଷ୍ଟ ମୁଁ ନାଶିବ ଗୋ ବାମା ।
ପୂର୍ବର କଥାମାନ ମନରେ ନାହିଁ ସଖି
ନିଜସ୍ଥାନେ ଥିଲ ଯେ ମୋହର ପାଶେ ବସି ।
ସଦାଶିବ ବେଦ ବର ଘେନିଣ ଦେବତା
ଅସୁରଙ୍କ ଭୟରେ ଯେ କହିଣ ତାର ଚିନ୍ତା ।
ଖରଣପଶି ମୋତେ କହିଲେ ବଚନ
ଅସୁରଙ୍କ ଡରରେ ନ ରହୁ ସ୍ୱର୍ଗେ ପୁଣ ।
ଅସୁରଙ୍କୁ ମାରିଣ ଦୁଷ୍ଟଙ୍କୁ ନାଶ କର
ତୁମ୍ଭେ ରଖିଲେ ସିନା ଦେବତାଙ୍କ ବଳ ।
ତାଙ୍କଠାରୁ ଶୁଣି ଜାତ ହେଲି ମୁଁ ମର୍ତ୍ତ୍ୟ ପୁରେ
ଅଚେତା ହୋଇଲା ତୁମ୍ଭେ ନାହିଁକି ମନରେ ।
ଅସୁରଙ୍କୁ ମାରିବାକୁ ଆସନ୍ତି ଦେବବନ
ଦେବଙ୍କୁ ରଖିବୁ ଆମ୍ଭେ ଅସୁର ମାରିଣ ।

କ୍ଷତ୍ରିଙ୍କର ବୃତ୍ତି ଏ ଅଟଇ ନିୟତ
ତୁମ୍ଭେ ମୋତେ ତିଆର ଜନକ ଦୁହିତ ।
ବେଦ ବରଙ୍କ ଭୁଜରୁ କ୍ଷତ୍ରୀ ହେଲେ ଜାତ
ବାହୁ ବଳେ ପୃଥ୍ୱୀକୁ ସାଧିଲେ ନିୟତ ।
ବେଦବର ବୋଲେ ତୁମ୍ଭେ ମାରିବ ଦୁଷ୍ଟଜନ
ସନ୍ଥକୁ ତିଆରିଲେ ଧରିତ୍ରୀ ସହେ ପୁଣ ।
ତାଙ୍କର ବୋଲରେ କ୍ଷତ୍ରୀ ଧର୍ମରେ ଅଛଇ
ପୁରାତନ କଥା ମାନ ଶୁଣିଲା ତୋର ନାହିଁ ।
ତେବେ ସିନା ଜାଣିବାରେ ଶତୃକୁ ଧ୍ୱଂସଇ
ମୋହର ସତ୍ୟକୁ ତୁ ନ ଭାଙ୍ଗରେ ସହି ।
ଏତେ ବାଗେ ରଘୁନାଥ ଜାନକୀ ଆଗେ କହି
ଦଇତଙ୍କୁ ମାରିଣ ମୁଁ ଉଧରିବି ମହୀ ।
ଏ କଥାକୁ ମନା ତୁ ନ କର ବଇଦେହୀ
ଏମନ୍ତ ବୋଲିଣ ଯେ ରାମଚନ୍ଦ୍ର କହି ।
ମହତ କୁଳରେ ଜାତ ଅଟେ ମହିସ୍ଥଳୀ
ମୋର ପ୍ରତିଜ୍ଞା ନିରୋଧ ନ କରରେ ସହୀ ।
ପୁରାଣର କଥାମାନ କର୍ଣ୍ଣରେ ଯହିଁ ଶୁଣି
ତୋହର ଆଗରେ ଏବେ କହିବା ସଙ୍ଗାତୁଣୀ
ଅସୁର ମାରିବାକୁ ଆସିଛି ବନ ଫେରି
ସେ ସକାଶେ ଶରାସନ ହସ୍ତରେ ଅଛି ଧରି ।
ମୋହର ହସ୍ତେ ଯେବେ ଏହି ଧନୁ ଥିବ
ତିନିପୁରେ ମୋର ସଙ୍ଗେ କେଶରୀ ହୋଇବ ।
ପରକି କରିବ ସଖି ଆପଣାର କାର୍ଯ୍ୟ
ସେ ଉପକାରୀ କି ପ୍ରଶଂସା କରଇ ଦଇବ ।
ସେମାନଙ୍କୁ ସମସ୍ତେ ବଡ଼ ହିଁ ବୋଲନ୍ତି
ପର ଉପକାରୀମାନେ ସ୍ୱର୍ଗକୁ ଚଳିଯାନ୍ତି ।
ଚନ୍ଦ୍ରମା ବଦନୀ ସହୀ ମୁରଙ୍ଗୀ ନୟନୀ
ମୋର ସତ୍ୟକୁ ଗୋ ନ ଭାଙ୍ଗ ସଙ୍ଗାତୁଣୀ ।
ଅସୁର ବଳକୁ ମୁଁ ଯେ କରିବି ନିଶ୍ଚେ ନାଶ
ତେବେ ସିନା ସୁସ୍ଥ ହୋଇବେ ତ୍ରିଦଶ ।
ତୁ ମୋର ମହିମା ନ ଜାଣୁରେ ସଖୀ
ବିଶ୍ୱାମିତ୍ରଙ୍କର ଜାଗ କଲି ମୁଁ ଯେ ରଖି ।
ଅଗମ୍ୟ ବନରେ ଯେ ତାଡ଼କୀ ନାଶ କଲି
ସଦାଶିବ ଧନୁ ମିଥିଳାରେ ଆମଞ୍ଚିଲ ।
ଯେତେବେଳେ ମୁହିଁ ଧନୁ ଆମଞ୍ଚିଲି
ଧନୁ ଆମଞ୍ଚିଲା ବେଳେ ତୋ ମୁଖ ଦେଖିଲି ।

ବଶିଷ୍ଠ ବିଶ୍ୱାମିତ୍ର ଥିଲେ ସେହିଠାରେ
ଜନକ ବୋଇଲେ ବିଭା କରିବା ତପ୍ରରେ
ତାଙ୍କଠାରୁ ଶୁଣି ମୁହିଁ କହିଲି ବଚନ
ପିତା ନଥାଇ ପୁତ୍ରକି ବିଭା ହୋନ୍ତି ଜାଣ ।
ସେହିଠାରୁ ପିତାଙ୍କଠାକୁ ଲେଖାଲେଖି
ଲେଖା ଦେଖି ପିତା ମୋର ଆନନ୍ଦ ମନଟି ।
ସେଠାରୁ ପିତା ମୋର ମିଥିଳାକୁ ଗଲେ
ମହାଦେବୀ ଉପରେ ବସି ବିଭା କରାଇଲେ ।
ଜନକ ବୋଇଲେ ବାବୁ ଶୁଣ ମୋର ବାଣୀ
ମୋହର ଦୁହିତା ସୀତା ଅଟେ କମଳିନୀ ।
ବେଦବରଙ୍କର୍ବାରୁ ଶୁଣିଥିଲି ମୁହିଁ
ଧନୁ ଧରିବ ଯେ କନ୍ୟାକୁ ନେବ ସେହି ।
ସେ କଥାକୁ ଜାଣି ମୁହିଁ ହେତୁ କରିଥିଲ
ଏବେ ମୁହିଁ ସାକ୍ଷାତରେ ନେତ୍ରରେ ଦେଖିଲି ।
ସେଠାରୁ ପିତା ମୋର ଦଶରଥ ଜାଣି ।
ଅଯୋଧ୍ୟାକୁ ଗମନ କଲେ ତତ୍କ୍ଷଣି ।
ଚରିଭାଇ ଚରିବୋହୂ ଘେନି ସଙ୍ଗତରେ
ମାତାଗଣମାନେ ମୋର ଅଛନ୍ତି ସଙ୍ଗରେ ।
ଭୃଗୁ କୁଳରେ ଜାତ ବୀର ପର୍ଶୁରାମ
ସମସ୍ତଙ୍କୁ ଜିଣିଣ ହୋଇଲା ଦ୍ୱିତିଯମ ।
ନର ବାନର ଦେବତା ଅସୁର ବଳମାରି
ରାଜାଗଣମାନଙ୍କର ହେଲା ସେ ବଇରି ।
ବେଦବର ସଦାଶିବ ମତ୍ସ୍ୟ, କୂର୍ମରୂପ ପୁଣ
ବରାହ, ନୃସିଂହ, ବାମନ ତୁମ୍ଭେ ଜାଣ ।
ବିରାଟ ପୁରୁଷ ଯେ ଗୋଲୋକ ନାରାୟଣ
ସପତ ବ୍ରହ୍ମା ଆଦି ଯେତେକ ବଡ଼ ପୁଣ ।
ଅନନ୍ତ ବାସୁଦେବ ସହିତେ ପର୍ଶୁଜିଣି
ସପତପୁର ସାଧ କଲେ ଭୃଗୁପୁଣି ।
ଶୟନରେ ମୋତେ କହିଲା ଯାଇଁ କରି
କୌମୁଦୀ ଗଦା ମୋଠାରୁ ଆଣିଲେ ଉଛୁଡ଼ି ।
ଜାନକୀ ବୋଇଲେ ତୁମ୍ଭେ କହିଲ ବିପରୀତ
ଜଗତର କାରଣ ଅଟହେ ତୁମ୍ଭେ ତ ।
ଋଷିକୁଳେ ଜାତ ହୋଇ ତୁମ୍ଭଙ୍କୁ ଜିଣିଲା
ଏକଥା ମୋତେ ଯେ ଅସମ୍ଭବ ହେଲା ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ମନୋହାରୀ
ମୋହର ଅଙ୍ଗ ଗୋଟି ଅଟେ ପର୍ଶୁଧାରୀ ।

ଦେବତାଙ୍କୁ ସହସ୍ରା ଅର୍ଜ୍ଜୁନ କଷ୍ଟଦେଲା ।
ସ୍ୱର୍ଗକୁ ଯାଇଣ ଦେବଙ୍କୁ ଜିଣିଲା ।
ଛୟାଶୋଇ ବରଷ ଥିଲା ତାଙ୍କୁ ଧରି
ତେଣୁ ସେ ଦେବତାଏ ମୋଠାରେ ଯାଇଁ ମିଳି
ଅନେକ ପ୍ରକାରେ ମୋତେ ସ୍ତୁତି ଯେ ସେ କରି
ଦେବଗଣମାନେ ସର୍ବେପ୍ରାର୍ଥନା ମୋତେ କରି ।
ତାଙ୍କରି ସ୍ତୁତି ଶୁଣି ନିଦ୍ରାରୁ ମୁଁ ଉଠି
ବୋଇଲେ ପାତାଳକୁ ବେଗେ ଯେ ଚଳନ୍ତି
ଗୋଲୋକ ନାଥଙ୍କୁ କହିବ ଯାଇକରି
ସେ କୃଷ୍ଣ ଜନ୍ମହେଲେ ଅର୍ଜ୍ଜୁନ ପୁଣ ମରି ।
ମୋହଠାରୁ ଶୁଣିକରି ବେଗେ ଚଳିଗଲେ
ପାତାଳ ବୈକୁଣ୍ଠ ପୁରେ ପ୍ରବେଶ ହୋଇଲେ
ବେଦବର ସଦାଶିବ ତାଙ୍କ ସଙ୍ଗେ ଗଲେ
ଗୋଲୋକ ନାରାୟଣଙ୍କୁ ଯାଇଁ ସେ କହିଲେ ।
ଶୁଣିଣ ଗୋଲୋକନାଥ ବ୍ରହ୍ମାରେ କୋପହେଲା
ବାସୁଦେବ ଜଞ୍ଜାଳ କିମ୍ପା ମୋଠାରେ ଲାଗିଲା
ଦୁଷ୍ଟଙ୍କୁ ନିବାରିବାକୁ ଜନମ ଶ୍ରୀହରି
ସେ କିମ୍ପା ଅସୁରଙ୍କୁ ନ ମାରେ ହେଳାକରି ।
ବେଦବର ବୋଇଲେ ନଉସାଗର ଦୁଷ୍ଟ
ତୁମ୍ଭର ହସ୍ତରେ ସେ ହୋଇବେ ନିପାତ ।
ତେବେ ସେ ବାସୁଦେବ ହେବେ ଅବତାର
ଶୁଣିଣ କ୍ରୋଧରେ ଜାତ ଗୋଲୋକ ଠାକୁର ।
ଯମଦଗ୍ନି କୋଳରେ ରେଣୁକା ଗର୍ଭେ ଜାତ
ଜାତ ହୋଇ ମୋରଠାରେ କଲେକ ନିୟତ ।
ତାହାରି ନିୟତରେ ଶୟନ ତେଜ୍ୟାକଲା
ତାହାର ଆଗରେ ଯାଇ ପ୍ରବେଶ ହୋଇଲା ।
ସେ ମୋତେ ବୋଇଲା ଶୁଣ ଜଞ୍ଜାଳି ତୁମ୍ଭେ
ମୋତେ କିମ୍ପା ଜଞ୍ଜାଳ ଦେଲ ଆସି ଏବେ ।
ମୁଁ ବୋଇଲି ଦେବତାଏ ହୋଇଲେ ଗର୍ବିତ
ବେଦବର ସଦାଶିବ ସହିତେ ପୁରୁହୁତ ।
ପର୍ଶୁରାମ ବୋଇଲେ ସେ ପୁଣ କିସ କଲା
ମୁଁ ବୋଇଲି ଦେବତାଏ ଆପେ•ବଡ଼ହେଲା ।
ମୋତେ ସେ ନ ମାନିଣ ଦେଖାନ୍ତି ବଡ଼ପଣ
ସଦାଶିବ ବେଦବର ଅସୁରେ ଘଟିଣ ।
ତେଣୁକରି ସହସ୍ରାଅର୍ଜ୍ଜୁନ ଜାତ ହେଲା
ଦେବତାଙ୍କ ବଳ ସେ ଧରିଣ ଗର୍ଜିଲା ।

ଘରି ରାବଣ ଗରିଷ୍ଠ ଅସୁର ଜାତହେଲେ
ସମସ୍ତ ଦେବତାଙ୍କୁ ତୋଷିଣ ବରଦେଲେ ।
ନରବାନର ପୁଣି ହୋଇଲେ ପ୍ରବଳ
ନଉ ସାଗର ଦୁଷ୍ଟ ମରିବେ ତୋ ହସ୍ତର ।
ତୁହି ଏବେ କାହାରି ବୋଲ ନ କରିବୁ
ଦେବ ଅସୁର ନର ବାନର ସାଧିବୁ ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନିଙ୍କି ପୁଣ ଜିଣି
ସମସ୍ତେ ଜିଣି ସେ ତୋତେ ଡରିବେ ପର୍ଶୁମଣି
ଶୁଣିକରି ପର୍ଶୁରାମ ବୋଲନ୍ତି ବଚନ
ଏକ ଅଙ୍ଗ ଗୋଟି ତ ନୁହଇ କ୍ରୋଧପୂଣ ।
ବେନି ଅଙ୍ଗ ଏକ ହେଲେ ନ ଓପ୍ରଧି
ଶୁଣିକରି ମୋର ଅଙ୍ଗ ତାଠାରେ ମିଶେ ବେଗି
ଗୋଲେକର ସନ୍ଦେହ ମୋର ଧର୍ମ ଅଙ୍ଗ
ଶୁଣିକରି ପର୍ଶୁରାମ ହୋଇଲେ ଧଇର୍ଯ୍ୟ ।
ଅତି ବଳବନ୍ତା ହୋଇଲେ ପର୍ଶୁଧାରୀ
ତମ୍ବା ଚକ୍ର ପ୍ରାୟେ ତାର ନୟନ ବୁଲେ ଘେରି
ଦେଖିଣ ପର୍ଶୁରାମଙ୍କୁ କହିଲି ମୁଁ ଯେ ପୁଣ
ବୋଇଲେ ଯାଉଅଛି ନିଜ ଯେ ଆଶ୍ରମ ।
ପର୍ଶୁରାମ ବୋଇଲେ ମୁଁ ଯେ ଜନମହେଲି ଏବେ
ମୋହର ଅବତାର ନାମ କିସ ଦେବୁ ଭାବେ ।
ମୁଁ ବୋଇଲି ତୋରଠାରେ ସମସ୍ତ ଅବତାର
ମୁଁ ପୁଣି ଜନମ ଲଭିଲେ ସପତମ ସାର ।
ପର୍ଶୁରାମ ବୋଇଲେ ତୁ କେବେ ହେବୁ ଜାତ
ମୁଁ ବୋଇଲି ହଜି ଯିବ ଲକ୍ଷେ ସାତ ଏ ସହସ୍ର
ପର୍ଶୁରାମ ବୋଇଲେ ଏଥି ଭିତରେ ଯେ ପୁଣ
ସମସ୍ତଙ୍କୁ ସାଧ ମୁହିଁ କରିବିଟି ଜାଣ ।
ମୁଁ ବୋଇଲି କାହାକୁ ଗୋଟିଏ ନ ଛାଡ଼ିବୁ
ମୋତେ ଜିଣିଲେ ତୋତେ ସମସ୍ତେ ଡରେ ବାବୁ
ପର୍ଶୁରାମ ବୋଇଲେ ଯେ ଏକଥା ନିୟତ
ଅବତାର ହେଲେ ତୁ ଯେ ତାସଙ୍ଗେ ମୋର ଭେଟ
ଯେବେବେଳେ ମୋର ଅଙ୍ଗ ତୋର ଅଙ୍ଗ ନେବୁ
ସେତେବେଳେ ସ୍ଥିର ହୋଇ ରହିବୁରେ ବାବୁ
ମୁଁ ବୋଇଲି ଏହି କଥା ଅଟେ ମୋର ସତ୍ୟ
ମୁହିଁ ଜାତହେଲେ ତୁହି ହୋଇବୁ ନିଶ୍ଚିନ୍ତ ।
ଶୁଣିକରି ପର୍ଶୁରାମ ପ୍ରବଳ ପୁଣି ହେଲା
କଉମୋଦି ଗଦାକୁ ଛଡ଼ାଇ ଧରିଲା ।

ଦେଖିଣ ପ୍ରବଳ ତାର ଅଇଲି ପଳାଇ
ନିଜ ଆସନରେ ଆସି ଶୟନ କଲି ମୁହିଁ ।
ଏମନ୍ତେ ଲକ୍ଷେ ସାତ ଏ ସହସ୍ର ବହିଗଲା
ସାତପୁର ନବଖଣ୍ଡ ମେଦିନୀ ଜିଣିଲା ।
ଚଉଦ ବ୍ରହ୍ମାଣ୍ଡକୁ କଲେ ସାଧ ପୁଣ
ସପତ ପୁର କମ୍ପିଲା ତା ନାମ ଶୁଣିଣ ।
ନର ବାନର ଅସୁର ଦେବତାଙ୍କୁ ଜିଣି
ଚଉଦ ବ୍ରହ୍ମାଣ୍ଡରେ ପଡ଼େ ହୁରୀ ପୁଣି ।
ପର ଆପଣା କାହାକୁ ନମାନେ ପର୍ଶୁରାମ
ଆପଣ ତ ଗୋଲକନାଥ ଏଣୁ ତ ମୋର ଦଣ୍ଡ
ଜାନକୀ ବୋଇଲେ ଯେବେ ଏପରି ପର୍ଶୁରାମ
କେଉଁ ବାହନ ଚଢ଼ି କଲେ ସାଧ ପୁଣ ।
ଶ୍ରୀରାମ ବୋଇଲେ ପ୍ରଥମେ ସିଂହ ଯେ ଚଢ଼ିଲା
ବେଦବର ବିଧାତାଙ୍କୁ ଯାଇଣ ଜିଣିଲା ।
ବିଧାତାକୁ ଜିଣି ତାର ପରମହଂସ ନେଲା
ସେ ପରମ ହଂସ ଚଢ଼ି ମୋତେ ଯେ ଜିଣିଲା
ମୋତେ ଜିଣିକରି ମୋର ଖଗପତି ନେଲା
ସ୍ୱର୍ଗରେ ପଶିଣ ଦେବତାଙ୍କୁ ସେ ଜିଣିଲା ।
ଦେବତାଙ୍କୁ ଜିଣିଣ ଐରାବତ ନେଲା
କପିଳାସକୁ ଯାଇଣ ଶିବଙ୍କୁ ଜିଣିଲା ।
ମହାଦେବଙ୍କୁ ଜିଣି ବୃଷଭ ଘେନିଗଲା
ବୃଷଭରେ ଚଢ଼ି ମର୍ତ୍ତ୍ୟପୁର ସାଧିକଲା ।
ଦେଖିକରି ଦେବତାଏ ଡରେ ରଥ ଦେଲେ
ନନ୍ଦୀ ଘୋଷ ରଥେ ଚଢ଼ି ରେନୁକାର ବାଳ
ସେହି ରଥେ ବସିଣ ସେ ପାତାଳପୁର ଗଲା
ନୃସିଂହ ମୁରତିକି ଦେଖିଣ କୋପ କଲା ।
ନୃସିଂହକୁ ଜିଣିଣ ଯେ ଜିଣିଲା ବାମନ
ସପତ ବ୍ରହ୍ମାଣ୍ଡକୁ ଜିଣିଲା ଯାଇ ପୁଣ ।
ଗୋଲେକ ନାଥଙ୍କୁ ସେ ଭାବରେ ଜିଣିଲା
ରସାତଳେ ଯାଇଣ ପ୍ରବେଶ ହୋଇଲା ।
ବିରାଟ ପୁରୁଷକୁ ଜିଣିଲା ସେ ଯାଇ
ନଉସାଗର ଦୁଷ୍ଟ ମାରିଣ ଗଲେ ସେହି ।
ପିତାମାତାଙ୍କୁ ସେ ପୁରେ ଦର୍ଶନ କଲେ ପୁଣ
ପିତାମାତା କହିବାରୁ ଶାନ୍ତ ହେଲେ ପୁଣ ।
ସେଠାରୁ ସପତ ପୁର ନବଖଣ୍ଡ ମେଦିନୀ
ଚଉଦ ବ୍ରହ୍ମାଣ୍ଡ ଜିଣିଲେ ପର୍ଶୁମଣି ।

ମର୍ତ୍ତ୍ୟପୁରେ ନିଜ ଯେ ଆଶ୍ରମେ ମିଳିଲେ
ସକଳ ଦେବତାଙ୍କ ବାହନ ତେଜ୍ୟା କଲେ ।
ସମସ୍ତଙ୍କ ବାହନ ଯେଝା ସ୍ଥାନ ଗଲେ
ନନ୍ଦୀଘୋଷ ରଥ ଦେବ ଭଣ୍ଡାରେ ରହିଲେ ।
କୋଠାର ଧନୁ ଗଦାଧରି ପର୍ଶୁରାମ
ଶତେ ବରଷରେ ଥରେ କରଇ ଭ୍ରମଣ ।
ପର୍ଶୁରାମଙ୍କୁ ଡରି ଦେବତାଏ ଗଲେ
ମୋତେ କହିବାରୁ ଜାତ ହୋଇଲି ମୁଁ ଭଲେ
ମୋତେ ଦେଖି ପର୍ଶୁରାମ ଅର୍ଦ୍ଧଅଙ୍ଗ ଦେଲା
ଶାନ୍ତଶୀଳ ହୋଇଣ ତପ ଆରମ୍ଭିଲା ।
ଜାନକୀ ବୋଇଲେ ଯେବେ ପଡ଼ିବ ପ୍ରମାଦ
ତେବେ ସେ ପର୍ଶୁରାମ କରିବଟି ଦ୍ୱନ୍ଦ ।
ଶ୍ରୀରାମ ବୋଇଲେ ଶୁଣ ମୋ ଦେହ ଯେବେରୋଗୀ
ସପତ ପୁରକୁ ମୁଁ ପାରଇ ଯେ ଭାଙ୍ଗି ।
ସିଂହର ବଚ୍ଚ କି ଶୃଗାଳ ଲେଖା ହୋଇ
ଅନ୍ୟ ସ୍ତ୍ରୀମାନେ କି ଦୁର୍ଗାଙ୍କୁ ସରି ହୋଇ ।
ଜାନକୀ ବୋଇଲେ କେତେ କଥାରେ କରଛନ୍ଦ
ସମୟ ପଡ଼ିଲେ କି କରିପାରେ ସିଙ୍ଗ ।
ରାମଚନ୍ଦ୍ର କହିଲେ ସେ କଥା ଏବେ ଶୁଣ
ସିଂହର ଘରଣୀ ଯେ ଗର୍ଭ ହେଲା ପୁଣ ।
ଦଶମାସ ଦଶଦିନ ସେଥିରେ ବହିଗଲା
ଏମନ୍ତ ସମୟେ ଯେ ଶୂନ ଯେ ଅଇଲା ।
ତାହାର ଗର୍ଭରୁ ପୁତ୍ର ଅଧେକ ବାହାରି
ଏମନ୍ତ ସମୟେ ହସ୍ତୀ ସେହି ପଥେ ଚଳି ।
ଦେଖିଲା ସିଂହିଆଣୀ ପ୍ରସବ ଯେ ବାଳ
ଚଳିଗଲା ଗଜ ଯେ ଭୟ ତେଜି ତାର ।
ଦେଖିକରି ସିଂହିଆଣୀ ମନରେ ବିଚାରିଲା
ମୋହର ଦୁର୍ବଳ ବେଳେ ମତ୍ତ ନାଗ ଗଲା ।
ବଳବନ୍ତ ବେଳେ ଯେ ହସ୍ତୀଙ୍କୁ ଦେଖନ୍ତି
ମୁଁ ଯେ ତୋଷହୋଇ ତାକୁ ଆହାର କରନ୍ତି
ଶୁଣିକରି ବାଳକ ଜନନୀରେ କହି
ସେ ମତ୍ତନାଗ ପାଶକୁ ଚଳ କି ନା ତୁହି ।
ଶୁଣିକରି ଜନନୀ ପୁତ୍ରରେ ଓକାରିଲା
ତୋର ବଳ ନାହିଁ ମୋର ସମୟ ନାହିଁ ପରା
ବାଳକ ବୋଇଲା ତୁ ଗୋ ଶୁଣ ମୋ ଜନନୀ
ସାନସର୍ପ ଧ୍ୱଂସିଲେ କି ନମରେ ବଡ଼ ପୁଣି ।

ସେ ବଚନ ଶୁଣିଣ ଜନନୀ ଧୀରେ ଗଲା
ମତ୍ତନାଗ ନିକଟରେ ପ୍ରବେଶ ହୋଇଲା ।
ମତ୍ତନାଗ ପଛଭାଗ ଦେଖନ୍ତେ ପୁତ୍ର ତାର
କଟି ଧରି ଜନମିଲା ସିଂହିକା କୁମର ।
ହସ୍ତୀକି ଧରିଣ କରେ ଚିରିଲାକ ଖରେ
ହାରିଲା ଜୀବନ ହସ୍ତୀ ସିଂହର ଦାଉରେ ।
ଦେଖିକରି ସିଂହୟାଣୀ ଆନନ୍ଦ ପୁଣ ହେଲା
କୁମରକୁ ଗଉରବ କରିଣ ଦିନ ନେଲା ।
ଜାନକୀ ବୋଇଲେ ଦୁର୍ଗା କିମ୍ବା ହେଲା ସାର
କେଉଁଗୁଣେ ଅଧିକ ହେଲେ ନାରୀବର ।
ରାମଚନ୍ଦ୍ର ବୋଇଲେ ସେ ଶିବର ଘରଣୀ
ଅଯୋନି ସମ୍ଭୂତା ସେ ମନରୁ ଜାତ ପୁଣି ।
ସମ୍ଭୁ ନିସମ୍ଭୁ କଂସାସୁର ଅଟନ୍ତି ଯେ ଦୈତ୍ୟ
ତାହାଙ୍କୁ ମାରିବାକୁ ନୋହିଲା କେ ସକ୍ଷ ।
ଦେବତା ଡରିଲେ ଡରିଲେ ଦେବନାରୀ
ବ୍ରହ୍ମା, ବିଷ୍ଣୁ, ସଦାଶିବ ଦେଖି ଭୟ କରି ।
ପାର୍ବତୀ ପ୍ରାୟେ ସାବିତ୍ରୀ ତୁହି ସରସ୍ୱତୀ
ତାର କଥା ଶୁଣିଣ ଡରିଲେ ସେ ସ୍ୱତୀ ।
ଦେଖିକରି ଜୟଦୁର୍ଗା ମନରେ ବିଚାରିଲେ ।
ଉଲଗ୍ନ ହୋଇଣ କରେ ତ୍ରିଶୂଳ ଧଇଲେ
ତିନି ଅସୁରଙ୍କୁ ଯେ ତ୍ରିଶୂଳ ଧରି ମାରି
ତେଣୁ ଚଣ୍ଡୀ ଯୁଦ୍ଧ ନାମଟି ତାହାରି ।
ଶୁଣିକରି ଜାନକୀ ପରମ ତୋଷ ହେଲେ
ଏକଥା ଶୁଣିଲି କର୍ଣ୍ଣେ ଶ୍ରୀରାମ ପ୍ରଶଂସିଲେ ।
ଏ ବଚନ ଶୁଣିକରି ସୀତାରେ ତିଆରି
ମଢ଼ିଆରୁ ବାହାର ହେଲେ ଧନୁର୍ଦ୍ଧାରୀ ।
ଜାନକୀ ବୋଇଲେ ରାମ ଶୁଣ ମୋର ବାଣୀ
ପର୍ଶୁରାମ ଯେବେ ଏମନ୍ତ କ୍ଷତ୍ରୀ ପୁଣି ।
ଗରିଷ୍ଠ ଅସୁରଙ୍କୁ କିମ୍ବା ନ କଲେ ନାଶ
ଏକଥା ବୁଝଇ ମୋତେ କହ ରଘୁଶିଷ୍ୟ ।
ଶ୍ରୀରାମ ବୋଇଲେ ସକଳ ସାଧ କଲା
ତାର ହସ୍ତେ ନ ମରିବେ ଦେବତାଙ୍କୁ ନ ମାରିଲା
ପିତା ଶତ୍ରୁ ହେବାରୁ ଯେ ରାଜା ଗଲେ ନାଶ
ଗରିଷ୍ଠ ହେବାରୁ ସେ ଦେବତା ତ୍ରିଦଶ ।
ବୀର ଦେବତାରୁ ବେଦବର ସଦାଶିବ ଜିଣି
ନିଉପ୍ରଧ ମାଡ଼ରେ ସମସ୍ତେ ଡର ପୁଣି ।

ଏବେ ମୋହର ଅଙ୍ଗ ମୋତେ ଦେଇଗଲା
ତେଣୁ ସେ ମୋର ଅଙ୍ଗୁରିପୁ ଉପୁଜିଲା ।
ପିତାଠାରୁ ଏ ବଚନ ଶୁଣିଅଛି ମୁହିଁ
ସେ କଥା ଗୋଟି ମୋତେ ପଚାରିଲୁ ତୁହି ।
ସେ ଯାହାକୁ ଛାଡ଼ିଲା ମୁଁ ଯେ ମାରିବି ତାହାକୁ
ତେବେ ସିନା ଯଶ ମୋର ରହିବ ଉପରକୁ ।
ମୋହର ଭଗାରି ଦୁଷ୍ଟ ଦୈତ୍ୟ ଗଣମାନ
ତେଣୁ ଅସୁରଙ୍କୁ ମୁଁ ଯେ କରିବି ନିଧନ ।
ଅସୁର ମାରିବା ପାଇଁ ବିପିନକୁ ଗଲେ
ପାର୍ବତୀଙ୍କ ଆଗରେ ଶଙ୍କର କହିଲେ ।
ବାଟେ ଯାନ୍ତେ ସେ ଏକ ପୋଖରୀ ଦେଖିଲେ
ଅତି ବଡ଼ ବିସ୍ତାର ସେ ଲତାର ଭିତରେ ।
ଦୀର୍ଘ ଚାରିଯୁଣ ଯେ ପ୍ରତି ଚାରିଯୁଣ
ଚାରିକୋଣେ ମଣ୍ଡପ ଯେ କରିଛି ଭିଆଣ ।
ପାଟେରି ଗୋଟିଏ ଯେ ପୋଖରୀ ଚାରିପାଶ
ଆଠଗୋଟି ଦୁଆର ପୋଖରୀ ବିଶେଷ ।
ମୁଗୁନି ପାଷାଣ ଯେ ପାବଛ ଚଉକତି
ପଙ୍କ ନ ଥିବା ଜଳ ମଧରେ ଜଗତୀ ।
ନିର୍ମଳ ଜଳ ସେଥି ବହୁତ ପଦ୍ମ ଅଛି
ଚାରିବର୍ଣ୍ଣେ ପୁଷ୍ପ ଯେ ସେଥିରେ ଫୁଟିଛି ।
ନାନା ଜୀବ ସେଥିରେ କ୍ରୀଡ଼ା କରନ୍ତି ପୁଣ
ଶବଦ ସୁସ୍ୱର ଯେ, କରେ ପଦ୍ମବନ ।
ସେ ପୁଷ୍କରିଣୀ ତଟରେ ରାମ ହେଲେ ଉଭା
ସିନ୍ଧୁର ତଟରେ ଯେ ନୀଳଗିରି ଶୋଭା ।
ସେ ପୋଖରୀ ଭିତରେ ଶୁଭଇ ଶବଦ
ମର୍ଦ୍ଦଳ, କଂସାଳ ଯେ, ବଂଶୀ ଯନ୍ତ୍ରନାଦ ।
ନୃତ୍ୟ ରଙ୍ଗରେ ସେ ଯେ, ତାଳମାନ ଘାତ
ଶୁଣିକରି ଚକିତ ହେଲେ ରଘୁନାଥ ।
ମନରେ ବିଚାରିଲେ କେବଣ କାରଣ
ଜନ ଏଥିରେ ନାହାନ୍ତି ମହାଘୋର ବନ ।
ପୋଖରୀ ଭିତରେ ଯେ ନୃତ୍ୟର ରଙ୍ଗ ହୋଇ
ଏକ ଏହା କରଇ ଯେ, ମନୁଷ୍ୟ ଦେଖାନାହିଁ
ଏତେ କହି ଶ୍ରୀରାମ ସେଠାରୁ ଚଳି ଗଲେ
ନିଜ ଆଶ୍ରମରେ ଯେ ଯାଇଣ ମିଳିଲେ ।
ସୁତୀକ୍ଷଣ ମୁନିଙ୍କୁ ଶ୍ରୀରାମ ପଚାରିଲେ
ବନସ୍ତକୁ ଯାଇଥିଲି ପାରିଧି କରିବାରେ ।

ଅଗମ୍ୟ ବନସ୍ତରେ ଦେଖିଲୁ ପୁଷ୍କରିଣୀ
ପୋଖରୀ ଭିତରେ କିଏ ନୃତ୍ୟ କରେ ପୁଣି ।
ମୁନି ବୋଇଲେ ତୁମ୍ଭେ ଶୁଣ ହେ ଶ୍ରୀରାମ
କନ୍ଦର୍ପ କର୍ମ ବୋଲି ଯେ, ଋଷିଙ୍କର ନାମ ।
ଅନେକ ଯୁଗ ସେଥିରେ ବସି ନୃତ୍ୟ କଲେ
ଇନ୍ଦ୍ର ଦେବତାଙ୍କର ଆସନ କମ୍ପାଇଲେ ।
ଭୟରେ ସୁରପତି କଲେ ଗୁରୁଚିନ୍ତା
ଇନ୍ଦ୍ରପଣ ମୋହର ଘେନଇ ତପୋବନ୍ତା ।
ଏତେ ବୋଲି ଦେବ କନ୍ଦର୍ପକୁ ହକାରି
ପଞ୍ଚ ଯୁବତୀ ନାମ ଧରିଣ ସେ ଓ କରି ।
ମନ୍ଦ କର୍ମ ଋଷି ଯେ ତପରେ ବସିଛନ୍ତି
ତହିଁଯାଇ ପ୍ରବେଶହୋଇବ ଶୁଭ୍ରକେଶୀ ।
ନୃତ୍ୟ ଗୀତ କରିଣ ଭାଙ୍ଗିବ ତାତ ତପ
ତୁମ୍ଭଙ୍କୁ ଦେଖିଲେ ମୋହ ଦେବ ତପୋବନ୍ତ
ଶୁଣିକରି ସୁନ୍ଦରୀ ଗଲେ ଖର ଜଭି
ଯମୁନା, ସୁକେଶୀ, ହରି ମୋହିନୀ, ନିଳାନାରୀ
ସପଞ୍ଚ ଯୁବତୀ ଯେ ମୁନିଙ୍କ ପାଶେ ଗଲେ
କେଦାର ରାଗରେ ଯେ ଆଳାପ ସେଥି କଲେ
ନାନା ନୃତ୍ୟ ରଙ୍ଗରେ ସେ କରନ୍ତି ଆଳାପ
ମୁନିଙ୍କର ଧ୍ୟାନ ସେ ଭାଙ୍ଗିଲେ ଅବଧୂତ ।
ତପି ପଚାରିଲେ କାହିଁର ତୁମ୍ଭେ ନାରୀ
ଜାଣି ପଟାନ୍ତର ସେ ସ୍ୱର୍ଗରି ସୁନ୍ଦରୀ ।
ପ୍ରଣମ୍ୟ କରିଣ ଯେ କାକୁତେ ନାରୀ କହି
କୋପ ନ କରି ଆମ୍ଭରେ ଶୁଣ ମୁନିସାଇଁ ।
ତୁମ୍ଭର ମହିମା ଯେ ଜଗତେ ବିଖ୍ୟାତ
ତୁମ୍ଭ ପାଖକୁ ଆମ୍ଭଙ୍କୁ ପେଶିଲେ ସୁରନାଥ
ବୋଇଲେ ମୁନିଙ୍କି ତୁମ୍ଭେ ସେବା କରିଥିବ
ନୃତ୍ୟଗୀତ କରି ତାଙ୍କ ଚିତ୍ତକୁ ମୋହିବ ।
ତେଣୁ ସେ ସ୍ୱର୍ଗ ଛାଡ଼ି ଅଇଲୁ ଆମ୍ଭେମାନେ
ଖଟିବୁ ତୁମ୍ଭ ଚରଣେ ଦୟାକରି ଏଣେ ।
ଶୁଣି ମନ୍ଦକର୍ଣ୍ଣ ଋଷି ସନ୍ତୋଷ ହୋଇଲେ
ପୁଷ୍କରିଣୀ ଭିତରେ ପୁରେକ ଭିଆଇଲେ ।
ଯୁବତୀମାନଙ୍କୁ ଘେନି ବିଳାସ କରଇ
ପଥୁକି ଜନ ଯିବାକୁ ବାଟ ନିରୋଧଇ ।
ଜଳ ଖାଇବାକୁ ଯେବେ ଯାଏ ବନଜନ୍ତୁ
ମେଘମାନେ ଉପରୁ ପଥର ବରଷନ୍ତୁ ।

ପାର୍ବତୀ ବୋଇଲେ ଯେ ଏକଥା ହେଲା ଛନ୍ଦ
ବ୍ରହ୍ମଋଷି ହୋଇ କିଂପା କରଇ ପଥରୁଦ୍ଧ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ଭରୀ
ଯେତେବେଳେ କନ୍ୟାମାନେ ଋଷିଘେନି ମିଳି
ଯୋଗ ଲୟ ଭାଙ୍ଗିଲେ ଋଷିହେଲେ କ୍ରୋଧ
ଦେଖିକରି ଅପସ୍ୱରୀ ଡରିଣ କହେ ଛନ୍ଦ ।
ବୋଇଲେ ମହାଋଷି ତୁମ୍ଭର ଛନ୍ଦ ପାଇଁ
ଇନ୍ଦ୍ର ଦେବତା ଆମ୍ଭଙ୍କୁ ଦେଲେ ପଠିଆଇ ।
ଶୁଣି ମନ୍ଦକର୍ଣ୍ଣ ଋଷି ମନରେ ଶାନ୍ତ ହେଲେ
ବୋଇଲେ ଏକଥା ଯଦି ସତଟି ତୁମ୍ଭରେ ।
ନିଶ୍ଚୟ ଇନ୍ଦ୍ର ଯେବେ ତୁମ୍ଭଙ୍କୁ ପେଷିଲା
ମୋର ମନକୁ ଯେବେ ତାହାର ମନ ହେଲା ।
ତେବେ ମୋ ରହିବା ସ୍ଥାନ ହେବ ନିକାଞ୍ଚନ
ଜନଜନ୍ତୁ ସେଠାବକୁ ନ ଯିବେ କେହି ପୁଣ ।
ସେ ସ୍ଥାନକୁ ଯିଏ ଯିବ ପଥର ବରଷିବ
ମୋର ବିଳାସ ସ୍ଥାନରେ କେହି ନ ରହିବ ।
ଏକଥା ମାନ ଯେବେ ନ କରେ ସୁରରାଜା
ତେବେ ଶାପ୍ୟମୋର ଯେ ନୁହଇ ତାକୁତେଜ୍ୟା
ପର୍ବତ ହୋଇଣ ସେ ରହିବ ଯୁଗାନ୍ତରେ
ସୁରରାଜା ପୁଣ ମୁଁ କରିବି ନିରନ୍ତରେ ।
ଏମନ୍ତ ଶାପ୍ୟକୁ ବିହିଲା ମୁନିବର
ତେଣୁ ସେ ସୁରରାଜା ଜାଣିଲେ ସତ୍ୱର ।
ବିଶ୍ୱକର୍ମା ରାଇଣ ବେଗେ ବରାଦ ଦେଲେ
ପୋଖରୀ ଭିତରେ ଏକ ନବର ଭିଆଇଲେ ।
ନବର ଭିତରେ ପୁଣି ପଞ୍ଚକନ୍ୟା ଘେନି
ନାନା ବିନୋଦରେ ନୃତ୍ୟରଙ୍ଗ ତହିଁ ପୁଣି ।
ଏଥୁ ଅନନ୍ତରେ ଯେ ଶୁଣ ରାମରାଣ
ପୁଷ୍କର ମେଘକୁ ରହିଁ ବୋଲନ୍ତି ଇନ୍ଦ୍ରପୁଣ ।
ସେ ପୋଖରୀ ଉପରେ ଶୂନ୍ୟମାର୍ଗରେ ଥିବୁ
ଜନଜନ୍ତୁ ଆସିଲେ ପଥର ବରଷିବୁ ।
ଶୁଣିଣ ପୁଷ୍କର ମେଘ ସବୁଦିନେ ରହି
ଜନଜନ୍ତୁ ଦେଖିଲେ ପଥର ବରଷଇ ।
ରାମଚନ୍ଦ୍ର ବୋଇଲେ ମୁଁ ସେଠାରେ ମିଳିଲଇଁ
ପଥର କିମ୍ପା ନ ବରଷେ ମୋ ଉପରେ ପୁଣି
ସୁତୀକ୍ଷଣ ମୁନି କହେ ଶୁଣ ରାମରାଣ
ପରମବ୍ରହ୍ମ ନାରାୟଣ ତୁହି ଯେ ଅଟୁ ପୁଣ ।

ତୋତେ ଦେଖି ମେଘମାନେ ଅପସରି ଗଲେ
ପଥର ବରଷନ୍ତେ ମରନ୍ତେ ଆଜ ଭଲେ ।
ସେ ଜଳ ଅଭକ୍ଷ ହୋଇଲା ଏବେ ତେଣୁ
ପଥଶ୍ରାନ୍ତ ଲୋକମାନେ ପିଇ ନ ପାରେ ଯେଣୁ
ଶୁଣିକରି ଶ୍ରୀରାମର ଫିଟିଲା ସନ୍ଦେହ
ମୁନିଙ୍କି କହିଲେ ଶ୍ରୀରାମଚନ୍ଦ୍ର ସ୍ନେହ ।
ଇନ୍ଦ୍ର ଆସି ଋଷିଙ୍କର ଭାଙ୍ଗ ଲେଟି ତପ
କିମ୍ପାଇ ବିଭୋଳିତ ହେଲେ ତପିରୂପ ।
ସେ କଥା ମୋତେ ବୁଝାଇ କହେ ତପିବର
ଶାନ୍ତଶୀଳ କିଏ ମୁନି କହ ମୋ ଆଗର ।
ଅପସ୍ୱରିମାନେ ଶାପ୍ୟକୁ ଭୟ କରି
କହିଲେ ନୃତ୍ୟରଙ୍ଗ କରିବୁ ପାଶେ ତୋରି ।
ଋଷି ବୋଇଲେ ତୁମ୍ଭେ ମୋ ସଙ୍ଗେ ନିନ୍ଦା କରି
ବାସୁଦେବ ଭେଟ ହେଲେ ଯିବ ସ୍ୱର୍ଗପୁରି ।
ନୋହିଲେ ମୋର ସଙ୍ଗେ ସର୍ବଦା ରହିଥିବ
ମୋ ବଚନେ ମେଣ୍ଟିଲେ ପଥର ହୋଇଯିବ ।
ସତରଗଣ୍ଡା ଯୁଗ ଯେ ଏଥିରେ ବହିଗଲା
ଅପସରି ଯିବାକୁ ବାଟ ନ ପାଇଲା ।
ତେଣୁକରି ଅକଟ ସ୍ୱର୍ଗର ଅପସରି
ବାସୁଦେବ ରୂପକୁ ଦେଖି ବ୍ରହ୍ମଚାରୀ ।
ଅପସରିମାନେ ଯେ ସ୍ୱର୍ଗକୁ ଚଳିଯିବେ
ବ୍ରହ୍ମଚାରୀ ଜଞ୍ଜାଳୁ ମୁକତ ଲଭିବେ ।
ତୁମ୍ଭେ ତ ବାସୁଦେବ ମାନବ ରୂପେ ଜାତ
ସେ ସ୍ଥାନେ ବିଜେ କଲେ ଲଭିବେ ସେହି ମୁକ୍ତ
ତୁମ୍ଭେ ଶ୍ରୀରାମ ହେ ଜଳ କରାଅ ନିର୍ମଳ
ଶୁଣିକରି ଶ୍ରୀରାମ ହେଲେ ଶାନ୍ତଶିଳ ।
ସୁତୀକ୍ଷଣ ମୁନିଙ୍କି ବୋଇଲେ ରାମରାଣ
ସକଳ ମୁନି ଘେନି ସେଠାରେ ଚଳପୁଣ ।
ଦେଖି ବାସୁଦେବ ରାଜା ମେଘଙ୍କର ବଳ
କେତେହେଁ ପଥର ଯେ ବରଷେ ସେଠାରେ ।
ଶୁଣିକରି ଋଷିମାନେ ସନ୍ତୋଷ ହୋଇଲେ
ସେ ପୋଖରୀ ଠାବକୁ ବେଗେ ଚଳିଗଲେ ।
ସୁତୀକ୍ଷଣ ମୁନି ସଙ୍ଗେ ସକଳ ମୁନିଗଣ
ପୁଷ୍କରିଣୀ ତଟେ ଯାଇଁ ପ୍ରବେଶ ହେଲେ ଜାଣ
ଶ୍ରୀରାମ ଲକ୍ଷ୍ମଣ ସୀତା ତିନିଜଣ
ପ୍ରବେଶ ହେଲେ ଯାଇଁ ପୋଖରୀ କୂଳେଣ ।

ଦେଖିକରି ମେଘମାନେ ଗଗନେ ଉଦେହେଲେ
ହେମବନ୍ତ ପର୍ବତରୁ ପଥର ଆଣିଲେ ।
ଦେଖିଣ ଦେବତାଏ ଇନ୍ଦ୍ର ଦିଗପାଳ
ବିଚାରିଲେ ମେଘକିମ୍ପା ହୋଇଲା ଏକମେଳ
ଏମନ୍ତ ସମୟରେ ନାରଦ ଋଷି ମିଳି
ଦେଖିଣ ବାସବ ଯେ, ତାହାଙ୍କୁ ପଚାରି ।
ଆଜତ ଚାରିମେଘ ହୋଇଛନ୍ତି ଠୁଳ
ଗର୍ଜ୍ଜନର ଘାତେ ଯେ ପୃଥିବୀ ଅସ୍ଥିର
ନାରଦ ବୋଇଲେ ଆଜ ତୋ ରାଜପଣ ଯିବ
ଅନ୍ୟ ଇନ୍ଦ୍ର ସ୍ୱର୍ଗରେ ଅଭିଷେକ ହେବ ।
ବାସବ ବୋଇଲେ କେହୁ କରିପାରେ ପୁଣ
ନାରଦ ବୋଇଲେ ରାମ ସାରିବେ ତୋର ପଣ
ବାସବ ବୋଇଲେ କିମ୍ପା ରାମକୋପ ମୋରେ
ସେ କଥା ମୋର ଆଗେ କହ ମୁନିବରେ ।
ନାରଦ ବୋଇଲେ ତୁମ୍ଭେ ଶୁଣ ସୁରପତି
ମନ୍ଦକର୍ଣ୍ଣ ଋଷି ତପ କରୁଥିଲେ ବସି ।
ତାଙ୍କର ତପଭଗ୍ନ କରିବାର ପାଇଁ
ପାଞ୍ଚଗୋଟି ଅପସରି ବରଗିଲୁ ତୁହି ।
ସେହି କନ୍ୟାମାନେ ଯେ ଋଷିତପି ଭାଙ୍ଗି
ଜାଣିକରି ଋଷି ତାଙ୍କୁ ଶାପ୍ୟ ଦେଲେ ବେଗି ।
ବୋଇଲେ ବାସୁଦେବ ଦେଖିବାଯାଏ ମୋର
ମୋ ସଙ୍ଗେ ଲୀଳାକରି ରହିବ ଏଠାର ।
ମୋ ବୋଲ ନ ମାନିଲେ ହୋଇବ ପଥର
ଶୁଣିକରି ସେମାନେ ରହିଲେ ସଙ୍ଗର ।
ସୁତୀକ୍ଷ୍ଣ ମୁନିପାଶେ ରାମ ପରବେଶ
ପୋଖରୀକୂଳେ ରାମ ଦେଖେ ବିପରୀତ ।
ସକଳ ଋଷିଘେନି ସେଠାରେ ଯାଇ ମିଳି
ମେଘମାନେ ଦେଖିଣ ବରଷା ଋତୁ କରି
ପଥର ବରଷିବେ ବୋଲିଣ ହେଲେ ମେଳ
ଦେଖିକରି ଶ୍ରୀରାମ ହେଲେ କ୍ରୋଧଭର ।
ଶାରଙ୍ଗ ଧନୁରେ ଶର ସନ୍ଧିଣ ରଘୁନାଥ
ମେଘର ସଙ୍ଗେ ତୋତେ କରିବେ ଅନର୍ଥ ।
ଶୁଣିକରି ସୁରରାଜା ଆକୁଳ ମନ ହୋଇ
ଦେବତା ଦିଗପାଳ ଘେନିଣ ଚଳଇ ।
ପ୍ରବେଶ ହେଲେ ଯାଇଁ ପୋଖରୀ କୂଳେ
ଦେବତାଏ ସ୍ତୁତିକଲେ ଦେଖିଣ ରଘୁବୀରେ ।

ଦେବତାଙ୍କୁ ଦେଖି ରାମ ନମସ୍କାର କଲେ
ଆନନ୍ଦ ମନରେ ସେ ଦେବତାଙ୍କୁ ବୋଲେ ।
କନ୍ଦର୍ପ ଋଷିର ଯେ, ସମ୍ପୂର୍ଣ୍ଣ ତପପୁଣି
କାମନା ପୂର୍ଣ୍ଣହେଲା ଋଷିର ଏବେ ଜାଣି ।
କନ୍ଦର୍ପ ଋଷିର ଯେବେ ନଇ ସମ୍ପୂର୍ଣ୍ଣ
ଏବେ ବସିବ ଯାଇଁ ଅଚିନ୍ତା ସ୍ୱର୍ଗେଣ ।
ଇନ୍ଦ୍ରଙ୍କ ଆଗେ ରାମ କହନ୍ତି ଏ ବାଣୀ
ଶୁଣିଣ ସୁରରାଜା ଆନନ୍ଦ ମନ ପୁଣି ।
ଦେବତା ଡାକଦେଲେ ଯେ ସମ୍ପୂର୍ଣ୍ଣ ହେଲା ନୃତ୍ୟ
ମନେ ଯାହା ବାଞ୍ଛା କରିବ ଜୟେ ରଘୁନାଥ
ଶୁଣିଣ ଅପସରୀମାନେ ମୁନିଙ୍କି କହିଲେ
ବାସୁଦେବ କୂଳେ ଯେ ଡାକନ୍ତି ବୋଇଲେ ।
ଶୁଣି କନ୍ଦର୍ପ ଋଷି ଆସନ ତେଜ୍ୟାକଲେ
ଅପସରୀଙ୍କି ଘେନିଣ କୂଳରେ ମିଳିଲେ ।
ଦେଖିକରି ରାମଚନ୍ଦ୍ର ନମସ୍କାର କଲେ
ଆନନ୍ଦ ହୋଇ ଋଷି ସୁକଲ୍ୟାଣ କଲେ ।
ସ୍ୱର୍ଗରୁ ବିମାନ ଆସିବା କଥା ହୁନ୍ତେ
ବିମାନେ ବସି ଋଷି ଗଲେ ଯେ ତ୍ୱରିତେ ।
ଅପସରି ସ୍ୱର୍ଗକୁ ଗଲେ ଯେ ତାଙ୍କର
ପ୍ରବେଶ ହେଲେ ଯାଇଁ ଅଚିନ୍ତା ସ୍ୱର୍ଗପୁର ।
ଅପସରିମାନେ ଯେ ମେଲାଣି ହୋଇଗଲେ
ଯେ ଯାହା ନିଜପୁରେ ପ୍ରବେଶ ହୋଇଲେ ।
ଏଥୁଅନନ୍ତରେ ଯେ ଶୁଣ ଶାକମ୍ଭରୀ ।
ଦେବତା ଋଷିଙ୍କି ଘେନିଣ ଚାପଧାରୀ ।
ସେ ପୋଖରୀ ଜଳକୁ ସମସ୍ତେ ଭକ୍ଷିଲେ
ସେହି ପୋଖରୀକୁ ନିର୍ମଳ କରାଇଲେ ।
ଋଷିଙ୍କି ବୋଇଲେ ତୁମ୍ଭେ ଏଠାରେ ମଠକର
ପଥିକି ଜନମାନେ କରନ୍ତୁ ଆହାର ।
କିଛି ଭୟ ନକର ନ ଆସିବେ କେହି
ଅମୃତ ସମାନ ଯେ ଜଳସ୍ୱାଦ ହୋଇ ।
ଶ୍ରୀରାମ କହିବାରୁ ସୁତୀକ୍ଷ୍ଣ ମୁନି କହେ
କାମଧେନୁ ଗୋଟାଏ ଯେ ଦେବେ ଦେବତାଏ ।
ସେଠାରେ ସକଳ ଋଷି କଲେ ଯେ ନିବାସ
ଶୁଣ ତୁମ୍ଭେ ଗଉରୀ ଗୋ ଶ୍ରୀରାମ ଭବିଷ୍ୟ ।
ସେହିଠାରେ ରଘୁନାଥ ମାସେ ଯେ ରହିଲେ
ଦେବତାଏ କହିଣ ସ୍ୱର୍ଗପୁର ଗଲେ ।

ମାସକ ସମ୍ପୂର୍ଣ୍ଣ ଯେ ରାମ ତହିଁ ଚଳି
ଘୋର ଅରଣ୍ୟେ ଯେ ପଶିଲେ ଋପଧାରୀ ।
ପୁଣ୍ୟ ସ୍ଥାନ ଦେଖିଣ ରମନ୍ତି ମାସେ ପକ୍ଷେ
କେଉଁଠାରେ ଆଠଦଶ କେଉଁଠାରେ ଦୁଇପକ୍ଷେ
କେଉଁଠାରେ ପାଞ୍ଚଦିନ କେଉଁଠାରେ ସାତ
କେଉଁଠାରେ ତିନିମାସ ରକ୍ଷନ୍ତି ରଘୁନାଥ ।
ଦିନେ ଊଣା କେଉଁଠାରେ ମାସେ ଯେ ରହନ୍ତି
କେଉଁଠାରେ ଦୁଇଦିନ ରହି ଚଳିଯାନ୍ତି ।
କେବଣ ଠାବରେ ପୁଣ ପାଞ୍ଚଘରି ରହି
ସେଠାରୁ ଅରଣ୍ୟକୁ ଚଳେ ପଥବହି ।
କେଉଁଠାରେ ବାରଦିନ ଷୋଳ ଯେ ସତର
କେବଣ ଠାରେ ସ୍ନାନ ଭୋଜନ କରି ଖର ।
ଋଷିକୁଲ୍ୟା ପୂର୍ଣ୍ଣଭଦ୍ରା ନଦୀର କୂଳରେ
ଗଣ୍ଡୁକ ନଦୀକୂଳେ ପ୍ରବେଶ ରଘୁବୀରେ ।
ଦେଖିଲେ ପବିତ୍ର ସ୍ଥାନ ସେହୁ ଅଟେ ପୁଣ
ସେଠାରେ ପ୍ରବେଶ ରାମ ଆନନ୍ଦ ଦେଖିଣ ।
ସେଠାରେ ଶ୍ରୀରାମ ବେନିମାସ ପୁଣ କଲେ
ନିର୍ମଳ ଉଚ୍ଚସ୍ଥାନ ସେଠାରେ ଦେଖିଲେ ।
ପାଞ୍ଚ ଯେ ସାତଦିନ ରହିଲେକ ପୁଣ
ଗଣ୍ଡୁକୀ ନଦୀରେ କଲେକ ସ୍ନାହାନ ।
ଏକଦିନେ ଜାନକୀ ଶ୍ରୀରାମଙ୍କୁ ପୁଚ୍ଛି
ଏହି ଗିରିବର ନାମ କେବଣ ଅଟଇଟି ।
ଶ୍ରୀରାମ ବୋଇଲେ ଯେ ଶୁଣରେ ପ୍ରାଣସହୀ
ଜଳନ୍ଧର ନାମରେ ଅସୁର ଜାତ ହୋଇ ।
ଦେବତାଙ୍କୁ ଜିଣିଲା ଜିଣିଲା ତିନିପୁର
ବ୍ରହ୍ମାକୁ ମୋତେ ଜିଣିଲା ବରୁଣ କୁବେର ।
ତାହାର ଘରେ ଆମ୍ଭେ ତୋତେ ଘେନିକରି
ଯୁଗେ ପରିଯନ୍ତେ ରହିଲୁ ସୁନ୍ଦରୀ ।
ତାହାଙ୍କୁ ମାରିବା ପାଇଁ ଦେବେ କୂଟ କଲେ
ଅସୁରକୁ ନାରଦ ହାତେ କୁହାଇଲେ ।
ନାରଦ ଯାଇଣ ଯେ କହିଲେ ଅସୁରକୁ
ବୋଇଲେ ଈଶ୍ୱର ପୁରକୁ ଚଳ ବାବୁ ।
ଈଶ୍ୱରଙ୍କ ନାରୀ ଅଟନ୍ତି ପାର୍ବତୀ
ତିନିପୁରେ ସୁନ୍ଦରୀ ଅଟନ୍ତି ସେହି ସତୀ ।
ତୋହର ଭୁବନ ତ ଦିଶୁଅଛି ଅସୁନ୍ଦର
ସେ ନାରୀ ଆସିଲେ ତ ଦିଶିବ ସୁନ୍ଦର ।

ଶୁଣିଣ ଜଳନ୍ଧର ଈଶ୍ୱରପୁର ଗଲା
ଈଶ୍ୱର ଦେବତାଙ୍କୁ ପାର୍ବତୀ ମାଗିଲା ।
ଶୁଣିକରି ବିଶ୍ୱନାଥ କ୍ରୋଧଭର ହେଲେ
ବାମହସ୍ତେ ଅସୁରର ବାଳକୁ ଧଇଲେ ।
ଫୋପାଡ଼ି ଦିଅନ୍ତେ ଅସୁର ପଡ଼ିଲା ଯାଇ ତଳେ
ଚେତାପାଇ ଅସୁର ପଳାଏ ନିଜପୁରେ ।
କ୍ରୋଧରେ ଅସୁର ଯେ ନେତ୍ର ଥନ ଥନ
ଶୁକ୍ର ମନ୍ତ୍ରୀକି ଚହିଁ ବୋଇଲା ବଚନ ।
ବୋଇଲା ସୈନ୍ୟ ସାଜ କପିଳାସ ଯିବା
ସଦାଶିବଙ୍କ ସଙ୍ଗେ ସମର କରିବା ।
ତ୍ରିଲୋଚନକୁ ମାରି ଆଣିବା ତା ଘରଣୀ
ମାଗିଲାରୁ ମୋତେ ସେ କ୍ରୋଧ ହେଲା ପୁଣି ।
ଶୁକ୍ର ମନ୍ତ୍ରୀ ବୋଇଲେ ତୁ ନ ଜାଣି ମୁଁ ତାକୁ
ତ୍ରୈଲୋକ୍ୟ ଈଶ୍ୱର ସେ ମାରିବ ତୁମ୍ଭଙ୍କୁ ।
ଶୁଣିକରି ଅସୁର କ୍ରୋଧରେ ପ୍ରଜ୍ୱଳି
ବୋଇଲା ସକଳ ଦେବେ ମୋତେ ସେବାକରି
ବ୍ରହ୍ମା ବିଷ୍ଣୁ ଦୁଇଜଣ ଅଟନ୍ତି କରତା
ସେହି ଦୁଇଜଣ ମୋତେ ହାରି ହରିଲେତା ।
ରଣରେ ମୟେ ମାତା ହୋଇଣ ମତେ ହାରି
ଘରଣୀମାନେ ଘେନି ମୋ ପୁରେ ବିଜେକରି ।
ଶୁଣିକରି ଶୁକ୍ରମନ୍ତ୍ରୀ ନବର୍ତ୍ତି ରହିଲେ
ସୈନ୍ୟବଳ ସକଳ ସତ୍ୱରେ ସଜ କଲେ ।
ମର୍ତ୍ତ୍ୟ ପୁରରେ ଛାଇ ଯେ ହୋଇଲେ ଅସୁର
ବାଦ୍ୟ ନିଶାଣରେ କମ୍ପେ ତିନିପୁର ।
ମାର ମାର ଧର ଡାକ ଯେ ଦୈତ୍ୟ କଲେ
ଦେଖିଣ ଦେବତାଏ ଭୟରେ ପଳାଇଲେ ।
ଈଶ୍ୱର ଆଗରେ ଯାଇଁ କହିଲେ ଦେବଗଣ
ତୋର ପରେ ସୈନ୍ୟ ସାଜେ ସିନ୍ଧୁର ନନ୍ଦନ ।
ପାର୍ବତୀ ମାଗିବାରୁ ଯେ ନ ଦେଲ କୁମ୍ଭେ ଯହୁଁ
କ୍ରୋଧରେ ଅସୁର ଯେ ଯୁଦ୍ଧକୁ ଆସେ ତହୁଁ ।
ଶୁଣିକରି ଈଶ୍ୱର ଯେ ନନ୍ଦୀକି ଆଜ୍ଞାଦେଲେ
ଆମ୍ଭର ସୈନ୍ୟବଳ ସାଜରେ ବୋଇଲେ ।
ଶୁଣିଣ ନନ୍ଦୀ ଭ୍ରୂକୁଟୀ ବେଗେ ଚଳିଗଲେ
ଚଉଦ କୋଟି ଶିବଙ୍କୁ ଯାଇଣ କହିଲେ ।
ଶୁଣିକରି ଶିବଗଣ ହୋଇଲେକ ସଜ
ବଜାଇ ଡାକି ଡମରୁ ଧଇଲେ ଆୟୁଧ ।

ଅକ୍ଷୟ ଧନୁ ତ୍ରୋଣ ପଶୁପତ୍ର ଧରି
କାର୍ତ୍ତିକେଶ୍ୱର ଗଣକୁ ଧରି ଯୁଦ୍ଧ କରି ।
ଅନେକ ଅସୁର ଯେ ମଲେକ ସେଦିନ
ରାତ୍ରରେ ଶୁକ୍ର ମନ୍ତ୍ରୀ ଜିଆଏ ତାକୁ ପୁଣ ।
ଯାଇଣ ଦେବତାଏ ଈଶ୍ୱର ଆଗେ କହି
ଶୁଣିକରି ଈଶ୍ୱର ମନରେ କ୍ରୋଧ ହୋଇ ।
କ୍ରୋଧରୁ କାଳ ପୁରୁଷ ହୋଇଲେ ପୁଣ ଜାତ
ସେକାଳେ ପୁରୁଷକୁ ବୋଇଲେ ଉମାକାନ୍ତ ।
ବେଗେ ତୁ ଯେ ଅସୁର ପୁରକୁ ଚଳିଯିବୁ
ଶୁକ୍ର ମନ୍ତ୍ରୀକି ଘେନି ପାତାଳେ ପଶିବୁ ।
ଅସ୍ତଗିରି ତା ଉପରେ ଦେବୁ ଯେ ମଡ଼ାଇ
ଖୋଜି ଖୋଜି ଅସୁର ନ ପାଇବେ କେହି ।
ଶୁଣିଣ କାଳ ପୁରୁଷ ବେଗେ ଚଳିଗଲା
ଅସୁରର ସୈନ୍ୟରେ ଯାଇଁ ପ୍ରବେଶ ହୋଇଲା
କାଳ ପୁରୁଷକୁ ଦେଖି ଅସୁର ଭୟକଲେ
କେବେହେଁ ତାହାକୁ ଯେ ମାରି ନ ପାରିଲେ ।
ସେ କାଳ ପୁରୁଷ ଯେ ଧଇଲା ଶତ୍ରୁଙ୍କୁ
ଘେନିକରି ଚଳିଗଲା ପାତାଳ ପୁରକୁ ।
ଅସ୍ତଗିରି ନେଇଣ ତା ଉପରେ ମଡ଼ାଇଲା
ସେଠାରେ କାଳ ପୁରୁଷ ଜଗିଣ ବସିଲା ।
ମନ୍ତ୍ରୀ ଯିବାରୁ ଅସୁର ମନରେ ହେଲା ଦୁଃଖ
ତିନିପୁର ଖୋଜାଇଲା ଅସୁରଙ୍କୁ ଦେଖ ।
କେଉଁଠାରେ ଚିହ୍ନ ଯେ ନ ପାଇଲା ତାର
ଫେରିଣ ଅସୁର କହେ ରାଜାର ଆଗର ।
ଶୁଣିଣ ଜଳନ୍ଧର ଅଧିକ ଯୁଦ୍ଧ କଲା
ଗଣେଶ କାର୍ତ୍ତିକେଶ୍ୱର ହସ୍ତରେ ସୈନ୍ୟଯାକମଲା
ଦୁଇମାସ ପନ୍ଦର ଦିନ ଯେ ହେଲା ରଣ
ବତିଶିସହସ୍ର ଅସୁରଙ୍କୁ ମାରିଲେ ଶିବଗଣ ।
ବାକି ଆଠ ସାଗର ଅସୁର ବଳ ରହି
ଦେଖିଣ ଜଳନ୍ଧର ମନରେ କ୍ରୋଧହୋଇ ।
ପ୍ରଜ୍ୱଳିତ ଯୁଦ୍ଧ ଯେ କଲାକ ଅସୁର
ସାତକୋଟି ଶିବଗଣ ମାଇଲା ସେଦିନର ।
ଦେଖିକରି ଶିବଗଣ ଭାଜି ପଳାଇଲେ
କାର୍ତ୍ତିକେଶ୍ୱର ସେହି ରଣରେ ମୋହଗଲେ ।
ଦେଖିକରି ଶିବଗଣ ସଦାଶିବେ କହି
ଶୁଣିକରି ସଦାଶିବ ରଜନୀରେ ଯାଇ ।
ଜୀବନ୍ୟାସ ଶରକୁ ବିନ୍ଧିଲେ ଈଶ୍ୱର
ସକଳ ଶିବଗଣ ଉଠିଲେ ଧାଡିକାର ।
ବୃଷଭ ଉପରେ ଯେ ବିଜେ ସଦାନନ୍ଦ
ଅକ୍ଷୟ ତୃଣ ପଶୁପତ୍ର ଅଛି ତାର କନ୍ଧ ।
ଲେଉଟି ଆସିଣ ସେଠାରେ ରଣକଲେ
ସାତଦିନେ ଅସୁର ବଳଙ୍କୁ ନାଶିଲେ ।
ଦେଖିଣ ଜଳନ୍ଧର ମନରେ ବିଚାରିଲା
ଏ ସଦାଶିବ ହସ୍ତରେ ମୋହର ପ୍ରାଣଗଲା ।
କପିଳାସ କନ୍ଦରେ ଯାଇଣ ମିଳିଲା
ମାୟାରେ ଶିବଙ୍କ ପ୍ରାୟେ ଡମ୍ବରୁ ବଜାଇଲା
ଡାକି ଡମ୍ବରୁ ଶବ୍ଦ ଶୁଣିଣ ପାର୍ବତୀ
ସ୍ୱାମୀଙ୍କୁ ବନ୍ଦାପନା କରିଣ ଆସନ୍ତି ।
ପାର୍ବତୀ ରୂପକୁ ଯେ ଅସୁର ଦେଲାଚାହିଁ
ବୃଷଭ ଉପରେ ପଡ଼ିଲା ମୋହ ଯାଇଁ ।
ଦେଖିକରି ଗଉରୀ ଫେରି ବେଗେ ଗଲେ
ମାୟାରୂପ ବୋଲିଣ ମନରେ ବିଚାରିଲେ ।
ଦେଖିକରି ଅସୁର ଲେଉଟେ ଝଟତି
ବିଚାରିଲେ ନିଶ୍ଚୟ ମାରିବେ ପଶୁପତି ।
ଏମନ୍ତ ବିଚାରି ରଣରେ ଯାଇମିଳି
ଈଶ୍ୱରଙ୍କ ସଙ୍ଗରେ ଲଗାଇଣ କଳି ।
ଏଥୁଅନନ୍ତରେ ଯେ ଶୁଣ ଗୋ ବଇଦେହୀ
ପାର୍ବତୀ ଲେଉଟି ଯେ ନିଜ ସ୍ଥାନେ ଯାଇ ।
ବିସ୍ମୟ ମନରେ ମୋତେ ସୁମରଣା କଲା
ଜାଣିକରି ସେ ପୁରକୁ ମୁହିଁ ଗଲିପରା ।
ମୋତେ ଦେଖି ସେ ନାରୀ କହିଲା ମାନିଲି
ବିଚାରି ଅସୁରକୁ ପେଷିଲେ ମୋର ପୁରୀ ।
ମୋତେ ଅସୁର ନେଲେ ତୁମ୍ଭଙ୍କୁ ଭଲ ହେବ
ମାୟାରେ ପୁରୁଷ ତୁମ୍ଭେ ଉପାୟ ନ କରିବ ।
ଆପଣା ଘରଣୀ ଯେବେ ପରରେ ଦେଇ ଆଶା
କାହିଁକି ଦେବେ ତୋତେ କରନ୍ତି ଭରସା
ଅସୁର ନ ମାର କିମ୍ବା ଈଶ୍ୱର ଜଞ୍ଜାଳ
ଆଗେତ ଆଦରିଲ ମାରିବ ଦୁଷ୍ଟବଳ
ଈଶ୍ୱରଙ୍କୁ ବୋଇଲେ ପଡ଼ିଦାତା ହୁଅ
ଯୋଗଲୟ କରି ତପ ସିଦ୍ଧରେ ମନନିଅ ।
ବେଦବରକୁ ବୋଇଲ ବୁଝିତ ହାନି ଲାଭ
ଜନ୍ମ ମୃତ୍ୟୁ ତୋଠାରେ ଲାଗଇ ଯେ ସର୍ବ

ବେଦବର ସଦାଶିବ ଧର୍ମରେ ରହିଲେ
ଜନ୍ମମୃତ୍ୟୁ କରାଇ ଆହାର ସଞ୍ଚିଲେ ।
ତୁମ୍ଭେ କିମ୍ପା ଆଗ କଥା ନ କରି ପଛେ ମନ
ବଳବପୁ ତୁମ୍ଭର ଯେ କେଣେଗଲା ପୁଣ ।
ମୁଁ ବୋଇଲି ମୋର ହସ୍ତେ ନ ମରେ ଅସୁର
ତୁମ୍ଭର ଅଂଶରେ ଜାତ ହୋଇଛି ପାମର ।
ସଦାଶିବ ହାତରେ ହୋଇବ ସେ ଯେ ନାଶ
ଅନ୍ୟ ଲୋକ ମାଇଲେ ନ ମରେ ଦଇତ୍ୟ ।
ପାର୍ବତୀ ବୋଇଲେ ଯେବେ ବିଶ୍ୱନାଥ ମାରି
ତାଙ୍କର ଭାରିଯାକୁ ଦୈତ୍ୟ ଯେ ମାୟାକରି ।
ଏ କଥାରେ ଲଜ୍ୟା ଯେ ନୋହିଲା ତୁମ୍ଭଙ୍କୁ
କେମନ୍ତେ ମରିବ ସେ ଉପାୟ କର ହେତୁ ।
ମୁଁ ବୋଇଲି ତାହାର ଘରଣୀ ବୃନ୍ଦାବତୀ
ତାକୁ ମାୟା କଲେ ମରିବ ତାର ପତି ।
ପାର୍ବତୀ ବୋଇଲେ ଯେ ଜାତିରେ ନାରୀ ପୁଣ
ତାର ଯୋଗୁ ପତି ଯେ ହୋଇଛି ବଳବାନ ।
ମୁଁ ବୋଇଲି ବୃନ୍ଦାବତୀ ସାଧବ ଅଟେ ପୁଣ
ତାର ଯୋଗୁ ପତି ଯେ ହୋଇଛି ବଳବାନ
ମୁଁ ବୋଇଲି ବୃନ୍ଦାବତୀ ସାଧବୀ ଅଟେ ପରା
ସତୀ ବ୍ରତ ଦୃଢ଼ ଥିଲେ ନାମରେ ପତି ପରା ।
ପାର୍ବତୀ ବୋଇଲେ ତାର ଭାଗ୍ୟ ସ୍ୱତୀ ବ୍ରତ
ଯେଉଁ ପ୍ରାୟେ ଦୈତ୍ୟ ମରେ ସେକଥା ଉଚିତ
ମୁଁ ବୋଇଲି ମାୟାରେ ତାହାକୁ ଯେ ହରି
ତେବେ ପତି ତାର ମରିବ ନ ବିଚାରି ।
ପାର୍ବତୀ ବୋଇଲେ ଯେ ଏକଥା ବେଗେକର
ନୋହିଲେ ତିନିପୁର ହୋଇବ ଅନଳ ।
ଈଶ୍ୱରବୋଇଲେ କ୍ରୋଧରେ ଅନଳହେବଜାତ
ଗରଳ ଅନଳକୁ ନୋହିବ ସମର୍ଥ ।
ତିନିପୁର ଭସ୍ମକଲେ ପ୍ରଳୟ ପୁଣ ହେବ
ତେତେବେଳେ ତୁମ୍ଭକୁ ସ୍ଥାନ ନ ମିଳିବ ।
ଏଥର କ୍ରୋଧ ଜାତ ହୋଇଲା ଆମ୍ଭର
ସେକଥା ଶୁଣି ମୁଁ ଯେ ଅଇଲି ଚଞ୍ଚଳ ।
ତତକ୍ଷଣେ ଆସିଣ ଦୈତ୍ୟ ରୂପ ହେଲି
ମାୟାରେ ଜଳନ୍ଧର ରୂପ ଭିଆଇଲି ।
ବୃନ୍ଦାବତୀ ପାଶରେ ହେଲି ପରବେଶ
ଦେଖିଣ ବୃନ୍ଦାବତୀ ମନରେ ହରଷ ।
ପଚାରିଲେ ସଦାଶିବ ଜିଣିଲକି ପୁଣି
ମୁଁ ବୋଇଲି କୂଟଯୁଦ୍ଧ ସେହୁ କଲେ ପୁଣି ।
ଚଉଦିଶ ସାଗର ମୁଁ ଦୈତ୍ୟ ବଳ ନେଲି
ବତିଶ ସାଗର ଯେ ମାଇଲା ତ୍ରିପୁରାରୀ ।
ଅକଳିତ ଯୁଦ୍ଧ ଯେ ହୋଇଲା ସେଠାରେ
କାମବାଧା କଲା ଯେ ମୋହର ହୃଦୟରେ ।
ପଞ୍ଚଶର ବାଧାକୁ ସାରି ତେବେ ଯିବି
ରଣରେ ପଶି ପଞ୍ଚାନନକୁ ମାରିବି ।
ତେବେ ମୋର ମନ ଯେ ହୋଇବ ପୂଣି ପୂର୍ଣ୍ଣ
ପାର୍ବତୀଙ୍କି ଆଣିଲେ ରହିବ ବଡ଼ପଣ ।
ଶୁଣିଣ ବୃନ୍ଦାବତୀ ଦାସୀକି ବେଗେ ଡାକି
ସୁବେଶ ଚତୁରୀ ହେଲା ସେ ବେଶ ପାଲଟି ।
ମୋତେ ସେ ରମଣ ସୁରତି ଭାବ ଦେଲା
ନାନା ଭାବରେ ରତି ରମଣ କରାଇଲା ।
ବେଳରେ ସେ କଥା ନୋହିଲା ସୁଖ ତାକୁ
ବିଚାରିଲା ମାୟା କଥା ଅଟେ ଏ ଯେ ବପୁ ।
ସ୍ୱାମୀର ଶୃଙ୍ଗାର ଯେ ଅଳପେ ନାଶଯାଇ
ଏ ପୁରୁଷ ଶୃଙ୍ଗାର ମୋତେ ପୀଡ଼ାଦେଇ ।
ଏମନ୍ତ ବିଚାରି ସେ କହିଲା ବହନ
ବୋଇଲା ରତିପୀଡ଼ା ହୋଇଲା ବଡ଼ଜାଣ ।
ରଜନୀ ଦିବସ ଯେ ତୁମ୍ଭର ସଙ୍ଗଲୀଳା
ବପୁ ମୋର ତୁଟିଲା ବୀର୍ଯ୍ୟ ସ୍ଖଳିତ ନୋହିଲା ।
ମୋର ସ୍ୱାମୀ ଲୀଳା ପ୍ରାୟେ ମୋତେ ନ ଲାଗିଲା
କେଉଁ ପୁରୁଷ ତୁ ଯେ ମାୟାରେ କରୁ ଲୀଳା ।
କହ ମୋର ଆଗରେ ନୋହିଲେ ଦେବିଶାପ୍ୟ
ଆଜ ତୋତେ କରିବି ମୁହିଁ ଭସ୍ମଯୁକ୍ତ ।
ମୁଁ ବୋଇଲି ନାରୀରେ ନ କର କ୍ରୋଧମନ
ମୁହିଁ ଯେ ନାରାୟଣ ଜଗତର ଧନ ।
ଶୁଣିକରି ବୃନ୍ଦାବତୀ ମୋ ପାଶୁ ଉଠିଗଲା
କ୍ରୋଧରେ ଦେବୀ ମୋତେ ବଚନ ବୋଇଲା ।
ସ୍ୱତୀବ୍ରତ ଗଣ ଯେ ଭାଙ୍ଗିଲ ମୋହର
ମୋହର ଶାପ୍ୟ ଏବେ ହେଉ ତୋତେ ସାର
ଏହିଠାରେ ଶରୀର ପର୍ବତ ରୂପହେଉ
କାଳ ଯୁଗକୁ କଥା ମୋର ରହିଥାଉ ।
ଏତେବୋଲି ନାରୀ ଯେ ମୋତେ ଶାପ୍ୟଦେଲା
ବୋଇଲା ତୁମ୍ଭରଲାଗି ଏ ଦେହ ମୋଚଗଲା ।

କି କାରଣେ ଶରୀର ଥିବ ଯେ ମୋର ପୁଣ
ତୁମ୍ଭ ସକାଶେ ଦେହ ଭସ୍ମ କରିବି ଜାଣ ।
ମୁଁ ବୋଇଲି ସୁନ୍ଦରୀ ପୂର୍ବ କଥା ଚେତ
ଗୋଲେଖ ଦୁଆରେ ତୁ ଯେ ତ୍ରିପୁରା ସ୍ୱରୂପ ।
ଯେତେବେଳେ ମାନବ ବିଷ୍ଣୁରେ ଗଣିତା
ଗୋଲେଖ ଦୁଆରେ ତୋତେ କହିବି ସର୍ବକଥା
ତୁବୋଇଲୁ ମୋତେ ଯେବେ କରିବ ତୁମ୍ଭେବଡ଼
ତେବେ ମୁଁ ରାହାସଲୀଳା ଦେଖାଇବି ଗଢ଼ ।
ତୋହର କଥାକୁ ମୁଁ ଯେ ସତ୍ୟକରି ପୁଣ
ତୁ ମୋତେ ଦେଖାଇଲୁ ରାହାସ ନେଇଣ ।
ରାଧା କୃଷ୍ଣ ଦେଖିଣ କ୍ରୋଧମନ ହେଲେ
ମାନବେ ଜାତ ହୁଅବୋଲି ଶାପ୍ୟ ଦେଲେ ।
ତୋତେ ବୋଇଲେ ତୁ ବେଗେ ଚଳ ଏଥୁ
ଅସୁରକୁ ବର କର ଜନ୍ମ ନରହୁ ହେତୁ ।
ପ୍ରଥମ ଜନ୍ମରେ ତୁ ଅସୁର ସଙ୍ଗେ ଭେଟ
ଶେଷରେ ନାରାୟଣ ଦେଖିବୁ ସାକ୍ଷାତ ।
ସେହିକାଳେ ନାରାୟଣ ତୋତେ ଯେ ହରିବେ
ତୋହର ଶାପ୍ୟରେ ପୁଣି ପାଷାଣ ହୋଇବେ
ସେହିଠାରୁ ତୋହର ଅସୁର ଜନ୍ମ ଯିବ
ନାରାୟଣ ସଙ୍ଗରେ ତୋର ଭାବ ହେବ ।
ତୁହି ହେବୁ ବଡ଼ ଯେ କମଳା ହେବ ସାନ
ସମସ୍ତଙ୍କ ଉପରେ ତୁ ବସିବୁ ଯାଇଣ ।
ଶୁଣିକରି ବୃନ୍ଦାବତୀ ଚେତିଲେ ସେ କଥା
କେମନ୍ତେ ବଡ଼ କରିବୁ କହିଲେ ସେ କଥା ।
ମସ୍ତକ ଉପରେ ମୋତେ କେମନ୍ତେ ଧରିବୁ
ପୁଣି ମୋର ସଙ୍ଗରେ ଲୀଳା ତୁ କରିବୁ ।
ମୁଁ ବୋଇଲି ତୁଳସୀ ମାଳୀତ ଅଏଁଳା
ଏହିରୂପେ ଅଧେ ତୋର ହୋଇବ ଅବଳା ।
କଳିଯୁଗେ ମୁହିଁ ଯେ ହୋଇବି ନିଦାରୂପ
ମସ୍ତକରେ ତୋତେ ମୁହିଁ କରିବି ସ୍ୱରୂପ ।
ଆର ଅଂଶ ତୋର ଦ୍ୱାପର ଅବତାରେ
ଗୋପାଳ ଘରେ ଜାତ ଅଯୋନି ସମ୍ଭୁତରେ ।
ଷୋଳସସ୍ର ଗୋପାଳୁଣୀ ତୋର ସଙ୍ଗେମେଳ
ସେ ଜନ୍ମେ ରାଧିକା ଯେ ନାମ ହେବ ତୋର ।
ଯଦୁବଂଶେ ଜାତ ହୋଇ ଗୋପରେ ବଢ଼ିବି
ତୋର ସଙ୍ଗେ ସେ ଜନ୍ମରେ ଲୀଳା ମୁଁ କରିବି ।

ଶୁଣିଣ ବୃନ୍ଦାବତୀ ସନ୍ତୋଷ ହୋଇଲା
ଲେଉଟି ସେହି ନାରୀ ମୋତେ ଯେ ବୋଇଲା ।
ମୋହର ଶାପ୍ୟରେ ତୁମ୍ଭେ ବୋଇଲ ପାଷାଣ
ମୋର ସ୍ୱାମୀ ହୋଇବ ଯେ ବଜ୍ରକୀଟ ପୁଣ ।
ମାତାର ଶରୀରକୁ ଯେମନ୍ତେ ବିଦାରିଲୁ
ସେ କୀଟ ତୋର ଶରୀର କାଟୁ ଏବେ ଭଲୁ ।
ଶିରପରେ ସ୍ତିରୀ ରୂପରେ ମୁଁ ବସିବି
ତେବେ ସେ ବଡ଼ କଲା ପରାଯେ ଜଣାଯିବି ।
ଏତେବୋଲି ବୃନ୍ଦାବତୀ ଅଗ୍ନିରେ ଝାସଦେଲା
ଗୋଲେଖ ନାରାୟଣଙ୍କୁ ସେ କଥା ଦୃଶ୍ୟହେଲା
ମୋର କଥା ମନରେ ଯେ ନ କଲା ଖାତର
ତେଣୁ ସେ ପରକ୍ରିୟା ହେଲା ଅନ୍ତର ।
ସେହି ଭସ୍ମ ଯିବାରୁ ତିନିରୂପ ହେଲା
ପୁଷ୍ପବୃକ୍ଷ ହୋଇଣ ସେଠାରେ ଉପୁଜିଲା ।
ସେଠାରୁ ଜଳନ୍ଧର ହୋଇଲା ପ୍ରାଣେ ହତ
ତ୍ରିଶୂଳରେ ତାହାକୁ ମାରିଲେ ବିଶ୍ୱନାଥ ।
ତାହାର ପ୍ରାଣ ଲିଙ୍ଗ ବଜ୍ରକୀଟ ହେଲା
ପାଷାଣ ଦେହ ଧରି ପଥର କାଟିଲା ।
ଶହସ୍ରେ ବରଷର ଗୋଟିଏ ଶିଳା ଜାତ
କୋଟିଏ ବଜ୍ରକୀଟ ତା ଅଂଶରୁ ହେଲେ ଜାତ ।
ଦଧି ବାବନ ନାରାୟଣ ନୃସିଂହ ଦାମୋଦର
ଦଶ ଅବତାର ରୂପେ କାଟେ ଜଳନ୍ଧର ।
ଅନନ୍ତ ନାରାୟଣ ସେ ଶିବରୂପ ଜାଣ
ପାର୍ବତୀ ପ୍ରାୟେ ତ୍ରିରୂପ ଜାଣ ।
ଦଶ ରୂପ ତୋହର ଯେ ଅନୁରୂପେ କାଟି
କ୍ରୋଧରେ ଦଇତ୍ୟ ଯେ କାଟଇ ବିକୋଟି ।
ସେ ଶିଳାର ଉପରେ ଅଗର ଚନ୍ଦନ
ତୁଳସୀପୁର ଅଇଁଳାରେ ହେଲିମୁଁ ତୋଷଜାଣ
ତାରଠାରୁ ମୋରେ ପରକ୍ରିୟା ଜାତ
ଗୋଲେଖନାଥ ବଚନେ ହୋଇଲା ମୋତେ ଉଚ୍ଚ ।
ଜାନକୀ ବୋଇଲେ ଈଶ୍ୱର କିସ କଲେ
ଶ୍ରୀରାମ ବୋଇଲେ ଦୈତ୍ୟ ମାରିକରି ଗଲେ ।
ଆନନ୍ଦରେ କପିଳାସ ହେଲେ ପରବେଶ
ଚଉଦ କୋଟି ଶିବ ଯେ କରନ୍ତି ନୃତ୍ୟରସ ।
ଗହଳ ଦେଖି ଦାସୀ ଅଇଲା ସଙ୍ଗେ ଘେନି
ବିଜେ ସିଂହଦ୍ୱାରେ ହେମବନ୍ତର ଦୁଲଣୀ ।

ମଙ୍ଗଳ ଆରତି କରି ବନ୍ଦାପନା କଲେ
ଆନନ୍ଦ ହୋଇଣ ମନେ ବେଗେ ଫେରିଗଲେ ।
ତ୍ରିଦଶ ଦେବତାଏ ମିଳିଲେ ଯାଇକରି
ତୁ ସ୍ତ୍ରୀ କରି ଆନନ୍ଦ କରାଅ ତ୍ରିପୁରାରି ।
ମେଲାଣି ହୋଇଣ ଯେ ଯାହାର ପୁରେ ଗଲେ
ପାର୍ବତୀଙ୍କି ଘେନି ଶିବ ନିଶ୍ଚିନ୍ତେ ରହିଲେ ।
ଏମନ୍ତେ ସାତ ପାଞ୍ଚ ଗଲା ବହି
ମୋତେ ନ ଦେଖିଣ ସମସ୍ତେ ଦୁଃଖୀ ହୋଇ ।
ତ୍ରିଦଶ ଦେବତାଏ ବେଦବରଙ୍କୁ ଘେନି
କପିଳାସ କନ୍ଦରରେ ପ୍ରବେଶ ହେଲେ ପୁଣି ।
ଈଶ୍ୱରଙ୍କୁ ପଚାରିଲେ ବିଷ୍ଣୁ ଗଲେ କେଣେ
ଈଶ୍ୱର ବୋଇଲେ ବିଷ୍ଣୁ ରହିଛନ୍ତି ଯେଣେ ।
ଅସୁର ନମରିବାରୁ ଉପାୟ ଦେବେ କଲେ
ଜଳନ୍ଧର ଘରଣୀକି ମାୟାରେ ହରିଲେ ।
ତେବେ ସେ ଜଳନ୍ଧର ପାଇବ ମରଣ
ବିଷ୍ଣୁଙ୍କୁ ବୃନ୍ଦାବତୀ ପାଷାଣ କଲେ ଜାଣ ।
ଚିନ୍ତାରେ ଶ୍ରୀହରି ଯେ ପାଷାଣ ରୂପ ହୋଇ
ବୃନ୍ଦାବତୀ ସେଠାରେ ଅଗ୍ନିରେ ଭସ୍ମ ହୋଇ
ସେହି ବୃନ୍ଦାବତୀ ପୁଣ ତିନିପକ୍ଷ ହେଲା
ସଂସାରରେ ସାର ବୃକ୍ଷରୂପରେ ଜନ୍ମିଲା ।
ତେଣୁ ସେ ଦେବତାଏ ବହିବେ ତାକୁ ଶିରେ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସବୁଙ୍କ ଉପରେ ।
ଏତେ କହି ଦେବତାଏ ଘେନି ସଙ୍ଗେ ଗଲେ
ବିଷ୍ଣୁ ଥିବା ସ୍ଥାନରେ ପ୍ରବେଶ ଯାଇ ହେଲେ
ଦେଖିଲେ ପର୍ବତ ରୂପରେ ଯେ ଶ୍ରୀହରି
ଦେବତାଏ ଅନେକ ସ୍ତୁତି ଯେ ତାଙ୍କୁ କରି ।
ଦେଖିଲେ ଜଳନ୍ଧର ହୋଇଛି ବଜ୍ରକୀଟ
ପାଷାଣ ହୃଦୟକୁ କାଟୁଛି ରଟ ରଟ ।
ଦେଖିଣ ଦେବତାଏ ଈଶ୍ୱର ପଚାରିଲେ
ଜାଣିକରି ସଦାଶିବ ସମସ୍ତ କହିଲେ ।
ଶୁଣିକରି ସର୍ବଦେବ ବୃକ୍ଷ ପାଶେ ଗଲେ
ବୃନ୍ଦାବତୀକି ସ୍ତୁତି କରି ପୁଷ୍ପ ଯେ ତୋଳିଲେ ।
ଅଇଁଳା ତୁଳସୀକି ମସ୍ତକେ ଲଗାଇଲେ
ମାଳତୀର ପୁଷ୍ପ ଯେ ଧଣ୍ଡା ମାଳ କଲେ ।
ଗଳାରେ ଭରିବାରୁ ଦିଶିଲେ ଶୋଭାବନ
ଦେଖିଣ ପାଷାଣରୁ ଅଇଲେ ନାରାୟଣ ।

ନାରାୟଣଙ୍କୁ ଦେଖି ସମସ୍ତେ ହରଷ
ନାରାୟଣ ବୋଇଲେ ଶୁଣ ହେ ତ୍ରିଦଶ ।
ପାଷାଣରୂପରୁ ମୋର ଶିଳା ଉପୁଜିବ
ଗଣ୍ଡୁକି ନଦୀରେ ଯାଇ ସେ ଶିଳା ମିଳିବ ।
ସେ ଶିଳାକୁ ନେଇ ସମସ୍ତେ ପୂଜାକର
ନିଦାବିଷ୍ଣୁ ରୂପ ଯେ ଅଟଇ ମୋହର ।
ଶୁଣିକରି ଦେବତାଏ ସନ୍ତୋଷ ହୋଇଲେ
ପୁଷ୍ପଶିଳା ମସ୍ତକେ ଘେନିଣ ଚଳିଇଲେ ।
କମଳାଙ୍କୁ ଘେନି ହରି ଗଲେ ନିଜପୁର
ଅନନ୍ତ ଶଯ୍ୟା କଲେ ଶୟନ ନିରାକାର ।
ନିଦାବିଷ୍ଣୁ ଅଂଶୁ ଯେ ଗଣ୍ଡୁକି କୂଳେ ରହି
ଶାଳଗ୍ରାମ ଶିଳା ଯେ ସେଠାରୁ ଉପୁଜଇ ।
ଶୁଣିଣ ଜାନକୀ ଯେ ମନରେ ତୋଷ ହେଲେ
ଅଯୋଧ୍ୟାରେ ଥିଲେ କାହିଁ ଦେଖନ୍ତେ ବୋଇଲେ ।
ଶ୍ରୀରାମ, ଲକ୍ଷ୍ମଣ, ସୀତା ସେଠାରୁ ଉଠିଗଲେ
ଶାଳଗ୍ରାମ ପର୍ବତକୁ ନମସ୍କାର କଲେ ।
ଗଣ୍ଡୁକି ନଦୀରେ ସେ ସ୍ନାହାନ କରି ପୁଣ
ସେ ନଦୀରୁ ଜଳ ଭକ୍ଷିଣ ତିନିଜଣ ।
ସେ ସ୍ଥାନ ତେଜ୍ୟାକରି ବେଗେ ଚଳିଗଲେ
ସେଦିନ ଜାନକୀ ଯେ ରଜସ୍ୱଳା ହେଲେ ।
ବନରେ ସେଦିନ ଯେ ରହିଲେ ତିନିଜଣ
ଆଗଦିନ ବିକ୍ରମ ଋଷିଙ୍କ ମଠେ ପୁଣ ।
ଶ୍ରୀରାମଙ୍କୁ ଦେଖି ମୁନି ଗଉରବ କଲେ
ଫଳ ମୂଳ ଆଣି କରି ଶ୍ରୀରାମକୁ ଦେଲେ ।
ସକଳ କଥା ମୁନି ରାମକୁ ପଚାରି ପୁଣ
ଶୁଣିକରି ଶ୍ରୀରାମ କହିଲେ ସକଳ ।
ଶୁଣିଣ ବିକ୍ରମ ଋଷି ହରଷ ହୋଇଲେ
ଗୟାରେ ପିଣ୍ଡଦାନ କର ଯେ ବୋଇଲେ ।
ଶ୍ରୀରାମ ବୋଇଲେ ମୋଠାରେ ନାହିଁ ଧନ
ଜଞ୍ଜାଳ କରିବେ ଯେ ଗୟାରେ ବିପ୍ର ଦଳ ।
ଶୁଣିଣ ବିକ୍ରମ ଋଷି ଆନନ୍ଦ ହୋଇଲେ
ସହସ୍ରେ ସୁନିଆ ଯେ ଶ୍ରୀରାମକୁ ଦେଲେ ।
ଦେଖିଣ ଶ୍ରୀରାମ ଯେ ବୋଇଲେ ମୁନିକି
ଋଷି ଧନେ ଗୟାରେ ପିଣ୍ଡକି ଦେବା ନିକି ।
ଋଷି ବୋଇଲେ ଯେ ସକଳ ତୁମ୍ଭର
କିମ୍ପାଇ ଏକଥାକୁ ବିଚାର ତୁମ୍ଭେ କର ।

ଶ୍ରୀରାମ ନେଲେ ସେ ଋଷିଙ୍କର ଗୀତ
ସେଠାରୁ ଚଳିଲେ ଶ୍ରୀରାମ ତୁରିତ ।
ଦେବତାଏ ବିଚାରି ବାଟରେ ରତ୍ନ ଦେଲେ
କାହାର ବୋଲି ଏ ଧନ ଶ୍ରୀରାମ ନ ନେଲେ
ଗୟାତୀର୍ଥରେ ଯାଇ ହେଲେ ପରବେଶ
ପୁଲକି ନଦୀକୂଳେ ରହିଲେ ରଘୁବଂଶ ।
ଶ୍ରୀରାମଙ୍କୁ ଦେଖି ପୁଲକି ଆସି ଭେଟ ହେଲା
ନଦୀ ସ୍ୱରୂପ ଛାଡ଼ି ବତୁଳ ରୂପ ହେଲା ।
ଆଏ ଦାଏ ଅଳଙ୍କାର ହୋଇଣ ଭୂଷଣ
ଶ୍ରୀରାମ ଚରଣରେ ଓଳଗିଲେ ପୁଣ ।
ଜାନକୀର ଚରଣ ଯାଇଣ ପୂଜା କଲା
ଲକ୍ଷ୍ମଣ ଚରଣରେ ଓଳଗି ଶୋଇଲା ।
ଦେଖିଣ ତିନିଜଣ ପ୍ରସନ୍ନ ତାରେ ହେଲେ
କିସ ତୋର ମନ ଯେ ବୋଲିଣ ପଚାରିଲେ ।
ପୁଲକି ହୋଇଲେ ତୁମ୍ଭେ ଶୁଣ ହେ ଶ୍ରୀରାମ
ଧବଳ ମୁଖି ଗଙ୍ଗାର ଅଟଇ ଭଗ୍ନୀ ପୁଣ ।
ମେରୁ ମୋର ପିତା ତାର ଅଟେ ମୁଁ ଦୁହିତା
ପୁଲକି ନାମ ମୋର ଦେଲେ ଯେ ବିଧାତା ।
ଏଥିରେ ପଶି ମୁଁ ଯେ ଯାଆନ୍ତି ପ୍ରଥମରେ
ପିଣ୍ଡତୀର୍ଥ ନାମ ଏବେ ହୋଇଲା ଗୟାରେ ।
ଏ ତୀର୍ଥରେ ପିଣ୍ଡ ଦେଲେ ସକଳ ପିତୃ ପାଇ
ପିଣ୍ଡ ଦେଲେ ପିତୃଋଣ ଏଠାରେ ଶୁଝିଯାଇ
ଜାଣିଣ ସକଳ ଲୋକ ଏ ତୀର୍ଥେ ଦେଲେ ପିଣ୍ଡ
ତେଣୁ ଏ ତୀର୍ଥ ନାମ ହୋଇଲା ଅଖଣ୍ଡ ।
ଏମନ୍ତ କେତେଦିନ ସେଠାରେ ବହିଗଲା
ଗୟାସୁର ନାମେ ତହୁଁ ଦାନେବ ଉପୁଜିଲା ।
ଗଦାଧର ବୋଲିଣ ବୀରକି ଏଥି ଦେଲା
ତାହାର ଘରଣୀ କୌମୁଦି ଅଟେ ପରା ।
ତିନିପୁର ସୁନ୍ଦରୀ ସମସ୍ତ ପାରେ ମୋହି
ଦେବତାମାନେ ଦେଖିଲେ ପଡ଼ନ୍ତି ମୋହଯାଇ
ଋଷିମାନେ ଦେଖିଲେ ଭାଙ୍ଗେ ଯୋଗ ନିଦ୍ରା
ଅସୁରମାନେ ଦେଖିଲେ ହୁଅନ୍ତି ପ୍ରମଦା ।
ନରବାନର ଦେଖିଲେ ଆହାର ତେଜନ୍ତି
ବ୍ରାହ୍ମଣ ନାରୀ ଯେ ଏମନ୍ତ ସୁନ୍ଦରୀଟି ।
ଏଥିରେ ରହି ସୁନ୍ଦରୀ ନିଅନ୍ତି ଦିନ କାଳ
ପଡ଼ିରେ ଭଗତି ଯେ ନୁହଇ ବିଭୋଳ ।

ଏକଦିନେ ବିଜୟା ଅସୁର ଶୂନ୍ୟେ ଯାଏ
ଏ ସୁନ୍ଦରୀକି ଦେଖିଲେ ସ୍ନାନ କରିବା ଠାଏ ।
ନିଜସ୍ୱାମୀ ସଦୃଶରେ ମାୟାରୂପ ହେଲା
ମାୟାକଥା କହିଣ ସେ ନାରୀକି ହରିଲା ।
ଶୃଙ୍ଗାର ସରନ୍ତେ ଯେ ଅସୁର ରୂପ ଧରି
ଦେଖିଣ ସୁନ୍ଦରୀ ଯେ ମନରେ ବିଚାରି
ବୋଇଲା ସତୀବ୍ରତ ଭାଂଗିଲା ଏ ଚଣ୍ଡାଳ
ଧର୍ମତୀର୍ଥକୁ ଆସି ଯେ ଲଘିଲା ଅସୁର ।
ଯେବେ ଏ ତୀର୍ଥ ଅଟେ ନିଶ୍ଚେ ଧର୍ମବନ୍ତ
ଧର୍ମ ନିରଞ୍ଜନ ଏହାକୁ କରୁ ହତ ।
ଏହାର ବୀର୍ଯ୍ୟରେ ଯେଉଁ କୁମର ଜାତହେବ
ଗଦାଧର ରୂପ ଧରି ଶ୍ରୀହରି ମାରିବ ।
ଏସନ ଯହୁଁ କହେ ସେ ବ୍ରାହ୍ମଣୀ ।
ସ୍ୱର୍ଗର ବିଳାସିନୀମାନେ ତାକୁ ଧରି ପୁଣି ।
ଶୂଳ ତୀରଣ କତିରେ ଅସୁର ନିବାରିଲା
ଧର୍ମ ଦେବତାଙ୍କୁ ଯହୁଁ ସେ ନାରୀ କହିଲା ।
ଦଶଦିନେ ତାର ଗର୍ଭୁ ପୁତ୍ରେକ ଜନ୍ମିଲା
ଗୟାସୁର ଦାନବ ଯେ ତାର ନାମ ଦେଲା ।
ପଞ୍ଚସସ୍ର ଯୂଣ ଅଟେ ତା ଶରୀର
ଦୋପଞ୍ଚାଶ ଯୂଣ ହସ୍ତ ବେନି ଅଟେ ତାର ।
ତମ୍ବରୁ ପରାଏ ତାର ଅଟଇ ଶରୀର
ଦେଖିଣ ରବି ଦେବତା ହୋଇଲେ କାତର ।
ସାତଦିନ ପରିଯନ୍ତେ ଉଦେ ନୁହେଁ ପୁଣ
ଜୀବଜନ୍ତୁ ଦେବତାଏ ଭୟ କଲେ ଜାଣ ।
ସମସ୍ତେ ନାରାୟଣଙ୍କୁ କଲେ ସୁମରଣା
ଅନନ୍ତ ଶଯ୍ୟାରେ ଥାଇ ଜାଣିଲେ ହରି ସିନା ।
ଗୟାତୀର୍ଥେ ଆସି ହରି ପ୍ରବେଶ ହୋଇଲେ
ଗଂଗାଧର ରାଜା ରାଣୀ ଗର୍ଭରେ ଜାତ ହେଲେ ।
ଅବନୀରେ ପଡ଼ନ୍ତେ ହୋଇ ବିଶ୍ୱମୂର୍ତ୍ତି
ଦେଖିଣ ଗଙ୍ଗାଧର ବିଚାର କରେ ମତି ।
ବିଶ୍ୱମୂର୍ତ୍ତି ଦେଖି ଗଦାଧର ନାମ ଦେଲା
ଅନ୍ଧାର ପୁରେ ଗୋଟି ଆଲୋକ ହୋଇଲା ।
ଗଦାଧର ଗଦାଧରି ଗଦାସୁରକୁ ମାରି
ତିନିପୁରକୁ କଥା ରଖିଲେ ଚିର କରି ।
ତିନିଦିନ ଯୁଦ୍ଧକରି ମଲା ଗୟାସୁର
ଧରଣୀରେ ତାହାକୁ ଶୁଆଇ ଗଦାଧର ।

ପାଦ ତାର ଗୋଦାବରୀ ଦକ୍ଷିଣ ଦିଗେ ରହି
ନାଭିଗୋଟି ବିରଜା ମଣ୍ଡଳ ତାର ହୋଇ ।
ବଇତ୍ରଣୀକି ଆବୋରି ରହିଲା ନାଭି ତାର
ତାରପରେ ଜମ୍ବୁନଦୀ ଶୁଭ ଅନୁକୂଳ ।
ମସ୍ତକ ଗୋଟି ତାର ଗୟାତୀର୍ଥେ ରହି
ଗଦାଧର ଦେବତା ମସ୍ତକେ ବସିଲଇଁ ।
ତେଣୁ ସେ ଗୟାତୀର୍ଥରେ ହେଲା ସାର
ସେହିଦିନୁ ପିଣ୍ଡତୀର୍ଥ ବୋଲାଏ ଗୟାଧାର ।
ପାଞ୍ଚଯୋଜନ ପର୍ଯ୍ୟନ୍ତ ଅଟେ ତା ମଉଳି
ଉଭାଳେକ ଜିହ୍ୱାତାର ଅମୃତ ଉଚ୍ଛୁଳି ।
ପାଦ ତାର ଗୋଦାବରୀ ନିକଟରେ ରହି
ସେହିଠାରେ ଅମୃତଜଳ ଆଲୋଜ ହୁଅଇ ।
ନାଭିପରେ ବିରଜାମଣ୍ଡଳ ଅଟେ ସାର
ସେ ସ୍ଥାନକୁ ଶୁଭେ ସ୍ୱର୍ଗ ଦୁନ୍ଦୁଭିର ସ୍ୱର ।
ଗଣ୍ଡୁକୀ ନଦୀରେ ଯେ ଦକ୍ଷିଣ ହସ୍ତ ତାର
ବାମହସ୍ତ ପଡ଼ିଅଛି ଗଙ୍ଗା ଯେ ସାଗର ।
ଜଗତଶିଳା ବୋଲିଣ ଦେବତାଏ ଅଛି
ପୁଲକି ନଦୀକି ଯେ ରାମଚନ୍ଦ୍ର ପୁଛି ।
ପୁଲକି ବୋଲନ୍ତି ତୁମ୍ଭେ ଶୁଣ ରାମରାଣ
ଏ ଗୟାର ଆୟତନ ପଞ୍ଚାଶ ଯେ ଯୂଣ ।
ପାଞ୍ଚଯୂଣ ମଉଳି ଯେ ଉପରେ ଗଦାଧର
ବସିଣଛନ୍ତି ଗଦା ଧରିଣ ଯେ କର ।
ଜିହ୍ୱାରେ ଅମୃତ ଯେ ତୁଣ୍ଡରେ ଭକ୍ଷେ ପିଣ୍ଡ
ପିତୃଙ୍କର ଉଚ୍ଛିଷ୍ଟ ଭକ୍ଷେ ହସ୍ତ ଦ୍ୱନ୍ଦ୍ୱ ।
ଏ ଗୟାତୀର୍ଥର ଯେ ପ୍ରମାଣ ଅଛି ପୁଣ
ଦିନେ ପିଣ୍ଡ ନ ପାଇଲେ ଉଠିବ ଦୈତ୍ୟରାଣ
ଶ୍ରୀରାମ ବୋଇଲେ ଯେବେ ଦୈତ୍ୟକୁ ଦେବମାରି
ସେ ଦୈତ୍ୟ କିମ୍ପା ତୋର ରହିଲା କି ପଡ଼ି ।
ଶୁଣିକରି ପୁଲକି ଶ୍ରୀରାମରେ କହି
ଗଦାଧର ଗୟାସୁର ଦାନବକୁ ଦହି ।
ଯେତେବେଳେ ଗଦାରେ ପ୍ରହାର କଲେ ହରି
ପଡ଼ିଲାକ ଦୈତ୍ୟ ଯେ ଧରଣୀକି ମାଡ଼ି ।
କେତେବେଳେ ଅସୁର ଯେ ନିରୋଳେ ରହିଁଲା
ନମାର ମୋତେ ସେ ଯେ ଦେବଙ୍କୁ କହିଲା ।
ମୁହିଁ ତ ଧରଣୀରେ ଶୟନ କଲି ପୁଣ
ମୋହର ମସ୍ତକପରେ ବସହେ ନାରାୟଣ ।

ଏ ତୀର୍ଥରେ ଯେହୁ ଆସି ପିଣ୍ଡଦାନ ଦେବେ
ତାଙ୍କ ପିତୃ ଉଚ୍ଛିଷ୍ଟ ମୁଁ ଭୁଞ୍ଜିବି ସୁଖଭାବେ ।
ଯେଉଁଦିନ ପିଣ୍ଡପାଣି ନଦେବ ଏ ତୀର୍ଥରେ
ନିଶ୍ଚେ ସେଦିନ ଉଠିବି ନମାନିବି ତାରେ ।
ସେହିଦିନ ବର୍ଣ୍ଣ ତୋର ହୋଇବ ନିଧନ
ମୁହିଁ ତୋତେ ବଳିବି କହିଲି ପ୍ରମାଣ ।
ଶୁଣିକରି ଗଦାଧର ସେକଥା ସତ୍ୟକଲେ
ତୁହି ପିଣ୍ଡ ନ ପାଇଲେ ଉଠିବୁ ବୋଇଲେ ।
ସେହିଦିନୁ ପ୍ରତିଦିନ ଗୟାରେ ହୁଏ ପିଣ୍ଡ
ଗୟାସୁର ଦାନବ କରଇ ତାହା ଭୋଗ ।
ପିତୃଶ୍ରାଦ୍ଧ ବାରମାସ ତିନିମାସ ଜାଣ
ଆଶ୍ୱିନମାସେ ପିତୃଶ୍ରାଦ୍ଧ ଗୟାରେ ହୁଏ ପୁଣ ।
ଧନୁମାସେ ଧନୁଗୟା ପିତୃରେ ହୁଏ ପୁଣ
ଚୈତ୍ରମାସେ ମଧୁଗୟା ଯେ ସରବେ ଜାଣ ।
ଶୁଣିକରି ଶ୍ରୀରାମ ଯେ ପୁଲକିକି କହି
ବିରଜା ମଣ୍ଡଳେ ଯେ ଅମୃତ ନାଭି ହୋଇ ।
ସେ ମଣ୍ଡଳ ଗୋଟିକ ଯେ କେତେ ଆୟତନ
ପୁଲକି ବୋଇଲେ ସେ ଯେ ଅଟେ ଦଶଯୂଣ ।
ଶ୍ରୀରାମ ବୋଇଲେ ପାଦେ ଗୋଦାବରୀ ରହି
ସେ ପାଦର ଆୟତନ କେତେ ଯେ ଅଟଇ ।
ପୁଲକି ବୋଇଲେ ସେ ଦୈତ୍ୟର ଦୁଇପାଦ
ଆଠଯୂଣ ଅଟଇ ଶୁଣ ହେ ଦୈତ୍ୟରାଜ ।
ରାମଚନ୍ଦ୍ର ବୋଇଲେ ଗଦାଧର ଏକା ଶୁଣ
ଗୟାକାଶୀ ହୋଇଲେ କି ଆସନ୍ତା ନାରାୟଣ ।
ପୁଲକି ବୋଇଲେ ନାରାୟଣ ରହିବାରୁ
ଈଶ୍ୱର ବିଜେକଲେ ଶୁଣ ତୁ ମହାମେରୁ ।
ଜଗତ ଶିଳା ବୋଲି ସେ ଦେବର ନାମ
ସେ ଶିଳାରୂପେ ଏ ତୀର୍ଥେ ପ୍ରଧାନ ।
ଶ୍ରୀରାମ ବୋଇଲେ ତୁ ଯେ ନଦୀରୂପେ ବହି
ତୋହର କି ପ୍ରଭୁ କିମ୍ପାଇ ନା କହି ।
ପୁଲକି ବୋଇଲେ ମୋ ସ୍ୱାମୀ ଜଗତର ଶିଳା
ତିନିମାସ ମୋ ସଂଗେ କରନ୍ତି ରତି କାଳି ।
ବରଷକେ ଚାରିଦିନ ମୋ ସଂଗେ ରତିକାଳି
ମୋର ମନୋରଥ ପୂର୍ଣ୍ଣ ସେ ପ୍ରଭୁ ହୁଏ ତୋଳି ।
ଶ୍ରୀରାମ ବୋଇଲେ ତୁ ତୋ ଶୁଣ [illegible]
ଉତ୍ତରଦିଗେ କେବଣ ସ୍ଥାନ ଦିଶେ କେତି ।

ପୁଲକି ବୋଇଲେ ସେ ଯେ କୋଶଳ ଅନ୍ତରେ
ଶ୍ରୀରାମ ବୋଇଲେ କେବଣ ତୀର୍ଥ କହ ମୋ ଆଗରେ
ପୁଲକି ବୋଇଲେ ସେ କ୍ଷେତ୍ରର ଅଧିପତି
ସେହିଠାରେ ପିଣ୍ଡଦେଲେ ପିତୃ ତୋଷ ହୋନ୍ତି ।
ଛତୁପିଣ୍ଡ ସେଠାରେ ପିତୃଙ୍କୁ ଦେବ ନେଇ
ଅମୃତ ପାନ ପ୍ରାୟେ ପିତୃଙ୍କୁ ଲାଗଇ ।
ତେବେ ସେ ପିତୃଲୋକ ହୁଅନ୍ତି ତୋଷ ପୁଣ
ସ୍ୱର୍ଗରେ ବସନ୍ତି ଯାଇ ହୋଇ ତୋଷ ମନ ।
ସେ ସ୍ଥାନକୁ ଭିତରେ ତିନିକୋଶ ପୁଣ
ବେଦବର ରହିଲେ ସେଥି ଶୁଣ ରାମରାଣ ।
ବିଷ୍ଣୁ ନାଭିରୁ ମୁଁ ଆଗେ ହେଲି ଜାତ
ମୋ ରୂପକୁ ମୋତେ ଦେଲେ ଜାଣିଣ ଅନନ୍ତ ।
ତେବେ ସେ ମେରୁର ମୁଁ ହୋଇଲି ଦୁଲାଳୀ
ସଦାଶିବ ସଙ୍ଗେ ମୋର ଅଧେ ରସକେଳି ।
ଏ ତୀର୍ଥରେ ମୁଁ ଯେ କଲଇ ଭ୍ରମଣ
ବିଧାତା ଜାତହୋଇ ରହିଲେ ଏଥେ ଜାଣ ।
ସେ ପୁରୁଷ ନାମ ଗୋଟି ଅଟଇ ଦଇବ
ଯେଉଁ ବିଧାତା ଭିଆଣ ଜଗତ କଲା ସର୍ବ ।
ଯେବଣ ଫଳରୁ ପୁଣି ବିଧାତା ଜାତ ହେଲା
ସେ ଶବ ଗୋଟି ହାଦେ ପଡ଼ିଅଛି ପରା ।
ବ୍ରହ୍ମାଜାତ ବୋଲିଣ ନାମଟି ତାହାର
ତହିଁ ପିଣ୍ଡଦେଲେ ପିତୃଯାଏ ସ୍ୱର୍ଗପୁର ।
ଏ ନଦୀର ଜଳପରେ ଅମୃତ ପିତୃ ଲୋକେ
ଦେବଗଣ ଏଥିରେ ବିଜୟେ ସାକ୍ଷାତେ ।
ଉଭୟ କୂଳର ଦେବେ ମହିମା ଅପ୍ରମିତେ
ତେତିଶକୋଟି ଦେବେ ଗଦାଧର ପାଦଗତେ ।
ବିଷ୍ଣୁର ପାଦୁକା ବୋଲି ସେ ସ୍ଥାନକୁ କହି
ସେ ପାଦୁକା ଉପରେ ଦେବେ ପିଣ୍ଡନେଇ ।
ଏକଉତ୍ତର ଶତେ ପୁରୁଷ ସ୍ୱର୍ଗେଯାଇ
ଯାତନା ପଥେ ଥିଲେ ଉଦ୍ଧାର ସେ ଯେ ପାଇ
ସମାଯୁକ୍ତ ସମ୍ମାନରେ ଛତୁପିଣ୍ଡ ଦେଲେ
ପିତୃ ବ୍ରହ୍ମଲୋକରେ ଯାଇଣ ବାସେ ଭଲେ ।
ଗଦାଧର ଦକ୍ଷିଣ ପାଦ ଯେ ଅଟଇ
ଅଗାଦ ପାରୁଶେ କଳ୍ପ ବୃକ୍ଷ ଯେ ଅଛଇ ।
ଏଥିରେ ପିଣ୍ଡଦାନ ଦେଲେ ସୀତାପତିଟି
ପିତୃଲୋକ ତୋହର ବସିବେ ସ୍ୱର୍ଗେଟି ।

ଶ୍ରୀରାମ ବୋଇଲେ ଶୁଣ ମହୀସ୍ଥଳୀ
ଅଳପଦିନ ହେଲା ପିତା ମୋର ମରି ।
ମାତାମୋର ଗର୍ଭଧାରୀ ଅଛନ୍ତି ଭଲେପୁଣ
କରିବିଟିକି ଶ୍ରାଦ୍ଧ କହହେ ବୁଝିଣ ।
ପୁଲକି ବୋଇଲେ ତୁମ୍ଭେ ଶୁଣ ରଘୁଧାରୀ
ଖୋଜିଲେ ଲୋଡ଼ିଲେ ଯେ ନପାରେ ଶ୍ରାଦ୍ଧକରି
ଦିଅ ପିଣ୍ଡଦାନ ପିତୃ ଲଭନ୍ତୁ ମୋକ୍ଷପୁଣ
ମାତୃଗଣଙ୍କୁ ପିଣ୍ଡ ଜୀବନ୍ତେ ଦିଅ ରଘୁରାଣ ।
ଶୁଣିକରି ରାମ ଯେ ସନ୍ତୋଷ ହୋଇଲେ
ଆମ୍ଭେ ପିଣ୍ଡଦାନ ଦେବା ମନେ ବିଚରିଲେ ।
ଜାନକୀ ଲକ୍ଷ୍ମଣ ଯେ ରାମ ତିନିଜଣ
ପୁଲକି ପଚରିଲେ କଥା ଏବେ ଶୁଣ ।
ଆମ୍ଭର ଘରଣୀ ଯେ ଜାନକୀ ଅଛି ସଙ୍ଗେ
ରଜସ୍ୱଳା ହୋଇଛି ସେ ନାରୀ ବିଭଙ୍ଗେ ।
ସେ କଥାରେ ଦୋଷ ତ ଆଉ ନାହିଁ କିଛି
ପୁଲକ ବୋଇଲେ କେତେଦିନ ହେଲାଣିଟି ।
ରାମ ବୋଇଲେ ଆଜକୁ ତିନି ଯେ ଦିବସ
କାଲି ଶୁଦ୍ଧ ସ୍ନାନ ହେବ ନାରୀ ଯେ ହରଷ ।
ପୁଲକି ବୋଇଲେ ଆଜ ନକର ହେ ପିଣ୍ଡ
କାଲି ଶୁଦ୍ଧ ହେବ ଜାନକୀ ଅଙ୍ଗ ଖଣ୍ଡ ।
ଶୁଣିକରି ଶ୍ରୀରାମ ଲକ୍ଷ୍ମଣ ବେନିଭାଇ
ନଦୀରେ ସ୍ନାନସାରି କୂଳରେ ଉଭାହୋଇ ।
ପାକସ୍ୱରଶ ଯେ ହୋଇଛନ୍ତି ସତୀ
ନଦୀକି ନ ଛୁଇଁଲେ ଯେ ଜନକ ଦୁହିତୀ ।
ନଦୀ ଦକ୍ଷିଣ କୂଳେ ବସେ ବଇଦେହୀ
ସେ କଥା ମନରେ ଯେ ରାମ ବିଚରଇ ।
ପୁଲକି ବୋଇଲେ ଯେ ରାମଙ୍କୁ ଚାହିଁଣ
ଜାନକୀଙ୍କୁ ସମ୍ଭାଳି ରଖ ତୁମ୍ଭେ ପୁଣ ।
ସେହି ନଦୀ କୂଳରେ ମଢ଼ିଆ ଏକ କରି
ସେହିଦିନ ସେହିଠାରେ ରହିଲେ ରଘୁଧାରୀ ।
ଆରଦିନ ପ୍ରଭାତୁ ଉଠି ଜାନକୀ ପୁଣ
ମାଖନ କୁଙ୍କୁମ ଯେ ଲେପିଲେ ଅଙ୍ଗେଜାଣ ।
ଦେଖିଣ ଲକ୍ଷ୍ମଣ ଯେ ଶୁଷ୍କକାଷ୍ଠ ଆଣି
ହୁତାଶନ ଲଗାଇଲେ ସଉମିତ୍ରୀ ପୁଣି ।
ଯାଇଣ ଅନଳରେ ପଶିଲେ ଜାନକୀ
ଅଗ୍ନି ଭିତରେ ପଶି ସ୍ନାନ କଲେ ସତୀ ।

ଗତୁ ଶତେଗୁଣରେ ଦିଶିଲେ ସୁନ୍ଦର
ଦେଖିକରି ପୁଲକି ହୋଇଲେ ଚମତ୍କାର ।
ବିଚାରିଲେ କିମ୍ଭୁତ ଅଟେ ଏହା ନାରୀ
ଏହି ରାମ ଠାକୁର ଅଟନ୍ତି ସବୁରି ।
ପୁଲକି ବୋଇଲେ ଯେ ଶୁଣ ଦାଶରଥି
କାଲି ପିଣ୍ଡ ଦେବାର ଅଟଇ ତୁମ୍ଭରିଟି ।
ଆଜତୁମ୍ଭେ ଗୟାତୀର୍ଥେ କର ଯା ଭ୍ରମଣ
ଗଦାଧରଙ୍କୁ ତୁମ୍ଭେ କର ଦରଶନ ।
ଶୁଣିକରି ଶ୍ରୀରାମ ଲକ୍ଷ୍ମଣ ଦୁଇଭାଇ
ଜାନକୀ ସଙ୍ଗତରେ ପୁଲକି ଚଳିଯାଇ ।
ନିକୁମ୍ଭିଲା ବଟବୃକ୍ଷ ଦେଖି ରାମ ତୋଷ
ବୋଇଲେ ଏ ତୀର୍ଥଗୋଟି ଅଟଇ ପବିତ୍ର ।
ଏତେ କହି ରାମଚନ୍ଦ୍ର ଫେରିଣ ଅଇଲେ
ତିନିଜଣ ମଢ଼ିଆରେ ପ୍ରବେଶ ଯାଇଁ ହେଲେ ।
ତିନିଜଣ ପୁଲକି ରଜନୀ ବଞ୍ଚିଲେ
ସେଦିନ ରଜନୀ ତହିଁରେ ପ୍ରୁହାଇଲେ ।
ପ୍ରଭାତୁ ପୁଲକିକି ରାମଚନ୍ଦ୍ର କହି
ଜାନକୀର ସଙ୍ଗରେ ରହିଥିବୁ ତୁହି ।
ଛାଡ଼ିଗଲେ ଦୁଃଖ ଯେ ପାଇବ ମହାଆଳ
କ୍ରୋଧହେଲେ ଦେବୀ ତୁ ଯେ ନୋହିବୁ ସମ୍ଭାଳି
ଶୁଣିକରି ପୁଲକି ପରମ ତୋଷ ହେଲା
ଜଗିବି ତୁମ୍ଭ ନାରୀ ବୋଲିଣ ବୋଇଲା ।
ଶୁଣି ଶ୍ରୀରାମ ଲକ୍ଷ୍ମଣ ସେଠାରେ ସ୍ନାନକଲେ
ଗୟାଳୀ ବ୍ରାହ୍ମଣ ଆସି ତାଙ୍କୁ ଘେନିଗଲେ ।
ବିଷ୍ଣୁ ପାଦୁକାଠାରେ ଶ୍ରୀରାମହେଲେ ପରବେଶ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଦିବ୍ୟରସ ।
ରାମଚନ୍ଦ୍ର ଯିବାରୁ ଜାନକୀ ସ୍ନାନ କଲେ
ପୁଲକିକି ବଇଦେହୀ ହରଷେ ପଚାରିଲେ ।
କେମନ୍ତେ ଶ୍ରୀରାମ ଯେ ପିତୃଙ୍କୁ ଦେବେ ପିଣ୍ଡ
ପିଣ୍ଡର ସମ୍ଭାର ପୁଲକି କହେ ରଙ୍ଗ ।
ବୋଇଲା ଯେବେ ରାମ ଦେବେ ଆଜ ପିଣ୍ଡ
ଦଶରଥ ରାଜା ଆଜ ଯିବେ ସ୍ୱର୍ଗଖଣ୍ଡ ।
ଏସନେକ କରିଣ କରିବେ ପ୍ରେତ କାର୍ଯ୍ୟ
ଏକଥା କହି ମନରେ ହେଲେ ଲାଜ ଲାଜ ।
ପୁଲକି ବୋଇଲେ ଶୁଣ ଗୋ ସଖୀ ତୁମ୍ଭେ
ପିଣ୍ଡକି ରୂପେ ଦେବେ ଗୟାରେ ରାଘବେ ।

କହିଦିଅ ପୁଲକି ଗୋ କରଇ ଖେଳରଙ୍ଗ
ପିଣ୍ଡର ବିଧାନ ତୁମ୍ଭେ ଜାଣ ସଦଭାବ ।
ପୁଲକି ବୋଇଲେ ତୁମ୍ଭେ ଶୁଣ ଗୋ ରାମରାଣୀ
ଯେମନ୍ତେ ପ୍ରକାରେ ପିଣ୍ଡ ଦିଅନ୍ତି ସର୍ବେପୁଣି ।
ପ୍ରଥମେ ଆଚାର୍ଯ୍ୟ ବରଣ କଲେ ଜାଣ
ପିଣ୍ଡର କର୍ମ ସେ ଯେ କହ ବତାଇଣ ।
ଜାନକୀ ବୋଇଲେ ସ୍ୱାହା କାହାକୁ ବରଣ
ପୁଲକି ବୋଇଲେ ବର ଗୟାଳୀ ବ୍ରାହ୍ମଣ ।
ଦେଖିଲେ ବ୍ରାହ୍ମଣ ଯେ ସଙ୍ଗରେ ବରିଲା
ତେଣୁକରି ସେ ବିପ୍ରଙ୍କୁ ଆଚାର୍ଯ୍ୟ କରିଲା ।
ଜାନକୀ ବୋଇଲେ ଯେବେ ସ୍ୱାମୀ ମୋର ବର
ମୁହିଁ ତୋତେ ଆଚାର୍ଯ୍ୟ କରିଲି ସୁନ୍ଦରୀ ।
ଶୁଣିକରି ପୁଲକି ଆନନ୍ଦ ହୋଇଲା
ବନରୁ ଯାଇ କୁଶ ତିଳକ ଆଣି ଦେଲା ।
ଗୁଆ ଘେନିକରି ଅଇଲେ ସେ ବେଗ
ଜାନକୀ ହସ୍ତରେ ଦେଲା ନେଇଣହୋଇ ଭାବ ।
ସଙ୍କଳ୍ପ କରାଇଣ କାମନା କରାଇଲା ।
ଅନାମିକା ଗୋତ୍ର ଯେ ସେଠାରେ ଉଚ୍ଚାରିଲା
ଶତଷଠି ପୁରୁଷଙ୍କୁ କଲା କଲା ଆମନ୍ତ୍ରଣ
ସଗର ରାଜାଙ୍କ ଠାରୁ ଦଶରଥ ପୁଣ ।
ଆମନ୍ତ୍ରଣ ସାରି ସେହୁ ବିଧିମତ ସାରି
ବେନିକର ଯୋଡ଼ିଣ ଜାନକୀ ସ୍ତୁତି କରି ।
ପିତୃଲୋକ ତୁମ୍ଭେ ମୋର ଦୋଷ କ୍ଷମାକର
ଏ ବାଲି ପିଣ୍ଡ ମୋର ଘେନ ହେ ସକଳ ।
ଅମୃତ ପାନକରି ସନ୍ତୋଷ ମୋତେ ହେବ
ତୁମ୍ଭର ଘରିପୁତ୍ରଙ୍କୁ ସୁଦୟା କରିଥିବ ।
ଶାଶୁମାନେ ମୋହର ଯିବେ ସ୍ୱର୍ଗପୁର
ଅଚିନ୍ତା ସ୍ୱର୍ଗରେ ନେଇ ରଖିବେ ନାଶକର ।
ଏତେ କହି ଜାନକୀ ହରଷ ହୋଇଲେ
ଦେଖିଣ ପୁଲକି ଯେ ଶ୍ରାଦ୍ଧ କର୍ମ କଲେ ।
ପୁଲକି ବୋଇଲେ ତୁମ୍ଭେ ଶୁଣ ରାମବାଣୀ
ଡାହାଣ ଆଣ୍ଠୁ ତୁମ୍ଭେ ପକାଅ ସ୍ଥଳେ ପୁଣି ।
ପୁଣିକରି ଜାନକୀ ଡାହାଣ ଆଣ୍ଠୁ ମାଡ଼ି
ପାତ୍ର ରାତ୍ରୀରେ ସେ ଯେ କୁଶ ତିଳ କରି ।
ଗୁଆକୁ ସେଥିରେ ଯେ ରଖେ ରାମରାଣୀ
ନଳ ଭରି ବାମ ଚରଣେ ରଖେ ପୁଣି ।

ପୁଲକି ବୋଇଲେ ତୀର୍ଥ ଲୋକଙ୍କୁ ସୁମର
ପ୍ରଥମେ ଦଶରଥଙ୍କୁ ପିଣ୍ଡ ଦେଲେ କର ।
ବାଲିପିଣ୍ଡ ଗୋଟିଏ ଧରି ସେ ସୁନ୍ଦରୀ
ତୋହରି ପିତା ମାତାଙ୍କୁ ଆଗଦିଅ ବରି ।
ଶୁଣିଣ ଜାନକୀ ପିତାଙ୍କୁ ସୁମରିଲେ
ବାଲିପିଣ୍ଡ ନେଇଣ ତାହାଙ୍କୁ ସମର୍ପିଲେ ।
ଦ୍ୱିତୀୟେ ଦଶରଥଙ୍କୁ ଦେଲେ ପିଣ୍ଡ ପୁଣ
ଆସିଣ ଦଶରଥ ହସ୍ତରେ ନେଲେ ଜାଣ ।
ସତଷଠି ପୁରୁଷଙ୍କୁ ପିଣ୍ଡ ଦେଲେ ସତୀ
ସତଷଠି ପିତୃ ଲୋକେ ହସ୍ତରେ ଘେନନ୍ତି ।
ସାଗର ଭାଗୀରଥି ହରି ଚନ୍ଦନ ମାନଧାତା
ରଘୁରାଜ ଅଜଗଜା ନୃପତି ଶିବଦାତା ।
ଏମନ୍ତେ ସତଷଠି ପିତୃନେଲେ ପିଣ୍ଡ
ଭକ୍ଷନ୍ତେ ଅମୃତ ସେ ହୋଇଲା ସୁଧାଖଣ୍ଡ ।
ଭକ୍ଷଣେ ପିତୃଲୋକ ହରଷ ହୋଇଲେ
ଜାନକୀଙ୍କି ଚାହିଁଣ ଯେ ବଚନ ବୋଇଲେ ।
କୁଳର ବଧୂ ତୁହି ଅଟୁ ଗୋ ଆମ୍ଭର
ତୋ ହସ୍ତରୁ ପିଣ୍ଡ ଆମ୍ଭେ କଲୁଁ ଯେ ଆହାର
ସକଳ ପିତୃ ଆମ୍ଭେ ବସିଲୁଁ ସ୍ୱର୍ଗପୁର
ଆଜଠାରୁ ଅମୃତ ପାନ ଯେ ଆମ୍ଭର ।
ଏତେ ବୋଲି ପିତୃ ଯେ ପୁଲକିକି କହି
ତୋହର ଦକ୍ଷିଣା ତୁ ନିଅ ଗୋ ମହାମାୟୀ ।
ଏତେକହି ସେଠାରେ ରତ୍ନ ବୃଷ୍ଟି କଲେ
ଦେଖିକରି ପୁଲକି ଯେ ବଚନ କହିଲେ ।
ବୋଇଲେ ଏ ରତ୍ନରେ ମୋର କାର୍ଯ୍ୟନାହିଁ
ଏ ରତ୍ନମାନ ସର୍ବେ ଜୀବରୂପ ହୋଇ
ମୋହର ଗର୍ଭରେ ଯେ ସମସ୍ତେ ରହିଥିବେ
ଯେତେବେଳେ ଲୋକେ ମୋର ହୃଦୟ ବିଦାରିବେ
ତେତେବେଳେ ଜଳସଙ୍ଗେ ହୋଇବି ବାହାର
ଦେଖିଣ ସର୍ବଜନେ ହୋଇବେ ଚମକ୍ରାର ।
ଶୁଣିଣ ସୂର୍ଯ୍ୟବଂଶୀ ହେଉ ବୋଲି କହି
ସୀତାଙ୍କୁ ସନ୍ତୋଷ ହୋଇ ସ୍ୱର୍ଗକୁ ଚଳିଯାଇ ।
ଏଥୁ ଅନନ୍ତରେ ଯେ ଶୁଣ ଶାକମ୍ଭରୀ
ହରଷେ ଜାନକୀଙ୍କି ଜାନକି ପଚାରି ।
ପିତୃଲୋକେ ଗଲେତ କରିବା ଆଉ କିସ .
ପୁଲକି ବୋଇଲେ ଶାଶୁଙ୍କୁ ଦିଅ ପିଣ୍ଡ ତୁତ ।

ଜାନକୀ ବୋଇଲେ ମୋର ଶାଶୁତ ନମରି
କେଉଁ ପ୍ରାୟେ ପିଣ୍ଡଦେବି କହତୁ ବିଚାରି ।
ପୁଲକି ବୋଇଲେ ଯେ ସେଥିରେ ଦୋଷ ନାହିଁ
ଜୀବନ୍ତ ଜନମାନଙ୍କୁ ଏଥିରେ ପିଣ୍ଡଦେଇ ।
ଏ କଥା ଶୁଣି ଜାନକୀ ଶାଶୁଙ୍କୁ ପିଣ୍ଡଦେଲେ
ସତଷଠି ପୁରୁଷ ଶାଶୁଙ୍କୁ ବରିଲେ ।
ସମସ୍ତେ ପିଣ୍ଡପାଇ ସନ୍ତୋଷ ଭାବହେଲେ
ଅମୃତ ସୁଧାରସ ସମସ୍ତେ ଭୁଞ୍ଜିଲେ ।
ସୁକଲ୍ୟାଣ କରିଣ ଶାଶୁମାନେ ଗଲେ
ସ୍ୱାମୀମାନଙ୍କ ସଙ୍ଗରେ ସୁଖରେ ରହିଲେ ।
ଏଥୁ ଅନନ୍ତରେ ଯେ ଶୁଣ ଭଗବତୀ
ପୁଲକିକି ଜାନକୀ ବଚନ କହନ୍ତି ।
ପିତୃକୁଳ ମାତୃକୁଳ ସରିଲାକି ପୁଣ
ଆଉ କେଉଁ କଥା ଅଛି କହମୋ ଆଗେଣ ।
ପୁଲକି ବୋଇଲେ ଶ୍ରୀରାମ ମାତୃକୁଳ
ଦିଅ ପିଣ୍ଡଦାନ ତୁମ୍ଭେ ଯାଆନ୍ତୁ ସ୍ୱର୍ଗପୁର ।
ଏକଥା ଶୁଣି ଜାନକୀ ପିଣ୍ଡଦାନ ଦେଲେ
ମାତୃକୁଳମାନଙ୍କୁ ଅମୃତ ଭୁଞ୍ଜାଇଲେ ।
ସୁକଲ୍ୟାଣ କରିଣ ଯେ ମାତୃକୁଳ ଗଲେ
ଯୁଗେ ଯୁଗେ ତୋରକୀର୍ତ୍ତି ରହୁ ଯେ ବୋଇଲେ ।
ଅଚିନ୍ତା ସ୍ୱର୍ଗପୁରେ ବସିଲେ ଯାଇଁ ପୁଣ
ସୀତୟାଙ୍କୁ ପିତୃଲୋକେ ସନ୍ତୋଷ ହେଲେ ପୁଣ ।
ପୁଲକି ବୋଇଲେ ଯେ ଉଠ ରାମରାଣୀ
ତିନିକୁଳ ପିତୃଲୋକ ସନ୍ତୋଷ ହେଲେପୁଣି ।
ଶୁଣିକରି ଜାନକୀ ସେଠାରୁ ଉଠିଗଲେ
ସେ ନଦୀରେ ସ୍ନାନକରି ଉଜ୍ଜ୍ୱଳ ହୋଇଲେ ।
ଅମଳାଣ ବସନ ପିନ୍ଧିଲେ ଦେବୀ ପୁଣ
ପାଲଟା ବସନକୁ ପୁଲକି ପଖାଳେ ବହନ ।
ଜାନକୀ ବୋଇଲେ ତୁମ୍ଭେ କଥାଏ କରିବ
ଶ୍ରୀରାମଙ୍କ ଆଗରେ ଏକଥା ନ କହିବ ।
ଶୁଣିଣ ପୁଲକି ଯେ ସନମତ କଲା
ଜାନକୀଙ୍କି ନେଇଣ ସୁବେଶ କରାଇଲା ।
ଫୁଲଚନ୍ଦନ, ଅଗରୁ, କସ୍ତୁରୀ ଅଙ୍ଗେ ବୋଳି
ନାନାବର୍ଣ୍ଣେ ବେଶକଲେ ମେରୁର କୁମାରୀ ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ଗଉରୀ
ଶ୍ରୀ ରାମଙ୍କୁ ଘେନିକରି ବ୍ରାହ୍ମଣ ଗଲେଚଳି ।

ପିଣ୍ଡ ଦେବା ସ୍ଥାନରେ ହେଲେ ପରବେଶ
କୁଶତିଳ ଗୁଆ ଘେନି ବ୍ରାହ୍ମଣେ ହରଷ ।
ପିଣ୍ଡଦେବା ପାଇଁକି ଛତୁଆ ଯେ ନେଲେ
ବିଷ୍ଣୁଙ୍କ ପାଦୁକା ସ୍ଥାନେ ପ୍ରବେଶ ହୋଇଲେ ।
ବିପ୍ରବର ବୋଇଲେ ଏ ସ୍ଥାନ ଅଟେ ସାର
ଏହି ସ୍ଥାନେ ପିଣ୍ଡ ଦିଅ ହରଷ ମନର ।
ବାମଆଣ୍ଠୁ ମାଡ଼ି ତହିଁ ବସ ରାମରାଣ
ଲକ୍ଷ୍ମଣ ତାଙ୍କ ପାଶେ ବସିଲେ ଯେ ପୁଣ ।
ଗୋତ୍ର ଉଚ୍ଚାରଣ କରି ସକଳ ବିଧିକଲେ
ସତଷଠି ପୁରୁଷ ପିତୃଙ୍କୁ ଆମନ୍ତିଲେ ।
ମାତୃକୁଳ ବୟାଳିଶ ପୁରୁଷ ଆମନ୍ତି
ଶ୍ରାଦ୍ଧକର୍ମ ବିଧି ଯେ ପଢ଼ିଲେ ଦ୍ୱିଜବହି ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ପିଣ୍ଡ ଦେବାକୁ ଅନୁକୂଳ କଲେ ଦାଶରଥି ।
ଦେଖିକରି ସୁରଗଣେ ସ୍ୱର୍ଗରେ ବିଚାରି
ଆତ ଜାତ କଥା ଛନ ହେଲା ଗୟା ପୁରି ।
ପିଣ୍ଡଦାନ କରିଛନ୍ତି ଜାନକୀ ଯେ ତହିଁ
ସମସ୍ତ କଥା ବିଚାରି ହୁନ୍ତି ଚାହାଁଚୁହିଁ ।
ଜାନକୀ ପିଣ୍ଡ ଦବାର ନ ଜାଣନ୍ତି ରାମ
ଚାଲ ଏବେ ଆମ୍ଭେମାନେ କହିବା ତାଙ୍କୁ ପୁଣ ।
ଏହିକାଳେ ସର୍ବଦେବ ସକଳେ ମେଳ ହୋଇ
ଯେ ଯାହା ବାହନ ଚଢ଼ି ଅଧା ସ୍ୱର୍ଗେ ରହି ।
ଦେବତା ଡାକଦେଲେ ଶୁଣ ହେ ଦାଶରଥି
ଶୁଣ ତୁମ୍ଭେ ଚାପଧାରୀ ପିଣ୍ଡର ଏ ରୀତି ।
ତୁମ୍ଭେ ପିତୃଙ୍କୁ ପିଣ୍ଡ ଦେଉଛ କାହିଁ ପାଇଁ
ଆଗେ ପିତୃ ପିଣ୍ଡପାଇ ସନ୍ତୋଷ ମନେ ଯାଇ
ତୁମ୍ଭନାରୀ ସୀତୟା ଯେ ବୋଲିପିଣ୍ଡ ଦେଲା
ସତଷଠି ପୁରୁଷଙ୍କୁ ଅମୃତ ଭୁଞ୍ଜାଇଲା ।
ମାତୃଗଣ ସତଷଠି ପୁରୁଷ ପିଣ୍ଡ ପାଇ
ମଉଳା ବୟାଳିଶ ପୁରୁଷ ତୋଷହୋଇ ।
ଅଂଶ ନିଅଂଶ ଯେ ପାଇଲେ ସକଳ
ଜଳପିଣ୍ଡ ପାଇଲେ ମାତା ପିତା ତୋର ।
ବାଲିପିଣ୍ଡ ସମସ୍ତଙ୍କୁ ଦେଲେ ତୋ ଘରଣୀ
ସମସ୍ତେ ଅମୃତ ପାନ କଲେ ପିଣ୍ଡ ପୁଣି ।
ତିନିକୁଳ ପିତୃଙ୍କୁ ଉଦ୍ଧାରି ତୋର ପତ୍ନୀ
ସମସ୍ତେ ଅଚିନ୍ତା ସ୍ୱର୍ଗେ ବସିଲେ ଯାଇଁ ପୁଣି ।
ତୋହର ସତୀକି ପ୍ରସନ୍ନ ଯେ ହେଲେ
ସୁକଲ୍ୟାଣ କରିଣ ସେଠାରୁ ଚଳିଗଲେ ।
ପିତୃ ଲୋକ ଯିବାରୁ ତୋର ସତୀପୁଣ
ପିଣ୍ଡଦେବା କଥାମାନ ଗୁପତ କଲେ ଜାଣ ।
ଚିହ୍ନ ଲିଭାଇଣ ସେଠାରୁ ଚଳିଗଲେ
ନଦୀରେ ସ୍ନାନ କରି ନିଶ୍ଚଳ ହୋଇଲେ ।
ପୁଲକ ଆଶ୍ଚର୍ଯ୍ୟ ହୋଇଣ କର୍ମକଲା
ତେଣୁ ସେ ତୋର ନାରୀ ପିତୃରେ ପିଣ୍ଡଦେଲା ।
ପିତୃଙ୍କୁ ସୁରରାଜା ପାଦପୂଜା କଲା
ଅଚିନ୍ତା ସ୍ୱର୍ଗପୁରେ ନିଶ୍ଚିନ୍ତେ ରଖାଇଲା ।
ସୀତା ମହାସତୀ ଯେ ସର୍ବିଙ୍କି ପିଣ୍ଡଦେଲା
ତିନିକୁଳ ଉଦ୍ଧାରି ସ୍ୱର୍ଗରେ ବସାଇଲା ।
ସଗର ରାଜାଠାରୁ ଦଶରଥ ଯାଏ
କୃବିନ୍ଦ ମାତାଠାରୁ କଉଶଲ୍ୟା ଯାଏ ।
କୈଶିକ ରାଜାଠାରୁ ଦମୟନ୍ତୀ ରାଜାଜାଣ ।
ଜନକ ଋଷି ଘରଣୀ ଏ ଦୁଇଜଣ ପୁଣ ।
ସମସ୍ତଙ୍କୁ ଅମୃତ ଭୋଜନ କରାଇଲେ
କ୍ଷୁଧା ତୃଷା ତାଙ୍କର ନିବାରଣ କଲେ ।
ଏଥୁ ଅନନ୍ତରେ ଯେ ଗୋ ଭଗବତୀ
ଶ୍ରୀରାମଚନ୍ଦ୍ର ଯେ ମନରେ ବିଚାରନ୍ତି ।
ବୋଲନ୍ତି ରାମରାଣ ଶୁଣ ଦେବଗଣ
ତୁମ୍ଭର କଥା ମୋତେ ହେଉଛି ଅଭୂଷଣ ।
ଯେବେ ପିତୃଲୋକେ ସନ୍ତୋଷ ହୋଇଲେ
ମୋତେ ସେଥିରେ କିମ୍ପା ସନ୍ଦେଶ ନଦେଲେ ।
ଶୁଣିକରି ଦେବଗଣ ମଉନ ହୋଇଲେ
ଏହିକଥା ସତ ମନରେ ବିଚାରିଲେ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଦୁଇଭାଇ ସେଠାରେ ବିଚାର କରନ୍ତି ।
ଗୟାର ବ୍ରାହ୍ମଣଙ୍କୁ ରାମଚନ୍ଦ୍ର କହି
ଆମ୍ଭେ ପିଣ୍ଡଦେବାର ତ ନୋହିଲା ଗୋସାଇଁ
ଶୁଣିକରି ଦ୍ୱିଜବର ବଚନ ବୋଇଲେ
ଦେବେ କହିଲେ ତୋର ପିତୃ ନ କହିଲେ ।
ଦେବତାଏ ଛଳ ଯେ ଜାଣନ୍ତି ରାମରାଣ
କୂଟରେ ସବୁକଥା କରନ୍ତି ବିଘ୍ନପୁଣ ।
ତେବେ ତୋର ପିତୃ ଲୋକେ ହୋଇଲେ ତୋଷ
ତେବେ ତୋର ପିତୃଲୋକେ କହନ୍ତେ ଅବଶ୍ୟ

ଶୁଣିଣ ଦେବଗଣ ମନରେ ବିଚାରିଲେ
ଦଶରଥ ସତଷଠି ପୁରୁଷ ଅଣାଇଲେ ।
ବୋଇଲେ ପୁତ୍ରଙ୍କୁ ତୋର କହଯା ବୁଝାଇ
ଆମ୍ଭେ କହିବା କଥା ଶ୍ରୀରାମ ମନ ନ ଜାଣଇ
ଶୁଣିଣ ପିଣ୍ଡସ୍ଥାନେ ଦଶରଥ ଗଲେ
ସତଷଠି ପୁରୁଷଙ୍କୁ ସଙ୍ଗରେ ନେଇ ଭଲେ ।
ରାମ ଲକ୍ଷ୍ମଣଙ୍କୁ ସେ ବୁଝାଇ କହିଲେ
ଉଦ୍ଧାର ହୋଇ ସେଠାରୁ ସମସ୍ତେ ସ୍ୱର୍ଗଗଲେ ।
ତୋହର ଅର୍ଦ୍ଧଗୋଟି ଅଟନ୍ତି ଜାନକୀ
ତୋହଠାରେ ତାହାଠାରେ ବାରଣ ନୋହେକିଛି ।
ଗୟାର ବ୍ରାହ୍ମଣଙ୍କୁ ଯେ କହିଲେ ପିତୃଙ୍କୁ
ଏ ଧୂଇଜଣ ସିନା ଏକତ୍ୱ ତୁମ୍ଭଙ୍କୁ ।
ସାନ ପୁତ୍ର ନୁହଇ ତୁମ୍ଭର ଏକ ଅଙ୍ଗ
ସେହୁ ପୁତ୍ର ମାତୃକୁଳ ଅଟଇ ବିଭାଗ ।
ଏକ ମାତା ହେଲେ ସିନା ସୁସଙ୍ଗରେ ଯାନ୍ତା
ବେନି ମାତାଠାରୁ ଜାତ ହେଲେ ବେନି ପୁତା ।
ସେ ଯେବେ ଗୟା ତୀର୍ଥରୁ ନିଶ୍ଚେଯିବେ ଫେରି
କାଳ କାଳକୁ କଥା ରହିବି ଚିର କରି ।
ଏତମାତାଠାରୁ ଯେବେ ସାନ ପୁତ୍ର ଥିବେ
ଏତମାତାଠାରୁ ଯେ ଜନମ ଲଭିବେ ।
ସାତଭାଇରେ ଜ୍ୟେଷ୍ଠପୁତ୍ର ଯେ ହୋନ୍ତି ଶ୍ରେଷ୍ଠ
ଜ୍ୟେଷ୍ଠ ପୁତ୍ର ଜ୍ୟେଷ୍ଠ ବୋହୂ ପିଣ୍ଡରେ ସନ୍ତୁଷ୍ଟ ।
ବଳରାମ ଦାସ ବୋଲେ ଶ୍ରୀହରି ଚରଣେଶରଣ
ନୀଳଗିରି ଜଗନ୍ନାଥ ଉଦ୍ଧାର କର ପୁଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉରୀ
ଦଶରଥ ରାଜା ଆଗେ ଗୟାର ବିପ୍ର ଭାଳି ।
ଶୁଣିକରି ପିତୃଲୋକେ ବିପ୍ରରେ ବୋଧ ହେଲେ
ସାବତ ପୁତ୍ର ଯେବେ ପିଣ୍ଡରେ ଇଚ୍ଛାକଲେ ।
ସେହିକଥା ଅଟଇ ନିଅତ ପ୍ରମାଣ
ତାହାର ମାତୃକୁଳ ହେଉଅଛି ଶୂନ୍ୟ ।
ଯାହାର ଜନନୀ କି ତା ପୁତ୍ର ଦେବ ପିଣ୍ଡ
ନୋହିଲେ ସ୍ୱର୍ଗଦ୍ୱାରେ ପାଇବ ସେ ଦଣ୍ଡ ।
ଦଶରଥ ବୋଇଲେ ଲକ୍ଷ୍ମଣ ପିଣ୍ଡ ଦେଉ
ସୀତା ରାମ ପିଣ୍ଡରେ ଉଦ୍ଧାର ହେଲୁ ବାବୁ ।
ଶୁଣିଣ ଛତୁପିଣ୍ଡ ଲକ୍ଷ୍ମଣ ସମର୍ପିଲା
ପିତୃଲୋକେ ହସ୍ତ ପାତି ନେଲେ ତହିଁ ପରା ।

ମାତା ଗଣଙ୍କୁ ପିଣ୍ଡ ଦେଲେ ସେ ବହନ
ମଉଳାମାତାଙ୍କୁ ପିଣ୍ଡଦେଲେ ତତକ୍ଷଣ ।
ପିଣ୍ଡଦେଇ ପିତୃଙ୍କୁ ନମସ୍କାର କଲେ
ମାତାଗଣଙ୍କ ଚରଣେ ଓଳଗି ହୋଇଲେ ।
ମଉଳା ଅଜାଙ୍କୁ ସେ ମାନ୍ୟକଲେ ପୁଣ
ସମସ୍ତେ ସୁକଲ୍ୟାଣ କଲେକ ତହିଁ ଜାଣ ।
ଗୟାର ବ୍ରାହ୍ମଣ ଯେ ଶ୍ରୀରାମଙ୍କୁ କହି
ଶ୍ରାଦ୍ଧର ଦକ୍ଷିଣା ଯେ ଆମ୍ଭର ଦିଅ ତୁହି ।
ନୋହିଲେ ତ ଫଳ ଯେ ନୋହିବ ମୃତଭାଗ
ଆଶ୍ଚର୍ଯ୍ୟ ବରଣତ ହୋଇଅଛୁଁ ଦେବ ।
ଶୁଣିକରି ଶ୍ରୀରାମ ଯେ ଉପରକୁ ଚାହିଁ
ଦେବତାଏ ରତ୍ନବୃଷ୍ଟି ସ୍ୱର୍ଗପୁରେ ଥାଇ ।
ଯେତେକ ସେ ପୁରରେ ବିପ୍ରଗଣ ଥିଲେ
ସମସ୍ତେ ରତ୍ନ ଯେ ଭୂମିରୁ ତୋଳି ନେଲେ ।
ପିତୃଙ୍କୁ ରାମ ଯେ କଲେକ ନମସ୍କାର
ବୋଇଲେ ପୁଲକି ଯେ ଆଶ୍ଚର୍ଯ୍ୟ ମୋହର ।
ତାହାଙ୍କୁ ଦକ୍ଷିଣା କିସ ଦେବି ମୁହିଁ
ଦଶରଥ ବୋଇଲେ ଆମ୍ଭେ ଦେଲୁ ତହିଁ ।
ପୁଲକିକି ଆମ୍ଭେ ବୋଧ କଲୁ ଜାଣ
ବିପ୍ରଙ୍କୁ ବୋଧ କଲେ ଆସି ବିପ୍ରଗଣ ।
ଏଥୁ ଉତ୍ତାରୁ ଯେ କରିବଟି ଦ୍ୱନ୍ଦ୍ୱ
ସେମାନଙ୍କୁ ତୁହି କରିବୁଟି ଛନ୍ଦ ।
ଶ୍ରୀରାମ ବୋଇଲେ ପିତା ମୋଠାରେ ଦୟାକର
ତୁମ୍ଭଙ୍କୁ ଦର୍ଶନ କଲି ପାପ ମୋ ଗଲା ଦୂର ।
ଦଶରଥ ବୋଇଲେ ବାବୁ ଶୁଣ ଦାଶରଥି
ଆହୁରି ତିନିବାର ଦେଖିବୁ ମୋତେଟି ।
ଏତେକହି ଦଶରଥ ରାଜା ସ୍ୱର୍ଗେ ଗଲେ
ସମସ୍ତେ ମେଳ ହୋଇ ସ୍ୱର୍ଗରେ ବସିଲେ ।
ସେଠାରୁ ରାମ ଲକ୍ଷ୍ମଣ ବେଗେ ଚଳିଗଲେ
ସୀତା ଥିବା ସ୍ଥାନେ ପ୍ରବେଶ ଯାଇଁ ହେଲେ ।
ଦେଖିକରି ଜାନକୀ ପରମ ତୋଷ ହୋଇ
ଅଳପ କରି ହସିଲେ ବିଚାରି ଚନ୍ଦ୍ରମୁହିଁ ।
ସୀତାଙ୍କୁ ପୁଚ୍ଛିଲେ ରାମ ପିଣ୍ଡକି ଦେଲ ତୁମ୍ଭେ
ସୀତା ବୋଇଲେ ପିଣ୍ଡ ଦେଇ ନାହିଁ ଏବେ ।
ପୁଲକିକି ରାମ ଯେ କରନ୍ତି ପୁଚ୍ଛା ତ
ତୁମ୍ଭ ପାଖରେ ସୀତାଙ୍କୁ ରଖିଗଲି ମୁଁ ତ ।

ସୀତୟା ପିଣ୍ଡଦେବା ଜାଣୁକି ପୁଲକି
ପୁଲକି ବୋଇଲେ ପିଣ୍ଡ ଦେଇନାହିଁ ସଦ୍‌ଭାବି ।
ଶ୍ରୀରାମ ବୋଇଲେ ତୁ ଯେ କହିଲୁ ମିଛ ପୁଣ
ଆଶ୍ଚର୍ଯ୍ୟ ହୋଇଲୁ ତୁ ପିଣ୍ଡ କର୍ମେ ଜାଣ ।
ସତଷଠି ପୁରୁଷ ତାହାର ପିତୃକୁଳ
ମାତୃ, ପିତୃ ମଉଳା କୁଳ କଲେକ ଉଜ୍ଜ୍ୱଳ ।
ସଭିଙ୍କି ବାଲିପିଣ୍ଡ ଦେଇ ଉଦ୍ଧରିଲା
ପିଣ୍ଡଦେବା କଥା ମୋତେ ମୋ ପିତା କହିଲା ।
ଦେବତାଏ କହିଲେ ସେ କଥା ଅଟେ ସତ
ପିତୃଲୋକେ ରତ୍ନ ତୋତେ ଦେଲେକ ବହୁତ ।
ଗୁପତ କଲୁ କିମ୍ପା ନ କହିଲୁ ମୋତେ
ମୋହଠାରେ ମାୟା ତୁହି କହିଲୁ କେମନ୍ତେ ।
ତେଣୁକରି ମୋହର ଶାପକୁ ହୃଦେ ଧରି
ଯେଉଁ ରତ୍ନ ପିତୃଦେଲେ ସେ ଫଳହେଉ ତୋହରି
ତୋହର ମାୟାରେ ଯେବେ ଗୁପ୍ତ ମାୟାଥିବ
ହୃଦୟ ବିଦାରିଲେ ଜଳ ବାହାର ହୋଇବ ।
ପୁଲକି ବୋଇଲା ଏ ତ କଥା ନୋହେ ଭଲ
ତୋର ନାରୀ କହିବାରୁ ସେ କଥା ଗୁପ୍ତ ମୋର ।
ଜାନକୀ ବୋଇଲେ ପୁଲକି ଆଗେତୁ ମନାସିଲୁ
କଥା ପଡ଼ିବାରୁ କିମ୍ପା ଅସୁଖ ପାଇଲୁ ।
ଶ୍ରୀରାମ ବଚନ ଯେ ନୁହେଁ ପୁଣ ଆନ
ଏକଥାକୁ ପୁଲକି ତୁ ନ ପାଅ ବିମନ ।
ମୋହର ପିତୃଦେବତା ସନ୍ତୋଷେ ଦେଲେଧନ
ତେତେବେଳେ କହିଲୁ ତୋତେ ପୁଣ ।
ବୋଇଲୁ ଏ ରତ୍ନକୁ ହୃଦୟେ ଅଳଙ୍କାର
ତୋର କଥା ତୋତେ ଏବେ ଫଳିଲା ନାରୀବର
ସେ ରତ୍ନହାର ଅଳଙ୍କାର ହୃଦକୁ ତୋର ହାର
ଷଡ଼୍‌ମାସ ଯୁବା ଯେ ସ୍ୱରୂପେ ଭୋଗ କର ।
ଯେଉଁ ଷଡ଼ ମାସେ ଯେ ହୋଇବୁ ବୃଦ୍ଧାସ୍ତିରୀ
ତେତେବେଳେ ତୋ ହୃଦୟ ସମସ୍ତେ ବିଦାରି ।
ତେତେବେଳେ ଅଳଙ୍କାର ହେବ ତୋରଫଳ
ଜଳ ସଙ୍ଗେ ଫଳ ପୁଣି ହୋଇବ ବାହାର ।
ଦେଖିଣ ଆଶ୍ଚର୍ଯ୍ୟିତ ସମସ୍ତେ ହେଉଥିବେ
ତୋତେ ପୁଲକି ଗୋ ପ୍ରଶଂସା କରିବେ ।
ଶୁଣିକରି ପୁଲକି ମନରେ ହରଷ
ମୁଖତାର ବିକାସିଲା ଚନ୍ଦ୍ରର ସଦୃଶ ।

ସୀତାର କରଧରି ଓଳଗେ ମହୀସ୍ଥଳୀ
ସୁଦୟାକର ମୋତେ ସିନ୍ଧୁର ଦୁଲାଳୀ ।
ଶୁଣିକରି ଜାନକୀ ପରମ ତୋଷ ହେଲେ
ନିଶ୍ଚିନ୍ତରେ ରହିଥାଅ ବୋଲିଣ ବୋଇଲେ ।
ଖେଳର ପ୍ରାଏ ମଣି ବାଲିରେ ପିଣ୍ଡ ଦେଲି
ତୁହି ସାହା ହେବାରୁ ପିତୃ ସ୍ୱର୍ଗେ ନେଲି ।
ଭାଗ୍ୟବନ୍ତ ହୋଇଥାଏ ସ୍ୱାମୀ ପାଦେ ସେବି
ଏତେ କହି ଜାନକୀ ସନ୍ତୋଷ ମନେ ଭାବି ।
ତୁହି ଆଶ୍ଚର୍ଯ୍ୟ ହେବାରୁ ମୁଁ ଗୟା ଶ୍ରାଦ୍ଧ କଲି
ସକଳ ପିତୃଙ୍କୁ ମୁଁ ମୁକତି ସ୍ୱର୍ଗେ ନେଲି ।
ଏହି ଦକ୍ଷିଣ କୂଳେ ଯେଦେବ ବାଲିପିଣ୍ଡ
ସକଳ ପିତୃ ତୋର ବସିବେ ସ୍ୱର୍ଗଖଣ୍ଡ ।
ଯେଉଁମାନେ ଆସିବେ ଏଥକୁ ଶ୍ରାଦ୍ଧକରି
ପିଣ୍ଡକୁ ଦେବେ ଯେବେ ପିତୃଙ୍କୁ ସୁମରି ।
ଗୋତ୍ର ଉଚ୍ଚାରି ଏ ସ୍ଥାନେ ଦେଲେ ବାଲିପିଣ୍ଡ
ତେବେ ଯେ ପିତୃ ଲୋକେ ବସିବେ ସ୍ୱର୍ଗଖଣ୍ଡ ।
ମୋହର ବଚନ ଯେ ନିଷ୍ଫଳ ନୋହିବ
ମୋହର କୀର୍ତ୍ତିକଥା ଯୁଗେ ଯୁଗେ ଥିବ ।
ଆଜଠାରୁ ବାଲିପିଣ୍ଡ ହେଲା ଯେ ପ୍ରମାଣ
ଉଭୟରେ ମାତୃ ପିତୃ ପାଇବେ କାରଣ ।
ଏତେବୋଲି ବଇଦେହୀ ପୁଲକି ଆଗେ କହି
ଶୁଣିକରି ପୁଲକି ହରଷ ମନ ହୋଇ ।
ଉପରେ ଦେବତାଗଣ ସାଧୁ ସାଧୁ କଲେ
ଅସ୍ତୁ ଏକଥା କହି କୁସୁମ ବରଷିଲେ ।
ଦେଖିକରି ରାମଚନ୍ଦ୍ର ହୋଇଲେ ଚକିତ
ଧନ୍ୟ ଧନ୍ୟ ଜାନକୀରେ ଜନକ ଦୁହିତ ।
ତୋହର କଥାକୁ ଦେବେ ହେଲେ ସାବଧାନ
ଆଜଠାରୁ ବୋଲାଇଲୁ ସ୍ତିରୀଙ୍କ ମୋକ୍ଷପାନ ।
ଦ୍ୱିଜବର ବୋଇଲେ ତୁମ୍ଭେ ଶୁଣହେ ଶ୍ରୀରାମ
ପିତୃପକ୍ଷ ଅଟଇ ଯେ ମାସକେ ପକ୍ଷେ ପୁଣ ।
ଆଶ୍ୱିନମାସ ଆଦ୍ୟ ପନ୍ଦର ଦିନ ପୁଣି
ମଳପକ୍ଷ ବୋଲି ସିନା ତିନିପୁରେ ଜାଣି ।
ପ୍ରଥମ ପାଞ୍ଚଦିନ ଅପକ୍ଷେରିଙ୍କର
କୁଳତୃଟା ପୁରୁଷମାନଙ୍କ ଯେ ବେଭାର ।
ଦ୍ୱିତୀୟେ ପାଞ୍ଚଦିନ ପାଟକେ ଶୂଦ୍ର କରି
ତୃତୀୟେ ପାଞ୍ଚଦିନ କ୍ଷତ୍ରିୟ ବିପ୍ରକରି ।

ଏହିମତେ ପକ୍ଷେକ ଯେ ହୁଅଇ ସମ୍ପୂର୍ଣ୍ଣ
ଶ୍ରାଦ୍ଧ କର୍ମ ସରିଲା ଯେ ଷଷ୍ଠମୀ ଦିନ ।
ଆଉ ନବଦିନ ଯେ ଅଛଇ ରାମରାଣ
ଜଳତିଳ ଏଥିରେ ଦିଅ ନବଦିନ ।
ତର୍ପଣ, ଜଳ, ତିଳ ଦେଲେ ପିତୃଙ୍କୁ ହୋଏବଡ଼
ପିତା ମାତା ସନ୍ତୋଷ ହୋଇବେ ତୁମ୍ଭଠାର ।
ଗଲେଟି ଶ୍ରାଦ୍ଧ ଯେ ନୋହେ ତୋର କିଛି
ଶୁଣି କରି ଶ୍ରୀରାମ ବୋଇଲେ ରହିବାଟି ।
ତାପରେ ସୁରଗଣ ବୋଇଲେ ଅଟେ ସାର
ନବଦିନ ଏଠାରେ ଦିଅ ହେ ଜଳତିଳ ।
ଶୁଣିକରି ଶ୍ରୀରାମ ଯେ ହରଷ ହୋଇଲେ
ନବଦିନ ପିତା, ମାତାଙ୍କୁ ଜଳତିଳ ଦେଲେ ।
ସମ୍ପୂର୍ଣ୍ଣ ଆଶ୍ୱିନ ମାସର ପକ୍ଷେ ଗଲା
ଦ୍ୱିତୀୟ ପକ୍ଷେ ରାମ ଗୟାକୁ ତେଜିଲା ।
ରାମ ଗୟା ବୋଲିଣ ସେ ସ୍ଥାନ ନାମ ଦେଲେ
ଦେବେ ଏହିସ୍ଥାନେ ପିଣ୍ଡ ପାଇବେ ବୋଇଲେ ।
ସେହିଦିନୁ ସୁରଗଣେ ବାଲୁକା ପୂଜାକଲେ
ତୋଷେ ସଦାଶିବ ପ୍ରସନ୍ନ ତାଙ୍କୁ ହେଲେ ।
ପୁଲକିକି ଶ୍ରୀରାମ ପ୍ରଶଂସା କରିଣ
ବୋଇଲେ ତୋର ହେତୁ ମୁଁ ପାଇଲି କାରଣ ।
ସୁରଗଣେ ପ୍ରଶଂସା ପୁଲକିକି କଲେ
ବାଲୁକା ପୂଜା ଆମ୍ଭଙ୍କୁ ଦେଲୁଗୋ ବୋଇଲେ ।
ସେହିଠାରୁ ଶ୍ରୀରାମ ପୁଲକି ବୋଧକରି ।
ଆମ୍ଭେ ଯାଉଛୁ ଏଥୁ ଥାଅଗୋ ମହୀସ୍ଥଳୀ ।
ଶୁଣିକରି ପୁଲକି ନମସ୍କାର କଲେ
ସେଠାରୁ ଶ୍ରୀରାମ ଯେ ବେଗେ ଚଳିଗଲେ ।
ଶ୍ରୀରାମ ଲକ୍ଷ୍ମଣ ଯେ ଜାନକୀ ତିନିଜଣ
ଗୟା ତୀର୍ଥରୁ ସେ ବାହାର ହେଲେ ପୁଣ ।
ତୀଥ ଶ୍ରାଦ୍ଧ ଗୟାର ପ୍ରାନ୍ତ ମୁଣ୍ଡେକଲେ
ହରଷ ମନେ ରାମ ସେ ତୀର୍ଥ ତେଜ୍ୟା କଲେ ।
ଶ୍ରୀରାମ ଯିବାରୁ ଗୟା ବ୍ରାହ୍ମଣେ ଓଗାଳନ୍ତି
ପଥ ଶ୍ରାଦ୍ଧ ଦକ୍ଷିଣା ଦିଅ ହେ ରଘୁପତି ।
ଶ୍ରୀରାମ ବୋଇଲେ ଆମ୍ଭେ ଅଟୁ ବ୍ରହ୍ମଚରୀ
ଧନ ଘେନି ସଙ୍ଗେ କି ଆସିଛୁଁ ବନେ ବୁଲି ।
ବନରେ ବୁଲିବାରୁ ଦେଖିଲୁ ପିଣ୍ଡତୀର୍ଥ
ତୁମ୍ଭେ କହିବାରୁ ରହିଲୁ ଏତେ ପକ୍ଷ ।

ବ୍ରାହ୍ମଣେ ବୋଇଲେ ତୁମ୍ଭେ ରାଜାର କୁମର
ତୋତେ ଦେବାକୁ ଅପୂର୍ବ ନାହିଁ ରତ୍ନହାର ।
ତୁହିତ ବୋଇଲେ ଧନ ଦେବେ ଦେବ ରତ୍ନ
ନିଆଶା ନ କର ତୁମ୍ଭେ ଦେଇଣ କରଯତ୍ନ ।
ଯେବେ ତୋର ହସ୍ତରେ ନାହିଁ ଧନ ରତ୍ନ
ତୋର ଘରଣୀ ଗହଣା ଦିଅ ତୁ ବହନ ।
ରାମ ବୋଇଲେ ତୁମ୍ଭଙ୍କୁ ଦେବେ ଦେଲେ ଧନ
ଲୋଭି ବ୍ରାହ୍ମଣେ ତୁମ୍ଭେ ନୋହିଲ ଶାନ୍ତିପୁଣ ।
ବ୍ରାହ୍ମଣେ ବୋଇଲେ ଦେବେ ଦେଲେ ନୁହଇ ସୁକୃତ
ପଚ୍ଛର ଦେବ ଲୋକେ ଏକଥା ଯଦି ମିଛ ।
ଗୟାରେ ପିଣ୍ଡଦେଲେ ପିତୃ ଗଲେ ସ୍ୱର୍ଗ
ଦେବେ ପିତୃ କହିଲେ ଜାଣିଲୁଟି କି ସର୍ବ ।
ଆନନ୍ଦ ମନରେ ତୁ ଦକ୍ଷିଣା ଦେଇ ଯିବୁ
ଘରଣୀର ଅଳଙ୍କାର ଦିଅରେ ବାବୁ ସବୁ ।
ରାମ ବୋଇଲେ ଏତ ଯୁବତୀଙ୍କର ବିତ୍ତ
ଅସମ୍ଭବ କଥା କହହେ କେମନ୍ତ ।
ସେ ସତୀ ଶ୍ରାଦ୍ଧ ଦେଲେ ପୁଲକି ଆଚର୍ଯ୍ୟ
ସେ ତାର ଅଳଙ୍କାର ନ ଦେଲେ ତାଙ୍କୁ ଭାବ



## ଆରଣ୍ୟକକାଣ୍ଡ (ଦ୍ୱିତୀୟ)

ପୁଲକିକି ଦକ୍ଷିଣା ପିତୃ ଲୋକ ଦେଲେ
ତୁମ୍ଭଙ୍କୁ ଦେବେ ଲୋକେ ନେଇ ତୋଷକଲେ ।
ସତୀ ଶ୍ରାଦ୍ଧ କରିବାର ପୁଲକି କଲା ଗୋପ୍ୟ
ସେ ଦୋଷରୁ ପୁଲକି ପାଇଲା ପୁଣି ଶାପ ।
ତୁମ୍ଭେ ଜଞ୍ଜାଳ କଲେ ତାହାର ପ୍ରାଏ ହେବ
ବ୍ରହ୍ମା ବିଷ୍ଣୁ, ମହେଶ୍ୱର କେହି ନ ରଖିବ ।
ଏ ତୀର୍ଥ ଜାତ ହେବାର ହୋଇବ ନିଷ୍ଫଳ
ଯାଅ ହେ ବିପ୍ରଗଣ ନକର ଜଞ୍ଜାଳ ।
ଆମ୍ଭଠାରେ ଧନ ନାହିଁ ଆମ୍ଭେ ଯେ ନିର୍ଦ୍ଧନ
ସ୍ତିରୀ ଅଳଙ୍କାରକୁ ଲୋଭକଲା ମନ ।
ଏକଥା ଉଚିତ ଯେ ନୁହଇ ତୁମ୍ଭର
ଏତେକହି ବାଟଭାଙ୍ଗି ଗଲେ ରଘୁବୀର ।
ସେ ତୀର୍ଥ ବ୍ରାହ୍ମଣ ପଛେ ପଛେ ଗୋଡ଼ାଇଲେ
ଲାଭ ଲୋହିତା ଖଣନ୍ତି ଉଛୁଡ଼ନ୍ତି ଭଲେ ।
ପିନ୍ଧିବା ବସ୍ତ୍ରମାନ ଧରିଣ ଓଟାରନ୍ତି
କିଙ୍କର ଜନ ପ୍ରାୟ ରାମଙ୍କୁ ମଣନ୍ତି ।

ଉପରୁ ଦେବତାଏ ଡାକଦେଲେ ପୁଣ
ରାମ ସଙ୍ଗେ ଜଞ୍ଜାଳ ନକର ବିପ୍ରଗଣ ।
ନିଷ୍ଫଳ ହୋଇବ ନିଶ୍ଚେ ବ୍ରାହ୍ମଣଙ୍କ କୁଳ
ଦେବତାଙ୍କ କଥା ନଶୁଣନ୍ତି ବିପ୍ରବର ।
ଦେବଙ୍କର ବାଣୀ ଯହୁଁ ବ୍ରାହ୍ମଣେ ନ ଶୁଣିଲେ
ସେଠାରୁ ରାମଚନ୍ଦ୍ର କ୍ରୋଧ ମନ ହେଲେ ।
ବେଗ ବେଗ ହୋଇଣ ଚଳିଲେ ରଘୁନାଥ
ଲକ୍ଷ୍ମଣଙ୍କୁ ବୋଇଲେ ନଥିବା ଏଥି ଭ୍ରାତ ।
ବ୍ରାହ୍ମଣ ପଛକତିରେ ଗୋଡ଼ାଇ ଅଛନ୍ତି
ଦକ୍ଷିଣା ନ ଦେଇ ଆଜ ଯିବୁ ତୁ କାହିଁକି ।
ଡାକ ଦିଅନ୍ତି କାହିଁକି ପଳାଅରେ ଯୋଗୀ
ଯୋଗିଆଣୀ ଅଳଙ୍କାର ଦିଅଯିବୁଁ ବେଗି ।
ଜାନକୀ ଅଳଙ୍କାର ନେବାକୁ ତାଙ୍କ ମନ
ଏଣୁ ତାଙ୍କ ବୋଲ ଯେ ନ କଲେ ରଘୁରାଣ ।
ଚରିଯୂଣ ପରିଯନ୍ତେ ସଙ୍ଗେ ଗୋଡାଇଲେ
ନିଆଶା ହେବାରୁ ବିପ୍ରେ ମନରେ ବିଚରିଲେ ।
ସୀତାଙ୍କୁ ଓଗାଳିଣ ବ୍ରାହ୍ମଣ ଧରନ୍ତି
ହାତରୁ, କାନରୁ ଅଳଙ୍କାର ସେ କାଢ଼ନ୍ତି ।
ପଣତ ଧରିଣ ଯେ ଉଛୁଡ଼ନ୍ତି ପୁଣ
ବିକଳରେ ଜାନକୀ କରନ୍ତି ରୋଦନ ।
ଶ୍ରୀରାମ ବୋଇଲେ ତୁମ୍ଭେ ବ୍ରାହ୍ମଣେ ରାକ୍ଷସ
ଆମ୍ଭଙ୍କୁ କଷ୍ଟ ତୁମ୍ଭେ ଦେଉଛ ବହୁତ ।
ସ୍ତ୍ରୀରୀଙ୍କର ଅଳଙ୍କାର ତୁମ୍ଭେ କଲ ଆଶ
ଗୋଡ଼ାଇ ଅଇଲ ତୁମ୍ଭେ ଚରିଯୂଣ ପଥ ।
ଛାଡ଼ ଛାଡ଼ ବିପ୍ରେ ତୁମ୍ଭେ ସୀତା ପାଏ ବ୍ୟଥା
ଶୁଣହେ ବ୍ରାହ୍ମଣମାନେ ନୁହଇ ଭଲ କଥା ।
ଆମ୍ଭେ ଥାଉଁ ଜାନକୀଙ୍କି କରୁଛ ଜଞ୍ଜାଳ
ପଣ୍ଡିତ ହୋଇ ତୁମ୍ଭେ ଅବେଭାର କର ।
ଶ୍ରୀରାମ କହିବା କଥା ବ୍ରାହ୍ମଣେ ନ ଶୁଣନ୍ତି
ଧାଇଁଯାଇ ରାମକୁ କୋଳ କଲେ ସତୀ ।
ଦେଖିକରି ଦାଶରଥି ମନେକଲେ ଚିନ୍ତା
ବୋଇଲେ ରାକ୍ଷସ ପ୍ରାଏ କରିଛି ଅହନ୍ତା ।
ବ୍ରାହ୍ମଣେ ରାକ୍ଷସ ବୋଲି ବୋଲନ୍ତି ସମସ୍ତେ
ରାକ୍ଷସର ବୁଦ୍ଧି ହେଉ ତୁମ୍ଭର ଚିତ୍ତେ ।
ଲକ୍ଷ୍ମଣଙ୍କୁ ବୋଇଲେ ବ୍ରାହ୍ମଣେ ଅଜ୍ଞାନ
ଆମ୍ଭର ସଙ୍ଗେ ଗୋଳ କରୁଛନ୍ତି ପୁଣ ।

ଦେଖ ସୀତାର ପଣତକୁ ଅଛନ୍ତି ଧରି
ମଧ୍ୟମରୁ କାଟିଦିଅ ବେନି ଭାଗ କରି ।
ଶୁଣିକରି ଲକ୍ଷ୍ମଣ ଖଡ଼ଗ କରେ ଧରି
ସୀତାର ଶାଢ଼ୀକି କାଟି ବେନି ଭାଗ କରି ।
ବ୍ରାହ୍ମଣ ହସ୍ତରେ ରହିଲା ପୁଣି ଅଧେ
ଅତିଶୟ କୋପରେ ଲକ୍ଷ୍ମଣ ଗର୍ଜେ କ୍ରୋଧେ ।
କୋଦଣ୍ଡକୁ ଧରି ସେହି କାଳେ ଗୁଣ ଦେଲେ
ଦଶଦିଗପାଳଙ୍କୁ ଡାକିଣ ବୋଇଲେ ।
ଆମ୍ଭରଟି ଦୋଷନାହିଁ କରୁଛୁଁ ବ୍ରହ୍ମହତ୍ୟା
ଉପରୁ ଶୁଭିଲା ଡାକ ଯେ ତୋର ମନଇଚ୍ଛା
ଶୁଣିକରି ଲକ୍ଷ୍ମଣ ଧନୁରେ ଶର ଯୋଡି
ଶ୍ରୀରାମ ବୋଇଲେରେ ସମ୍ଭାଳ ସଉମିତ୍ରୀ ।
ଏତେକ ରାମ ଯେ ଜାନକୀ ସଙ୍ଗେ ଗଲେ
ପୁଣହିଁ ବ୍ରାହ୍ମଣେ ଯେ ପଛରେ ଗୋଡ଼ାଇଲେ ।
ଦେଖିକରି ରଘୁନାଥ କ୍ରୋଧଭର ହେଲେ
ତୁମ୍ଭେ ଯେତେ ଅରଜିବ ନ ଅଣ୍ଟୁ ବୋଇଲେ ।
ତୁମ୍ଭେ ଥୋଇଲା ପଦାର୍ଥ ବାସୁକୀ ନେଉ ହରି
ସବୁକାଳେ ଦରିଦ୍ର ହୁଅ ବେଦ ପଢ଼ି ।
ଏ ଗୟା ତୀର୍ଥରେ ଯେତେ ଅଛ ଦ୍ୱିଜବର
ମଲେ ଗଧ ହେବ ନିଶ୍ଚେ କହୁଛି ନିକର ।
ଆରଜନ୍ମରେ ରଜକ ଘରେ ଜନ୍ମହେବ
ଅଶଉଚବସ୍ତ୍ର ତୁମ୍ଭେ ପିଠିରେ ବହିବ ।
ସେ କଥା ବ୍ରାହ୍ମଣେ ନ କଲେ ହେତୁ ପୁଣ
ଆଉଥରେ ଧାଇଁଲେ ମେଳ ହୋଇ ଜାଣ
ଧାଇଁ ଯାଇଁ ଲକ୍ଷ୍ମଣ ଓଗାଳେ ଧନୁଧରି
ତେଣୁ ସେ ଦ୍ୱିଜବରେ ଗଲେ ଅପସରି ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ରହ ଦ୍ୱିଜବର
ତୁମ୍ଭ ଇଷ୍ଟଦେବତାଙ୍କୁ ସୁମରଣା କର ।
ଏତେ କହି ଧନୁଗୁଣ ଟଙ୍କାର ଯେ କଲେ
ସର୍ବଶାନ୍ତ ବ୍ରାହ୍ମଣେ ପଳାନ୍ତି ଏଣୁ ଡରେ ।
ଖଣ୍ଡେ ଦୂରେ ବ୍ରାହ୍ମଣେ ମେଳରେ ଛିଡ଼ାହେଲେ
ଭଲ ଯୋଗେ ପଳାଇଲ ବୋଲିଣ ବୋଇଲେ ।
ଧନୁଶର ନ ଥିଲେ ତୁମ୍ଭର ଯେ କର
ଘେନିଣ ଯାଆନ୍ତୁ ଆଜି ଯୁବତୀ ଚନ୍ଦ୍ରବର ।
ବରାଙ୍ଗନା ସୁନ୍ଦରୀକି ତୁମ୍ଭେ ଦୁଇ ଜଟାଧାରୀ
ଚୋରି କରି ତୁମ୍ଭେ କାହୁଁ ଆଣିଛ ପରନାରୀ ।

ଆପଣା ଦେଶରେ ତୁମ୍ଭେ ରହି ନ ପାରିଲ
ଦେଶଲୋକ ଜାଣିବାକୁ ବନରେ ପଶିଲ ।
ଏକ ଯୁବତୀକି ତୁମ୍ଭେ ଦୁଇଗୋଟି ବର
ଲାଜକୁ ଭୟ କିରେ ନାହିଁ ନା ତୁମ୍ଭର ।
ବିଭୂତି ବିଲେପନ କକ୍ଷା ବସ୍ତ୍ର ପିନ୍ଧି
ହୃଦୟରେ ମାଳ ଯେ ଶିରରେ ଜଟାବାନ୍ଧି ।
ନିଶ୍ଚୟତ ଜଣାଗଲା ଚୋର ବେନିଜଣ
ଭଲା ତୁମ୍ଭେ ପଳାଇଲ ଯୁବତୀ ଘେନିଣ ।
ତୁମ୍ଭଙ୍କୁ ମାରି ଆଜି ନିଅନ୍ତୁ ତୁମ୍ଭ ନାରୀ
ଶୁଣିକରି ଶ୍ରୀରାମ ଯେ କହନ୍ତି କୋପକରି ।
ବ୍ରାହ୍ମଣ ନୋହିଲେଟି ଜାଣିଥାନ୍ତ ଆଜ
ନୋହିଲେକ କଥା କହି ହୁଅନ୍ତୁ ଧଇର୍ଯ୍ୟ ।
ଗୟାତୀର୍ଥ ବ୍ରାହ୍ମଣଙ୍କୁ ଝଞ୍ଜୋଳା ଲାଗିଥାଉ
ତୁମ୍ଭର ଜନ୍ମବାଧା କାହାକୁ ଯେ ନୋହୁ ।
ଯେତେକାଳ ଯାଏ ମୋର ରାମନାମ ଥିବ
ତେତେକାଳ ଯାଏ ତୁମ୍ଭେ ଅର୍ଜିଲେ ନଅଣ୍ଟିବ ।
ଲୋଭ ତୁମ୍ଭର ବଡ଼ ମିଳିବ ଅଳ୍ପଧନ
ହୀନ ଲୋକଙ୍କଠାରୁ ମାଗିଣ ନେବ ଦିନ ।
ଏ ଗୟା ତୀର୍ଥରେ ସ୍ତିରୀ ସୁନ୍ଦରୀ ନୁହନ୍ତୁ
ଅଭୂଷଣ ସ୍ତିରୀଅଙ୍ଗେ ଭୂଷଣ ହୁଅନ୍ତୁ ।
ଏ ଗୟା ତୀର୍ଥକୁ ଆଉଥରେ ନ ଆସିବି
ଯେତେକାଳ ପରିଯନ୍ତେ ଶରୀର ଧରିଥିବି ।
ଏତେ ବୋଲି ଶ୍ରୀରାମ ଧନୁ କରେ ଧରି
କ୍ରୋଧରେ ତିନିଗାର କାଟିଲେ ଚାପଧାରୀ ।
ଏଠାରୁ ମୁଁ ଯେ ଆଉ ନ ଯିବଇଁ ଜିଣି
ଏ ତୀର୍ଥରେ ମୃତ୍ୟୁ ହେଲେ ଗତି ନାହିଁ ପୁଣି ।
ବିପ୍ରଙ୍କୁ କ୍ରୋଧରେ ଯେ ବୋଲେ ରାମଦେବ
ଯେତେ ଅର୍ଜିବ କାଲିକି କଡ଼ାଏ ନଥିବ ।
ନିଶ୍ଚଳେ ନ ରହିବ ଗୟାର ଯେ ତୀର୍ଥେ
ମୋର ଅଭିଶାପ ଘେନ ଆହେ ସର୍ବବିପ୍ରେ ।
ଏଡ଼େବଡ଼ ତୀର୍ଥକୁ ତୁମ୍ଭେ ନାଶ କଲ
ନାନାକଥା କହିଣ ମୋତେ ଯେ ଗୋଡ଼ାଇଲ ।
ଶୁଣିଣ ଲକ୍ଷ୍ମଣ ଯେ ମନରେ କ୍ରୋଧହେଲେ
ଏହିକଥା ଶ୍ରୀରାମଙ୍କୁ ବାଧିଲା ବିଚାରିଲେ ।
ମୋହନା ଶରଗୋଟି ଧନୁରେ ଯୋଚି ପୁଣ
ମନ୍ତ୍ରପଢ଼ି ବୋଇଲେ ଯିବୁ ଯେ ତତକ୍ଷଣ ।
ସମସ୍ତଙ୍କୁ ଯାଇଣ ମୋହ କରାଇବୁ
କାଲି ଏତିକିବେଳେ ମୋହ ତୁ ଛାଡ଼ିବୁ ।
ଶୁଣିକରି ମୋହନା ଶର ଯେ ବେଗେଗଲା
ଯେତେକ ବିପ୍ରଥିଲେ ମୋହ କରାଇଲା ।
ଅସମ୍ଭାଳ ହୋଇଣ ଶୋଇଲେ ଧରଣୀ
ଦେଖିଣ ଶ୍ରୀରାମ ଯେ ସନ୍ତୋଷ ହେଲେ ପୁଣି ।
ବୋଇଲେ ଏ ବିପ୍ରଙ୍କୁ ଏହି ଯେ ଦଣ୍ଡସାର
ଦେଖିକରି ଜାନକୀ ଯେ ହସନ୍ତି କର କର ।
ବୋଇଲେ ଦ୍ୱିଜବରେ ବହୁତ କଥା କହି
ଏବେ ଧରଣୀରେ ଶୋଇଲେ ସ୍ଥିର ହୋଇ ।
ଶ୍ରୀରାମ ବୋଇଲେ ବାବୁ ଶୁଣରେ ଲକ୍ଷ୍ମଣ
ପାଇଲେଣି ଦଣ୍ଡ ପୁଣ ଏହି ଯେ ବ୍ରାହ୍ମଣ ।
ସୌମିତ୍ରୀ ବୋଇଲେ କାଲି ଏତିକି ବେଳରେ
ଉଠିବ ଦ୍ୱିଜବର ନ କର ବିଚାରେ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
କାହିଁପାଇଁ ଏକଥା କହିଲେ ରଘୁନାନ ।
ଦ୍ୱିଜବରମାନେ ତାଙ୍କୁ ଦୋଷୀ ଯେ ହୋଇଲେ
ପୁଣି ଦାସରଥି ଯେ କିମ୍ପାଇଁ ଦୟାକଲେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗଉରୀ
ଶାନ୍ତ, ଶୀଳ, ଅଟନ୍ତି ଯେ କୋଦଣ୍ଡ ଚାପଧାରୀ ।
ବ୍ରହ୍ମହତ୍ୟାକୁ ସେ ଯେ ମନରେ ଭୟକଲେ
ତେଣୁକରି ଲକ୍ଷ୍ମଣଙ୍କୁ ସେକଥା କହିଲେ ।
ପାର୍ବତୀ ବୋଇଲେ ଯେ ସେଠାରୁ କିସହେଲା
ଈଶ୍ୱର ବୋଇଲେ କଥା ଶୁଣ ଏବେ ଭଲା ।
ସେଠାରୁ ଶ୍ରୀରାମ ଯେ ପଥ ବହିଯାନ୍ତି
ବ୍ରାହ୍ମଣମାନେ ଯେ ସେଠାରେ ପଡ଼ିଛନ୍ତି ।
ଗଙ୍ଗାର କୂଳେ ଯାଇ ରାମଚନ୍ଦ୍ର ମିଳି
ତିନିଜଣ ସେଠାରେ ସ୍ନାହାନ ବେଗେସାରି ।
ପାର୍ବତୀ ବୋଇଲେ ଯେ କଥାଏ ରହିଲା
ଶ୍ରୀରାମ କ୍ରୋଧ ହୋଇ ତିନିଗାର କାଟିଦେଲା ।
ସେ କଥା ମୋର ଆଗେ କହ ତ୍ରିଲୋଚନ
ଶୁଣିଲେ ସନ୍ତୋଷ ଯେ ହୋଇବ ମୋର ମନ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ତିନିଗାର ଶ୍ରୀରାମ କ୍ରୋଧରେ ଦେଲେକାଟି ।
ଧନୁହୁଲେ ଶ୍ରୀରାମ କାଟିଲେ ଯେଉଁଗାର
ପୂର୍ଣ୍ୟତୋୟା ନଦୀତୀର ହେଲାଟି ତାହାର ।

ଶ୍ରୀରାମ, ଲକ୍ଷ୍ମଣ ଯେ ସୀତା ତିନିଜଣ
ଗଙ୍ଗାକୂଳେ ସେହୁ ଯେ କଲେକ ଭୋଜନ ।
ଭୋଜନ ସାରିଣ ଯେ ସେଠାରୁ ଚଳିଗଲେ
ବାରାଣସୀ ପୁର ନିକଟରେ ସେ ମିଳିଲେ ।
ସେଦିନ ରଜନୀରେ ରହିଲେ ଗଙ୍ଗାକୂଳ
ଆରଦିନ ସ୍ନାହାନ କଲେ ଜାହ୍ନବୀର ।
ଗୟାର ଦ୍ୱିଜମାନେ ମୋହରେ ପଡ଼ିଥିଲେ
ଚେତା ପାଇ ସମସ୍ତେ ଉଠିଣ ତହୁଁ ଗଲେ ।
ଯେ ଯାହାର ପୁରକୁ ଚଳିଲେ ତହୁଁ ପୁଣ
କାହାରି ଗୃହରେ ଆଉ କିଛି ନାହିଁ ଧନ ।
ଦେଖିକରି ଦ୍ୱିଜବର ମନରେ ବିକଳ
ବାସୁକୀ ହରିନେଲା ଧନ ଯେ ସକଳ ।
ଗୟାର ତୀର୍ଥରେ ଯେ ବାସ୍ତରି ସସ୍ର ଘର
ଅନେକ ସ୍ତିରୀ ସେଥିରେ ହେଲେ ଯେ ସୁନ୍ଦର
ଶ୍ରୀରାମର ଶାପରେ ସମସ୍ତେ ଆଭୂଷଣ
ତଣ୍ଡାଳରୁ ହୀନ ଯେ ହୋଇଲେ ସେହୁ ପୁଣ ।
ଦେଖିଣ ସକଳ ବିପ୍ର ଆକୁଳ ମତି ହେଲେ
ଗଦାଧର ଦେବତାଙ୍କୁ ଯାଇଁ ପୂଜାକଲେ ।
ଗଦାଧର ଦେବତା ଯେ ହୋଇଲେ ପ୍ରସନ୍ନ
ବୋଇଲେ ଏ ତୀର୍ଥ ନାଶ କଲଟି ବ୍ରାହ୍ମଣ ।
ତ୍ରୈଲୋକ୍ୟରେ ନାଥ ଯେ ଅଟନ୍ତି ଶ୍ରୀରାମ
ପିତାର ସତ୍ୟପାଳି ବନକୁ ଆଗମନ ।
ଅସୁର ମାରିବା ପାଇଁ ହୋଇଛନ୍ତି ଜାତ
ଦେବତାଏ କୂଟକରି ଆଣିଲେ ବନସ୍ତ ।
ଗୟାତୀର୍ଥ ବୋଲିଣ ଯେ ଏ ସ୍ଥାନେ ଆସିଲେ
ଘରଣୀ ହସ୍ତରେ ପିତୃ ପିଣ୍ଡ ଯେ ଘେନିଲେ ।
ଭାଇ ତା'ର ଲକ୍ଷ୍ମଣ ଏଠାରେ ପିଣ୍ଡଦେଲା
ଦେବତାଏ ରତ୍ନବୃଷ୍ଟି ଏପୁରେ କଲାପରା ।
ଘରଣୀର ଆଚାର୍ଯ୍ୟ ପୁଲକି ହୋଇଥିଲେ
ପିତୃଲୋକ ତାହାଙ୍କୁ ଯେ ଅଳଙ୍କାର ଦେଲେ ।
ସେ କଥାକୁ ଶ୍ରୀରାମ ଯେ ଜାଣିଲେ ତାଠାରୁ
ପୁଲକିକି ପଚରନ୍ତେ ଗୁପତ କଲା ଦୂରୁ ।
ଜାଣିଣ ଶ୍ରୀରାମ ଯେ ତାହାଙ୍କୁ ଶାପଦେଲେ
ଅଳଙ୍କାର ଫଳ ହେଉ ବୋଲିଣ ବୋଇଲେ ।
ହୃଦୟ ଷଡ଼ମାସ ତୋହର ଚିରାହେବ
ଆର ଷଡ଼ମାସ ସେ ଯୁବାରେ ଦିନ ଯିବ ।

ବୁକୁ ବିଦାରିଲେ ଜଳ ହୋଇବ ବାହାର
ପୁଲକିକି ଏତେକହି ଗଲେ ରଘୁବୀର ।
ଯିବାରେ ଦେଖିଣ ଯେ ବିପ୍ରେ ତାଙ୍କୁ ଘୋଟି
ତାହାର ଘରଣୀକି ଧଇଲେ ଉଚ୍ଛୁଡ଼ି ।
ଦେଖିକରି ଶ୍ରୀରାମ ତାଙ୍କୁ ଶାପଦେଲେ
ଦରିଦ୍ର ହୁଏ ବୋଲି ଶ୍ରୀରାମ ବୋଇଲେ ।
ବୋଇଲେ ଏ ତୀର୍ଥରେ ଅଛନ୍ତି ଯେତେନାରୀ
ସମସ୍ତେ ଦୋଚରୀ ଯେ ହୁଅନ୍ତୁ ଅନ୍ୟଚରୀ ।
ଏତେକହି ମୋହନା ଶରକୁ ପେଶିଦେଲେ
ଶ୍ରୀରାମ କହିବାରୁ ପ୍ରାଣ ଯେ ପାଇଲେ ।
ଏ ବ୍ରାହ୍ମଣ ଶ୍ରୀରାମରେ ଦୋଷୀ ହେଲେ ପୁଣ
ତେଣୁ ସେ ବାସୁକୀ ହରିଲା ତାଙ୍କ ଧନ ।
ତାହାର ନାରୀକି ଏ ବିପ୍ରେ ଲୋଭକଲେ
ତେଣୁ ଯେ ଅଭୂଷଣ ଏ ପୁର ନାରୀ ହେଲେ ।
ଏ ବେନି ତୀର୍ଥକୁ କଲେ ଯେ ଅଘଟଣ
ତେଣୁ ଏ ତୀର୍ଥ ପତିତ ହୋଇଲା ତୁମେ ଜାଣ ।
ଶ୍ରୀରାମ ଶାପଦେଲେ ଏ ତୀର୍ଥେ ମଲେ ଜନ
ଗଧହୋଇ ଜାତହେବେ ନୋହିବେ ମୋକ୍ଷପୁଣ ।
ଏ ତୀର୍ଥରେ ବ୍ରାହ୍ମଣ ଯେ ଅଟନ୍ତି ଅଜ୍ଞାନ
ଯେଉଁରାମ ପାଇଁ ପୁଣି ଦେବେ ଦେଲେ ଧନ ।
ଯାର ସଙ୍ଗେ ପିତୃ ଦେବତାଏ କଥା ହେଲେ
ସେ କଥାକୁ ଏ ବିପ୍ରେ ହେତୁଟି ନ କଲେ ।
ଅର୍ଜିଲା ଫଳ ଏବେ ଭୁଞ୍ଜ ସର୍ବଜନ
ଆନ କରିବାକୁ ଯେ ନାହାନ୍ତି କେହିପୁଣ ।
ସେହି କ୍ରୋଧରେ ରାମ ତିନିଗାର କାଟି
ଏ ତୀର୍ଥକୁ କେବେ ମୁହିଁ ନ ଆସେ ଲେଉଟି ।
ଯେଉଁ ରାମ ନାମ ପଦଗୋଟି ଭଜନ୍ତି ଈଶ୍ୱର
ଯାହାର ଚରଣରେ ସେବେ ବେଦବର ।
ଯାହାକୁ ଦେବତାଏ ଭକତି ଭାବେ କହି
ଯାହାର ବୋଲେ ସପତ ପୁର ମହୀ ରହି ।
ଯେଉଁ ଦେବତା ସନ୍ଥୁକୁ ପାଳି ଦୁଷ୍ଟମାରିଲେ
ସେ ଦେବ ସଙ୍ଗେ ଲଗାନ୍ତି ଖେଳ ବଳେ ।
ଶୁଣିକରି ସମସ୍ତେ ହରଷ ମନ ହେଲେ
ବିପ୍ରଙ୍କୁ ଗାଳିଦେଇ ଯେ ଯାହା ପୁରେ ଗଲେ ।
ବାଣିଜ୍ୟ ବେପାର କରି ଦିନମାନ ନେଲେ
ଥୋଇଲା ଲାଭ ପଦାର୍ଥ ବାସୁକୀ ହରେ ତକ୍ଷେ ।

ସେହିବିପ୍ରେ ଚଣ୍ଡାଳକୁ ମାଗି ନ୍ୟନ୍ତି ଦାନ
ଅତିହିଁ ଅନାଚାର ହେଲା ସେ ଭୁବନ ।
ଗଦାଧର ଦେବତା ଯେ କହିଲେ ବୁଝାଇ
ତେଣୁ ସେହି ପୁରଲୋକେ ରହିଲେ ଦୁଃଖସହି ।
ଏହିପ୍ରାୟେ ଗୟାତୀର୍ଥ କଥା ଅଟେ ପୁଣ
ଶୁଣିଲଟିକି ଗଉରୀ ଗୟାର ବିଧାନ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ଗୟାତୀର୍ଥ କଥା ମୁଁ ଯେ ଶୁଣିଲି ସମ୍ପୂର୍ଣ୍ଣ ।
ଗୟାକୁ ତେଜିଣ ଯେ ଶ୍ରୀରାମ ଚଳିଗଲେ
ବାରାଣସୀ ଗଙ୍ଗାକୂଳେ ଯାଇଣ ରହିଲେ ।
ସେଠାରୁ କିସ କଲେ କହ ମୋ ଆଗର
ଶୁଣିବାକୁ ସେକଥା ଶରଧା ମୋହର ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
କାଶୀ ଗଙ୍ଗାକୂଳେ ଯେ ରହିଲେ ଦାଶରଥି ।
ରଜନୀ ବଞ୍ଚିଣ ଆରଦିନ ପୁଣ ଗଲେ
ଗଙ୍ଗାରେ ସ୍ନାନ ସାରି ତର୍ପଣ ବିଧିକଲେ ।
ପୂଜାସାରି ତିଳକ ଲାଗି ଶ୍ରୀରାମ ହେଲେ
ତର୍ପଣ ସାରିଣ କୂଳରେ ପ୍ରବେଶ ହୋଇଲେ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଜାହ୍ନବୀ ଜାଣିଲେ ଯେ ଶ୍ରୀରାମ ବିଜେକରି ।
ସହସ୍ର ଦାସୀଙ୍କି ବୋଇଲେ ହୁଅ ତୁମ୍ଭେ ବେଶ
ତ୍ରୈଲୋକ୍ୟ ଠାକୁର ଯେ ବିଜେ ମୋର ପାଶ ।
ମୋହର ପ୍ରାଣ ଈଶ୍ୱର ସଂଗରେ ଅଛନ୍ତି
ତ୍ରୈଲୋକ୍ୟ ଠାକୁରାଣୀ କମଳା ଅଛନ୍ତି ।
ଅମୃତ ଯୋଗାଡ଼ ତୁମ୍ଭେ କର ବେଗେ ସଜ
ବନ୍ଦାପନା ବିଧିମାନ ବେଗେ କର ସଜ ।
ମଙ୍ଗଳ ଆଳତୀ ବେଗେ ସଜ କର
ଅଳଙ୍କାର ଶାଢ଼ୀ ସେ ଅଣାଅ ସତ୍ୱର ।
ଫୁଲ, ସିନ୍ଦୂର ଉଜ୍ଜ୍ୱଳ ଆଣ ବେଗ
ଶୁଣିଣ ଦାସୀମାନେ କଲେ ଉଦଯୋଗ ।
ଫୁଲ, ଚନ୍ଦନ, ଗନ୍ଧ, କଳା, ସିନ୍ଦୂର ଥୋଇ
ଅତୁଟ ଅମଳାଣ ଭଣ୍ଡାରୁ ଅଣାଇ ।
ଅତୁଟ ଅଳଙ୍କାର ଶୀତଳ ମାଳ ମାନ
ସୁବର୍ଣ୍ଣର ଗଙ୍ଗୁଡାରେ ସମ୍ପେଦେ ଯତନ ।
ସକଳ ଦାସୀମାନେ ବେଗେ ସଜ ହେଲେ
ଆୟ ଅଳଙ୍କାର ଫୁଲ ଚନ୍ଦନ ଲଗାଇଲେ ।

ଧବଳ ମୁଖୀ ଜାହ୍ନବୀକୁ କଲେକ ବେଶ ପୁଣ
ମସ୍ତକରେ ସିନ୍ଦୂର ଅୟନେ ଅଞ୍ଜନ ।
କେଶ ଶାମଳିଣ ଯୂଡ଼ା ବାନ୍ଧି ପୁଣି
ଝୁମ୍ପା ଝରାକାଠି ଯେ ଚଉଁରୀଭଣ୍ଡି ଜିଣି ।
ସେଥିପରେ ବେଢ଼ି ଯେ କୁସୁମମାଳ ଦେଲେ
ଅଳକା ମସ୍ତକରେ ନେଇଣ ଖଞ୍ଜିଲେ ।
ମସ୍ତକରେ ସିନ୍ଦୂର ନୟନେ ଅଞ୍ଜନ
ନାସାରେ ରତ୍ନଗୁଣା ବସଣୀ ନୋଥ ପୁଣ ।
ଗଳାରେ ଗୁପସରି ହୃଦୟରେ ପଦକ
ଶତେସରି ହେମମାଳି ଲମ୍ବେ ହୃଦୟେକ ।
କାପ ମଲ୍ଲକଢ଼ୀ ଯେ ଫାଶିଆ ଫେରିଫରା
ଶ୍ରବଣକୁ ଶୋଭା ଯେ ଦେବୀର ଦିଶେ ଦ୍ୱରା ।
କଟୀରେ କଟୀ ମେଖଳା ଚରଣେ ନୂପୁର
ପାହୁଡ଼ ଝୁଣ୍ଟିଆ ଯେ ଶବଦ କରେ ଘୋର ।
ଅଂଗୁଷ୍ଠିମାନଙ୍କରେ ରତ୍ନମୁଦୀ ସାଜେ
କଳାର କାଞ୍ଚଲା ଗୋଟି ପିନ୍ଧେ ଦେବୀ ଅଙ୍ଗେ ।
କଳାମେଘୀ ଶାଢ଼ୀ ଯେ ପିନ୍ଧିଲେ ବାଛିଣ
କଳାର ଖଣ୍ଡୁଆ ଯେ ଉପରେ ଉପରାଣ ।
ଧବଳ ଦେହଗୋଟି ଦିଶିଲା ସୁନ୍ଦର
ପାଦରେ ଅଳତା ଯେ ଦିଶେ ରଙ୍ଗସାର ।
ପାଦୁକା ଲଗାଇ ଦେବୀ ହୋଇଲେ ବାହାର
ବନ୍ଦାପନା ପୂଜାବିଧି ଦାସୀଙ୍କ ହସ୍ତର ।
କୂଳରେ ଧବଳାଙ୍ଗୀ ହେଲେ ପରବେଶ
ଦେଖିଲେ ରାମ ଲକ୍ଷ୍ମଣ ଜାନକୀ ସହିତ ।
କରଯୋଡ଼ି ଧବଳାଙ୍ଗୀ ସ୍ତୁତି ତହୁଁ କଲେ
ନିସ୍ତରିଲି ନିସ୍ତରିଲି ବୋଲିଣ ବୋଇଲେ ।
ଅନେକ କାଳରୁ ମୁଁ ପାଇଲି ଦରଶନ
କ୍ଷୟ ଗଲା ମୋହର ପାତକ ଅଂଗୁ ପୁଣ ।
ଦାସୀମାନେ ହୁଳହୁଳି ଦେଲେ ସେ ଠାବରେ
ଉତ୍ସବ ଯାତ୍ରା ପ୍ରାଏ ଶବଦ ନଦୀକୂଳେ ।
ଦେଖିଣ ଜାନକୀ ଯେ ରାମରେ ପଚାରି
ବହୁତ ନାରୀ ଆସି ଉତ୍ସବ ଯାତ୍ରାକରି ।
ଏଥିରେ ଅଭିପ୍ରାୟ କହ ନାଥ ମୋତେ
ଶ୍ରୀରାମ ବୋଇଲେ ତୁମ୍ଭେ ଦେଖଗୋ ପ୍ରତ୍ୟକ୍ଷେ ।
ଏହି ନଦୀ ଭିତରେ ଧବଳାଂଗୀ ଘର
ଆମ୍ଭର ଆସିବାର ଜାଣିଲା ନାରୀବର ।

ତେଣୁକରି ତୁମ୍ଭଙ୍କୁ ଶଙ୍ଖୋଳି ଆସଇ
ପୂର୍ବେ ସେହି ଈଶ୍ୱର ଘରଣୀ ଅଟଇ ।
ବଦଳ ସ୍ୱାମୀ ତାର ଅଛଇ ମୋ ସଙ୍ଗରେ ।
ଶୁଣିଣ ଜାନକୀ ଯେ କହିଲେ ହରଷରେ ।
ସେହି ଆସିବେ ମୁହିଁ ଯେ ଯିବିକି ପାଛୋଟି
ଶ୍ରୀରାମ ବୋଇଲେ ଯେ ସେ କଥା ନୋହେ ବାଛି ।
ଏକ ଅଙ୍ଗ ଗୋଟିକୁ କହିବା ଭିନ୍ନ ଭିନ୍ନ
ମୋତେ ମାନ୍ୟକରି ନ ଆସେ ସେହୁ ପୁଣ ।
ଜାନକୀ ବୋଇଲେ କି ମାନ୍ୟ ତାର ଅଛି
ଶ୍ରୀରାମ ବୋଇଲେ ବଡ଼ ଅଟଇଟି ମୁହିଁଟି ।
ଜାନକୀ ବୋଇଲେ ତେବେ ମୁଁ ଭଲ ଯିବାର
ଏତେ କହି ଜାନକୀ ଯେ ହୋଇଲେ ବାହାର ।
ଜାନକୀ ଯିବାର ଦେଖିଲା ଧବଳାଙ୍ଗୀ
ଦାସୀଙ୍କି ଘେନିଣ ସେ ଅଇଲାକ ବେଗି ।
ଜାନକୀଙ୍କ ଚରଣରେ ଓଳଗି ହୋଇଲା
କରଯୋଡ଼ି ଅନେକ ବଚନ କହିଲା ।
ଫୁଲମାଳ ନେଇଣ ଜାନକୀ ଶିରେ ଦେଲା
ଜୁଡ଼ାର ଉପରେ ଯେ ନେଇଣ ଖଞ୍ଜିଲା ।
କପୋଳରେ ଚନ୍ଦନ ପାଟି ଦେଲା ନେଇ
ମଧରେ ସିନ୍ଦୂରବିନ୍ଦୁକୁ ସ୍ଥାପି ତହିଁ ।
ନୟନରେ ଅତୁଟ ଅଞ୍ଜନ ନେଇ ଦେଲା
ଗଳାରେ ହେମାଳୀ ନେଇଣ ଲମ୍ବାଇଲା ।
କଳାମେଘୀ ପଟନୀ ବାଛିଣ ପିନ୍ଧାଇଲା
କଳା କାଞ୍ଚଲା ଗୋଟି ବକ୍ଷସ୍ଥଳେ ଦେଲା ।
କଳା ଖଣ୍ଡୁଆ ଯେ ପଟନୀ ପହୁରାଣ
ଚରଣରେ ଅଳତା ଲାଗି କଲା ପୁଣ ।
ବେଶକରି ଧବଳାଙ୍ଗୀ କଲା ବନ୍ଦାପନା
ଧବଳାଙ୍ଗୀ ବୋଇଲେ ମୋ ବୁଦ୍ଧି ନୋହେସିନା ।
ତୁମ୍ଭର ଦିଅରକୁ ଯେ କରିବି ବନ୍ଦାପନା
ସ୍ୱାମୀତ ମୋତେ ବଡ଼ ତେଣୁକରି ମନା ।
ଶୁଣିଣ ଜାନକୀ ଯେ ମନରେ ତୋଷ ହେଲେ
ଦାସୀଙ୍କି ଘେନିକରି ଶ୍ରୀରାମ ପାଶେ ଗଲେ ।
ବନ୍ଦାପନା କଲେ ସତୀ ଶ୍ରୀରାମ ଶିରେ ପୁଣ
ଧବଳ ଦୁଇବସ୍ତ୍ର ଦେଲେକ ବହନ ।
ହେମତନ୍ଦ୍ରମଣି ଗଳାରେ ସତୀ ଦେଲା
ଚରଣରେ ଯେ ବିନୋଇ ହୋଇଣ କହିଲା ।

ତୁମ୍ଭେ ଏବେ ଅପସର ଏ ସ୍ଥାନରୁ ପୁଣ
ଧବଳାଙ୍ଗୀ ଭେଟହେବେ ସାନୁଜକୁ ଜାଣ ।
ଶ୍ରୀରାମ ବୋଇଲେ ଆଗେ କହିଲି ମୁଁ ତୋତେ
ସେକଥା ସତ୍ୟହେଲା ଦେଖିଲୁ ପ୍ରତ୍ୟକ୍ଷେ ।
ଏତେ କହିଣ ଶ୍ରୀରାମ ଅପସରି ଗଲେ
ଶ୍ରୀରାମ ଯିବାରୁ ଧବଳାଙ୍ଗୀ ଯେ ଅଇଲେ ।
ସଉମିତ୍ରୀ ଆଗରେ ପ୍ରବେଶ ଯାଇ ହେଲେ
ଚରଣେ ବିନତି ହୋଇ ଯାଇଣ ଶୋଇଲେ ।
କଳାବର୍ଣ୍ଣ ପଟନୀ ଦୁଇଗୋଟି ଆଣି
ଦାସୀଙ୍କି ବୋଇଲେ ପିନ୍ଧାଅ ପଟନୀ ।
ଶୁଣିଣ ଦାସୀମାନେ ପଟନୀ ପିନ୍ଧାଇଲେ
ହୁଳହୁଳି ଦେଇଣ ଉତ୍ସବ କରାଇଲେ ।
ଧବଳାଙ୍ଗୀ ଚନ୍ଦନ ଦେଲା ସ୍ୱାମୀଶିରେ
ମାଳାଦେଲା ନେଇ ଯେ ସ୍ୱାମୀର ଗଳାରେ ।
ବନ୍ଦାପନା ପୂଜାବିଧି ହରଷରେ କଲା
ତିନିବେଳ ପରିଯନ୍ତେ ଚରଣେ ଓଳଗିଲା ।
ଜାନକୀ ବୋଇଲେ ଶୁଣ ହେ ସଉମିତ୍ରୀ
ପୂର୍ବରେ ଧବଳାଙ୍ଗୀ ତୋହର ଯୁବତୀ ।
ଈଶ୍ୱର ଅଙ୍ଗ ସିନା ତୋର ଅଂଶେ ହୋଇ
ଏକଅଙ୍ଗ ଗୋଟି ଯେ ବେନିଭାଗ ତୁମ୍ଭେ ଦୁଇ
ଶୁଣିକରି ସଉମିତ୍ରୀ ହରଷ ହୋଇଲେ
ଜାହ୍ନବୀକୁ ନେଇଣ କୋଳରେ ବସାଇଲେ ।
ବୋଇଲେ ଦୁଃଖ ମନରେ ନ କର ସଉଭାଗୀ
ତୋରଅଙ୍ଗ ଗୋଟି ସିନା ଉର୍ମିଳାହୋଇଜନ୍ମି ।
ବନବାସ କରିବାକୁ ଅଇଲି ପ୍ରଭୁ ସଙ୍ଗେ
ନପୁଂସକ ଲକ୍ଷ୍ମଣ ବହିଅଛି ଅଙ୍ଗେ ।
ତୋର ଅଙ୍ଗ ନପୁଂସକୁ ହୋଇଣ ଅଛି ରହି
ସେକଥା କି ଗୋଚର ତୋତେ ଏବେ ନାହିଁ ।
ଜାହ୍ନବୀ ବୋଇଲେ ସ୍ୱାମୀ ଏକଥା ଉଚିତ
ସୁରତିରେ ମୋର ନାହିଁ ହେ ପ୍ରାଣନାଥ ।
ଠାକୁରାଣୀ ଠାକୁରତ ଅଛନ୍ତି ସଙ୍ଗରେ
ସେକଥା ଅଭୂଷଣ ଅଟଇ ମୋହରେ ।
ଶୁଣିକରି ସଉମିତ୍ରୀ ମୁଖରେ ଚୁମ୍ବଦେଲେ
ଚୁମ୍ବନ ଦେବାରୁ ଧବଳାଙ୍ଗୀ ତୋଷ ହେଲେ ।
କୁଚ ଆଲିଙ୍ଗନ କରି ବୋଇଲେ ଏବେ ଯାଅ
ପ୍ରଭୁ ମୋରସଙ୍ଗେ ଥିଲେ ମୋ ସଙ୍ଗେଭେଟ ନୁହଁ ।

ଶୁଣିକରି ଜାହ୍ନବୀ ଉଠିଲେ ବହନ
ଓଳଗ ମେଲାଇଣ ଚରଣେ ନମେ ପୁଣ ।
ସ୍ୱାମୀ ମେଲାଣି ମାଗି ସ୍ୱାମୀପୁରେ ଗଲା
ଜାନକୀ ଚରଣେ ଯାଇଁ ମାନ୍ୟଧର୍ମ କଲା ।
ଜାନକୀକି ମେଲାଣି ମାଗି ଧବଳାଙ୍ଗୀ
ନଦୀର ଭିତରେ ଯେ ପଶିଲା ଯାଇଁ ବେଗି ।
ଦାସୀଗଣମାନେ ଯେ ସଙ୍ଗତରେ ଗଲେ
ଧବଳାଙ୍ଗୀ ନିଜପୁରେ ପ୍ରବେଶ ହୋଇଲେ ।
ଶ୍ରୀରାମ ଯେ ଅପସରି ଯାଇଥିଲେ ପୁଣ
ଧବଳାଙ୍ଗୀ ଯିବାରୁ ଯେ ମେଳହେଲେ ପୁଣ ।
ପାର୍ବତୀ ବୋଇଲେ ନାଥ ସେଠାରୁ ହେଲାକିସ
ତୁମ୍ଭଙ୍କୁ ବୁଝାଇ ମୋର ଶୁଣିବାକୁ ଆଶ ।
ଈଶ୍ୱର ବୋଇଲେ ଏବେ ଶୁଣ ସେହି କଥା
ଠିକେ ଠିକେ କହି ଦେବା ତୁମ୍ଭଙ୍କୁ ସେ ଗାଥା ।
ଶ୍ରୀରାମ ଲକ୍ଷ୍ମଣ ଯେ ସୀତା ତିନିଜଣ
ଗଙ୍ଗାର କୂଳରୁ ସେ କଲେକ ଗମନ ।
ମଣିକର୍ଣ୍ଣିକା କୂଳରେ ପ୍ରବେଶ ଯାଇହେଲେ
ସେଠାରେ ରହିଣ ଯେ ସ୍ନାନ ବିଧି କଲେ ।
ସନ୍ଧ୍ୟାତର୍ପଣ ଯେ ସାରିଲେ ବେନି ଭାଇ
ପୂଜାବିଧି ତର୍ପଣ ତିଳକ କଲେ ରହି ।
ଜାଣି ମଣିକର୍ଣ୍ଣିକା ବେଗ ବେଶ ହେଲା
ଦାସୀଙ୍କି ଘେନିଣ ଯେ ବାହାର ହୋଇଲା ।
ଶୀତଳ ସାମଗ୍ରୀ ଯେ ଝଙ୍ଗଡ଼ାରେ ଭରି
ଜଳରୁ ବାହାରିଣ କୂଳରେ ହୁଏ ନାରୀ ।
ତିନିଜଣଙ୍କୁ ଦେଖିଣ ହରଷ ମନ ହେଲା
ଜାନକୀ ଚରଣରେ ଯାଇଣ ନମିଲା ।
ଶ୍ରୀରାମଙ୍କୁ ସ୍ତୁତି ଯେ କରିଣ ବିନତି
ଲକ୍ଷ୍ମଣ ଆଗରେ ମିଳିଲା ଯାଇ ସତୀ ।
ସ୍ୱାମୀର ଅଂଶ ବୋଲି ବନ୍ଦାପନା କଲା
ଚରଣେ ଭକତି କରି ବିନୋଇ ହୋଇଲା ।
ମେଲାଣି ମାଗିଣ ଯେ ସେଠାରୁ ଗଲେ ଚଳି
ବଇଦେହୀ ଆଗରେ ଯାଇଣ ବେଗେ ମିଳି ।
କରଯୋଡ଼ି ମଣିକର୍ଣ୍ଣିକା କହଇ ବଚନ
ଶୀତଳ ସାମଗ୍ରୀ ଯେ ମଣୋହି କର ପୁଣ ।
ଶୁଣିକରି ଜାନକୀ ସନ୍ତୋଷ ହୋଇଲେ
ଶ୍ରୀରାମ ଲକ୍ଷ୍ମଣଙ୍କୁ ନେଇ ସମର୍ପିଲେ ।
ବେନିଭାଇ ଭୋଜନ କଲେକ ସେହୁ ଦ୍ରବ୍ୟ
ଭୁଞ୍ଜିକରି ହରଷ ହେଲେ ରାମରାଜ ।
ଜାନକୀ ସେଠାରେ ଯେ କଲେକ ଭୋଜନ
ଆଞ୍ଚୋବନ ସାରିଣ ହରଷ କଲେ ମନ ।
ମଣିକର୍ଣ୍ଣିକା ଲକ୍ଷ୍ମଣ ଉଚ୍ଛିଷ୍ଟ ଘେନି ଗଲେ
ଦାସୀଗଣ ଘେନିଣ ସନ୍ତୋଷେ ଭୁଞ୍ଜିଲେ ।
ମେଲାଣି ହୋଇଣ ଯେ ଗଲେ ଧାତିକାରେ
ଜାନକୀ କୋଳକଲେ ମଣିକର୍ଣ୍ଣିକାରେ ।
ମଣିକର୍ଣ୍ଣିକା ହରଷେ ନିଜପୁର ଗଲା
ଜଳରେ ପଶିବାରୁ ଅନ୍ତର ହୋଇଲା ।
ସେଠାରୁ ତିନିଜଣ ବେଗେ ଚଳିଗଲେ
କାଶୀକ୍ଷେତ୍ର ସୀମାନ୍ତରେ ପ୍ରବେଶ ହୋଇଲେ ।
ସିଦ୍ଧମନ୍ତ୍ରଗୋଟି ଯେ ଶ୍ରୀରାମ ତହିଁ ଭଜି
ବିଶ୍ୱନାଥ ପ୍ରସନ୍ନ ଶ୍ରୀରାମରେ ମଜ୍ଜି ।
ସେ କ୍ଷେତ୍ରେ ସର୍ବସ୍ଥାନ ପବିତ୍ର ପୁଣ କଲେ
ସେଠାରେ ତିନିଜଣ ବେଗେ ଚଳିଗଲେ ।
ବିଶ୍ୱନାଥ ଦରଶନ କଲେ ଯାଇଁ ପୁଣ
ଦେଖି ବିଶ୍ୱନାଥ ସ୍ୱରୂପ ହେଲେ ଜାଣ ।
ଶ୍ରୀରାମ ସଙ୍ଗତେ ଅନେକ କଥାହେଲେ
ମେଲାଣି ହୋଇଣ ସେଠାରୁ ଚଳିଗଲେ ।
କାଶୀକ୍ଷେତ୍ର ବନଭାଗେ ରହିଲେ ପାଞ୍ଚଦିନ
ସେଠାରେ ଶ୍ରୀରାମଙ୍କୁ ପଚାରେ ସୀତା ପୁଣ ।
ବାରାଣସୀ କ୍ଷେତ୍ରକଥା କହ ମୋତେ ଦେବ
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ପ୍ରିୟାଭାବ ।
ସବୁଦିନେ ଈଶ୍ୱରଙ୍କ ସ୍ଥାନ ଅଟେ ଏହି
ସେଥିରେ ଯେହୁ ମରେ କ୍ଷୟ ସେ ନୁହଇ ।
ଜୀବନ୍ତେ ସୁଖପାନ୍ତି ମରଣେ ହୁଏ ଲିଙ୍ଗ
ଏକଥା ଗୋଟି ମୋତେ ଲାଗିଲା ବିଭଙ୍ଗ ।
ଶ୍ରୀରାମ ବୋଇଲେ ଯେତେବେଳେ ସେ ମରନ୍ତି
ବିଶ୍ୱନାଥ ଯାଇଁ ତାଙ୍କ କର୍ଣ୍ଣରେ କହନ୍ତି ।
ରାମତାରକ ମନ୍ତ୍ର କହନ୍ତେ ତାରକର୍ଣ୍ଣ
ତେଣୁ ସେ ଲିଙ୍ଗରୂପ ହୁଏ ସର୍ବ ଜାଣ ।
ନରବାନର ଯେତେ ଜୀବ ଏହି ପୁରେ
କେହି ଦୁଃଖୀ ନୁହନ୍ତି ହର ଗଉରୀ ସୁଦୟାରେ ।
ବାରାଣସୀ ତିନିପାଶ ଜାହ୍ନବୀ ଯେ ଘେରି
ପାତକ କ୍ଷୟ ଲୋକ ଏ ପୁରେ ଜନ୍ମ ହେରି ।

ଶୁଣିକରି ଜାନକୀ ହରଷ ମନ ହେଲେ
ପାଞ୍ଚଦିନ ରହିଣ ସେଠାରୁ ଚଳିଗଲେ ।
ଦାତା ବୈଦ୍ୟନାଥ ବଚନରେ ପରବେଶ
ଦେଖିଣ ବେଲବନ ଶ୍ରୀରାମ ହରଷ ।
ସେ ଲିଙ୍ଗଙ୍କୁ ତିନିଜଣ କଲେ ଦରଶନ
ସେହିଠାରେ ମାସେ ରହିଲେ ରାମରାଣ ।
ଜାନକୀ ବୋଇଲେ ଶୁଣ ହେ ଦାଶରଥି
ବୈଦ୍ୟନାଥ ଲିଙ୍ଗ ଯେ କେମନ୍ତେ ଏଥି ସ୍ଥିତି ।
ଶ୍ରୀରାମ ବୋଇଲେ ସଖୀ ଶୁଣ ସେହି କଥା
ବୈଦ୍ୟନାଥଙ୍କ ଆଶ୍ରମ ଧବଳଗିରି ଶିଖା ।
ଧବଳଗିରିରେ ବିଜୟ ଯେତେବେଳେ
ପରଶୁ ଦାଳଗୋଟି ହୋଇଲେ ଧବଳେ ।
ସେଠାରୁ ଦାତା ପଣ ବିଖ୍ୟାତ ତାଙ୍କର
ମର୍ତ୍ତ୍ୟପୁରେ ଜିଣିଲେ ସକଳ ଯେ ନର ।
ବୈଦ୍ୟନାଥ ଲିଙ୍ଗଙ୍କୁ ପ୍ରାର୍ଥନା ଯେହୁ କରେ
ସେ ଦୟାକଲେ ଦାରିଦ୍ର୍ୟପଣ ହରେ ତାରେ ।
ଏମନ୍ତେ ଦେବତା ଯେ ଅସୁର ଜାଣିଲେ
ଲଙ୍କାର ଅସୁର ଯେ ଦଶଗ୍ରୀବ ଭଲେ ।
ଶୁଣିଣ ଏଠାରେ ଯେ ହେଲେ ପରବେଶ
ଲଙ୍କାକୁ ନେବାକୁ ଲିଙ୍ଗ ସେହି ଉପାଡ଼େତ ।
ମସ୍ତକରେ ଧରିଣ ଯାଆନ୍ତେ ଅସୁର
ମଳମୂତ୍ର ପ୍ରବେଶ ଯେ ତାହାର ହୃଦର ।
ଏହାଙ୍କୁ ରଖି ସେଠାରେ ମଳମୂତ୍ର କଲା
ଶଉଚ ହୋଇଣ ଆସି ଲିଙ୍ଗକୁ ଧଇଲା ।
ପାତାଳକୁ ଶରୀର ମେଲିଲେ ବୈଦ୍ୟନାଥ
ଉପାଡ଼ି ନ ପାରି ଦୈତ୍ୟ ଗଲା ଯେ ତୁରିତ ।
ସେହିଦିନୁ ଏ ସ୍ଥାନରେ ଏ ଲିଙ୍ଗ ରହିଲେ
ଦାତା ବୈଦ୍ୟନାଥ ସେହିଦିନୁ ବୋଲାଇଲେ ।
ଶୁଣିକରି ଜାନକୀ ମନରେ ତୋଷ ହେଲେ
ତିନିଜଣ ସେଠାରୁ ଚଳିଣ ବେଗେ ଗଲେ ।
ବଦରି ଆଶ୍ରମରେ ହେଲେ ପରବେଶ
ଅନେକ ଋଷି ସେଠାରେ ଦେଖିଲେ ବିଶ୍ୱାସ ।
ଯୋଗଲୟ କରିଣ ବସିଛନ୍ତି ମୁନି
ଦେଖିକରି ନମସ୍କାର କରେ ତାଙ୍କୁ ପୁଣି ।
ବଦରିନାରାୟଣ ଯାଇଣ ଦେଖିଲେ
ଭେଟି ମେଲାଇଣ ଦରଶନ କଲେ ।
ସେ ତୀର୍ଥରେ ପକ୍ଷେକ ରହିଲେ ଋଷି ସଙ୍ଗେ
ଜାନକୀ ବୋଲୁଛନ୍ତି ଶ୍ରୀରାମଙ୍କ ଆଗେ ।
ଏ ସ୍ଥାନର ନାମ ଯେ ଅଟଇ ପୁଣ କିସ
ସେ କଥା ମୋର ଆଗେ କରହେ ପ୍ରକାଶ ।
ଜାନକୀଙ୍କର ବଚନେ ଶ୍ରୀରାମଚନ୍ଦ୍ର କହି
ଏ ପୁର ଯେତେବେଳେ ବିଧାତା ସଞ୍ଚରଇ ।
ତେତେବେଳେ ନାରାୟଣ ଏଠାରେ ଆଦିଶକ୍ତି
ଆଶ୍ରମ ନାରାୟଣ ସମସ୍ତେ ଜାଣନ୍ତି ।
ଷଡ଼ମାସ ନରବାନର ଅସୁରଙ୍କର ଧ୍ୱଂସ
ଷଡ଼ମାସ ସକଳ ଦେବତା ନିବାସ ।
ଖେଳରସ କଉତୁକ ଏଠାରେ ହୁଏ ପୁଣି
ନୃତ୍ୟରସ ଗୀତେ ତୋଷ ନାରାୟଣି ।
ତେଣୁକରି ବଦରୀ ଆଶ୍ରମ ଏହାକୁ କହି
ଏ ସ୍ଥାନ ମର୍ତ୍ତ୍ୟପୁରେ ବୈକୁଣ୍ଠ ଅଟଇ ।
ଏ ସ୍ଥାନରେ ତପକଲେ ବ୍ରହ୍ମଲୋକଯାଇ
ସିଦ୍ଧସ୍ଥାନ ବୋଲି ଏହା ସକଳେ କହଇ ।
ସବୁସ୍ଥାନରୁ ଏ ସ୍ଥାନ ପୁଣ ଅଟଇ ସାର
ଶୁଣିଣ ଜାନକୀ ଯେ ମନ କଲେ ସ୍ଥିର ।
ସେଠାରୁ ତିନିଜଣ ହରଷେ ଚଳିଗଲେ
ନିତ୍ୟସ୍ଥଳ ବୃନ୍ଦାବନେ ପ୍ରବେଶ ହୋଇଲେ ।
ଏକୋଇଶ ଜଣ ଯେ ସେ ସ୍ଥାନର ଆୟତନ
ସେଥିରେ ଭ୍ରମଣ ଯେ କଲେ ତିନିଜଣ ।
ନିର୍ମଳ ସ୍ଥାନ ଦେଖି ରହିଲେ ଷଡ଼ମାସ
ଜାନକୀ ସଙ୍ଗେ ଲୀଳା ଶ୍ରୀରାମ ବିଶେଷ ।
ଏକଦିନେ ଜାନକୀ ଶ୍ରୀରାମରେ ପୁଚ୍ଛିଲେ
ଏସ୍ଥାନ ଅଯୋଧ୍ୟାକୁ ବଳିଲା ବୋଇଲେ ।
ରାତ୍ରରେ ମୋହର ଶୃଂଗାରରେ ବଡ଼ମନ
ଏ ସ୍ଥାନ ସରସ କିମ୍ବା ଅଟେ କହ ପୁଣ ।
ଏ ସ୍ଥାନର ମହିମା କହ ଫେଡ଼ିକରି
ମୋର ମନ ତୋଷ ହେବ କହିଲେ ଚାପଧାରୀ ।
ଶ୍ରୀରାମ ବୋଇଲେ ସତୀ ମନଦେଇ ଶୁଣ
ଏ ସ୍ଥାନ ଗୋଟିର ଯେ ଅଟଇ ନିର୍ମାଣ ।
ଗୋଲକନାଥର ଏ ଅଟେ ନିତ୍ୟସ୍ଥଳୀ
ହରଷେ ଭୁବନେ ଯେ ସରସେ ବିହରି ।
ଦ୍ୱାପରେ ନାରାୟଣ ଏଥିରେ ଲୀଳାପୁଣ
ପରକାଶ ଏ ସ୍ଥାନରୁ ପ୍ରକାଶ ହେବ ଜାଣ ।

ଏଥିରେ ଶ୍ରୀକୃଷ୍ଣ ଯେ ରାଧିକା ଠାକୁରାଣୀ
ଅଯୋନି ସମ୍ଭୂତରେ ଏ ପୁରେ ଜନ୍ମ ପୁଣି ।
ଷୋଳସସ୍ର ଗୋପାଳୁଣୀ ଘେନି ଲୀଳା ଭାବ
ରାଧା କୃଷ୍ଣ ଦୁହିଁଙ୍କର ହୋଇବ ଉତ୍ସବ ।
ଦ୍ୱାପର ଯୁଗକୁ ଯେ ଏପୁର ଅଟେ ସାର
ଏ ପୁରକୁ ବଇକୁଣ୍ଠ ସମାନ ନିରନ୍ତର ।
ତେଣୁକରି ଏ ଭୁବନ ବୃନ୍ଦାବନ ନାମ
ଏ ବନର ବୃକ୍ଷମାନେ ଦେବତା ଅଟେ ପୁଣ ।
ଶୁଣିଣ ବଇଦେହୀ ପରମ ତୋଷ ହେଲେ
ସେଠାରୁ ତିନିଜଣ ହରଷେ ଚଳିଗଲେ ।
ଏ ପୁର ସାର ଅଟେ ମନେ ବିଚାରିଲେ
କାଉଁରୀ କାମାକ୍ଷା ଦେଶରେ ମିଳିଲେ ।
କାମଚଣ୍ଡୀ ଦେବୀଙ୍କି ଦେଖିଣ ସେ ଯେ ପୁଣ
ମନରୁଚକ ଯେ ସ୍ଥାନ ନୁହେ ବୋଲିଣ ।
ତିନିଜଣ ସେଠାରୁ ବେଗେ ଚଳି ଗଲେ
ଗଙ୍ଗା ସାଗର ନିକଟେ ଯାଇଁଣ ମିଳିଲେ ।
କପିଳ ଋଷିଙ୍କି ଯେ କଲେ ଦରଶନ
ମାନ୍ୟ ଧର୍ମ କରିଣ ରହିଲେ ଦଶଦିନ ।
ସେଠାରୁ ତିନିଜଣ କଲେକ ଗମନ
ସମୁଦ୍ର କୂଳେ ପ୍ରବେଶ ହୋଇଲେ ପୁଣ ।
ସମୁଦ୍ର ତୀରରେ ଗମନ କରିଗଲେ
ସୁବର୍ଣ୍ଣରେଖା ନଦୀ କୂଳରେ ମିଳିଲେ ।
ଜାନକୀ ପଚାରିଲେ ଏ ନଦୀ ନାମ କିସ
ଏ କଥାକୁ ମୋର ଆଗେ କରହେ ପ୍ରକାଶ ।
ଶ୍ରୀରାମ ବୋଇଲେ ସେ ସୁବର୍ଣ୍ଣ ରେଖା ନଦୀ
କନକ ଗିରିରୁ ନଦୀ ଆସୁଅଛି ଭେଦି ।
ତେଣୁ ସେ ସୁବର୍ଣ୍ଣରେଖା ନଦୀ ବୋଲାଇଲା
ଜାହ୍ନବୀ ସଙ୍ଗତରେ ଏ ଯେ ଲେଖା ହେଲା ।
ବଇଦେହୀ ସେ କଥାକୁ କର୍ଣ୍ଣରେ ଶୁଣିଲେ
ସେଠାରୁ ତିନିଜଣ ବେଗେ ଚଳିଗଲେ ।
ବୈତରଣୀ କୂଳରେ ହେଲେ ପରବେଶ
ବିରଜା ମଣ୍ଡଳକୁ ଦେଖିଣ ହରଷ ।
ସେ ସ୍ଥାନକୁ ସ୍ୱର୍ଗର ଶୁଭୁଛି ନିତ୍ୟଧ୍ୱନି
ଗହଳରେ ସେ ପୁର ଶୋଭା ପାଏ ପୁଣି ।
ନବରେ ନ ଯାଇ ରାମ କହିଲେ ନଦୀକୂଳେ
ବେନି ମାସ ସେଠାରେ ରହିଲେ ସୁଖରେ ।

ବିରଜା ମଣ୍ଡଳକୁ ଭ୍ରମଣ କରି ଦେଖି
ବିଧାତା ଶୁଭ ଖମ୍ଭ ଦେଖିଣ ହେଲେ ତୋଷି
ବିରଜା ଦେବୀଙ୍କି ଯେ ଦେଖି ଚଳିଗଲେ
ଦେବସଭା ଦେଖିଣ ହରଷ ମନ କଲେ ।
କଦମ୍ବାସୁର ଦେଖିଣ ଲିଙ୍ଗେ ପୂଜାକଲେ
ଜୀବନ୍ୟାସ କରିଣ କଦମ୍ବ ଫୁଲ ଦେଲେ ।
ତେଣୁ ସେ ଲିଙ୍ଗନାମ କଦମ୍ବେଶ୍ୱର ହୋଇ
ସେ ଲିଙ୍ଗକୁ ନମସ୍କାର କଲେ ରଘୁସାଇଁ ।
ସେଠାରୁ ତିନିଜଣ ଗଲେ ଯେ ଚଳିଣ
ପଶ୍ଚିମ ଭାଗ ବନରେ ମିଳିଲେ ଯାଇଁ ପୁଣ ।
ସେ ବନରେ ମଢ଼ିଆ କରିଣ ରହିଲେ
କନ୍ଦମୂଳ ଫଳଖାଇ ଦିନ ସେ ବଞ୍ଚିଲେ ।
ସେ ବିରଜା ମଣ୍ଡଳ ଦେଖିଲେ ରାମ ପଣ
ସେ ସ୍ଥାନର ପ୍ରମାଣ ଗଉରୀ ଏବେ ଶୁଣ ।
ବିରଜା ମଣ୍ଡଳରେ ବତିଶ ସସ୍ର ଘର
ହାଟୁଆ ବାଟୁଆ ଯେ ଅଛନ୍ତି ଅପାର ।
ବେପାରୀ ବଣିଜାରୀ କୃଷିକାରୀମାନେ
ଦଶସସ୍ର ଘର ଯେ ସେଥିରେ ବ୍ରାହ୍ମଣେ ।
ସେ ବନରେ ବୈତରଣୀ ଦାନ ଦ୍ୟନ୍ତ ପୁଣ
ତଦ୍ଧ ବୈତରଣୀରୁ ପଦ୍ମ ମୁକ୍ତ ଲାଭଣ ।
ଶ୍ରୀରାମ ପାଶେ ପ୍ରବେଶ ହୋଇଲେ ବ୍ରାହ୍ମଣ
ଦେଖିଣ ଶ୍ରୀରାମ ତାଙ୍କୁ ସନ୍ତୋଷ ହୋଇଣ ।
ବିଚାରିଲେ ରାଜ ପୁତ୍ର ପରାୟ ଏ ଦିଶେ
ବ୍ରହ୍ମଚାରୀ ରୂପ ଗୋଟି ଧରିଛି କି ଉଦ୍ଦେଶ୍ୟେ ।
ଘରଣୀ ଏହାର ତ କମଳା ପ୍ରାଏ ଶୋଭା
ଦେଖିଲେ ମୁନିମାନେ ହୋଇବେ ଯାକୁ ଲୋଭା ।
ଭାଇ ଯାର ଧବଳ ରୂପ ଗୋଟି ସାର
ଧନୁ ଦୁଇଗୋଟି ଦିଶୁଛି ତେଜ ଆକାର ।
ଦେବତା ଦେବୀ ପ୍ରାୟ ଦିଶନ୍ତି ତିନିଜଣ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ବିଜେ କି କଲେ ପୁଣ ।
ପୂର୍ବରୁ ଜଣାଥିଲା ଜନମ ହେବେ ହରି
ମାନବ ଅବତାରେ ଅସୁରଙ୍କୁ ମାରି ।
କେଉଁ ବ୍ରହ୍ମଚାରୀ ଏ ନଗଲା କିଛିଜଣା
ପଚାରିଲେ କ୍ରୋଧ ହେବେ ବୁଦ୍ଧି ହେବ ବଣା ।
ଏମନ୍ତ ବିଚାରି ବିପ୍ରେ ସେଠାରୁ ଉଠିଲେ
ବୀରଜା ଦେବୀଙ୍କଠାରେ ପ୍ରବେଶଯାଇଁ ହେଲେ ।

ଅନେକ ସ୍ତୁତି ସେ କଲେକ ଦେବୀଙ୍କି
ପ୍ରସନ୍ନ ହୋଇଣ ଦେବୀ ବୋଇଲେ ତାଙ୍କୁ ନିକି
କିମ୍ପାଇ ବିପ୍ରମାନେ ମୋଠାରେ କର ଅଳି
ଯେଉଁ ତିନିଜଣଙ୍କୁ ଦେଖିଲ ତୁମ୍ଭେ ମିଳି ।
ସେହି ତିନିଜଣ ଅଟେ ସୃଷ୍ଟିର କରତା
ଦୁଷ୍ଟଙ୍କୁ ମାରିବାକୁ ମାନବ ରୂପେ ଯାତ୍ରା ।
ପିତା ସତ୍ୟ ପାଳିବାକୁ ଆସିଛନ୍ତି ବନ
ଅସୁର ମାରି ଦୁଷ୍ଟ କରିବେ ନିବାରଣ ।
ସେଥିରେ ସକାଶେ ବାସୁଦେବ ଜାତ ହୋଇ
ଦଶରଥ କୁମର ସେ ଶ୍ରୀରାମ ଅଟଇ ।
ତାହାର ସଙ୍ଗେ ତୁମ୍ଭେ ନୁହ ଖଳ ବଳ
ତାହାଙ୍କୁ ଦର୍ଶନ କଲେ ହେବ ପାପ ଦୂର ।
ଯେଉଁ ନାରୀ ଯେ ତାଙ୍କ ସଙ୍ଗେ ଅଛି
ବାସୁଦେବ ଘରଣୀ ସେ କମଳା ଅଟଇଟି ।
ଯେଉଁ ଧବଳ ମୁରତି ସାନୁଜ ତାଙ୍କ ଭାଇ
ସେହି ମୋହର ସ୍ୱାମୀ ସବୁଦିନେ ଯେ ଅଟଇ ।
ସାକ୍ଷାତେ ଈଶ୍ୱର ସେ ଯେ ଅଟନ୍ତି ତୁମ୍ଭେଜାଣ
ଏଠାରେ ଗୁପତରେ ପ୍ରବେଶ ହେଲେ ପୁଣ ।
ମୋର ସଙ୍ଗେ ଦେଖାହୋଇ ଫେରି ଏଥୁ ଗଲେ
ପୂର୍ବରୁ ପାତକ ଥିବାରୁ କିଛି ନ କହିଲେ ।
ବୋଦା, ଛାଗଳ ଯେ ପୋତୁଅ ଆହାର
ରକତ ମାଂସ ଖାଇଲେ ଚଉ ମୋର ସ୍ଥିର ।
ଏକ ଧନିକରେ ଯେ ଚଣ୍ଡାଳ ହୀନ ଜାତି
ଶୂକର ଗୋଟିଏ ମାର ରକ୍ତ ସେ ଦଅନ୍ତ ।
ସେଥିର ସକାଶ ମୋତେ କଲେ ଯେ ଅସାର
ବୋଇଲେ ଆର ଅଙ୍ଗେ ପାତକ ଅଛି ଘୋର ।
ତୁମ୍ଭେମାନେ ଯାଇଣ ତାଙ୍କୁ ବୋଧକର
ଧର୍ମ ବାଟ ଦେଖାଇଣ ବୈତରଣୀ ଶ୍ରାଦ୍ଧକର ।
ସେ ବୋଲିବେ ଆମ୍ଭ ହସ୍ତେ ଧନ ନାହିଁ ପୁଣ
ତୁମ୍ଭେ ତାଙ୍କୁ ବୋଲିବ ବିରଜା ଦେଲେ ଧନ ।
ଧନ ଦେଇ ଆମ୍ଭଙ୍କୁ ପେଶିଲେ ତୁମ୍ଭ ପାଶ
ପିତାଙ୍କୁ ବୈତରଣୀ ଶ୍ରାଦ୍ଧ ଦେବ ତୁମ୍ଭେ ଆସ ।
ଶୁଣିକରି ଦ୍ୱିଜବର ବେଗେ ଚଳିଗଲେ
ଶ୍ରୀରାମଙ୍କ ଛାମୁରେ ପ୍ରବେଶ ହୋଇଲେ ।
ବୋଇଲେ ଏ ସ୍ଥାନ ଯେ କଠୋର ଅଟେ ପୁଣ
ତପତ ବୈତରଣୀ ନଦୀଟି ଏହି ଜାଣ ।
ଏହି ସ୍ଥାନେ ପିଣ୍ଡଦେଲେ ପିତୃଙ୍କୁ ନାହିଁ ଦଣ୍ଡ
ବୈତରଣୀ ଦାନ ତୁମ୍ଭେ ଦିଅହେ ରାମଚନ୍ଦ୍ର ।
ନଦେଇ ଫେରିଗଲେ ହୋଇବ ପାତକ
ତପତ ପାଣିରେ ପିତୃ ପାଇବେ ଚୋର ଦୁଃଖ ।
ରାମଚନ୍ଦ୍ର ବୋଇଲେ ମୋଠାରେ ଧନ ନାହିଁ
ବନରେ ବୁଲିବାକୁ ଆସିଅଛି ମୁହିଁ ।
ଦ୍ୱିଜବର ବୋଇଲେ ଶୁଣ ହେ ଶ୍ରୀରାମ
ବିରଜା ଦେବୀ ଆମ୍ଭଙ୍କୁ ଦେଲେ ଯେଉଁଧନ ।
ବୋଇଲେ ଶ୍ରୀରାମଙ୍କର ଦକ୍ଷିଣା ଅଟଇ
ବୈତରଣୀ ଶ୍ରୀରାମଙ୍କୁ କରାଅ ତୁମ୍ଭେ ଯାଇ ।
ଶୁଣିକରି ଶ୍ରୀରାମ ହରଷ ହୋଇଲେ
ବ୍ରାହ୍ମଣଙ୍କ ସଙ୍ଗେ ଯାଇ ବୈତରଣୀ କଲେ ।
ଦ୍ୱିଜବର ବୋଇଲେ ସରିଲା ବୈତରଣୀ
ତୁମ୍ଭର ପିତୃଲୋକେ ସମସ୍ତେ ମୋକ୍ଷ ଜାଣି ।
କଥାଏ ମାଗିବୁ କେବଳ ଦେଇ ଯିବ
ଆମ୍ଭଦେବୀ ପାତକ ହରଣ କରିବ ।
ପାତକ ହରଣ କରିବ ବୋଇଲେ ଦାଶରଥି
ଆମ୍ଭଠାରେ ଯେବେ ଭେଟ ହୋଇଯିବ ସତୀ ।
ଏତେକହି ବସ୍ତ୍ରାମୁଦି ବିପ୍ରଙ୍କ ହସ୍ତେ ଦେଲେ
ସେ ମୁଦିକି ଘେନି ବିପ୍ରେ ସେଠାରୁ ଚଳିଗଲେ ।
ବିରଜାଙ୍କ ଆଗରେ ଯାଇଣ ମିଳିଲେ
ସମସ୍ତ ବୃତ୍ତାନ୍ତ ଆଗେ ପୁଣ ଜଣାଇଲେ ।
ବସ୍ତ୍ରାମୁଦି ବିରଜାଙ୍କୁ ଦେଲେ ନେଇ ପୁଣ
ଦଶ ସହସ୍ର ଧନ ଯେ ଦେଲେ ଦେବୀଜାଣ ।
ତୋଷ ହୋଇବ୍ରାହ୍ମଣେ ଯେ ଯାହା ପୁରେଗଲେ
ଜାନକୀ ଲକ୍ଷ୍ମଣ ପାଶେ ପ୍ରବେଶ ହୋଇଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଏମନ୍ତ ସମୟରେ ହୋଇଲା ପୁଣ ରାତି ।
ବିରଜା ବସ୍ତ୍ରାମୁଦି ଘେନିଣ ଚଳିଗଲା
ଜାନକୀ ପାଶରେ ଯାଇଁ ପ୍ରବେଶ ହୋଇଲା ।
ଚରଣେ ଓଳଗି ଯେ ଶୋଇଲେ ଦେବୀ ପୁଣ
ଜାନକୀ ବୋଇଲେ ଏହାତ ନୁହେଁ ପୁଣ ।
ଉଠ ଉଠ ବୋଇଲେ ଜାନକୀ ଡୋକି ଦେଲେ
ଉଠିକରି ବିରଜା ଯେ ଶୋକଭର ହେଲେ ।
ବିରଜା ବୋଇଲେ ତୁ କିମ୍ପାଇ ଦୁଃଖୀହେଉ
କେଉଁ କଥା ତୋହର ଫେଡ଼ିବୁ ନକହୁ ।

ବିରଜା ବୋଇଲେ ବିଧାତା ମତେ ଆଣି
ବିରିଜା ମଣ୍ଡଳରେ ରଖିଲାକ ପୁଣି ।
ବୋଦା, ଛାଗଳ ଯେ ସମସ୍ତେ ମୋତେ ଦ୍ୟନ୍ତି
ଚଣ୍ଡାଳ ଜୀବମାନେ ଶୁକର ଭୁଞ୍ଜାନ୍ତି ।
ସେ ଦୋଷରୁ ତୁମ୍ଭେ ମୋତେ ନ କହିଲ କଥା
କଥା ମୋତେ ନ କହିଲ ଲାଗିଲା ବଡ଼ବ୍ୟଥା
ଜାନକୀ ବୋଇଲେ ଯେ ସେଥିରେ ଦୋଷନାହିଁ
ଥାଅ ସ୍ୱାମୀଙ୍କି ଯେ ପଚାରଇ ଯାଇଁ
ବିରଜାଙ୍କୁ ରଖାଇ ଜାନକୀ ଚଳିଗଲେ
ଶ୍ରୀରାମ ଛାମୁରେ ଯାଇଣ ଜଣାଇଲେ ।
ବୋଇଲେ ସାନବଧୂ ତୁମ୍ଭର କରେ ଶୋକ
କିମ୍ପାଇଁ ତାଠାରେ କରିଛ ତୁମ୍ଭେ ଦୁଃଖ ।
ଶ୍ରୀରାମ ବୋଇଲେ ପାତକ କ୍ଷୟଗଲା
ଲକ୍ଷ୍ମଣଙ୍କୁ କହ ଯାଇ ବୋଧ ସେ ଦେଉପରା ।
ଶୁଣିଣ ଜାନକୀ ଲକ୍ଷ୍ମଣ ପାଶେ ଗଲେ
ବିରଜାକୁ ବୋଧକର ବୋଲିଣ ବୋଇଲେ ।
ସେଠାରୁ ଲକ୍ଷ୍ମଣ ଜାନକୀ ଚଳିଗଲେ
ବିରଜାଙ୍କୁ କହିଣ ଶାନ୍ତ କରାଇଲେ ।
ବସ୍ତାମୁଦି ବିରଜା ଜାନକୀ ହସ୍ତେ ଦେଲେ
ସ୍ୱାମୀ କହିବାରୁ ସେ ବୋଧ ହୋଇଗଲେ ।
ନମସକାର କରିଣ ବିରଜା ଶୀଘ୍ର ଚଳିଗଲେ
ନିଜ ଆଶ୍ରମରେ ସେ ଯାଇଣ ମିଳିଲେ ।
ଶ୍ରୀରାମ, ଲକ୍ଷ୍ମଣ ଯେ ସୀତା ତିନିଜଣ
ସେଠାରେ ରଜନୀ ଯେ ବଞ୍ଚିଲେ ସେଦିନ ।
ଯେତେବେଳେ ଜାନକୀ ରାମ ପାଶେ ମିଳି
ଶୃଙ୍ଗାର ରତିଲୀଳା ନାନାରଙ୍ଗେ ସାରି ।
ଶରଧାରେ ସ୍ୱାମୀଙ୍କି କହନ୍ତି ବଚନ
ଏ ନଗର ନାମ ଯେ ଅଟଇ କିସ ପଣ ।
ଶ୍ରୀରାମ ବୋଇଲେ ଏ ବିରଜା ମଣ୍ଡଳ
ଏ ଦ୍ୱୀପରେ ସ୍ଥାନ ବିଧାତା କଲା ବଡ଼ ।
ଜମ୍ବୁଦ୍ୱୀପ ଶୁଭସ୍ଥାନ ଅଟେ ଏହି ଜାଣ
ଏ ସ୍ଥାନରେ ଦେବତାଏ ସଭା କରେ ପୁଣ ।
ଏ ସ୍ଥାନକୁ ଦନ୍ଦଭ ଶବଦ ଶୁଭଇ
ସ୍ୱର୍ଗକୁ ଏ ସ୍ଥାନ ଯେ ନିକଟ ଅଟଇ ।
ଗୟାସୁର ଅସୁରର ନାଭି ଏହି ସ୍ଥାନ
ବୈତରଣୀ ନଦୀ ଯେ ବହଇ ଘନ ଘନ ।
ଜୀବନ୍ତା ଲୋକଙ୍କୁ ଯେ ଶୀତଳ ଅଟେ ଏହୁ
ମରିବାର ଲୋକଙ୍କୁ ଅଗ୍ନିସମ ହେଉ ।
ଏଠାରେ ଦାନ ଦେଲେ ମୃତ୍ୟୁଲୋକେ ପାଇ
ନ ଦେଲେ ତପତ ବାଲି ଅନଳ ଘୋଟଇ ।
ବିରଜା ନଗରେ ଯେ ଅଟେ ଆଦିମାତ
ଶୁଣକର ଜାନକୀ ଯେ ମନରେ ଉଷତ ।
ରଜନୀର ଶେଷରେ ସେଠାରୁ ଚଳିଗଲେ
ବ୍ରାହ୍ମଣୀ ନଦୀକୂଳେ ଯାଇଣ ସ୍ନାନ କଲେ ।
ଫଳ ମୂଳ ସେଠାରେ କଲେକ ଭୋଜନ
ସେହି ନଦୀକୂଳରେ ରହିଲେ ସେହିଦିନ ।
ରାତ୍ରରେ ଜାନକୀ ଶ୍ରୀରାମଙ୍କୁ ପଚାରି
ଏ ନଦୀର ନାମ କିସ ଅଟେ ହେ ଚାପଧାରୀ ।
ଶ୍ରୀରାମ ବୋଇଲେ ଏ ନଦୀ ନାମଟି ବ୍ରାହ୍ମଣୀ
ବୈତରଣୀ ସଙ୍ଗରେ ସରି ଅଟେ ପୁଣି ।
ଏ ନଦୀକୂଳେ ରହିଲେ ଅନେକ ଧର୍ମ ହୁଏ
ବେଦବର ଘରଣୀ ଏ ନଦୀକି ଭିଆଏ ।
ତେଣୁ ଯେ ଯାର ନାମ ଅଟଇ ବ୍ରାହ୍ମଣୀ
ଗାୟତ୍ରୀ ନଦୀର ଏ ଅଟଇ ସପତଣୀ ।
ଜାନକୀ ବୋଇଲେ ଯେ ଗାୟତ୍ରୀ ନଦୀ କାହିଁ
ଶ୍ରୀରାମ ବୋଇଲେ ବୈତରଣୀକି ସର୍ବେକହି ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ରଜନୀ ଶେଷରେ ଯେ ସେଠାରୁ ଚଳିଗଲେ ।
ଚିତ୍ରଉପଳା ନଦୀର କୂଳରେ ପବେଶ
ବିସ୍ତାର ନଦୀ ଦେଖିଣ ଜାନକୀ ହରଷ ।
ବୋଇଲେ ଚାପଧାରୀ ଏ ନଦୀ ନାମ କିସ
ବିସ୍ତାର ନଦୀ ଗୋଟି ବେଳରେ ଅବିଶ୍ୱାସ ।
ଶ୍ରୀରାମ ବୋଇଲେ ଚିତ୍ରଉପଳା ଯାର ନାମ
ସକଳ ନଦୀମାନଙ୍କ ଏହୁ ଯେ ପରମ ।
ଏ ନଦୀ ବିଧାତା ପ୍ରଥମେ ଜାତକଲା
ଏ ନଦୀର ଦୁଇମୁଖ ବ୍ରହ୍ମା ଭିଆଇଲା ।
ପୂର୍ବରୁ ଏକମୁଖେ ଆସଇ ପୁଣ ବହି
ଜମ୍ବୁଦ୍ୱିପ ମଧ୍ୟରୁ ପଶ୍ଚିମ ମୁଖେଯାଇ ।
ଏ ନଦୀର ଅନେକ ପୁତ୍ର ଯେ ଦୁହିତା
ଦୁଇକରେ ଏହାର ବହୁତ ଅଛି ସ୍ରୋତା ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ତିନିଜଣ ନଦୀରେ ସ୍ନାନ ଯାଇଁକଲେ ।

ଫଳମୂଳ ଆଣିଣ କଲେକ ଭୋଜନ
ଚିତ୍ରଉତ୍ପଳା କୂଳରେ ରହିଲେ ଦଶଦିନ ।
ଦଶଦିନ ଉତ୍ତାରୁ ସେଠାରୁ ଚଳିଗଲେ
ନର୍ମଦା ନଦୀକୂଳରେ ଯାଇଣ ମିଳିଲେ ।
ଜଳ ମନ୍ତି ସେଠାରେ ସ୍ନାହାନ ବଢ଼ାଇଲେ
ବାରଦିନ ସେ ନଦୀ କୂଳରେ ରହିଲେ ।
ସେଠାରେ ଶ୍ରୀରାମଙ୍କୁ ପଚାରେ ଜାନକୀ
ଏ ନଦୀର ନାମ ହେ କିସ ଦାଶରଥି ।
ଶ୍ରୀରାମ ବୋଇଲେ ନାମ ଅଟେ ଯେ ନର୍ମଦା
ଗଦାଧର ଦେବତା ନଦୀକି କଲେ ଶ୍ରଦ୍ଧା ।
ଗଦାମାରି ନଦୀକୁ ଗିରିରୁ ବୁହାଇଲେ
ତେଣୁ ସେ ନର୍ମଦା ନଦୀର ନାମ ଦେଲେ ।
ଶୁଣିଣ ବଇଦେହୀ ମନରେ ହରଷ
ବୋଇଲେ ଜଳକ୍ରୀଡ଼ା କରିବା ବେଗେ ଆସ ।
ଏତେ ବୋଲି ଜାନକୀ ଆନନ୍ଦେ ଚଳିଗଲା
କୋଦଣ୍ଡ ଚାପଧାରୀ ପଛରେ ତାରପରା ।
ନର୍ମଦା ନଦୀକୂଳେ ଶ୍ରୀରାମ ସୀତା ମିଳି
ଦେଖିଣ ନର୍ମଦା ଯେ ମନରେ ବିଚାରି ।
ସୃଷ୍ଟିର କରତା ଯେ ଅଟନ୍ତି ବାସୁଦେବ
ଘରଣୀ ତାଙ୍କର ଯେ କମଳା ପ୍ରିୟଭାବ ।
ମୋହର ପାତକ ଯେ କ୍ଷୟ ଯିବାରୁ ପୁଣ
ଜଳକ୍ରୀଡ଼ା କରିବାକୁ ଅଇଲେ ବେନିଜନ ।
ଏତେ ବିଚାରି ନର୍ମଦା ମନେ ବିଚାରିଲା
ସେ କଥା ମୋର ମନ ଜ୍ଞାତ ଯେ ହୋଇଲା ।
ତେଣୁ ସେ ମକରନ୍ଦ ଜଳ ଯେ ତାଙ୍କୁ ଦେଲି
ନର୍ମଦା ନଦୀକି ମୁଁ ସୁଗନ୍ଧ କରାଇଲି ।
ତେଣୁ ସେ ସୁବାସ ଜଳ ହୋଇଲା ନର୍ମଦା
ଚନ୍ଦନ, କର୍ପୂର ଅଙ୍ଗେ ବୋଳଇ ପ୍ରମଦା ।
ତଦପରେ ଜାନକୀ ଜଳରେ ଯାଇଁ ପଶି
ନର୍ମଦା ସଖୀଗଣ ଘେନିଣ ବେଗେ ଆସି ।
ଜାନକୀଙ୍କି ବନ୍ଦାପନା କଲେକ ନର୍ମଦା
ଜଳ ବାସ ଦେଖିଣ ଜାନକୀ ମନେ ଶ୍ରଦ୍ଧା ।
ଶ୍ରୀଅଙ୍ଗ ମାଜଣା ଯେ ଜାନକୀଙ୍କି କରି
ମେଲାଣି ମାଗିଣ ଯେ ଗଲେ ଅପସରି ।
ନର୍ମଦା ଯିବାରୁ ଯେ ଶ୍ରୀରାମ ଗଲେ ନଦୀ
ଜାନକୀଙ୍କ ସଙ୍ଗେ ଜଳ କ୍ରୀଡ଼ାରେ ମଜ୍ଜି ।
ସୁସ୍ୱାଦ, ସୁଗନ୍ଧ, ଶୀତଳ ଜଳ ଦେଖି
ଜାନକୀ ରାମ ଶରୀର ପ୍ରମୋଦେ ଉନ୍ମାଦଟି ।
ବେନିଜନ ଏକସଙ୍ଗ ହୋଇଣ କ୍ରୀଡ଼ାକରି
ନାନାରଙ୍ଗେ ଉନ୍ମାଦ ଶୃଙ୍ଗାର ରତିସାରି ।
କେତେବେଳେ ଉତ୍ତାରୁ ଜଳରୁ ବାହାରିଲେ
କୂଳରେ ଉଭାହୋଇ ବସନ ଚିପୁଡ଼ିଲେ ।
ଜାନକୀ ବୋଇଲେ ଯେ ନର୍ମଦା ବଡ଼ ସୁଖୀ
ଆମ୍ଭ ଦୁଃଖ ଭାଗ ପକାଇଲା ପୋଛି ।
ହେଉ ଏ ନଦୀ ସୁଖୀ ନୋହୁ ଦୁଃଖ ଭାଗୀ
ସ୍ୱାମୀର ସବୁଦିନେ ହେଉ ଏ ସୁହାଗୀ ।
ଏ ନଦୀକୂଳେ ତପୋବନ୍ତ ମୁନିମାନେ
ସର୍ବଦା ଯୋଗ ସାଧନ୍ତୁ ନ ତେଜନ୍ତୁ କ୍ଷଣେ ।
ଯେଉଁଜଳ ନଦୀ କୂଳରେ ତପକରି
ଅଚିନ୍ତା ସ୍ୱର୍ଗରେ ଯେ ବସିବ ଯାଇଁକରି ।
ଯେତେ ଜୀବ ଏ ନଦୀରୁ ଖାଇବେ ଯେ ଜଳ
ସେ ଜୀବମାନଙ୍କର ପାତକ ହେବ ଦୂର ।
ଜାନକୀ କହିବାରୁ ଶ୍ରୀରାମ ବୋଇଲେ ଯେ ହେଉ
ଏତେବୋଲି ବେନିଜନ ତୁରିତେ ଗଲେତହୁଁ
ଲକ୍ଷ୍ମଣ ଫଳମୂଳ ଆଣିଣ ପୁଣ ଦେଲେ
ଜାନକୀ ଅଗ୍ନି ସ୍ଥାପି ପାକ ପୁଣ କଲେ ।
ଶିଆଳୀ ପତ୍ର ଦନା ସିଇଁଲେ ଦାଶରଥି
ତିନିଜଣଙ୍କ ପାଇଁ ତିନି ଯେ ଦନାଟି ।
ତିନିଜଣ ବସିଣ ଭୋଜନ ସୁଖେ ସାରି
କଷା ଭୁଞ୍ଜିଲେ ହରଷେ ଚାପଧାରୀ ।
ଏରୂପେ ପାଞ୍ଚମାସ ସେଠାରେ ଦିନନେଲେ
ନର୍ମଦାରେ ଜଳକ୍ରୀଡ଼ା ପ୍ରତିଦିନ କଲେ ।
ଶ୍ରୀରାମ ଜାନକୀଙ୍କ ଶରୀର ବାସ କରେ
ଜଳବାସ ଲାଗିଲା ହୋରି ପ୍ରମୋଦରେ ।
ଏକଦିନେ ଜାନକୀ ଲକ୍ଷ୍ମଣ ଆଗେ କହି
ନର୍ମଦା ନଦୀତୀରେ କ୍ରୀଡ଼ା ତୁ କରଯାଇଁ ।
ତୋହାର ଘରଣୀ ଅଂଶରେ ହେଉ ଜାତ
ଯାର ସଙ୍ଗେ କ୍ରୀଡ଼ା କଲେ ସୁଖ ଯେ ବହୁତ
ହରଷରେ କ୍ରୀଡ଼ା କରି ନର୍ମଦା ମନ ତୋଷ
କିମ୍ପାଇଁ ତୁ ସଉମିତ୍ରୀ ମନରେ ବିରସ ।
ଶୁଣିଣ ସଉମିତ୍ରୀ କହନ୍ତି ବଚନ
ଜଳକ୍ରୀଡ଼ା କରିବାକୁ ନାହିଁ ମୋର ମନ ।

ଯେତେବେଳେ ପିତା ସତ୍ୟ ପାଳିଣ ବନେ ଆସି
ଶ୍ରୀରାମ ଆସିବାରୁ ମୋତେ ଜନନୀ ଆଶ୍ୱାସି ।
ବୋଇଲେ ଶ୍ରୀରାମ ଯେ ଜାନକୀ ଯିବେ ବନ
କୈକେୟୀ ଜନନୀ ସତ୍ୟ କରାଇଲେ ପୁଣ ।
ଭରଥ ରାଜାହେବ ଶ୍ରୀରାମ ଯିବେ ବନ
ତେଣୁ ସେ ପିତା ତୋର ରାମକୁ କହେ ପୁଣ ।
ଶୁଣିକରି ଶ୍ରୀରାମ ଯେ ବନକୁ ବାହାରିଲେ
ଜାନକୀ ସଙ୍ଗେ ଘେନି ତ୍ରୈଲୋକ୍ୟ ଠାକୁରେ ।
ଜାନକୀ ଅଟେ କମଳା ଶ୍ରୀରାମ ନାରାୟଣ
ତାଙ୍କ ସଙ୍ଗେ ତୁହି ବନ ଯାଅରେ ନନ୍ଦନ ।
ବେନି ଜନଙ୍କର ସେବା ବଚନରେ ଥିବୁ
ତାହାଙ୍କର ଆଜ୍ଞା ତୁ ଅବଜ୍ଞା ନ କରିବୁ ।
ଶୁଣିକରି ମୋର ମନ ହରଷ ହୋଇଲା
ଜନନୀ ଆଗରେ ମୁଁ କହିଲି ଯାଇଁ ଭଲା ।
ଜନନୀଙ୍କି ନମସ୍କାର କରିଣ ଗଲେ ଚଳି
ଶ୍ରୀରାମ ଜନନୀଙ୍କ ଆଗରେ ଯାଇଁ ମିଳି ।
ନମସ୍କାର କରିଣ କହିଲି ସକଳ
ଶୁଣିଣ ଜନନୀ ବୋଲେ ଶ୍ରୀରାମ ସଙ୍ଗେ ଚଳ ।
ସେଠାରୁ ମୋର ପୁରକୁ ଚଳିଣ ବେଗେଗଲି
ତୁମ୍ଭଭଗ୍ନି ଉର୍ମିଳାକୁ ଯାଇ ପଚାରିଲି ।
ଶ୍ରୀରାମ ଜାନକୀ ଯେ ଯାଉଛନ୍ତି ବନ
ତାଙ୍କ ସଙ୍ଗେ ଯିବାକୁ କହିଲେ ମାତାପୁଣ ।
ଶୁଣିକରି ତୁମ୍ଭଭଗ୍ନି ଯାଅ ଯା ବୋଇଲେ
ଜାନକୀକି ଲୋଭ ଯେ ନ କର ତୁମ୍ଭେ ଭଲେ ।
ତ୍ରୈଲୋକ୍ୟ ଠାକୁରାଣୀ ତ୍ରିପୁର ସୁନ୍ଦରୀ
ନର ବାନର ଅସୁର ଦେବତା ଲୋଭକରି ।
କଥାଏ ସତ୍ୟକରି କହୁଅଛି ମୁହିଁ
ଚୌଦବର୍ଷ ପର୍ଯ୍ୟନ୍ତେ ହେଉ ନପୁଂସକ ଦେହୀ ।
ମୁହିଁ ଯେ ନପୁଂସକ ହୋଇଣ ପୁଣଥିବି
ତୁମ୍ଭଙ୍କୁ ଦେଖିଲେ ମୁଁ ରଜସ୍ୱଳା ହେବି ।
ମଦନ ଆମ୍ଭ ଅଙ୍ଗୁ ହେଉ ଯେ ଅନ୍ତର
ତେବେହେଁ ମନବାଞ୍ଛା ସିଦ୍ଧ ଯେ ମୋହର ।
ସେ କଥାକୁ ସନମତ କଲି ମୁହିଁ ପୁଣ
ମଦନ ବେନି ଅଙ୍ଗୁ ବାହାର ତକ୍ଷଣ ।
ଆମ୍ଭବେନି ଜନଙ୍କୁ ସେଠାରେ କହିଗଲା
ଚଉଦ ବରଷ ପୂରିଲେ ଆସିବି ବୋଇଲା ।
ସେହିଦିନୁ ନପୁଂସକ ଅଟୁ ବେନିଜନ
କ୍ରୀଡ଼ା କରିବାକୁ ମୋର ଅଙ୍ଗେ ନାହିଁ ଜ୍ଞାନ ।
ଆହୁରି କଥାଏ ଯେ ପ୍ରମାଣ ମୋର ଅଛି
ସେ କଥା ତୋର ଆଗେ କହୁଅଛି ବାଛି ।
କରଯୋଡ଼ି ମୋତେ ସେ ମୋହର ଅଙ୍ଗ କହି
ଚଉଦ ବରଷ ଅନିଦ୍ରା ହୋଇବ ନ ଶୋଇ ।
ତୁମ୍ଭେଥିଲେ ବେନିଜନ ନିଶ୍ଚିନ୍ତ ହୋଇବେ
ଅଚିନ୍ତାରେ ବୃକ୍ଷର ମୂଳରେ ନିଦ୍ରାଯିବେ ।
ଜାଗ୍ରତରେ ଜଗିଥିବ ତୁମ୍ଭେ ତାଙ୍କୁ ପୁଣ
ତୁମ୍ଭଙ୍କୁ ଯେମନ୍ତେ ନିନ୍ଦା କରିବେ ପ୍ରଭୁ ଜାଣ ।
ଶୁଣିଣ ତାଠାରୁ ବଚନ କହେ ମୁହିଁ ତେବେ
ନିଦ୍ରାବତୀଙ୍କି ବୋଇଲି ନରହ ମୋର ଅଙ୍ଗେ ।
ଶୁଣିକରି ନିଦ୍ରାବତୀ ମୋତେ ତେଜ୍ୟା କଲା
ଯେତେବେଳେ ସୁମରିବି ଆସିବି ବୋଇଲା ।
ଏମନ୍ତ ଜାଗ୍ରତ ମୁଁ ତୁମ୍ଭ ସଙ୍ଗେ ଆସି
ମୋତେ ତୁମ୍ଭେ କେଉଁଭାବେ ପଚାରୁଛ ବସି ।
ଶୁଣିକରି ଜାନକୀ ହରଷେ କହେ ବାଣୀ
ମୋତେ ଉପକାର କଲେ ମୋର ଭଗ୍ନୀ ପୁଣି ।
ଜାନକୀ ବୋଇଲେ ଯେ ନଦୀରେ ସ୍ନାନକର
ନର୍ମଦାକୁ ଆଲିଙ୍ଗନ କଲେ କୁଶଳ ଶରୀର ।
ଶୁଣିକରି ସଉମିତ୍ରୀ ବେଗେ ଚଳିଗଲେ
ନର୍ମଦା ନଦୀରେ ସେ ଯାଇଣ ସ୍ନାନ କଲେ ।
ଦେଖିକରି ନର୍ମଦା ଆସେ ବେଗକରି
ସ୍ୱାମୀର ଚରଣରେ ଓଳଗି ଶୁଏ ନାରୀ ।
ଦେଖିକରି ସଉମିତ୍ରୀ ତାଙ୍କୁ କୋଳକଲେ
ଆଲିଙ୍ଗନ କରିଣ ଯେ ବଚନ କହିଲେ ।
ଆଗେତ ମଦନକୁ ତେଜ୍ୟା କରିଛ ପୁଣ
ଏବେ ସେ କଥାକୁ ମନେ କରୁଛ କାରୁଣ୍ୟ ।
ଶୁଣିଣ ନର୍ମଦା ଯେ କରଯୋଡ଼ି କହି
ଦର୍ଶନ କରିବାକୁ ମନେ ବାଞ୍ଛା ହୋଇ ।
ଏବେ ମୁଁ ଦର୍ଶନ କରି ମନବାଞ୍ଛା ପୂରିଲା
ଏତେବୋଲି ନର୍ମଦା ଯେ ଚରଣେ ଶୋଇଲା ।
ମେଲାଣି ହୋଇ ନର୍ମଦା ବେଗେ ଚଳିଗଲା
ନିଜସ୍ଥାନେ ଯାଇଣ ସେ ପ୍ରବେଶ ହୋଇଲା ।
ସଉମିତ୍ରୀ ସେଠାରୁ ଯେ ଅଇଲେ ବହନ
ଦେଖିକରି ଜାନକୀ ହରଷ କଲେ ମନ ।

ସେଠାରୁ ତିନିଜଣ ବେଗେ ଚଳିଗଲେ
ଭାସ୍କର ତୀର୍ଥରେ ଯେ ଯାଇଣ ମିଳିଲେ ।
ସେଠାରେ ସ୍ନାହାନ କଲେକ ତିନିଜଣ
ଫଳମୂଳ ସେଠାରେ କଲେକ ଭୋଜନ ।
ସେଠାରେ ଜାନକୀ ଯେ ରାମଙ୍କୁ ପଚାରି
ଏ ତୀର୍ଥର ନାମ କିସ କହ ହେ ବିଚାରି ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ବଇଦେହୀ
ଏ ସ୍ଥାନ ସବୁଦିନେ ନିର୍ମଳ ଥାଏ ରହି ।
ପୂର୍ବରେ ଯେ ଭାସ୍କର ଋଷି ଏଥି ଥିଲେ
ଏ ତୀର୍ଥକୁ ପବିତ୍ର କରିଣ ସ୍ୱର୍ଗଗଲେ ।
ବୋଇଲେ କଳିଯୁଗେ ତୁହି ହେବୁ ସାର
ଏହିଠାରେ ରାଧାକୃଷ୍ଣ କରିବେ ବିହାର ।
ଷୋଳସସ୍ର ଗୋପୀଙ୍କି ସଙ୍ଗେ ଘେନି ରହି
ତେତେବେଳେ ଦର୍ଶନ କରିବ ତୁମ୍ଭେ ଯାଇ
ଏମନ୍ତ ବୋଲିଣ ଯେ ଋଷି ଚଳିଗଲେ
ସେହିଦିନୁ ପବିତ୍ର ଏ ତୀର୍ଥଜଳ ହେଲେ ।
ଶୁଣିକରି ବଇଦେହୀ ହରଷ ହୋଇଲେ
ଦଶଦିନ ରହିଣ ସେଠାରୁ ଚଳିଗଲେ ।
ରବିଙ୍କର ତୀର୍ଥରେ ହେଲେ ପରବେଶ
ବାଲି ପନ୍ତାର ଦେଖଣ ଜାନକୀ ହରଷ ।
ଅଳ୍ପ ବଟମୂଳରେ ରହିଲେ ତିନିଜଣ
ଲବଣ ସାଗର ସେଠାରେ ଲହଡ଼ା ମାରେ ପୁଣ
ଚନ୍ଦ୍ରଭାଗା ତୀର୍ଥରେ ସ୍ନାହାନ ଯାଇ କଲେ
କୋଣାର୍କ ତୀର୍ଥରେ ଯେ ଭ୍ରମଣ ଯାଇ କଲେ ।
ସେଠାରେ ଫଳମୂଳ କଲେକ ଭୋଜନ
କଷାଫଳ ଖାଇଣ ସନ୍ତୋଷ କଲେ ମନ ।
ସେଠାରେ ଶ୍ରୀରାମଙ୍କୁ ଜାନକୀ ଯେ ପୁଚ୍ଛି
ଏ ତୀର୍ଥର ନାମ କିସ ଅଟେ ଦାଶରଥି ।
ଶ୍ରୀରାମ ବୋଇଲେ ତୁମେ ଶୁଣ ବଇଦେହୀ
ଏ ତୀର୍ଥର ନାମ ଗୋଟି ରବି ତୀର୍ଥ ହୋଇ ।
ପ୍ରଥମରେ ଦିନମଣି ଏଠାରେ ଥିଲେ ରହି
ଅନେକ କାଳ ଏଠାରେ ତପକଲେ ଛାୟାସାଇଁ
ତପ ବଳରେ ବଢ଼ତି କଲେ ନିରଞ୍ଜନ
ତପ ସିଦ୍ଧ ହେବାରୁ ଗଗନେ ଉଦେ ଜାଣ ।
ତେଣୁକରି ଏ ତୀର୍ଥ ଶଙ୍କର ହେଲା ପୁଣ
ତୀର୍ଥରୂପେ ଗଣିତା ହେଲା ଜଗତେଣ ।

ଏ ତୀର୍ଥରେ ଚିତ୍ରପଟ ରୂପ ରଖିଗଲେ
ଆପଣାର ନାମ ଯେ ଏ ତୀର୍ଥକୁ ଦେଲେ ।
କଣାରେଖ ବୋଲିଣ ଏ ତୀର୍ଥର ନାମ
ଏହିଠାରେ ଦିନକର ହୋଇଲେକ ଜନ୍ମ ।
କଶ୍ୟପ ଆଦିତ୍ୟ ଯେ ଏଠାରେ ଆଗେ ଥିଲେ
ଏ ତୀର୍ଥେ କଶ୍ୟପ ଆଗେ ତପ ଆରମ୍ଭିଲେ ।
ଲକ୍ଷ୍ମଣ ଶ୍ରୀରାମଙ୍କୁ କହିଲେ ପୁଣ ତାହା
ଶୁଣିକରି ହସିଲେ ଜାନକୀର ନାହା ।
ବୋଇଲେ ଯେବେ ହୋ ପଡ଼ିଲା ରଦ୍ରାକ୍ଷ
ସେହିଠାରେ ସେହି ଯେ ପଡ଼ିଣ ହେଉ ବୃକ୍ଷ ।
ସେ ବୃକ୍ଷ ଏଠାରେ ଯେ ଯୁଗେ ଯୁଗେ ଥାଉ
ରାମ ରଦ୍ରାକ୍ଷ ବୋଲିଣ ଏହାର ନାମ ହେଉ ।
ତହୁଁ ଦାଶରଥି ଥୋକାଏ ଦୂରଗଲେ
ଶ୍ୟାମଳବର୍ଣ୍ଣ ପଥର ଗୋଟାଏ ଦେଖିଲେ ।
ସେ ପଥରେ ଧନୁହୁଳେ ଖୋଳି ଏକ ରୂପ
ସେ ଦେବୀଙ୍କି ଜୀବନ୍ୟାସ କଲେ ରାମ ନୃପ ।
ଉତ୍ତର ମୁଖ କରିଣ ତାହାଙ୍କୁ ବସାଇଲେ
ଅନେକ ମତେ ଶ୍ରୀରାମ ତାହାଙ୍କୁ ପୂଜାକଲେ ।
ରାମଚଣ୍ଡୀ ବୋଲିଣ ତାହାର ନାମ ଦେଲେ
ସେ ଦିନରୁ ସେହିଦେବୀ ବିଖ୍ୟାତ ହୋଇଲେ ।
ଶ୍ରୀରାମ ଲକ୍ଷ୍ମଣ ସୀତା ତିନିଜଣ
ନଦୀ ଏକ ଆଗରେ ଦେଖିଲେ ଯାଇ ପୁଣ ।
ସେହୁ ଯାଇ ସାଗରର ଭିତରରେ ପଶି
ଶ୍ୟାମଳ ପକ୍ଷୀକି ଦେଖି ରାମଚନ୍ଦ୍ର ପୁଚ୍ଛି ।
ଏ ନଦୀର ନାମ କିସ ଜାଣୁକିରେ ଖଗ
ପକ୍ଷୀବର ବୋଇଲା ଶୁଣ ଆହେ ରାମ ।
ଅନେକ ନଦୀର ସେ ଅଟେ ସରଦାର
ଦଶବିଂଶ ନଦୀଭେଟ ହୁଅନ୍ତି ଏଠାର ।
ଏକମୁଖ ହୋଇଣ ସାଗର ପରବେଶ
ଶରୀରସ୍ନାନଙ୍କୁ ଲୁଚାଇ ଦିଅନ୍ତି ଗୁପତ ।
ତେଣୁ ଯେ ଏହାର ନାମ କହିଯେ ମୁହାଁଣ
ଶୁଣିକରି ଶ୍ରୀରାମ ଯେ ହେଲେ ତୋଷ ପୁଣ ।
ବୋଇଲେ ପକ୍ଷୀବର ଶୁଣ ମୋ ବଚନ
ଏହାର ନାମ ରାମଚଣ୍ଡୀ ମୁହାଁଣ ବୋଲି ଜାଣ ।
ଏହାର ତଟେ ପୂଜିଲି ଯେଉଁ ଦେବୀ ଜାଣ
ସେ ଦେବୀର ନାମ ଅଟେ ରାମଚଣ୍ଡୀ ଜାଣ ।

ଏହିଠାରେ କେତେ ଜଳ ହୋଇବରେ ପକ୍ଷୀ
ଆର କୂଳକୁ ଆମ୍ଭେ କେମନ୍ତେ ଯିବୁଟି ।
ପକ୍ଷୀ ବୋଇଲେ ନିକଟ ଯେ ଏହୁ ଜଳ
ଏହିବାଟେ ପଶିକରି ଯାଅ ରଘୁବାଳ ।
ଶୁଣିକରି ରଘୁନାଥ ଜଳେଯାଇଁ ପଶି
ଆଗରେ ଶ୍ରୀରାମ ଯେ ଲକ୍ଷ୍ମଣ ପଛେ ଅଛି ।
ମଧ୍ୟରେ ଜାନକୀ ଯେ ଏରୂପେ ତିନିଜଣ
ଆର କୂଳରେ ପ୍ରବେଶ ହେଲେ ଯାଇ ପୁଣ ।
ଦକ୍ଷିଣ କୂଳେ ରାମ ଦେଖିଲେ ଯାଇଁ ବନ
ବେଲବୃକ୍ଷ ସେଥିରେ ବହୁତ ଅଛି ପୁଣ ।
ସେଠାରେ ତିନିଜଣ ସ୍ନାହାନ ଯାଇ କଲେ
ସନ୍ଧ୍ୟା ତର୍ପଣ ଶ୍ରୀରାମ ସେଠାରେ ସାରିଲେ ।
ପୂଜାବିଧି କରିବାକୁ ସେଠାରେ ମନକଲେ
ଲକ୍ଷ୍ମଣ ପୂଜାବିଧି ସଜାଡ଼ିଣ ଦେଲେ ।
ସେଠାରେ ଫଳମୂଳ କଲେକ ଭୋଜନ
ସେହିଠାରେ ଶ୍ରୀରାମ ରହିଲେ ତିନିଦିନ ।
ଶ୍ରୀରାମ ବୋଇଲେ ଶୁଣ ଗୋ ବୈଦେହୀ
ଯେତେବେଳେ ବିଧାତାଏ ପୁର ରଚିଲଇଁ ।
ଶଙ୍ଖ ଆକାର କରିଣ ଏ ଦ୍ୱୀପକୁ କଲା
ଏ ଦ୍ୱୀପର ନାମ ଯେ ଜମ୍ବୁଦ୍ୱୀପ ହେଲା ।
ଶଙ୍ଖର ନାଭୀ ଯେ ଅଟେ ଏହୁ ସ୍ଥାନ
ପାଞ୍ଚକୋଶ ପର୍ଯ୍ୟନ୍ତ ନାଭୀର ଦୀର୍ଘ ପୁଣ ।
ପ୍ରତି ତୋର ବେନିକୋଶ ଶୁଣରେ ସୁନ୍ଦରୀ
ଦକ୍ଷିଣ ପାରୁଶରେ ଲବଣ ସିନ୍ଧୁ ଘେରି ।
ସେହି ଦକ୍ଷିଣ ଭାଗରେ ଏ ସିନ୍ଧୁ ତଟରେ
ସ୍ୱର୍ଗକୁ ଫିଟିଛି ଦ୍ୱାର ଶୁଣୁ ତୁ ହେତୁରେ ।
ସେହିଦ୍ୱାରେ ଦେବତା ଯେ ସ୍ୱର୍ଗରୁ ଆସନ୍ତି
ନାଭୀର ମଧ୍ୟରେ ଯେ ପର୍ବତ ପୁଣ ସ୍ଥିତି ।
ଦିଶୁଅଛି ପର୍ବତ ଦେଖରେ ସୁନ୍ଦରୀ
ଶୁଣିକରି ଜାନକୀ ଯେ ରାମଙ୍କୁ ପଚାରି ।
ସେ ପର୍ବତ ନାମ ଯେ କିସ ଅଟେ ପୁଣ
ଶ୍ରୀରାମ ବୋଇଲେ ନୀଳଗିରି ସୁନ୍ଦର ନାମ ।
ସେ ପର୍ବତ ଦକ୍ଷିଣେ କଳ୍ପବଟ ଅଛି
ପ୍ରଳୟ ବେଳେ ହଂସ ସେ ପତ୍ରେ ପହୁଡ଼ିଛି ।
ପ୍ରଳୟ ସରିଲେ ହୋ ନିଜସ୍ଥାନେ ସ୍ଥିତି
ସବୁ ସ୍ଥାନକୁ ଏ ସ୍ଥାନ ଅଟଇ ସୁଗତି ।
ଜାନକୀ ବୋଇଲେ ଯେ ଏ ସ୍ଥାନ କିମ୍ପାଶ୍ରେଷ୍ଠ
ସେଥିର କଥା ମୋତେ କହ ହେ ପ୍ରାଣନାଥ ।
ଶ୍ରୀରାମ ବୋଇଲେ ଗୋ ମନଦେଇ ଶୁଣ
ଏ କଳିଯୁଗେ ବିଧାତା କରିଛି ଭିଆଣ ।
କଳିଯୁଗେ ଏ ପର୍ବତ ଉପରେ ଶ୍ରୀହରି
ବିଶ୍ୱକର୍ମା ମୂର୍ତ୍ତିଧରି ରହିବେ ନରହରି ।
ନିଜକାୟ ରୂପଗୋଟି କାଷ୍ଠର ଭିତରେ
ରଖିଣ ଗୁପତ ହେବେ ବ୍ରହ୍ମାଣ୍ଡ ଠାକୁରେ ।
ଜଗନ୍ନାଥ ନାମ ଯେ ହୋଇବ ତାହାଙ୍କର
ନିରନ୍ତରେ ବର ଯେ ଦେବେ ଲକ୍ଷ୍ମୀବର ।
ଦୁଷ୍ଟଙ୍କୁ ଉତ୍ପାତ କରାଇ ମାରିବେ ପଛେ ପୁଣ
ଏ ପର୍ବତ ଉତ୍ତର ପାଶେ ମାରକଣ୍ଡ ଜାଣ ।
ପୂର୍ବରେ ବାଙ୍କି ମୁହାଁଣ ନାମରେ ନଦୀପୁଣ
ଚକ୍ର ତୀର୍ଥ ବୋଲିଣ ଏ ତୀର୍ଥର ନାମ ।
ପୁରର ନାମ ପୁରୁଷୋତ୍ତମ ଉତ୍ତମ
ଏ ସ୍ଥାନରେ ମଲେ ଲୋକ ଚତୁର୍ଭୁଜ ଜାଣ ।
ଶୁଣିକରି ଜାନକୀ ମନରେ ତୋଷ ହେଲେ
ଜାଣିଲି ଏ ସ୍ଥାନ କଥା ବୋଲିଣ ବୋଇଲେ ।
ଯେତେକଥା କହିଲି ଦେଖାଅ ମୋତେ ନେଇ
ଶୁଣିଣ ଶ୍ରୀରାମ ଯେ ହରଷ ମନ ହୋଇ ।
ସେଠାରୁ ତିନିଜଣ ଚଳିଣ ଅଇଲେ,
ବନ ବରଷନ୍ତେ ତାଳ ବନରେ ମିଳିଲେ ।
ତାଳବନ ଦେଖାଇ ଶ୍ରୀରାମ ଯାନ୍ତି ଚଳି
ଜାନକୀ ଶ୍ରୀରାମ ପଛରେ ବଛ ମିଳି ।
ବାଙ୍କୀମୁହାଣ ପାଖରେ ହେଲେ ପରବେଶ
ଦେଖିକରି ସେ ନଦୀକି ଶ୍ରୀରାମ ହରଷ ।
ସେ ନଦୀର ତଟରେ ମର୍କଟ ଏକ ବସି
ମର୍କଟକୁ ଦେଖିଣ ଶ୍ରୀରାମଚନ୍ଦ୍ର ହସି ।
କିହୋ ହରି ଏ ନଦୀରେ ଜଳ କେତେ ହେବ
ଏ ଜଳରେ ପଶିଲେ ଥଳ କି ମିଳିବ ।
ମର୍କଟ ବୋଇଲା ଦେବ ଅଳପ ଜଳ ଏଥି
ଆରକୂଳେ ଚକ୍ରତୀର୍ଥ ନାମ ଭାସି ଏଥି ।
କିମ୍ପାଇଁ ପଶିଯିବ ମୋ ଉପରେ ବସ
ଶୁଣିକରି ଶ୍ରୀରାମ ହୋଇଲେ ହରଷ ।
ଶ୍ରୀରାମ ବୋଇଲେ ତୁ ଶୁଣରେ ମର୍କଟ
ତୋତେ ମାତା ପିତା ନାମ ଦେଇଛନ୍ତି କିସ ।

ବାନର ହୋଇଲା ମୋର ମସାଣିଆ ନାମ
ବିଧାତାଙ୍କର ବୋଲରେ ଏଥିରେ ଅଛି ଜାଣ ।
ଶୁଣିକରି ଶ୍ରୀରାମ ଯେ ତାର ପରେ ବସି
ବାଙ୍କୀ ନଦୀ ପାରହେଲେ ମର୍କଟକୁ ତୋଷି ।
ଦକ୍ଷିଣ କୂଳରେ ଯେ ଶ୍ରୀରାମ ହୋଇଲେ
ଜାନକୀ ମର୍କଟ ଉପରେ ଅଇଲେ ।
ପଛରେ ଲକ୍ଷ୍ମଣଙ୍କୁ ଆଣିଲେ ମର୍କଟତ
ତିନିଜଣ ତାରପରେ ପାରି ହୋଇଲେତ ।
ମର୍କଟ ବୋଇଲେ ଦାଶରଥି ପୁଣ
ଏ ସ୍ଥାନ ସବୁଦିନେ ପ୍ରାପତ ତୋତେ ଜାଣ ।
ଏ ଗିରିରେ ଯେତେକ ଅଛନ୍ତି ବାନରେ
ଏମାନଙ୍କ ଉପରେ ତୁ ଦୂତୀ ସରଦାରେ ।
ଯେତେବେଳେ ମୋହର ତୁମ୍ଭଙ୍କୁ ହେବଲୋଡା
ସେକାଳେ ବଳ ପ୍ରାକର୍ମେ ଯିବୁଟି ତୁ ପରା ।
ଏତେକହି ଶ୍ରୀରାମ ସେ ତୀର୍ଥ ଦେଖିଲେ
ଚକ୍ରଗୋଟି ଦିଶିଲା ତାହାକୁ ପ୍ରତ୍ୟକ୍ଷରେ ।
ଯେତେବେଳେ ଚକ୍ରଧର ମାଇଲେ ଶଙ୍ଖାସୁର
ଏଠାରେ ଚକ୍ରରଖି ତୀର୍ଥ କଲେ ସାର ।
ସେଠାରୁ ଶ୍ରୀରାମ ଯେ ଦେଖି ଚଳିଗଲେ
ଜାମ୍ବୁବନ ଭିତରେ ପ୍ରବେଶ ଯାଇଁ ହେଲେ ।
ସେ ବନରେ ଲିଙ୍ଗପୂଜା କଲେ ରାମରାଣ
ବଉଳ ପାଷାଣକୁ ଜୀବନ୍ୟାସ କଲେ ପୁଣ ।
ଜାମ୍ବୁଫଳ ଆଣିଣ ଲକ୍ଷ୍ମଣ ସମର୍ପିଲେ
ସେ ଫଳକୁ ଶ୍ରୀରାମ ସେଠାରେ ପୂଜାକଲେ ।
ସେ ଲିଙ୍ଗର ନାମ ପୁଣ ଦେଲେ ଜମ୍ବେଶ୍ୱର
ବୋଇଲେ ଏ କ୍ଷେତ୍ରରେ ଥାଅ ହେ ମହେଶ୍ୱର ।
ସେଠାରୁ ଶ୍ରୀରାମ ଯେ ଗଲେ ପଥବାହି
ପଶ୍ଚିମ ଭାଗରେ ଯେ ପ୍ରବେଶ ହେଲେ ଯାଇଁ ।
ନାରିକେଳ ବନ ଯେ ଦେଖିଲେ ସେଠାରେ
ସେଠାରେ ଲିଙ୍ଗପୂଜା ଇଚ୍ଛିଲେ ରଘୁବୀରେ ।
ଲକ୍ଷ୍ମଣଙ୍କୁ ବୋଇଲେ ଆଣରେ ବେଗେ ଫଳ
ଶୁଣିକରି ଲକ୍ଷ୍ମଣ ଗଲେ ଯେ ଚଞ୍ଚଳ ।
ଦେଖିଲେ ଲାଉତୁମ୍ବା ସେଥିରେ ଯେ ଗୋଟି
କୋଦଣ୍ଡ ଚାପଧାରୀ ଆଗରେ ଆଣିଲେଟି ।
ସେ ଲାଉକୁ ରାମ ଯା ଲିଙ୍ଗକରି ପୂଜି
ଜୀବନ୍ୟାସ କରନ୍ତେ ପାଷାଣ ହୁଏ ବେଗି ।
ଦେଖିଣ ଶ୍ରୀରାମ ଯେ ନମସ୍କାର କଲେ
ଲାଉକେଶ୍ୱର ବୋଲି ଲିଙ୍ଗନାମ ଦେଲେ ।
ବୋଇଲେ ନର ବାନର ଦେବତାଙ୍କୁ ପୁଣ
ଦେହ କ୍ଷୀର୍ଣ୍ଣ ହେଲେ ତୁମ୍ଭେ ବରଦେବ ଜାଣ ।
କଳିଯୁଗେ ଜଗନ୍ନାଥ ଏଠାରେ ରହିବେ
ଚତୁର୍ଦ୍ଧା ମୂରତି ହୋଇ ପୂଜା ସେ ପାଇବେ ।
ତାହାଙ୍କର ଭଣ୍ଡାରେ ପରୀକ୍ଷା ହେବୁ ତୁହି
ବାରମାସେ ତେରଯାତ୍ରା ସଙ୍ଗେଥିବୁ ତୁହି ।
ଏତେକହି ସେଠାରୁ ଗଲେ ତିନିଜଣ
ପ୍ରବେଶ ହେଲେ ଯାଇଁ ଉତ୍ତର ଭାଗେଣ ।
ଉତ୍ତର ଭାଗରେ ଯେ ଶିଆଳୀ ଲତା ଦେଖି
ସେହି ବନ ଭିତରେ ପଶିଲେ ଦାଶରଥି ।
ବିସ୍ତାର କୁଣ୍ଡେକ ଯେ ଦେଖିଲେ ତହିଁ ପୁଣି
ସ୍ୱାଦଜଳ ନିର୍ମଳ ଅଟେ ଦିବ୍ୟ ପାଣି ।
ସେ କୁଣ୍ଡରେ ତିନିଜଣ ସ୍ନାହାନ କଲେ ଯାଇଁ
ସେଠାରେ ସନ୍ଧ୍ୟା ତର୍ପଣ କଲେ ରଘୁସାଇଁ ।
ସେଠାବରେ ପାଷାଣ ଲିଙ୍ଗେକ ପୂଜା କଲେ
ଜୀବନ୍ୟାସ କରାଇଣ ସଜୀବ କରିଲେ ।
ସାଙ୍ଗେ ଫଳ ଗୋଟି ଲକ୍ଷ୍ମଣ ଆଣି ଦେଲେ
ତେଣୁଟି ସେ ଫଳକୁ ଶ୍ରୀରାମ ପୂଜାକଲେ ।
ପୂଜାସାରି ଶ୍ରୀରାମ କଲେ ନମସ୍କାର
ସେ ଲିଙ୍ଗର ନାମ ଦେଲେ ମାରକଣ୍ଡେଶ୍ୱର ।
ସେଠାରୁ ପୂର୍ବଦିଗକୁ ତିନିଜଣ ଗଲେ
ମାରକଣ୍ଡ ଋଷିଙ୍କର ଆଶ୍ରମେ ମିଳିଲେ ।
କଣ୍ବ ଋଷିଙ୍କି ଯେ କଲେ ତହିଁ ନମସ୍କାର
ଦେଖିଣ ମାରକଣ୍ଡ ମନରେ ତୋଷ ବଡ଼ ।
ଗଉରବ କରିଣ ରଖିଲେ ଦିନଦଶ
ଫଳମୂଳ ମୁନି ଯେ ଦେଲେକ ବିଶେଷ ।
ଋଷିଙ୍କି କହିଣ ସେଠାରୁ ଚଳିଗଲେ
ନୀଳଗିରି ପର୍ବତ ଉପରେ ଉଠିଲେ ।
ନୀଳ, ଧବଳ, ବସନ୍ତ ଦେଖିଲେ ତିନିରୂପ
ଶ୍ରୀରାମ ବୋଇଲେ ନିରାକାର ଏ ସ୍ୱରୂପ ।
ସବୁଦିନ ଏଠାରେ ବିଶ୍ରାମ ଏହାଙ୍କର
କଳିଯୁଗେ ଏହି ମୂର୍ତ୍ତି ହେବେ ସାରୋଦ୍ଧାର ।
ଏତେ କହି ଶ୍ରୀରାମ ଯେ ନମସ୍କାର କଲେ
ଧବଳା ମୂରତିଙ୍କି ଲକ୍ଷ୍ମଣ ଓଳଗିଲେ ।

ମଧ୍ୟରେ ବସନ୍ତ ବର୍ଣ୍ଣ ଯେଉଁ ଦେବୀ ଜାଣ
ଯେ ରୂପକୁ ଜାନକୀ ମାନ୍ୟ କଲେ ପୁଣ ।
ମାନ୍ୟ, ଧର୍ମ କରିଣ ସେଠାରୁ ଚଳିଗଲେ
ଗିରିର ଦକ୍ଷିଣ ଭାଗେ ବଟକୁ ଦେଖିଲେ ।
ସେ କଳପ ବଟ ତଳେ ହେଲେ ପରବେଶ
ଜାନକୀଙ୍କି କହିଲେ ଦଶରଥ ଶିଷ୍ୟ ।
ଏ ବୃକ୍ଷର ନାମଟି କଳପ ବଟ କହି
ପୃଥ୍ୱୀ ପ୍ରଳୟ ବେଳେ ହରି ଏଥିରେ ରହି ।
ଜାନକୀ ବୋଇଲେ ତୁମ୍ଭେ କହିଲ ବିପରୀତ
ସମସ୍ତେ କ୍ଷୟ ଯିବେ ନ ରହିବେ ଶେଷ ।
ଏ ବଟ କି ରୂପେ ରହିଲେ ନିଶ୍ଚଳେ
ତୁମ୍ଭେ ତ ମିଥ୍ୟା ପ୍ରଭୁ କହ ମୋ ଆଗରେ ।
ଶ୍ରୀରାମ ବୋଇଲେ ଶୁଣ ଗୋ ପ୍ରାଣସହି
ଯେତେବେଳେ ଏ ସୃଷ୍ଟି ପ୍ରଳୟ ହୁଅଇ ।
ତେତେବେଳେ ଏ ବଟ ପୁଟରେ ଆମ୍ଭେ ଆସି
ଏ ବଟ ଉପରେ ଯେ ଶୟନ କଲୁଁ ସଖୀ ।
ତେଣୁ ସେ ବିଷ୍ଣୁ ଅଂଶ ଏ ବୃକ୍ଷ ପରବେଶ
ପ୍ରଳୟ ଶ୍ରୀ ହରିଙ୍କି କରି ନ ପାରେ ନାଶ ।
ତେଣୁ ଏ ବୃକ୍ଷ ଗୋଟି ଅକ୍ଷୟ ହୋଇରହି
କଳ୍ପବଟ ବୋଲିଣ ତେଣୁ ସେ ବୋଲାଇ ।
ଶୁଣିକରି ଜାନକୀ ଓଳଗି ମେଲାଇଲେ
ବାସୁଦେବର ଶୟନ ଯହୁଁ ସେ ଦେଖିଲେ ।
ସେଠାରୁ ତିନିଜଣ ବେଗେ ଚଳିଗଲେ
ଆଗରେ କୁଣ୍ଡେକ ଯେ ଯାଇଁଣ ଦେଖିଲେ ।
ଜାନକୀ ବୋଇଲେ ଯେ ଏ କୁଣ୍ଡନାମ କିସ
ଦାଶରଥି ବୋଇଲେ ଏ ରୋହିଣୀ କୁଣ୍ଡତ ।
ଜାନକୀ ବୋଇଲେ ଯେ ଏ କାହୁଁ ଜାତ ହେଲା
କେହୁ ଏ କୁଣ୍ଡ ଗୋଟି ଏଥିରେ ତିଆରିଲା ।
ଦାଶରଥି ବୋଇଲେ ଏ ବିଧାତା ଭିଆଣ
ଏଥିରେ ସ୍ନାନ କଲେ ଚତୁର୍ଭୁଜ ପୁଣ ।
ଜାନକୀ ବୋଇଲେ ମୁଁ କରିବି ସ୍ନାହାନ
ଶୁଣିକରି ଶ୍ରୀରାମ ଯେ ହେଲେ ତୋଷମନ ।
ତିନିଜଣ ସେଠାରେ ଯାଇଣ ସ୍ନାନକଲେ
କୁଣ୍ଡରେ ବୁଡ଼ନ୍ତେ ନାରାୟଣଙ୍କୁ ଦେଖିଲେ ।
ଯେଉଁ ଋଷି ଗିରିପରେ ଯାଇଥିଲେ ଦେଖି
ଜଳରେ ସେ ରୂପକୁ ଦେଖିଲେ ନିରେଖି ।

କୂଳରେ ଉଭାହୋଇ ଜାନକୀ ପଚାରି
ସ୍ଥୂଳରୂପ ସେଠାରେ ବୁଡ଼ିଲାକି ଫେରି ।
ସେହିରୂପେ ଛାୟାଯେ ଶ୍ରୀହରିର ପୁଣ
ସେହିରୂପ କୁଣ୍ଡରେ କଲେ ଯେ ଦରଶନ ।
ଜାନକୀ ବୋଇଲେ ଦେବ ଚତୁର୍ଦ୍ଧା ରୂପକାହିଁ
ଶ୍ରୀରାମ ବୋଇଲେ ଦେଖ ବେନି ପାଦହସ୍ତ ତହିଁ
ଦୁଇଗୋଟି ଚରଣ ତୋର ଯେ ନ ଥାନ୍ତା
ବେନି ଚରଣରୁ ଯେ ବାହର ହୁଅନ୍ତା ।
ଜାନକୀ ବୋଲନ୍ତି ପ୍ରଭୁ ମିଛ ଯେ ଅଟଇ
ଭୁଲାଉଛ ମୋତେ ତ ବୋଧ ପୂଣ ଦେଇ ।
ଶୁଣିଣ ଲକ୍ଷ୍ମଣଙ୍କୁ ଶ୍ରୀରାମ କହେ ପୁଣ
କମଠ ଗୋଟିଏ ଭାଇ ଆଣ ତୁ ଯାଇଣ ।
ଶୁଣିକରି ଲକ୍ଷ୍ମଣ ବେଗେ ଚଳିଗଲେ
ଲତାରୁ ଖୋଜି କମଠ ଗୋଟିଏ ଆଣିଲେ ।
ଜାନକୀ ଆଗେ ଶ୍ରୀରାମ କହିଲେକ ପୁଣ
ଦେଖଏ କମଠର ବେନି ଯେ ଚରଣ ।
ଜାନକୀ ଆଗରେ ଯେ ଚଳାଇଲେ ନେଇ
ଦେଖିକରି ଜାନକୀ ପରତେ ଗଲେ ତହିଁ ।
ସେଠାରୁ ଜଳରେ ଯେ ଛାଡ଼ିଲେ ବେଗଟି
ତତକ୍ଷଣେ ଚତୁର୍ଦ୍ଧା ରୂପ ହେଲେ ସେହିଟି ।
ଧରିଆଣି ଭୂମିରେ ବୁଲାବନ୍ତେ ପୁଣ
ବେନି ହସ୍ତ ବେନି ଚରଣ ଦେଖିଲେକ ଜାଣ ।
ଦେଖିକରି ଜାନକୀ ପରତେ ତହୁଁ ଗଲେ
ଶ୍ରୀରାମଙ୍କ ଚରଣରେ ଯାଇଁ ଓଳଗିଲେ ।
କମଠକୁ ଋହିଁଣ ଶ୍ରୀରାମ ଆଜ୍ଞା ଦେଲେ
ଏ ଜଳରେ ନିଶ୍ଚିନ୍ତରେ ରହରେ ବୋଇଲେ ।
ଏହିକାଳେ କମଠକୁ ବୋଲେ ରାମରାଣ
ତୋଠାରୁ ଅନେକ ରୂପ ହେଉରେ ଘଟଣ ।
କଳି ଯୁଗରେ ତୁ ହେ ଶ୍ରୀହରି କାର୍ଯ୍ୟ କରି
ବେଦବର ରଖିବା ସ୍ଥାନରେ ଯାଇଁ ମିଳି ।
ଶୁଣିକରି କମଠ ସେ କୁଣ୍ଡେ ରହିଲା
ଶ୍ରୀରାମ କହିବାରୁ ଜାନକୀ କହେ ପରା ।
ଏ କୁଣ୍ଡରେ ସ୍ନାନକଲେ ଯେବେହୋନ୍ତି ଚତୁର୍ଭୁଜ
ଯେଉଁ ଜୀବମାନଙ୍କର ହୋଇବ ଯେ ହେଜ ।
ସେମାନେ ସ୍ନାନ କଲେ ଚତୁର୍ଦ୍ଧାମୂର୍ତ୍ତି ହେବ
ବୈକୁଣ୍ଠପୁରକୁ ସେ ନିଶ୍ଚିନ୍ତେ ଚଳିଯିବ ।

ଶ୍ରୀରାମ ବୋଇଲେ ଏ ହୋଇଛି ଗୁପତ
ତୋତେ ଦେଖାଇବା ପାଇଁ ଭେଟାଇଲି ସତ ।
ଯେତେବେଳେ ଗୁପତ ପ୍ରଘଟ ହୋଇବ
ବେଦବର ସ୍ଥାନକୁ ଲୀନ କରି ଯିବ ।
ଶୁଣିକରି ଜାନକୀ ସନ୍ତୋଷ ମନହେଲେ
ତିନିଜଣ ସେଠାବରୁ ଚଳି ବେଗେ ଗଲେ ।
କିଛି ଦୂର ଯାନ୍ତେ ଦେଖିଲେ ଦେବୀ ପୁଣି
ପାର୍ବତୀଙ୍କ ସଦୃଶ ଘଟଣ ଦିଶେ ଜାଣି ।
ଜାନକୀ ପଚାରିଲେ ଏ ଦେବୀ ନାମ କିସ
ଶ୍ରୀରାମ ବୋଲନ୍ତି ଏ କ୍ଷେତ୍ର ଦେବୀ ସତ ।
ଏହାର ନାମ ବିମଳାନବ ଚଣ୍ଡୀକେ ଜାଣନା
ସଦାଶିବଙ୍କର ପାଟରାଣୀ ଅଟେ ସିନା ।
ସବୁଦନେ ଏ ଦେବୀ ଏ ସ୍ଥାନେ ଥାଏ ରହି
କଳିଯୁଗେ ଅନେକ ପୂଜା ପାଇବ ଯେ ଏହି ।
ଶୁଣିକରି ଜାନକୀ ଯେ ସନ୍ତୋଷ ହୋଇଲେ
ଏଥୁ ଅନନ୍ତରେ ଶୁଣ ତୁ ଉମା ଭଲେ ।
ପାଷାଣ ରୂପ ତେଜି ସଜୀବ ରୂପ ହେଲେ
ଜାନକୀର ଚରଣେ ଆସି ଓଳଗିଲେ ।
ଜାନକୀ ବୋଇଲେ ତୁ ନିଶ୍ଚିନ୍ତ ହୋଇଥାଅ
ବାସୁଦେବଙ୍କ ଦୟାରେ ଅନେକ ସୁଖପାଅ ।
ଶୁଣିକରି ବିମଳା ହରଷ ହୋଇଲେ
ଆଡ଼ ଉହାଡ଼ରେ ଶ୍ରୀରାମ ଚରଣେ ଓଳଗିଲେ ।
ସେଠାବରୁ ଜାନକୀ ଯେ ସଙ୍ଗରେ ଘେନିଗଲେ
ସଉମିତ୍ରୀଙ୍କ ସଙ୍ଗରେ ନେଇ ଭେଟାଇଲେ ।
ଲକ୍ଷ୍ମଣଙ୍କୁ ଦେଖିଣ ଦେବୀ ଓଳଗିଲେ
ମୋର କଥା ମନରେ ନ ପଡ଼େ ବୋଇଲେ ।
ଲକ୍ଷ୍ମଣ ବୋଇଲେ ଏବେ କଳିଯୁଗ ହେଲେ
ତୋର ମୋର ଲୀଳା ହେବ ଏହିଯେ ସ୍ଥାନରେ ।
ସେହିଯୁଗେ ମୁହିଁ ବଡ଼ ଶ୍ରୀରାମ ହେବ ସାନ
କୌଣସି କଥାକୁ ସେକାଳେ ନଥିବ ପରାଭିନ୍ନ
ଶୁଣିକରି ଦେବୀ ମନେ ହରଷ ହୋଇଲେ
ଓଳଗି ମେଲାଇଣ ନିଜସ୍ଥାନେ ଗଲେ ।
ସେଠାରୁ ତିନିଜଣ କଲେକ ଗମନ
ଦକ୍ଷିଣ ଭାଗକୁ ଯେ ଖସିଲେ ବହନ ।
ଦକ୍ଷିଣ ଭାଗରେ ଦେଖିଲେ ବିଶ୍ୱନାଥ
ତ୍ରିଲୋଚନ ରୂପ ଦେଖିଣ ହୋଇଲେ ହରଷେ ।

ଜାନକୀ ପଚାରିଲେ ଏ ଦେବ ନାମ କିସ
ରାମଚନ୍ଦ୍ର ବୋଇଲେ ଏ କପାଳଲୋଚନ ମହେଶ ।
ଜାନକୀ ବୋଇଲେ ଏ ନାମ ଅଶୋଭା
ରାମଚନ୍ଦ୍ର ବୋଇଲେ ସେ ବେଳରେ ପ୍ରୀତିଲୋଭା ।
ବଣ ଦୁର୍ଗା ସଙ୍ଗରେ ସେ କରେ ପ୍ରୀତିଭାବ
ତେବେ ସେ କପାଳ ଲୋଚନ ନାମ ଦେବ ।
ଏ ବଚନ ଶୁଣିକରି ହରଷ ବଇଦେହୀ
ତିନିଜଣ ସେଠାରୁ ବେଗେ ଚଳିଯାଇ ।
ଭାର୍ଗବୀ ନଦୀ କୂଳରେ ହେଲେ ପରବେଶ
ସେହିଠାରେ ବାଲୁକ ପୂଜିଲେ ରଘୁନାଥ ।
ସେ ବାଲୁକି ଲିଙ୍ଗକୁ ଜୀବନ୍ୟାସ କଲେ
ବାଲୁଙ୍କେଶ୍ୱର ବୋଲି ନାମ ପୁଣ ଦେଲେ
ପୂଜିଲା ବେଳେ ଛତ୍ର ଆକାର ଜାଣ ହେଲା
ବାଲୁଙ୍କେଶ୍ୱର ଲିଙ୍ଗ ନାମ ଯେ ବହିଲା ।
ଶ୍ରୀରାମ ପୂଜିବାରେ ପାଷାଣ ରୂପ ହେଲା
ଛତ୍ର ଆକାରରେ ଲିଙ୍ଗ ଶୋଭା ଦିଶେ ତୋରା ।
ସେ ଲିଙ୍ଗକୁ ତିନିଜଣ ଓଳଗି ହୋଇଲେ
ସେଠାରୁ ତିନିଜଣ କିଛି ଦୂର ଗଲେ ।
ସେଦିନ ଫଳମୂଳ ଭୁଞ୍ଜିଣ ତୋଷ ହେଲେ
ସେଠାରେ ବାରଦିନ ଶ୍ରୀରାମ ରହିଲେ ।
ବାରାଣସୀ, ଭାର୍ଗବୀ ନଦୀ କୂଳରେ ଥିଲେ ପୁଣ
ତାହାଙ୍କୁ ଦେଖିକରି ସନ୍ତୋଷ ରାମ ମନ ।
ସେଠାରେ ଶ୍ରୀରାମ ଯେ ବାଲୁକା ପୂଜାକଲେ
ନୀଳବର୍ଣ୍ଣ ପାଷାଣ ଲକ୍ଷ୍ମଣ ଆଣିଦେଲେ ।
ସେ ପାଷାଣକୁ ଶ୍ରୀରାମ ଯେ କଲେ ଆରାଧନା
ନୀଳବର୍ଣ୍ଣ ରୂପ ଯେ ପ୍ରକାଶ ତାର କିନା ।
ପୂଜାସାରି ଜୀବନ୍ୟାସ ରାମ ତାଙ୍କୁ କଲେ
ନୀଳକଣ୍ଠ ବିଶ୍ୱନାଥ ବୋଲିଣ ନାମ ଦେଲେ ।
ସେଠାରୁ ତିନିଜଣ ପଥ ବାହିଗଲେ
ଦେବନଦୀ କୂଳରେ ପ୍ରବେଶ ଯାଇଁ ହେଲେ ।
ସେହି ନଦୀ କୂଳରେ ପାଷାଣ ଯାଇଁ ଦେଖି
ତିନିଜଣ ସେଠାରେ ହୋଇଲେ ଯାଇଁ ସୁଖୀ ।
ସେ ପାଷାଣ ଗୋଟି ଦିଶେ ଦର୍ପଣର କାନ୍ତି
ବିଚାରିଲେ ଶ୍ରୀରାମ ପୂଜିବା ଦେବୀ ଗୋଟି ।
ଶରଧାରେ କାଣ୍ଡର ମୂନରେ ଲେଖିଲେ
ଲକ୍ଷ୍ମଣଙ୍କୁ ଡାକିଣ ବଚନ କହିଲେ ।

ବୋଇଲେ ଏ ଦେବୀଙ୍କୁ ତୁମ୍ଭେ କର ପୂଜା
ତୋର ନାମ ଦେଇ ତୁ ତାକୁ କର ପୂଜା ।
ଶୁଣିଣ ସଉମିତ୍ରୀ ଜୀବନ୍ୟାସ କଲା
ଶ୍ୱେତ ମନ୍ଦାର ଦେଇ ଦେବୀଙ୍କି ପୂଜିଲା ।
ଲକ୍ଷ୍ମଣ ଚଣ୍ଡୀ ବୋଲି ତାର ନାମ ହେଲା
ହରଷ ହୋଇଣ ସେ ରାମ ପାଶେ ଗଲା ।
ସେଠାରୁ ତିନିଜଣ ଚଳିଲେ ବହନ
ଆଗରେ ଶ୍ରୀରାମ ଯେ ପଛରେ ଲକ୍ଷ୍ମଣେ ।
ମଧ୍ୟରେ ଦେବୀ ସୀତା କରନ୍ତି ଗମନ
ଆକାଶର ଚନ୍ଦ କି ଭୂମିରେ ଚଳେ ପୁଣ ।
ଏକାମ୍ରର ବନରେ ମିଳିଲେ ପୁଣ ଯାଇ
ବିନ୍ଦୁ ସାଗର ସେ ଦେଖିଲେ ରଘୁସାଇଁ ।
ସେଠାରେ ତିନିଜଣ ସ୍ନାନ ପୁଣ କଲେ
ସେ ବନରେ ଶ୍ରୀରାମ ସେଦିନ ରହିଲେ ।
ଆରଦିନ ଲିଙ୍ଗେକ ପୂଜା କଲେ ପୁଣି
ସେ ଲିଙ୍ଗର ନାମଦେଲେ ରାମେଶ୍ୱର ଜାଣି ।
ଜୀବନ୍ୟାସ କରିଣ ଧୂପଦୀପ ଦେଲେ
ତୁଳସୀ ବେଲପତ୍ର ଦେଇଣ ପୂଜା କଲେ
ସେଠାବରେ ମଢ଼ିଆ କଲେ ରାମରାଣ
ଲକ୍ଷ୍ମଣ ଜାନକୀ ଯେ ସଙ୍ଗରେ ବେନିଜନ ।
ସୀତା ମଢ଼ିଆ ବୋଲିଣ ତାର ନାମ ଦେଲେ
ମାସେ ତିନିଦିନ ଯେ ସେଠାରେ ରହିଲେ ।
ସେଠାରେ ଜାନକୀ ଯେ ପଚାରେ ରାମଙ୍କୁ
ବିନ୍ଦୁସାଗର ବୋଲିଣ ବୋଇଲ ଯାହାଙ୍କୁ ।
ସେ ଜଳରେ କି କି ଯେ ଫଳ ଅଛି ପୁଣ
ନଦୀ ସରୋବରରେ ଦେଖା ତ ନାହିଁ ଜାଣ ।
ନିଜସ୍ଥାନ କପିଳାସ ଅଟଇ ତାଙ୍କର
ଦ୍ୱିତୀୟରେ କାଶୀରେ ରହିଲେ ଯାଇଁ ହର ।
ତୃତୀୟରେ ଭୁବନେଶ୍ୱର ଏକାମ୍ରର ବନେ
ଚତୁର୍ଥରେ ଶ୍ରୋଣିତ ନବରେ ବିଜେ ତେଣେ ।
ପଞ୍ଚମରେ ସଉରାଷ୍ଟ୍ର ନବରେ ବିଜେକଲେ
ସେଠାରେ ହଟକଥା ଗୋଟିଏ ଭିଆଇଲେ ।
ଏକାଦଶ ରୂପ ଯେ ଧଇଲେ ତହିଁ ପୁଣ
ତେଣୁ ଏକାଦଶ ରୁଦ୍ରନାମ ଜାଣ ।
ଶ୍ରୋଣିତ ନବରେ ଯେ ବିଜେ ଯହୁଁ କଲେ
ଉମାଙ୍କୁ ଘେନିଣ ସେଥିରେ ବିହରିଲେ ।
ଉମା ମହେଶ୍ୱର ନାମ ହେଲା ତେଣୁ
ଗଉରୀଙ୍କ ସଙ୍ଗରେ କାଶୀରେ ରହେ ତେଣୁ ।
ତେଣୁ ସେ ବିଶ୍ୱନାଥ ନାମ ବୋଲାଇଲେ
ମଳାଜୀବମାନଙ୍କୁ ପାଷାଣ ଲିଙ୍ଗ କଲେ ।
କପିଳାସେ ପାର୍ବତୀ ସଙ୍ଗରେ ରସକ୍ରୀଡ଼ା
ନିଜସ୍ଥାନ ଈଶ୍ୱରଙ୍କର ଅଟେ ସେହୁ ପରା ।
ଜୟଦୁର୍ଗା ଭୁବନେଶ୍ୱରରେ ଅଟେ ପୁଣ
ମହିଷାସୁର ଦୈତ୍ୟକୁ ମାଇଲେ ଦେବୀ ଜାଣ ।
ଦୈତ୍ୟକୁ ମାରିବାରେ ଈଶ୍ୱର ତାରେ ସୁଖୀ
ବୋଇଲେ ତୋର ସଙ୍ଗେ ଭାବ କରିବା ସଖୀ
ଭୁବନେଶ୍ୱରୀ ଶୁଣିଣ କହେ କରଯୋଡ଼ି
ମୋର ସଙ୍ଗେ କ୍ରୀଡ଼ା ଯେବେ କରିବ ତ୍ରିପୁରାରି ।
ଉମା ଗଉରୀ ଯେ ପାର୍ବତୀ ଦୁର୍ଗା ଜାଣ
ମୋତେ ଦେଖିଲେ ତୁମ୍ଭର ନେବ ପାଞ୍ଚଜଣ ।
ଏ ପଞ୍ଚ ସ୍ଥାନରେ ତୁମ୍ଭେ ପାଞ୍ଚରୂପ ଧରି
ପାଞ୍ଚ ସପତଣୀଙ୍କର ସଙ୍ଗରେ ବିହରି ।
କାହାରି ମନ ବିଭଙ୍ଗ ନୋହିବ ଯେ ପୁଣ ।
ତେବେ ସେ ମୋର ସୁଖ ହୋଇବଦେବ ଜାଣ
ଏତେ ବୋଲି ଗୋପାଳୁଣୀ କହିଲେକ ଯହୁଁ
ଏ ସ୍ଥାନରେ ଈଶ୍ୱର ବିଜେକଲେ ତହୁଁ ।
ତେଣୁ ସେ ଭୁବନେଶ୍ୱର ଶୁକ୍ଳାମ୍ବର ମୂର୍ତ୍ତି
ଭୁବନେଶ୍ୱର ନାମ ଗୋପାଳୁଣୀ ସେଟି ।
ବେନିଜନ ଏଠାରେ ବିଶ୍ରାମ ଯହୁଁ କଲେ
ବିନ୍ଦୁ ସାଗରକୁ ସେଠାରୁ ଆରମ୍ଭିଲେ ।
ସଦାଶିବ ଆଜ୍ଞାରେ ସ୍ୱର୍ଗରୁ ଆସିଲେ ତସ୍କର
ବସିଣ ବିନ୍ଦୁ ସାଗର କଲେକ ତିଆର ।
ସାଗରକୁ କରିଣ ତସ୍କର ଚଳିଗଲେ
ଦେଖିଣ ସଦାଶିବ ମନରେ ବିଚାରିଲେ ।
ତ୍ରିଦଶ ଦେବତାଙ୍କୁ ସୁମରି ସଦାଶିବ
ବେଦବରଙ୍କୁ ବୋଇଲେ ଆସହେ ତୁମ୍ଭେବେଗ ।
ଦଶଦିଗ ପାଳଙ୍କୁ ସଙ୍ଗତରେ ଘେନି
ସକଳ ଦେବତା ଯେ ପ୍ରବେଶ ଏଥେ ପୁଣି ।
ବେଦବର ଅଇଲେ ଜାଣି ଯୋଗବଳେ
ସମସ୍ତେ ବିଜେ କଲେ ଏ ଶିବ କ୍ଷେତ୍ରରେ ।
ସଦାଶିବ ବୋଇଲେ ଏ ବିନ୍ଦୁ ସାଗରକୁ
ପବିତ୍ର କର ବେଗେ ଯେ ଏ ନୂଆ ତୀର୍ଥକୁ ।

ବେଦବର ବୋଇଲେ ଶୁଣ ହେ ଈଶାନ
କୋଟିଏ ତୀର୍ଥଜଳ ଅଇଲେ ହେବ ପୂର୍ଣ୍ଣ ।
ସ୍ୱର୍ଗପୁରକୁ ଯେ ପୁଷ୍କର ଏବେ ଯାଉ
ସ୍ୱର୍ଗରେ ଯେତେ ତୀର୍ଥ ଜଳ ସେ ଅଣାଉ ।
ମର୍ତ୍ତ୍ୟପୁରକୁ ଯାଉ ବୃଷଭ ତୁମ୍ଭର
ପାତାଳ ପୁରକୁ ଯାଉ ହଂସ ଯେ ମୋହର ।
ଶୁଣିଣ ତିନିଜଣ ବେଗେ ଚଳିଗଲେ
ତିନିପୁର ତୀର୍ଥଜଳ ଘେନିଣ ଅଇଲେ ।
ଗୋଦାବରୀ ତୀର୍ଥରେ ବୃଷଭ ଯାଇ ମିଳି
ସଦାଶିବ ଆଜ୍ଞା ତୋତେ ଯିବୁ ମହୀଆଳି ।
ଦେଖିଣ ଗୋଦାବରୀ ଚିତ୍ତରେ ଭାଳିଲା
କାହିଁରେ ନେବୁ ବୋଲି ବୃଷଭେ ପଚାରିଲା ।
ବୃଷଭ ବୋଇଲେ ମୋର ଯାଉଁଳିରେ ଆସ
ଆସିଲେ ସକଳ ତୀର୍ଥ ନକର ଦୁଃଖ ଲେଶ ।
ଗୋଦାବରୀ ବୋଇଲେ ଏ କଥାକୁ ମାନ
ବୃଷଭ ଯାଉଁଳିରେ ଯିବାର ବଡ଼ହୀନ ।
ଏମନ୍ତ ବିଚାର ଯେ କହି ମହୀଆଳି
ରଜସ୍ୱଳା ହୋଇଣ ନ ଯିବି ଆଉ ଫେରି ।
ଶୁଣିକରି ବୃଷଭ ସେଠାରୁ ଫେରିଆସି
ସଦାଶିବ ଦେବଙ୍କୁ କହିଲେ ଯେ ଆସି ।
ବୋଇଲେ ଗୋଦାବରୀ ନ ଦେଲେ ତୀର୍ଥଜଳ
ବୋଇଲା ଅଶଉଚ ଦେହ ଯେ ମୋହର ।
ଶୁଣିଣ ଈଶ୍ୱର ବୋଇଲେ ଗର୍ବ କଲା
ମିଛରେ ରଜସ୍ୱଳା ହୋଇଛି ବୋଇଲା ।
ଏବେ ସେ ମିଛକରି କହିଲା ମୋର କାର୍ଯ୍ୟେ
ହେଉ ଅଶଉଚ ବୋଲି ବୋଇଲେ ଦେବରାଜେ
ନାରଦ ଶୁଣିକରି ତୁରିତେ ଚଳିଗଲେ
ଗୋଦାବରୀ ଆଗରେ ଯାଇଣ କହିଲେ ।
ସ୍ୱାମୀର ଆଜ୍ଞା ତୁ ଯେ ଭାଙ୍ଗିଲୁ ମହୀସ୍ଥଳୀ
ବୃଷଭ କହିବାରୁ ତୋତେ କ୍ରୋଧ ବୋଲି ।
ବୋଇଲେ ଅଶଉଚ ହୋଇଣ ସେ ଥାଉ
କୌଣସି କାଳେ ମୋର କୋଳକୁ ଯୋଗ୍ୟ ନୋହୁ
ଶୁଣିଣ ଗୋଦାବରୀ ହୋଇଲେ ବ୍ୟାକୁଳ
ବିଚାରିଲା ନିଶ୍ଚୟେଁ ଘୋଟିଲା ମୋତେ କାଳ ।
ଏତେବୋଲି ସିଂହପରେ ବସେ ମହୀସ୍ଥଳୀ
ଏକାମ୍ର ବନରେ ଶୀଘ୍ରେ ଯାଇଁ ମିଳି ।

ସେ ଗଲା ବେଳକୁ ବିନ୍ଦୁ ସାଗର ନିର୍ମଳ
ଦେବତାଏ ରଷିବ୍ରହ୍ମା ପବିତ୍ର କରି ସାର ।
ଗୋଦାବରୀ ଯାଇଣ ଚରଣେ ଓଳଗିଲା
ଗୋପାଳୁଣୀ ଚରଣେ ଓଳଗି ଶୋଇଲା ।
ଶୋକଭର ହୋଇଣ କାନ୍ଦେ ଗୋଦାବରୀ
ଦେଖିକରି ଗୋପାଳୁଣୀ ତାଙ୍କୁ କୋଳକରି ।
ବୋଇଲେ ବିକଳ କିମ୍ପା ହେଉଛୁରେ ବାମା
ସ୍ୱାମୀଙ୍କି କହିଣ ମୋର ଦୋଷ କର କ୍ଷମା ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ବଇଦେହୀ
ବିନ୍ଦୁସାଗର ପ୍ରତିଷ୍ଠା କରିଣ ଦେବେ ରହି ।
ସଦାଶିବ ଆଗରେ କଲେକ ଜଣାଣ
ବୋଇଲେ ଆମ୍ଭେ ଯାଉଛୁ ସ୍ୱର୍ଗ ଯେ ଭୁବନ ।
ମହାଦେବ ବୋଇଲେ ସକଳ ଦେବେ ଶୁଣ
ଗୋଟିଏ ବାଣଲିଙ୍ଗ କରିଣ ପୂଜା ଜାଣ ।
ଶୁଣିକରି ଦେବତାଏ କୋଟିଲିଙ୍ଗ ପୂଜି
ଜୀବନ୍ୟାସ କରିଣ କଲେ ସର୍ବସିଦ୍ଧି ।
ବେଦବର ବୋଇଲେ ଶୁଣ ପଞ୍ଚମୁଖ
ଏଠାରେ ସମସ୍ତଙ୍କର ହେଲା ପୁଣ ସୁଖ ।
ଶିବକ୍ଷେତ୍ର ବୋଲିଣ ବୋଇଲେ ଦେବଗଣ
କଥାଏ ଅଭୂଷଣ ହେଲା ପୁଣ ଜାଣ ।
ଈଶ୍ୱର ବୋଇଲେ କିସ ନୋହିଲା ଏ ସ୍ଥାନେ
ବେଦବର ବୋଇଲେ ଶୁଣ ତୁମ୍ଭେ କର୍ଣ୍ଣେ ।
ନାରାୟଣ ଏ ସ୍ଥାନେ ନ ରହିଲେ ପୁଣ
ଏ ସ୍ଥାନକି ପ୍ରତିଷ୍ଠା ହେବ ତୁମ୍ଭେ ଜାଣ ।
ଶୁଣିକରି ଈଶ୍ୱର ମନରେ ବିଚାରିଲେ
ଅନନ୍ତ ବାସୁଦେବ ଆସିଣ ମିଳିଲେ ।
ବେଦବର ସଦାଶିବ ସ୍ତୁତି କଲେ ପୁଣ
ପ୍ରସନ୍ନ ହୋଇଣ ବୋଇଲେ ନାରାୟଣ ।
ତୁମ୍ଭର ସଙ୍ଗରେ ଯେ ନ ଥିବାରୁ ମୁହିଁ
ତୁମ୍ଭେ ସୁମରିବାରୁ ଆମ୍ଭ ଆସନ କମ୍ପଇ ।
ଏ ସ୍ଥାନେ ମୁଁ ରହିଲି ଚିନ୍ତା ଯେ ନକର
ଶୁଣିଣ ସଦାଶିବ ହରଷ ବେଦବର ।
ବାସୁଦେବ ଅନନ୍ତ ମୁରତି ହୋଇ ପୁଣ
ଏ ସ୍ଥାନରେ ଶିବଲିଙ୍ଗ ରହିଲେ ନାରାୟଣ ।
ନାରାୟଣଙ୍କୁ ଦର୍ଶନ କରିଣ ଦେବେ ଗଲେ
ଯେ ଯାହାର ସ୍ଥାନେ ଯାଇଁ ପ୍ରବେଶ ହୋଇଲେ ।

ବେଦବର ଗଲେ ଯେ ଯଶୋବନ୍ତୀ ପୁର
କୋଟି ତୀର୍ଥ ହୋଇଲା ଭୁବନ ନାମ ତାର ।
ଏରୂପେ ସଦାଶିବ ବର ହେ ଏହୁ ସ୍ଥାନ
ଜାନକୀ ବୋଇଲେ ତୁମ୍ଭେ ଶୁଣ ରାମରାଣ ।
ଗୋଦାବରୀ ସ୍ୱାମୀଠାରେ ଦ୍ରୋହ ଅରଜିଲା
କେଉଁରୂପେ ଦୟା ତାକୁ କଲେ ଦେବ ଭୋଳା ।
ଦାଶରଥି ବୋଇଲେ ଶୁଣ ଗୋ ବଇଦେହୀ
ସେ କଥା ଗୋଟି ତୋର ଆଗରେ ଦେବାକହି ।
ଗୋପାଳୁଣୀ ପାଦରେ ସୁସେବା ଗୋଦାବରୀ
ଗୋପାଳୁଣୀ କେତେଦିନ ଉତ୍ତାରୁ କହେ ଫେରି
ଗୋଦାବରୀ ମହୀସ୍ଥଳୀ ଆସିଣ ସେହିଦିନୁ
ତାର ଦୋଷ କ୍ଷମାକର ତ୍ରିଲୋଚନ ମନୁ ।
ଈଶ୍ୱର ବୋଇଲେ ସେ ଡାକନ୍ତେ ନଇଲା
ଏଥିରେ ତାହାର ଯେ ବହୁତ ଦୋଷହେଲା ।
ଏବେ ଦୋଷ କ୍ଷମା ହେଲା ଯାଉ ନିଜ ସ୍ଥାନ
ବାରବର୍ଷ ଗଲେ ବର୍ଷେ ହେବ ଶୁଦ୍ଧ ପୁଣ ।
ସିଂହ ବୃହସ୍ପତିକି ଯେଉଁଦିନ ଯିବେ
ସିଂହରେ ଥିଲାଯାକ ଶୁଦ୍ଧ ଭଲେ ହେବେ ।
ଶୁଣିକରି ଗୋଦାବରୀ ଚରଣେ ଓଳଗିଲା
ସାଗର ମିଶାଅ ମୋତେ ବୋଲିଣ ବୋଇଲା ।
ସଦାଶିବ ବୋଇଲେ ସାଗରେ ତୁ ରହିବୁ
ସମସ୍ତଙ୍କ ଅଙ୍ଗରେ କେବେହେଁ ନ ମିଶିବୁ ।
ଜୀବଙ୍କର ଡିମ୍ବପ୍ରାୟ ସାଗରେ ଭାସୁଥିବୁ
କୌଣସି ତୀର୍ଥରେ ଆଉ ତୁହି ନ ମିଶିବୁ ।
ଶୁଣିଣ ଗୋଦାବରୀ କହନ୍ତି ବଚନ
କେତେକାଳ ପରିଯନ୍ତେ କଥା ଥିବ ପୁଣ ।
ସଦାଶିବ ବୋଇଲେ ତୋତେ ଭକ୍ଷିବେ ସର୍ବଜନ
ବାରବରଷ ଗଲେ ମୋ ସଙ୍ଗେ ସଙ୍ଗ ପୁଣ ।
ଶୁଣିଣ ଗୋଦାବରୀ ଓଳଗ ମେଲାଇଲା
ଗୋପାଳୁଣୀ ଚରଣେ ବିନୋଇ ହୋଇଲା ।
ସଦାଶିବ ବୋଇଲେ ବାର ବରଷରେ
ତୋର ଜଳେ ସ୍ନାନକଲେ ମୁକତ ନୁହେଁଭଲେ
ବାର ବରଷ ଉତ୍ତାରୁ ମୋର ସଙ୍ଗେ ସଙ୍ଗ
ତେତେବେଳେ ସ୍ନାନକଲେ ଲଭିବି ସ୍ୱର୍ଗ ଅଂଗ
ଶୁଣିଣ ଗୋଦାବରୀ ନିଜ ସ୍ଥାନେ ଗଲା
ବିନ୍ଦୁ ସାଗରକୁ ଦେଖି ସେ ତ ପଶିରିଲା ।

ଏମନ୍ତ ପ୍ରକାରେ ଗୋଦାବରୀ ଯେ ବେଗଳ
ଶୁଣିକରି ଜାନକୀ ମନ କଲେ ସ୍ଥିର ।
ବୋଇଲେ ଯେଉଁରୂପ ଉମା ମହେଶ୍ୱର
ସେ ରୂପରେ ଘରଣୀ କେ ଅଟେ ତାଙ୍କର ।
ଶ୍ରୀରାମ ବୋଇଲେ ସେଠି ଥିଲେ ଭଗବତୀଉମା
ଜାନକୀ ବୋଇଲେ ତୁମ୍ଭେ ଶୁଣ ରାମ ରାଜା ।
ଏକାଦଶ ରୁଦ୍ରଙ୍କର କେ ଅଟେ ଘରଣୀ
ଶ୍ରୀରାମ ବୋଇଲେ ଶାକମ୍ବରୀ ଅଟେ ପୁଣି ।
ଜାନକୀ ବୋଇଲେ ଚଳଦେଖିବା ଭୋଳାଲିଂଗ
ଭୁବନେଶ୍ୱରୀ ମୂର୍ତ୍ତି ଯେ ଗୋପାଳୁଣୀ ଅଂଗ ।
ସେଠାରୁ ତିନିଜଣ ଚଳିଗଲେ ପୁଣ
ଭୁବନେଶ୍ୱର ନିକଟରେ ମିଳିଲେ ଯାଇଁ ପୁଣ ।
ଦର୍ଶନ କଲେ ଯାଇ ସେଠାରେ ତିନିଜଣ
ଭୁବନେଶ୍ୱର ଲିଙ୍ଗ ବୋଇଲେ ଶ୍ରୀରାମ ଶୁଣ ।
ଶିବକ୍ଷେତ୍ର ମଧ୍ୟେ ଲିଙ୍ଗରାଜ ମୋର ନାମ
ଶିବକ୍ଷେତ୍ର ଏ ଅଟଇ ସବୁ ଯୁଗେ କ୍ଷମ ।
କୋଟିଏ ଲିଂଗ ସଂଗରେ ଘେନିଣ ବିଜେ ଏବେ
ଉତ୍ତରଦିଗେ ଅଟେ କପିଳେଶ୍ୱର ଶିବେ ।
ଦକ୍ଷିଣ ଭାଗରେ କପିଳେଶ୍ୱର ନାମ ପୁଣ
ପଶ୍ଚିମ ଭାଗରେ ବୈଦ୍ୟନାଥ ଛନ୍ତି ଜାଣ ।
ପୂର୍ବଦିଗେ ବୁଢ଼ାଲିଂଗ ଅଛି ଯେ ଦେଖ ଯାଇ
ଏପରି କୋଟିଏ ଲିଂଗ ଅଛନ୍ତି ଯେ ତହିଁ ।
ଏ ତ୍ରୟକୋଶରେ ଛନ୍ତି କୋଟିଲିଂଗ ପୂରି
ଅସୁର ଅଇଲେ ଏଥେ ମାରନ୍ତି ଋପଧାରୀ ।
ମଧ୍ୟରେ ଅଛନ୍ତି ଯେ ଅନନ୍ତ ବାସୁଦେବ
ଶୁକ୍ଳାମ୍ବର ମୁରତି ତୁମ୍ଭେ ଦେଖ ହେ ରାଘବ ।
ଶୁଣିଣ ରଘୁନାଥ ବେଗେ ଚଳିଗଲେ
ଅନନ୍ତ ବାସୁଦେବଙ୍କୁ ଦର୍ଶନ ଯାଇଁ କଲେ ।
ପୂର୍ବଦିଗେ ଯାଇ ବୁଢ଼ା ଲିଙ୍ଗକୁ ଦେଖିଲେ
ଦକ୍ଷିଣ ଭାଗେ ଦେଖ କପିଳ ମୁନି ଭଲେ ।
ପଶ୍ଚିମରେ ଜଗନ୍ନାଥ କଲେ ଦରଶନ
ଉତ୍ତର ଦିଗକୁ ପୁଣ ସେ ଚଳିଲେ ବହନ ।
ଉତ୍ତରେ କପାଳେଶ୍ୱର ଲିଂଗକୁ ଯାଇଁ ଦେଖି
ଗୋପାଳୁଣୀଙ୍କ ପାଖେ ପ୍ରବେଶ ହେଲେ ଧାଡି ।
ଜାନକୀ ବୋଇଲେ ମୁହିଁ ହୋଇଛି ନିରେଖ
କାନ୍ତଙ୍କୁ ଘେନି ମୁଁ ଯେ ବୁଲୁଛି ବନେ ଦେଖ ।

ଗୋପାଳୁଣୀ ବୋଲେ ତୁ ଯେ ତ୍ରୈଲୋକ୍ୟ ଠାକୁରାଣୀ
ଅସୁର ମାରିବା ପାଇଁ ଅବତାର ପୁଣି ।
ଦୁଷ୍ଟଜନ ମାରିଣ ସନ୍ଥଙ୍କୁ ପାଳିବ
ମହିମା ବିଖ୍ୟାତ କରି ଦେବଙ୍କୁ ଉଦ୍ଧରିବ ।
ଅନେକ କଥା ପୁଣି ହେଲେ ବେନିଜନ
ସେଠାରୁ ଗୋପାଳୁଣୀ ରହିଲେ ନିଜସ୍ଥାନ ।
ସେଠାରୁ ରାମ, ଲକ୍ଷ୍ମଣ, ସୀତା ଚଳିଗଲେ
ବାସୁଦେବର ଘରଣୀଠାରେ ପ୍ରବେଶ ହୋଇଲେ
ସେଠାରେ ଅନ୍ନପୂର୍ଣ୍ଣାଙ୍କୁ କଲେ ଦରଶନ
ଦେଖିକରି ଅନ୍ନପୂର୍ଣ୍ଣା କହିଲେ ବଚନ ।
ବୋଇଲେ ଏତେକାଳେ ଦେଖିଲି ମୋର ଅଙ୍ଗ
ମୋଠାରେ ଦୟାକଲେ କି କମଳା ଶ୍ରୀଅଙ୍ଗ ।
ଏତେବୋଲି ଜାନକୀ କୋଳରେ ବସାଇଲେ
ଆଲିଙ୍ଗନ କରିଣ ମାର୍ଜଣା ବିଧି କଲେ ।
ଉତ୍ତମ ପଦାର୍ଥ ଯେ ଦେଲେ ଆଣିକରି
ସନ୍ତୋଷରେ ତିନିଜଣ ଭୋଜନ ଯାଇଁକରି ।
ଜାନକୀ ବୋଇଲେ ମୁଁ ଯାଉଅଛି ଏବେ
ଅନ୍ନପୂର୍ଣ୍ଣା ବୋଇଲେ ରହ ଗୋ ସଦଭାବେ ।
ଶୁଣିକରି ଜାନକୀ ସେଠାରେ ମାସେ ରହି
ପ୍ରତିଦିନ ଅନ୍ନପୂର୍ଣ୍ଣା ସୁପକ୍ୱ ଅନ୍ନ ଦେଇ ।
କୋଟିଏ ଲିଙ୍ଗ ବୁଲି କଲେ ଦରଶନ
ଅନ୍ନପୂର୍ଣ୍ଣାଙ୍କୁ କହିଣ ଚଳିଲେ ତିନିଜଣ ।
ପାର୍ବତୀ ବୋଇଲେ ଯେ ଶୁଣ ହେ ଈଶାନ
ଏକାମ୍ର ବନଠାରୁ ଚଳିଲେ ତିନିଜଣ ।
ଚଉଦ ବରଷରୁ ଯେ ଗଲାଣି କେତେଦିନ
ସେକଥା ମୋର ଆଗେ କହ ତ୍ରିଲୋଚନ ।
ଈଶ୍ୱର ବୋଇଲେ ଗୋ ଶୁଣ ଭଗବତୀ
ଅଷ୍ଟବରଷ ଦୁଇମାସ ହୋଇଲାକ ଆସି ।
ଶୁଣିଣ ତୃପତି ଯେ ହୋଇଲେ ଅମ୍ବିକା
ବୋଇଲେ ପ୍ରାଣନାଥ କହ ତାଙ୍କ କଥା ।
ଶୁଣିକରି ଈଶ୍ୱର ଯେ କହନ୍ତି ବଚନ
ଦକ୍ଷିଣ ମୁଖହୋଇ ଚଳିଲେ ରାମ ପୁଣ ।
ମଳାଗୁଣୀ ନଦୀ ବୋଲି ପର୍ବତ ତଳେ ନାଳ
ସେଠାରେ ପ୍ରବେଶ ହୋଇଲେ ରଘୁବୀର ।
ସେ ନଦୀ କୂଳରେ ଯାଇଁ ପାଷାଣ ଦେଖିଲେ
ଧନୁ ହୁଳରେ ଶ୍ରୀରାମ ରୂପେକ ଲେଖିଲେ ।
ସେ ଦେବୀଙ୍କି ଜୀବନ୍ୟାସ କଲେ ରଘୁବୀର
ଭଗବତୀ ନାମଗୋଟି ଦେଲେକ ତାହାର ।
ସେଠାରୁ ତିନିଜଣ ବେଗେ ଚଳିଗଲେ
ପର୍ବତର ତଳରେ ଯାଇଁଣ ରହିଲେ ।
ସେଠାରେ ସଉମିତ୍ରୀ ବର୍ତ୍ତୁଳ ପାଷାଣେ
ଆଣିଣ ଶ୍ରୀରାମଙ୍କୁ ଦେଲେକ ବହନେ ।
ଦେଖିଣ ଶ୍ରୀରାମ ଯେ ତାହାଙ୍କୁ ପୂଜା କଲେ
ଜୀବନ୍ୟାସ କରିଣ ସେ ଲିଙ୍ଗ ଆରୋପିଲେ ।
ଶ୍ରୀରାମଙ୍କ ଅଙ୍ଗୁଷ୍ଠିରେ ବଷା ମୁଦି ଥିଲା
ସେ ବଷା ମୁଦି ଲାଗି ହୀରା ସେ ଲିଙ୍ଗହେଲା ।
ଦେଖିଣ ଶ୍ରୀରାମ ଯେ ହରଷ ହୋଇଲେ
ହୀରାର ଜ୍ୟୋତିପ୍ରଭା ସେ ଲିଙ୍ଗେ ଦେଖିଲେ ।
ବିଚାରିଲେ ଏ ମୁଦି ନିଧି ଯେ ଅଟଇ
ସେ ଲିଂଗ ଉପରେ ଏବେ ରହିଲାକ ଯାଇଁ ।
ମୋହର ନିଧି ନାମ ମିଶାଇ କରି ଠୁଳ
ଏ ଲିଂଗର ନାମ ହେଲା ରାମ ନିଧି ଧାର ।
ନାମ ଦେଇ ସେଠାରୁ ଶ୍ରୀରାମ ଚଳିଗଲେ
କୁହୁକୁ ବନେ ଯାଇଁ ପ୍ରବେଶ ହୋଇଲେ ।
ଦେଖିଲେ ସେ ବନରେ ଏକ ବିଶ୍ୱନାଥ
ସେଠି ତିନିଜଣ ତାଙ୍କୁ ଓଳଗି ବହୁତ ।
ସେହି ବିଶ୍ୱନାଥ ନାମ ଚଣ୍ଡେଶ୍ୱର ଜାଣ
ଚଣ୍ଡୀମାନଙ୍କୁ ଘେନି ଲୀଳା କରେ ପୁଣ ।
ସେ ବିଶ୍ୱନାଥଙ୍କୁ ଶ୍ରୀରାମ ଲକ୍ଷ୍ମଣ ଦେଖିକରି
ପାଷାଣ ରୂପ ବଦଳ ହେଲେ ତ୍ରିପୁରାରି ।
ବୋଇଲେ ଭଲକଲ ମୋତେ ଦେଖାଇଲ
ଅନେକ କାଳରୁ ମୁଁ ବିଚାରି ଥିଲି ଭଲ ।
ତୁମ୍ଭଙ୍କୁ ଦେଖିବାରେ କୁଶଳ ସବୁ ମୋର
ଶୁଣି କରି ଶ୍ରୀରାମ ହରଷ ମନର ।
ବିଶ୍ୱନାଥ ବୋଇଲେ ମାର ଦୁଷ୍ଟବେଗି
ତୁମ୍ଭଙ୍କୁ ଦେବ ଅସୁରେ ଅଟନ୍ତି ବଡ଼ରାଗି ।
ଏତେବୋଲି ପକ୍ୱଫଳ ବେଗେ ଆଣିଦେଲେ
ସେଠାରେ ଦୁଇଭାଇ ଭୁଞ୍ଜି ସୁସ୍ଥ ହେଲେ ।
ଏଥୁଅନନ୍ତରେ ଯେ ଶୁଣ ଗୋ ଶାକମ୍ଭରୀ
ବିଶ୍ୱନାଥ ଘରଣୀ ଶାରଦା ରୂପଧରି ।
ଜାନକୀଙ୍କ ଚରଣେ ଯାଇଣ ଓଳଗିଲା
ମାର୍ଜଣା ବିଧିମାନ ଜାନକୀଙ୍କି କଲା ।

ପକ୍ୱଫଳ ଦେଇଣ ଭୋଜନ କରାଇଲେ
ଜାନକୀ ଯେ ତାଙ୍କଠାରେ ହରଷ ହୋଇଲେ ।
ଦୁଷ୍ଟାନ୍ତର କଥା ଚଣ୍ଡୀ କହିଲେ ବହୁତ
ତୃପତ କରାଇଲା ଜନାକୀର ଚିତ୍ତ ।
ସେଠାରୁ ତିନିଜଣ ସନ୍ତୋଷ ହୋଇଗଲେ
କଦଳୀ ବନେ ଯାଇଣ ପ୍ରବେଶ ହୋଇଲେ ।
ଦେଖିଲେ କଦଳୀ ବନ ଅତି ଶୋଭା ଅଟେ
ଜଙ୍ଘା ପାଚିଲା ସେଥିରେ ଅନେକ ପ୍ରକଟେ ।
ଦେଖିଣ ରାମଚନ୍ଦ୍ର ସେ ବନେ ରହିଲେ
ପାଚିଲା କଦଳୀଯାକ ସୁଖେ ଯେ ଭୁଞ୍ଜିଲେ ।
ସେଥିରେ ଦଶଦିନ ଶ୍ରୀରାମ ରହିଲେ
ସେ ବନରେ ଯାଗୁଳାଇ ଦେବୀଙ୍କି ଭେଟିଲେ ।
ଶ୍ରୀରାମ କହିବାରୁ ସେହି ଦେବୀ ଦେଖି ।
ପାଷାଣ ଟେକିଲା ବାହାର ଶଶୀମୁଖୀ ।
ମାତଳୀ ପୁଷ୍ପତୋଳି ଗଭା ସଜାଡ଼ିଲା
ଜାନକୀଙ୍କ ପାଶରେ ଯାଇଣ ମିଳିଲା ।
ଫୁଲଗଭା ଥୋଇଣ ଓଳଗେ ସୁନ୍ଦରୀ
ଦେଖିକରି ଜାନକୀ ତାଙ୍କୁ ଯାଇଁ ତୋଳି ।
କରଯୋଡ଼ି ଜାଗୁଳାଇ କହଇ ବଚନ
ଏତେକାଳେ ଦର୍ଶନ ପାଇଲି ମୁଁ ଯେ ପୁଣ ।
ଶୁଣିକରି ଜାନକୀ ପରମ ତୋଷ ହେଲେ
ଜାଗୁଳାଇକି ନେଇ ସେ ପାଶରେ ବସାଇଲେ ।
ଜାନକୀ ବୋଇଲେ ଶୁଣ ବନନାରୀ
ବନର ସୁଖଗୋଟି କହ ମୋତେ ଫେରି ।
ଜାଗୁଳାଇ ବୋଇଲେ ଶୁଣ କମଳିନୀ
ଏ ବିନେ ମୁଁ ଅଛି ବନ ହେଲା ଦିନୁ ପୁଣି ।
ମହେଶ୍ୱର ମୋହଠାରେ ସୁଦୟା କରିଥାନ୍ତି
ବନବୁଲି ଅଇଲେ ମୋତେ ସେ ରମନ୍ତି ।
ଏତେ ବୋଲି ଜାନକୀଙ୍କି ମାଜଣାଯାଇ କଲେ
ଅଙ୍ଗକୁ ଆଉଁଷିଣ କେଶ ସାମୋଳିଲେ ।
ଜୁଡ଼ାବାନ୍ଧି ଫୁଲଗଭା ନେଇ ସଜାଡ଼ିଲା
କଜ୍ଜଳ ସିନ୍ଦୂର ଦେଇ ଚରଣେ ନମିଲା ।
ଆଡ଼ ଉହାଡ଼ରେ ଶ୍ରୀରାମଙ୍କୁ ଓଳଗିଲା
ଲକ୍ଷ୍ମଣଙ୍କ ଚରଣେ ବିନୋଇ ହୋଇଲା ।
ଜାନକୀଙ୍କି କହିଣ ନିଜସ୍ଥାନେ ଗଲା
ସଖୀମାନଙ୍କୁ ଘେନି ବନରେ ବିହରିଲା ।

ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଜନକର ଦୁହିତା ଯେ ଶ୍ରୀରାମଙ୍କୁ ପଚାରି ।
ବୋଲନ୍ତି କୁହୁକ ବନେ ଦେଖିଲ ଯେଉଁ ଚଣ୍ଡୀ
ସେ ଚଣ୍ଡୀର ପ୍ରତାପ କହିବ ମୋତେ ମଣ୍ଡି ।
କେଉଁ ଗୁଣେ ଚଣ୍ଡୀ ନାମ ହେଲା ତାର ପୁଣ
ଶ୍ରୀରାମ ବୋଇଲେ ବିମ୍ବୋଷ୍ଠୀ ମୋହଠାରୁଶୁଣ ।
ଅଷ୍ଟଦିଗେ ଅଷ୍ଟଚଣ୍ଡୀ ଏ ଦ୍ୱୀପ ରଖନ୍ତି
ତେଣୁ ତାଙ୍କୁ ମହାମାୟୀ ସମସ୍ତେ ବୋଲନ୍ତି ।
ଅଷ୍ଟଦିଗେ ଅଷ୍ଟକିଳା ବିଧାତା ରଖିଲା
ତେଣୁ ସେ ଦ୍ୱୀପମାନ ସମାନ ରହିଲା ।
ଦୁର୍ଗାଙ୍କର ଅଂଶରୁ ଚଣ୍ଡୀ ହେଲେ ଜାତ
ତେଣୁ ଈଶ୍ୱରଙ୍କୁ ଲଭିଲେ ସମସ୍ତ ।
ଜାନକୀ ବୋଇଲେ ଯେ ଏ ବନ ଦେବୀ ପୁଣି
ବନେ ଭ୍ରମଣ କରନ୍ତି ବେଳ କାଳ ଜାଣି ।
କେଉଁଗତି ଏହାଙ୍କର କହହେ ଦାଶରଥି
ଶୁଣିକରି ଶ୍ରୀରାମ କହିଲେ କଥା ସେଠି ।
ବନର ଦେବୀମାନେ ବନେ ଛନ୍ତି ରହି
ନାନାରଙ୍ଗେ ଲୀଳା କରନ୍ତି ବନେ ରହି ।
ସଦାଶିବ ଯେତେବେଳେ ବନକୁ ଆସଇ
ସେହି ବନ ଦେବୀଙ୍କର ମନ ତୋଷ ହୋଇ ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ସେଠାରେ ଶ୍ରୀରାମ ଯେ କିସ କଲେ ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ
ସେଠାରୁ ତିନିଜଣ ଗଲେ ବେଗେ ଚଳି ।
ଉମା ମହେଶ୍ୱରଙ୍କ ସ୍ଥାନରେ ପ୍ରବେଶ
ଶ୍ରୋଣୀତ ନବରେ ଯେ ବିଜୟ ପୀତବାସ ।
ଦେଖିକରି ତିନିଜଣ ହରଷ ହୋଇଲେ
ସଦାଶିବଙ୍କ କୋଳେ ଉମାଙ୍କୁ ଦେଖିଲେ ।
ଜାନକୀଙ୍କି ଶ୍ରୀରାମ କହିଲେ ଯେ ପୁଣ
ଉମା ମହେଶ୍ୱରଙ୍କର ନାମ ତୁମ୍ଭେ ଜାଣ ।
ଦେଖିକରି ମହେଶ୍ୱର ଉମାଙ୍କ କୋଳୁ ଉଠି
ଜାନକୀଙ୍କି ଯାଇଣ ଆଣିଲେ ପାଛୋଟି ।
ଅଲଗା ବସିଣ ସେ ଅନେକ କଥା ହେଲେ
ଯେ ଯାହାର ଦୁଃଖସୁଖ ସେଠାରେ ମନାସିଲେ ।
ଶ୍ରୀରାମ ଲକ୍ଷ୍ମଣ ଯେ ଶିବ ସଙ୍ଗେ କଥା
ଲକ୍ଷ୍ମଣ ବୋଇଲେ ଶୁଣ ହେ ପଞ୍ଚମଥା ।

ତୁମ୍ଭ ନଗ୍ରରେ ଅଛି ବାଣାସୁର
ନ ମାରି ତାହାକୁ କିମ୍ପା ରଖିଛ ଦିଗମ୍ବର ।
ଈଶ୍ୱର ବୋଇଲେ ସେ ପାଳକ ପୁତ୍ର ମୋର
ତପକରି ମୋତେ ଯେ ବୋଧିଲା ଅସୁର ।
ତେଣୁକରି ଦୟା ତାରଠାରେ ମୋର ହୋଇ
ନୋହିଲେକି ଏକାପୁରେ ଥାଆନ୍ତା ସେହୁରହି ।
ଲକ୍ଷ୍ମଣ ବୋଇଲେ ତାହାକୁ କେମନ୍ତେ ରଖିବୁଁ
ହାବୁଡ଼େ ପଡ଼ିଲେ ଆମ୍ଭେ ନିଶ୍ଚେ ଯେ ମାରିବୁ ।
କ୍ରୋଧରେ ଜର ଜର ସୁମିତ୍ରାର ସୁତ
ଶ୍ରୀରାମ ବୋଇଲେ ତୁମ୍ଭେ ଭେଦ ବେଗେ ଦୂତ ।
ନୋହିଲେ ଲକ୍ଷ୍ମଣ ତାକୁ କରିବ ନିଶ୍ଚେ ହତ
ରକ୍ଷା କେହି କରି ନ ପାରିବେ ତ୍ରିଜଗତ ।
ଶୁଣିକରି ସଦାଶିବ ନନ୍ଦୀକି ଭେଦି ଦେଲେ
ବାଣାସୁରକୁ କହିବୁ ରହିବ ଗୁପତରେ ।
ଶ୍ରୀରାମ ଲକ୍ଷ୍ମଣ ଯେ ଏ ପୁରେ ଛନ୍ତି ପଶି ।
ଶୁଣିକରି ଭୃକୁଟୀ ବେଗେ ଚଳିଗଲା
ବାଣାସୁର ଆଗରେ ଯାଇଣ ମିଳିଲା ।
ବୋଇଲେ ଶ୍ରୀରାମ ଲକ୍ଷ୍ମଣ ଏ ବନରେ
ଅସୁର ମାରିବାକୁ ଧରିଣ ଧନୁଶରେ ।
ତାଙ୍କୁ ଡରି ତୋହର ପାଶକୁ ମୋତେ ଭେଦି
ଶୁଣି ବାଣାସୁରର ନସ୍ଥୁରେ କିଛି ବୁଦ୍ଧି ।
ବୋଇଲା କିମ୍ପାଇଁ ତାକୁ ଡରିଲା ଈଶ୍ୱର
ଯାହାର ବିଗ୍ରହରେ ତୈଲୋକେ ହେବ ଚୁର ।
ନନ୍ଦୀ ବୋଇଲେ ଈଶ୍ୱରେ ନଜାଣୁକି ତୁହି
ଶୟନ ତେଜି ଅନନ୍ତ ବାସୁଦେବ ଜାତହୋଇ ।
ଅସୁର ବଳ ଯହୁଁ ସେ ହୋଇଲେ ପ୍ରବଳ
ଶ୍ରୀହରି ଜାତ ହେଲେ ଯେ ମାରିବେ ସକଳ ।
ବାଣାସୁର ବୋଇଲା ମୁଁ ଲୁଚି ନ ପାରିବି
ନିଉନ ହୋଇଣ ଯାଇଁ ତାହାଙ୍କୁ କହିବି ।
ଏତେ କହି ବାଣାସୁର ବାହାର ବେଗେ ହେଲା
ମହେଶ୍ୱର ଆଗରେ ଯାଇଣ ମିଳିଲା ।
ମହେଶ୍ୱର ଚରଣେ ନମିଲା ଯାଇଁ ପୁଣ
ଦେଖିକରି ମହେଶ୍ୱର ରାମଙ୍କୁ କହେ ଜାଣ ।
ଯାଇକରି ବାଣାସୁର ରାମଙ୍କୁ ଓଳଗିଲା
ଶ୍ରୀରାମ ବୋଇଲେ ମରଣ ଆଜ ତୋର ହେଲା ।
ସେହିଠାରୁ ବାଣାସୁର ବେଗେ ଚଳିଗଲା
ଉମାଙ୍କର ଚରଣରେ ଯାଇଁ ଓଳଗିଲା ।
ଦେଖିକରି ଉମାଦେବୀ ବୋଇଲେ ବଚନ
ଜାନକୀଙ୍କି ଓଳଗି ହୁଅରେ ତୁହି ପୁଣ ।
ଶୁଣିକରି ବାଣାସୁର ହରଷ ହୋଇଲା
ଜାନକୀ ଚରଣରେ ଯାଇଣ ଶୋଇଲା ।
ଉମାଙ୍କୁ ଜାନକୀ ପଚାରନ୍ତି ଯେ ସେଠାରେ
ସହସ୍ର ଭୂଜ ଏହାର କେବଣ ପ୍ରକାରେ ।
ଉମା ଦେବୀ ବୋଇଲେ ଅଟଇ ଅସୁର
ଈଶ୍ୱରଙ୍କୁ ସେବାକରି ପାଇଅଛି ବର ।
ତେଣୁ ଈଶ୍ୱର ଦେବତା ସହାୟ ଯାକୁ ହୁଏ
ତେଣୁ ସେ ଅମର ପଦେ ଯୁଗେ ଯୁଗେ ରହେ ।
ଜାନକୀ ବୋଇଲେ କିମ୍ପାଇ କର ମାନ୍ୟ ଧର୍ମ
ବଳବନ୍ତ ଲୋକେ କିମ୍ପା ନିଉନ ହୁଏ ପୁଣ ।
ଜାନକୀ କହିଲେ ବଚନ ଉମାଦେବୀ ଶୁଣି
ହରଷରେ ଉମାଦେବୀ କହେ ତାଙ୍କୁ ବାଣୀ ।
ତୁମ୍ଭର ଦିଅର ମୋର ସ୍ୱାମୀଙ୍କ ସଙ୍ଗେ କଳି
ବାଣାକୁ ମାରିବାକୁ କ୍ରୋଧରେ ପ୍ରଜ୍ୱଳି ।
ତେଣୁ ସେ ମୋର ସ୍ୱାମୀ ଡକାଇ ଆଣିଲେ
ତୋହର ସ୍ୱାମୀ ଚରଣେ ଓଳଗି କରାଇଲେ ।
ତୁମ୍ଭର ସ୍ୱାମୀ ଯେ ହୋଇଛନ୍ତି ବୋଧ
ଲକ୍ଷ୍ମଣ କେବଳ ହୋଇଛି ଅବୋଧ ।
ଶୁଣିକରି ଜାନକୀ ଉମାଙ୍କୁ ଘେନି ସଙ୍ଗେ
ଲକ୍ଷ୍ମଣ ଆଗରେ ମିଳିଲେ ଯାଇ ବେଗେ ।
ଜାନକୀ ବୋଇଲେ ତୁମ୍ଭେ ଶୁଣରେ ସାନୁଜ
ଆପଣା ଆପଣାରେ କିମ୍ପା ହେଉଅଛ ରାଗ ।
ଏକଥା ଭଲନୁହେଁ ନୁହଇ କଥା କିଛି
ଈଶ୍ୱର ପୁରୁଷ ସିନା ତୋର ଅଙ୍ଗ ଗୋଟି ।
ଲକ୍ଷ୍ମଣ ବୋଲନ୍ତି ଏ ମହେଶ୍ୱର ଗର୍ବ
ଶରୀର ଭିତରେ ଏ ରଖିଛନ୍ତି ରୋଗ ।
ଦୁଷ୍ଟ ଅସୁରଙ୍କୁ ନ ମାରନ୍ତି ଏବେ ଭୋଳା
ଆମ୍ଭେ ମାରିବା ପାଇଁ ମନାକଲେଯୋଗୀ ରୁଢ଼ା ।
ଜାନକୀ ବୋଇଲେ ରହୁ ତାଙ୍କ କଥା
ଥାଉ ଏବେ ଅସୁର ଛାଡୁ ମନୁ ବ୍ୟଥା ।
ଶୁଣିକରି ଲକ୍ଷ୍ମଣ ହରଷ ହୋଇଲେ
ଜାନକୀର ଚରଣେ ଯେ ଲେଟି ମେଲାଇଲେ ।

ଦେଖିଣ ଜାନକୀ ଯେ ଉମାଙ୍କୁ ଠାରିଦେଲେ
ଉମା ଯାଇଁ ବନ୍ଦାପନା ଲକ୍ଷ୍ମଣଙ୍କୁ କଲେ ।
ବନ୍ଦାପନା ସରିବାରୁ ଅସୁର ବାଣାସୁର
ଲକ୍ଷ୍ମଣଙ୍କ ଚରଣେ ଓଳଗେ ଶତେବାର ।
ଆଉଥରେ ଯେବେ ପଡ଼ିବୁ ମୋର ଆଗେ
ତୁଳାପ୍ରାୟ ମାଂସ ତୋର କାଟିବି ଶରଅଗେ ।
ଏତେ କହି ଲକ୍ଷ୍ମଣ କୋପ ଶାନ୍ତି କଲେ
ଶ୍ରୀରାମ ସଙ୍ଗରେ ସେଠାରୁ ଚଳିଗଲେ ।
ମାଳତୀଗିରି ତଳରେ ହେଲେ ପରବେଶ
ଶୁଣ ହେ ଶାକମ୍ବରୀ କଥା ଦିବ୍ୟରସ ।
ଶ୍ରୀରାମ ଲକ୍ଷ୍ମଣ ଯେ ଯିବାରୁ ବାଣାସୁର
ଈଶ୍ୱରଙ୍କ ଆଗରେ ମିଳେ ହରଷର ।
ଈଶ୍ୱର ବୋଇଲେ ତୁ ବେଗେ ଯାଅ ଘର
ଶ୍ରୀରାମ ଅଟନ୍ତି ଯେ ତ୍ରୈଲୋକ୍ୟ ଈଶ୍ୱର ।
ଚାରି ରାବଣ ମାରିବା ପାଇଁ ସେ ଜାତ ହୋଇ
ଅସୁର କୁଳ ବିନାଶ କରିବେ ବେନିଭାଇ ।
ଏଗାର ସହସ୍ର ବରଷ ପରିଯନ୍ତେ ପୁଣ
ଶ୍ରୀରାମ ସଙ୍ଗରେ ତୁ ନ କରିବୁ ରଣ ।
ରଣ କଲେ ନିଶ୍ଚୟ ମାରିବେଟି ତୋତେ
ସମ୍ଭାଳି ନୁହଇଟି ମୋହର ଆୟତେ ।
ଶୁଣିକରି ବାଣାସୁର ନିଜପୁର ଗଲା
ଆପଣା ପୁରରେ ଯାଇ ନିଶ୍ଚିନ୍ତେ ରହିଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ସେଠାରୁ ଶ୍ରୀରାମଚନ୍ଦ୍ର କି କଲେ କହ ପୁଣ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶାକମ୍ବରୀ
ମାଳତୀଗିରି ତଳେ ତିନିଜଣ ମିଳି ।
ଦେଖିଲେ ସେ ଗିରି ଯେ ଫୁଲରେ ଶୋଭାବନ
ସେ ଗିରି ତଳେ ଦେବୀ କରିଛି ବିଶ୍ରାମ ।
ଦେଖିଣ ତିନିଜଣ ହରଷ ହୋଇଲେ
ଶୋଭାବନ୍ତ ଦେବୀଙ୍କି ଯାଇଣ ଦେଖିଲେ ।
ପାଷାଣବଦଳ ଦେଖି ଦେବୀ ହେଲେ
ଯୋଗମାୟା ରୂପଧରି ରାମଙ୍କୁ ଓଳଗିଲେ ।
ସରସ୍ୱତୀ ରୂପଧରି ଜାନକୀ ପାଦେ ପଡ଼ି
ମାନ୍ୟ ଧର୍ମ କରିଣ ଶଙ୍ଖୋଳେ ଶିବନାରୀ ।
ଦୁଃଖ ସୁଖ ନାନାକଥା ଦୃଷ୍ଟାନ୍ତର ମାନ
ଦେଖିଣ ଶିବନାରୀ ଜାନକୀ ତୋଷେ ପୁଣ ।
ସେଠାରୁ ଶିବନାରୀ ବେଗେ ଚଳିଗଲେ
ସଉମିତ୍ରୀଙ୍କ ଆଗରେ ଯାଇଣ ମିଳିଲେ ।
ଉର୍ମିଳା ସଦୃଶରେ ଧରି ଏକ ରୂପ
ଲକ୍ଷ୍ମଣଙ୍କୁ ବନ୍ଦାପନା କଲେକ ତୁରିତ ।
ଦେଖିକରି ସଉମିତ୍ରୀ ଆଶ୍ଚର୍ଯ୍ୟ ହୋଇଲେ
ଏ କଥା କେମନ୍ତ ବୋଲି ମନେ ବିଚାରିଲେ ।
ବୋଇଲେ ଅଯୋଧ୍ୟା ନଗ୍ରରୁ କିମ୍ପା ଆସୁ
ଏକା ହୋଇ ବନରେ କିମ୍ପାଇ ତୁ ପଶୁ ।
ଶିବନାରୀ ବୋଇଲେ ଶୁଣ ପ୍ରାଣେଶ୍ୱର
ସବୁଦିନେ ତୁମ୍ଭର ଦାସୀ ମୁଁ ଅନୁଚର ।
ଭଗବତୀ ନାମ ଯେ ଅଟଇ ମୋହର
ଶ୍ରୋଣୀତ ନବରେ ଯେ ଅଟେ ମୋର ଘର ।
ଅନେକ କାଳରେ ମୁଁ ତୁମ୍ଭଙ୍କୁ ଦେଖିଲି
ତୁମ୍ଭର ଘରଣୀ ରୂପ ବଦଳ ଯେ ହେଲି ।
ବିଚାରିଲି କିସ ମୋତେ କରିବେ ପ୍ରାଣେଶ୍ୱର
ତୁମ୍ଭଠାରୁ ଏବେ ଯେ ଶୁଣିଲି ଶୀତଳ ।
ଶୁଣିକରି ଲକ୍ଷ୍ମଣ ହରଷ ମନ ହେଲେ
କେତେ ରୂପ ବଦଳ ହୋଇପାରୁ ବୋଲେ ।
ଭଗବତୀ ବୋଇଲେ ଶୁଣହେ ପ୍ରାଣେଶ୍ୱର
ଏକଦିନେ କୋଟିରୂପ ହୋଇପାରେ ମୋର ।
ମାଂସାସୁରୀ ଦୈତ୍ୟକୁ ମାଇଲି ମାୟାରୂପେ
ଚଉଷଠି କୋଟି ରୂପ ଧରିଲି ସାକ୍ଷାତେ ।
ଲକ୍ଷ୍ମଣ ବୋଇଲେ ତୁ ଦୀର୍ଘ ରୂପ ଦେଖା
ଶୁଣିକରି ଭଗବତୀ ଆକାଶେ ମେଲି ଶିଖା ।
ଦେଖିକରି ଲକ୍ଷ୍ମଣ ହରଷ ହୋଇଲେ
ଭଗବତୀଙ୍କି ନେଇଣ କୋଳେ ବସାଇଲେ ।
ମୁଖେ ଚୁମ୍ବନ ଦେଇ କଲେ ଆଲିଙ୍ଗନ
ବୋଇଲେ ଏ ସ୍ଥାନେ ସୁଖେ ତୁମ୍ଭେ ଥାଅପୁଣ ।
ଶୁଣିଣ ଭଗବତୀ ହରଷ ହୋଇଲେ
ଜାନକୀପାଶରେ ଯାଇ ପ୍ରବେଶ ବେଗେହେଲେ ।
ବଳରାମ ଦାସ ପାଶେ ଶ୍ରୀହରି ଚରଣ
ହୃଦରେ ବସି କଥା କହ ହେ ନାରାୟଣ ।
ଏଥୁ ଅନନ୍ତରେ ପାର୍ବତୀ ଯେ ପଚାରି
ତିନିଜଣ କି କଲେ କହ ହେ ତ୍ରିପୁରାରି ।
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ
ଭଗବତୀ ତାଙ୍କ ସଙ୍ଗୁ ବେଗେ ଗଲେ ଚଳି ।

ସୁସ୍ୱାଦୁ ପକ୍ୱଫଳ ଆଣି ଦେବୀ ଦେଲା
ଭୋଜନ କର ବୋଲି ସ୍ନେହରେ ବୋଇଲା ।
ଶୁଣିକରି ତିନିଜଣ ଭୋଜନ କଲେ ସୁଖେ
ଆଞ୍ଚୋବନ କରି ସାରି ବସିଲେ ନିଶ୍ଚିନ୍ତେ ।
କଷାଫଳ ଘେନିଣ ଆସେ ଭଗବତୀ
ହରଷରେ ରାମଚନ୍ଦ୍ର ଭୋଜନ କରନ୍ତି ।
ଦଶଦିନ ରହିଣ ସେଠାରୁ ଚଳିଗଲେ
କୁସୁମର ଗିରିତଳେ ଯାଇଣ ମିଳିଲେ ।
ସେଠାରେ ବାରଦିନ ରହିଲେ ଚାପଧାରୀ
ଗିରିର ଉପରେ ବିହାର ଯାଇ କରି ।
ଚିଖିଲ ପାଷାଣ ଦେଖିଲେ ତହୁଁ ପୁଣ
କାଣ୍ଡ ମୂନେ ରୂପକରି ଲେଖିଲେ ରାମରାଣ ।
ସେ ରୂପକୁ ଜୀବନ୍ୟାସ କଲେକ ସେଠାରେ
ଜୀବନ୍ୟାସ ସରିବାରୁ ରଜନୀ ତହିଁ ଘେରେ ।
ପୂର୍ବ ଦିଗକୁ ରାମ ଯେ ଚାହିଁଲେକ ପୁଣ
ଗଗନେ ତାରା ଉଦେ ହୋଇଲେଣି ଜାଣ ।
ତାରାକୁ ଦେଖିଣ ସେ ଦେବୀ ନାମ ଦେଲେ
ତାରେଣୀ ନାମ ତାକୁ ଶ୍ରୀରାମ ବିହିଲେ ।
ସେହିଠାରୁ ତିନିଜଣ ବେଗେ ଚଳିଗଲେ
ଋଷି କୁଲ୍ୟା ତଟରେ ଯାଇଣ ମିଳିଲେ ।
ବଦନ୍ତି ବନରେ ରହିଲେ ଚାପଧାରୀ
ସତର ଦିନ ସେଠାରେ ରହିଲେ ସେ ଫେରି ।
ଲକ୍ଷ୍ମଣଙ୍କୁ ବୋଇଲେ ଆଣ ଶୀଳା ବାଣ
ଏଠାରେ ଲିଙ୍ଗ ପୂଜା କରିବା ଯେ ପୁଣ ।
ଶୁଣିଣ ସଉମିତ୍ରୀ ବେଗେ ଚଳିଗଲେ
ପାଷାଣ ବାଣ ଗୋଟି ଆଣିଣ ବେଗେଦେଲେ ।
ସେ ବାଣକୁ ଶ୍ରୀରାମ କଲେ ପୂଜା ବିଧି
ଜୀବନ୍ୟାସ କରି ଧୂପ ଦ୍ୱୀପ ତହିଁ ସିଦ୍ଧି ।
ବେଲପତ୍ର ଦେଇଣ ଲିଙ୍ଗର ନାମ ଦେଲେ
ଅଠଣ ରୂପ ଦେଖିଣ ଶ୍ରୀରାମ ବିଚାରିଲେ ।
ଶାରୋଳା ନାମ ତାକୁ ଦେଲେ ଚାପଧାରୀ
ସେଠାରୁ ତିନିଜଣ ବେଗେ ଗଲେ ଚଳି ।
ମାଧୋଇ ପର୍ବତ ତଳରେ ପରବେଶ
ସେଠାର ଦଶଦିନ ରହିଲେ ହରଷ ।
ଗିରିବର ଉପରେ ବୁଲନ୍ତେ ଏକଦିନେ
କୁଲାଇ ଚଣ୍ଡୀ ବୋଲିଣ ଏକଇ ଚଣ୍ଡୀ ପୁଣ ।
ସେ ପର୍ବତ ଉପରେ ତାଙ୍କୁ ଯାଇ ଦେଖି
ତାଙ୍କୁ ଦେଖି ଖୁସି ହେଲେ ତହିଁ ଦାଶରଥି ।
ଦର୍ଶନ କରିଣ ଯେ ବର ତାଙ୍କୁ ଦେଲେ
ମନାସିଲେ ବର ତୁଗୋଦେବୁ ଯେ ବୋଇଲେ ।
ଶୁଣିକରି ଦେବୀ ଯେ ପରମ ତୋଷ ହେଲା
ପାଷାଣ ରୂପ ତେଜି ସ୍ୱରୂପ ଧରିଲା ।
ଜାନକୀଙ୍କ ଚରଣରେ ଓଳଗିଲା ଯାଇ
କରଯୋଡ଼ି ଜାନକୀ ଆଗରେ ଉଭାହୋଇ ।
ଦେଖିକରି ଜାନକୀ ପରମ ତୋଷ ହେଲେ
ସଦାଶିବ ଲାଭ ତୋତେ ହେଉଗୋବୋଇଲେ ।
ଏ ବଚନ ଶୁଣିକରି କୁଲାଇଚଣ୍ଡୀ ପୁଣ
ଶ୍ରୀରାମ ଚରଣରେ ଓଳଗେ ଯାଇଣ ।
ସେହିଠାରୁ ମହାସ୍ତୁଳୀ ବେଗେ ଚଳିଗଲା
ଲକ୍ଷ୍ମଣ ଚରଣରେ ବିନୋଇ ହୋଇଲା ।
ଦେଖିକରି ଲକ୍ଷ୍ମଣ ପରମ ତୋଷ ହେଲେ
ନିଜ ସ୍ଥାନ ଯାଅ ସଉମିତ୍ରୀ ଯେ ବୋଇଲେ ।
ସନ୍ତୋଷ ହୋଇଣ କୁଲାଇଚଣ୍ଡୀ ଗଲା
ଆପଣାର ନିଜସ୍ଥାନେ ଯାଇଣ ରହିଲା ।
ଚଣ୍ଡୀ ଯିବାରୁ ଶ୍ରୀରାମଙ୍କୁ ଜାନକୀ ପଚାରି
ଏଠାରେ ଚଣ୍ଡୀ କେମନ୍ତେ ରହେ ଚାପଧାରୀ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ଗୋ ବଇଦେହୀ
ଏ ଦ୍ୱୀପକୁ ଦେଖିବାକୁ ବିଧାତା ଅଇଲଇଁ ।
ଚାରି ଦିଗକୁ ବୁଲି ଦେଖେ ବେଦବର
ଦକ୍ଷିଣର ଦିଗକୁ ଅଇଲେ କୁଶଧର ।
ଏକଇ ପାଷାଣ ଏଠାରେ ଦେଖି ପୂଜି
କୁଲାଇଚଣ୍ଡୀ ବୋଲି ନାମଦେଲେ ହେଜି ।
ନାମଦେଇ ବ୍ରହ୍ମା ଯେ ନିଜ ପୁର ଗଲେ
ମଧ୍ୟାହ୍ନ ସମୟରେ ଜୀବନ୍ୟାସ କଲେ ।
ନିଜ ସ୍ଥାନେ ବେଦବର ହେଲେ ପରବେଶ
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଦିବ୍ୟରସ ।
ସେଠାରୁ ତିନିଜଣ ଯେ ବେଗେ ଚଳିଗଲେ
ପଟଳ ବନରେ ଯାଇ ପ୍ରବେଶ ହୋଇଲେ ।
ଋଷିକୁଲ୍ୟା ନଦୀରେ କଲେକ ସ୍ନାହାନ
ସେଠାରେ ଶ୍ରୀରାମ ଯେ ପୂଜିଲେ ଲିଙ୍ଗପୁଣ ।
ଲକ୍ଷ୍ମଣଙ୍କୁ ବୋଇଲେ ଆଣରେ ଯାଇ ଫଳ
ଏ ଲିଙ୍ଗକୁ ପୂଜା ଆମ୍ଭେ କରିବା ଏଠାର ।

ଶୁଣିକରି ସଉମିତ୍ରୀ ବେଗେ ଚଳିଗଲେ
ଟୋଲକ ଫଳ ଗୋଟିଏ ପାଞ୍ଚଣ ଆଣିଲେ ।
ଜୀବନ୍ୟାସ ଶ୍ରୀରାମ କଲେ ସେ ଲିଙ୍ଗକୁ
ଧୂପ ଦୀପ ଦେଇ ପୂଜା କଲେ ସେ ଫଳକୁ ।
ପୂଜା ସାରି ଶ୍ରୀରାମ ଯେ ନମସ୍କାର କଲେ
ଟୋଲକେଶ୍ୱର ବୋଲି ତାଙ୍କର ନାମ ଦେଲେ ।
ପଶ୍ଚିମ ମୁଖ ହୋଇ ସେ ଗଲେ ପଥ ବାହି
ସେ ରାତ୍ର ସେଠାରେ ରହିଲେ ଭବଗ୍ରାହୀ ।
ପ୍ରଭାତେ ସ୍ନାନ ଯେ କଲେ ତିନିଜଣ
ଯେ ବିଧିବିଧାନ ଯେ ସାରିଲେ ନିତ୍ୟକର୍ମ ।
ଲକ୍ଷ୍ମଣଙ୍କୁ ଶ୍ରୀରାମ ଯେ ବୋଇଲେ ପୁଣ ଚାହିଁ
ଶିବପୂଜା କରିବା ଆଶାରେ ତୁହି ଯାଇ ।
ଶ୍ରୀରାମଙ୍କ ଆଜ୍ଞା ଘେନିଣ ସଉମିତ୍ରୀ
ବନର ଭିତରେ ଲୋଡ଼େ ସେ ଯାଇଟି ।
ପାଷାଣ ଖୋଜିବାରୁ ନ ମିଳିଲା ତହିଁ
ଲାଉ ତୁମ୍ବା ଗୋଟିଏ ଯେ ଦେଖିଲେକ ତହିଁ ।
ସେ ତୁମ୍ବା ଲାଉ ଘେନି ଶ୍ରୀରାମ ପାଶେ ମିଳି
ଶ୍ରୀରାମର ଆଗରେ ଦେଲେ ଶୀଘ୍ରକରି ।
ଦେଖିକରି ଶ୍ରୀରାମ ତାକୁ ପୂଜାକଲେ
ଜୀବନ୍ୟାସ କରିଣ ଧୂପ ଦୀପ ଦେଲେ ।
ଜୀବନ୍ୟାସ କରିବାରୁ ହେଲା ଯେ ପାଷାଣ
ବଦନ ସ୍ୱରୂପ ସେହୁ ଧରିଲେ ଲିଙ୍ଗ ଜାଣ ।
ଉଠିଣ ଶ୍ରୀରାମ ଯେ ନମସ୍କାର କଲେ
ପ୍ରତାପେଶ୍ୱର ବୋଲିଣ ତାଙ୍କ ନାମ ଦେଲେ ।
ସେଠାରେ ପାଞ୍ଚଦିନ ରହିଲେ ରାମରାଣ
ଫଳମୂଳ ଭୁଞ୍ଜିଣ ହେଲେ ତୋଷ ମନ ।
ସେଠାରୁ ଋଷିକୁଲ୍ୟା ଦେବୀ ଯାଇଁ ମିଳି
ଶ୍ରୀରାମଙ୍କୁ ଦେଖିଣ ଶୋଇଲା ପାଏ ପଡ଼ି ।
କରଯୋଡ଼ି ଛିଡ଼ା ହୋଇ ଅନେକ ସ୍ତୁତି କଲା
ନିସ୍ତରିଲି ନିସ୍ତରିଲି ବୋଲିଣ ବୋଇଲା ।
ସେଠାରୁ ଜାନକୀର ଚରଣେ ଓଳଗି
କରଯୋଡ଼ି ସ୍ତୁତି ଯେ କରଇ ଦେବୀ ବେଗି ।
ସେଠାରୁ ଲକ୍ଷ୍ମଣର ଚରଣେ ବିନୋଇ
କରଯୋଡ଼ି ଅନେକ ସ୍ତୁତି ବଖାଣଇ ।
ସଉମିତ୍ରୀ ବୋଇଲେ ଥିଲୁ ତୁ କେଉଁଠାରେ
ତିନିମାସ ରହିଲୁ ଯେ ତୋହର ପାଶରେ ।
କରଯୋଡ଼ି ଋଷିକୁଲ୍ୟା କହଇ ଯେ ବାଣୀ
ନ ଜାଣିଲି ଆସିବାର ଏଥକୁ ତୁମ୍ଭେ ପୁଣି ।
ଏବେ ମୋତେ ଜଣାଗଲା ଆସିବାର ତୁମ୍ଭେ
ଦୋଷ କ୍ଷମାକର ମୋର ଅଛଲି ଯେ ଏବେ ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ଜାନକୀ ପାଶେ ଚଳ
ଜାନକୀଙ୍କି କହିଣ ନିଜପୁରେ ମିଳ ।
ଶୁଣିକରି ନଦୀ ଦେବୀ ବେଗେ ଚଳିଗଲେ
ଜାନକୀ ଚରଣରେ ଯାଇ ସେବାକଲେ ।
ଜାନକୀ ବୋଇଲେ ନିଜସ୍ଥାନେ ଯାଅ
ସୌଭାଗୀ ହୋଇଣ ସେ ସବୁଦିନେ ଥାଅ ।
ଆରମ୍ଭର ଦୁଃଖକାଳେ ଶଙ୍ଖୋଳିଲ ଗୋ ଏବେ
କିସ ସେଇ ତୋତେ ବୋଧିବୁ ପ୍ରୀତିଭାବେ ।
ଏହିଠାରେ ତୁମ୍ଭେଶ୍ୱର ଲିଙ୍ଗ ଯେ ରହିଲେ
ତେଣୁ ସେ ବର ତୋତେଦେଲୁଗୋ ବୋଇଲେ ।
ବର୍ଷକେ ଥରେ ଆଜଠୁଁ ଏ ସ୍ଥାନରେ ପୁଣ
ଧର୍ମବନ୍ତ ଲୋକେ ଆସି କରିବେ ଯେ ସ୍ନାନ ।
ଗଙ୍ଗାସ୍ନାନ ସଙ୍ଗରେ ପାଇବେ ସେ ଫଳ
ତ୍ରିକୁଳ ଉଦ୍ଧରି ସେ ଯିବେ ସ୍ୱର୍ଗଆଳ ।
ସ୍ନାହାନ କରି ତୋତେ ନିନ୍ଦା ଯେ କରିବ
ସ୍ୱର୍ଗକୁ ନଯିବ ସେ ନର୍କରେ ପଡ଼ିବ ।
ଶୁଣିଣ ନଦୀ ଦେବୀ ସନ୍ତୋଷ ହୋଇଲେ
ଓଳଗି ମେଲାଇଣ ନିଜପୁର ଗଲେ ।
ପାର୍ବତୀ ବୋଇଲେ ଯେ ସେଠାରୁ କିସ ହେଲା
କହ ହେ ପଞ୍ଚାନନ ପାତକ ହରେ ପରା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ନଦୀକି ବରଦେଇ ସେଠାରୁ ଚଳିଯାନ୍ତି ।
ଏତେକହି ପଶ୍ଚିମ ମୁଖରୁ ଚଳିଗଲେ
ମନଇଛା ବନରେ ଯାଇଣ ମିଳିଲେ ।
ସେହି ବନ ଭିତରେ ନଦୀଏ ପାର ହେଲେ
ତିନିଜଣ ସେଠାରୁ ପଥ ବାହିଗଲେ ।
ପଛରେ ସେହି ନଦୀ କରଇ ଈକାର
ରେ ରେ କାର କରିଣ ଯେ କରଇ ଫୁତ୍କାର ।
ଫୁତ୍କାର ଶୁଣି ଶ୍ରୀରାମ ପଛକୁ ଚାହିଁଲେ
ଏ ନଦୀ ଡାକୁଛି ବୋଲି ଶବଦ ବାରିଲେ ।
ବୋଇଲେ ଆରେ ନଦୀ ହୁଅ ଅଶଉଚ
ସର୍ବଦା ତୋ ଦେହରେ ନ ରହୁ ଜଳତ ।

ହୃଦୟ ନ ଚିରିଲେ ନୋହିବୁ ବାହାର
ଏ ବଚନ କହି ଶାପ ଦେଲେ ରଘୁବୀର ।
ରେରେକାର ନଦୀ ବୋଲିତା ନାମଦେଇଗଲେ
ବିପିନ ଲତା କନ୍ଦରେ ଯାଇଣ ମିଳିଲେ ।
ଦଣ୍ଡକାରଣ୍ୟ ଚୌରାଶୀ ସହସ୍ର ଯୋଜନ
ଋଷି ଦୁହିତା ସେଠାରେ ହୋଇଛି ରାଜନ ।
କୋପେ ମହାମୁନିଙ୍କ ଶାପରେ ନାଶଗଲା
ଜନ ମନୁଷ୍ୟ ଜୀବ ସେ ବନରେ ମଲା ।
ସେହିଦିନ ବନସ୍ତ ହେଲା ତାରଛମା
ବୃକ୍ଷ ଲତା ଜୀବ ସଞ୍ଚିଲେ ତହିଁ ବ୍ରହ୍ମା ।
ସେଠାରୁ ନାମ ଦେଲେ ଦଣ୍ଡକା ଅରଣ୍ୟ
ଚୌରାଶୀସସ୍ର ଯୋଜନ ସେ ବନ ଅଟେ ପୁଣ ।
ସେ ବନରେ ବିହରନ୍ତି ସୁଖେ ସୀତାପତି
ଶ୍ରୀରାମ ଲକ୍ଷ୍ମଣ ସୀତା ବସିଣ ବିଚାରନ୍ତି ।
ସେଠାରେ ଏକ ନଦୀ ଦେଖିଲେ ରାମରାଣ
ସେଠାରେ ତିନିଜଣ କଲେକ ଯେ ସ୍ନାନ ।
ବନରୁ ଫଳ ମୂଳ ଲକ୍ଷ୍ମଣ ଦେଲେ ଆଣି
ତିନିଜଣ ସେଠାରେ ଭୋଜନ କଲେ ପୁଣି ।
ସେଠାରେ ଜାନକୀ ପଚାରେ ଶ୍ରୀରାମଙ୍କୁ
ଏ ବନର ନାମ କିସ ନ କହିଣ ଯେ ଆମ୍ଭଙ୍କୁ ।
ନବ ବରଷ ଏଗାର ମାସ ଯେ ଦିନଗଲା
ତେବେ ତ ବନ ବୁଲିବାର ନ ସରିଲା ।
ସବୁଠାରେ ବନଲତା ଦେଖିଲି ଏବେ ମୁହିଁ
ଏ ବନର କଥା ମୋତେ କହ କିନା ରହି ।
ଶ୍ରୀରାମ ବୋଇଲେ ଜମ୍ବୁଦ୍ୱୀପ ଲକ୍ଷେଯୂଣ
ବିଧାତା ପୁରୁଷ ଯେ କଲେକ ଭିଆଣ ।
ଛପନ କୋଟି ଜୀବ ଏଥିରେ ସଞ୍ଚିଲା
ଜୀବଗୋଟିକରେ ଗୋଟିଏ ବର୍ଣ୍ଣ ପୁଣ ଦେଲା ।
ଛପନ କୋଟି ବର୍ଣ୍ଣ କଲେକ ଦଇବ
ସେଠାରୁ ସଂସାରରେ ଲାଗିଲା ପ୍ରୀତିଭାବ ।
ସେଠାରୁ ଏ ଦ୍ୱୀପକୁ ବେନିଭାଗ କଲା
ଅଧେକ ବନସ୍ତ ଯେ ଅଧେକ ପଦାହେଲା ।
ବନର ଭିତରେ ଯେ ଚଳନ୍ତି ଅଚଳନ୍ତି
ଅଠାଇଶ କୋଟି ରହିଲେ ତହିଁ ସ୍ଥିତି ।
ଯେଉଁଭାଗ ପଦାହୋଇ ରହିଲା ଏବେ ଶୁଣ
ମନୁଷ୍ୟ, ନଦୀ, ପୋଖରୀ, ସରୋବରଜାଣ ।
ଜାନକୀ ବୋଇଲେ ସେ ବନେ କିଏ ରାଜା
ଶ୍ରୀରାମ ବୋଇଲେ ସମସ୍ତେ ସିଂହର ପରଜା ।
ଏ ରାଜ୍ୟରେ ରାଜାମାନେ ବାର
ଏ ବନେ ରାଜୁତି କରେ ସିଂହ ବର ।
ଜାନକୀ ବୋଇଲେ ସିଂହ କେଉଁଠାରେ ଜାତ
ବିଧାତା ସର୍ଜନା ତାକୁ ବୋଇଲେ ଶ୍ରୀରାମ ତ ।
ବିଧାତା ଜାତ କରି ଦୁର୍ଗାଙ୍କୁ ନେଇ ଦେଲା
ଦୁର୍ଗାଙ୍କର ବାହନ ସେ ହୋଇଣ ରହିଲା ।
ଏ ଯେ ଦୁର୍ଗା ସେହି ଉମା ହେଲେ ସେହିବଡ଼
ବଡ଼ ଦେଖିବାରୁ ଅନେକ ମାଇଲେ ଅସୁର ।
ଦୁର୍ଗାଙ୍କୁ ମନାଇଣ ନୃପତି ସିଂହ ହେଲା
ଶୁଣିକରି ଜାନକୀ ସନ୍ତୋଷ ହୋଇଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ପଞ୍ଚାନନ
ଏଠାରୁ ରାମ ଜାନକୀ ସମ୍ବାଦ ସରେ ପୁଣ ।
ସେଠାରୁ କିସ ହେଲା କହ ମୋ ଆଗେଣ
ଈଶ୍ୱର ବୋଇଲେ ଶୁଣ ହରଷ ମନେ ପୁଣ ।
ସେଠାରୁ ରାମ ଲକ୍ଷ୍ମଣ ସୀତା ଚଳିଗଲେ
ସୁର ଋଷିଙ୍କ ପାଶେ ପ୍ରବେଶ ଯାଇ ହେଲେ ।
ଦେଖିକରି କଲ୍ୟାଣ କଲେ ବ୍ରହ୍ମଯତି
କୁଶଳେ ରାମଚନ୍ଦ୍ରଙ୍କୁ ବାରତା ପୁଚ୍ଛନ୍ତି ।
ରାମ ଲକ୍ଷ୍ମଣ ଯେ ସୀତା ତିନିଜଣ
ହରଷରେ ସେହି ମୁନି ଚରଣେ ପ୍ରଣାମ ।
ଯତିଙ୍କର ଆଗରେ କହିଲେ ସକଳ
ମାସେ ରହିଲେ ସେଠାରେ କଉଶଲ୍ୟା ବାଳ ।
ଜାନକୀ ଘେନି ରାମ ବନରେ ବିହରନ୍ତି
ମୃଗ ସମ୍ବର ମାରି ଆହାର କରନ୍ତି ।
ସୁରଋଷି ଛାମୁରେ କହିଲେ ରଘୁପତି
ସେଠାରୁ ସେ ସ୍ଥାନ ଛାଡ଼ି ଗଲେ ଦାଶରଥି ।
ଅଗମ୍ୟ ବନସ୍ତରେ ବୁଲନ୍ତି ରଘୁନାଥ
ସମ୍ବର ମୃଗ ଯେ ବନରେ ଯୂଥ ଯୂଥ ।
ଚାମରୀ ଖୁରୁଙ୍ଗୀ ଯେ ଲାଞ୍ଜମାନ ଟେକି
ତାଳପତ୍ର ଚରୁ ଚରୁ ଦେଖିଲେ ରଘୁପତି ।
ଶ୍ରୀରାମ ସଙ୍ଗରେ ଜାନକୀ ଯାଉଥିଲେ
ଜୀବମାନଙ୍କୁ ଦେଖି ରାମଙ୍କୁ ପଚାରିଲେ ।
ରାମଙ୍କୁ ବୋଇଲେ ଶୁଣ ହେ ପ୍ରାଣନାଥ
ତାଳପତ୍ର ଚରୁଛନ୍ତି ଏ କେବଣ ଜୀବ ତ ।

ଏମାନଙ୍କ ସଙ୍ଗେ ଦେଖ ଅଛନ୍ତି ମୃଗପଲ
ଏ ମୃଗକୁ ଦେଖି ମୋର ଶ୍ରଦ୍ଧାହେଲା ବଡ଼ ।
କୃଷ୍ଣ ଚାମର ଲାଞ୍ଜ ଲୋଟୁଛି ଭୂମିରେ ତ
ସେ ଜୀବରେ ମୋହର ମନ ବଳିଲା ତ ।
ଚଉଁରୀ ବଳି ମୁହିଁ ସମ୍ଭାଳିବି କେଶ
ଏ ଜୀବଙ୍କୁ ଦେଖି ମୋର ମନରେ ହରଷ ।
ଶୁଣିକରି ରାମ ଧନୁରେ ଗୁଣ ଦେଲେ
ତୀକ୍ଷ୍ଣ ନାରାଚ ଗୋଟି ତୂଣୀରୁ କାଢ଼ିଲେ ।
ବେଗେ ତୁମ୍ଭେ ଯାଇଣ ଏ ମୃଗକୁ ମାରି
ତତକ୍ଷଣେ ଶର ଘେନି ବିନ୍ଧେ ନରହରି ।
ବାଣକୁ ପେଶିଣ ବୋଲନ୍ତି ରଘୁନାଥ
ଚାମର ମୋର କାର୍ଯ୍ୟ ମୃଗକୁ ନକଲ ହତ ।
ଏତେ ବୋଲି ଶ୍ରୀରାମ ଡାକନ୍ତି ଆଞ୍ଜକରି
ନ ମାରି ତୁ ମୃଗଜୀବ ଆସ ତୁ ବେଗ ଫେରି ।
ଶ୍ରୀରାମ ବାଣୀ ନାରାଚ ଶୁଣିଲାକ କର୍ଣ୍ଣେ
ଲେଉଟି ଅଇଲା ସେ ଯେ କହିବା ପ୍ରମାଣେ ।
ତୂଣୀରେ ଆସିଣ ଯେ ଶର ସମ୍ଭାଇଲା
ଦେଖିକରି ରାମ ଏବେ ସନ୍ତୋଷ ମନେହେଲା ।
ଅନ୍ୟ ଶର ଆଣିଣ ଗୁଣରେ ବସାଇଲା
ଚାମରୀ ଲାଞ୍ଜ କାଟ ବୋଲି ଆଜ୍ଞାଦେଲେ ।
ତୁ ହୋ ଶର ତାକୁ ନ କରିବୁ ହତ
ଚଇଁରୀ କରିବେ ସିନା ମୃଗରେ ନାହିଁ ଆଶ ।
ଶୁଣିକରି ନାରାଚ ବେଗେ ଚଳିଗଲା
ଚାମରୀ ଲାଞ୍ଜ କାଟି ପକାଇଲା ।
ଦେଖିକରି ଚାମରୀ ଶରକୁ କହେ ବାଣୀ
ମାରିବାକୁ ଶ୍ରୀରାମ କହି ନାହିଁକି ପୁଣି ।
ଶର ବୋଇଲା ତାଙ୍କ ଘରଣୀ ଜାନକୀ
ତୋହର ଚାମର ଦେଖି ବଳିଲା ତାଙ୍କ ମତି ।
ମୁଣ୍ଡକୁ ତାହାର ଯେଉଁ ଚଉଁରୀ କରିବ
ସେଥିର ସକାଶେ ମୋତେ ପେଶିଲେ ରାମଦେବ ।
ଶୁଣିକରି ଚାମରୀ ହୁଏ କୃତ କୃତ
ବୋଇଲେ ଏଥର ହୋଇଲି କୃତାର୍ଥ ।
ଏତକ କହି ମୃଗ ଲାଞ୍ଜକୁ ମୁଖେଧରି
ଶ୍ରୀରାମ ଆଗରେ ନେଇ ଦେଲାକ ବେଗକରି ।
ଦେଖିକରି ଶ୍ରୀରାମ ଯେ ହରଷ ହୋଇଲେ
ଚାମରୀ ମୃଗକୁ ଚାହିଁ ବଚନ ବୋଇଲେ ।
କି ଗୋ ଚାମରୀ ତୋର କେମନ୍ତ ବିଚାର
ଲାଞ୍ଜ କାଟିବାରୁ କି ଦୁଃଖ ତୋ ମନର ?
ଚାମରୀ ବୋଇଲା ମୋତେ ବେଗେ ଗତିଦିଅ
ଅନେକ କାଳରୁ ମୁଁ ଯେ ରହିଛି ସୀତାପ୍ରିୟ ।
ଶୁଣିକରି ଶ୍ରୀରାମ ବୋଲେ ହେଉ ତୋର କଥା
ଏହିକ୍ଷଣି ସ୍ୱର୍ଗକୁ ଯାଅ ଛାଡ଼ ମନୁ ବ୍ୟଥା ।
ଶୁଣିକରି ଚାମରୀ ଯେ ପ୍ରଣପତି ହେଲା
ସ୍ୱର୍ଗରୁ ଯାନ ଆସି ତାକୁ ଘେନିଗଲା ।
ନିଶ୍ଚିନ୍ତରେ ସ୍ୱର୍ଗପୁରେ ଚାମରୀ ଯାଇ ରହି
ଦେଖିଣ ଦେବତାଏ ବିଚାର କଲେ ତହିଁ ।
ଧନ୍ୟ ଧନ୍ୟ ଶ୍ରୀରାମ ତୁମ୍ଭେ ଯେ ଧନୁର୍ଦ୍ଧର
ଧନୁକୀ ଚୂଡ଼ାମଣୀ ମହିମା ତୁମ୍ଭର ।
ଯେମନ୍ତ କଲ ଆଜ ଦେବଙ୍କୁ ଦୁର୍ଲ୍ଲଭ
ତୁମ୍ଭରେଏ କଥାମାନ ହୁଅଇ ସୁଲଭ ।
ତୁମ୍ଭରେ ଏକଥା ଯେ ହୋଇଲା ରାଘବ
ତୋତେ ଆଶାକରି ଆମ୍ଭେ ରହିଛୁଁ ସର୍ବଦେବ ।
ଏତେ କହି ଦେବତାଏ ସର୍ବେ ହେଲେତୋଷ
ପାର୍ବତୀ ଶୁଣିଣ ଯେ ମନରେ ଉଲ୍ଲାସ ।
ବୋଇଲେ ସେଠାରୁ ଯେ ଶ୍ରୀରାମ କିସ କଲେ
ଈଶ୍ୱର ବୋଇଲେ ତୁମ୍ଭେ ସେ କଥା ଶୁଣ ଭଲେ ।
ଶ୍ରୀରାମ ଯେ ଲକ୍ଷ୍ମଣଙ୍କୁ କହିଲେ ବଚନ
ଚାମରୀ ବାଳ ତୁମ୍ଭେ ଛେଦ ହେ ବହନ ।
ଶୁଣିକରି ଲକ୍ଷ୍ମଣ କତୁରି ଶର ଧରି
ଚାମରୀର କେଶକୁ ତକ୍ଷଣେ ନିବାରି ।
ଏକଠାବ କରିଣ ଜାନକୀ ହସ୍ତେ ଦେଲେ
ତେଣୁ ସେ ଜାନକୀ ନେଇ ଯତନେ ସମ୍ଭାଳିଲେ ।
ସେଠାରେ ଶ୍ରୀରାମଙ୍କୁ ପଚାରେ ଜାନକୀ
କଥାଏ ପଚାରିବି କହ ହେ ରଘୁପତି ।
ଚାମରୀ ଲାଞ୍ଜକୁ କାଟନ୍ତେ ଯେ ପୁଣ
ଶରୀର ଛାଡ଼ି କିମ୍ପା ଗଲା ସ୍ୱର୍ଗସ୍ଥାନ ।
ଶ୍ରୀରାମ ବୋଇଲେ ସେ କଥା ଏବେ ଶୁଣ
ଦେବତାଙ୍କ ଗୁରୁ ଯେ ବୃହସ୍ପତି ଜାଣ ।
ସକଳ ବିଦ୍ୟା ଦେବେ ଶିଖନ୍ତି ତାଙ୍କଠାରୁ
ତେଣୁ ସେ ବୃହସ୍ପତି ଅଟନ୍ତି ବିଦ୍ୟାଗୁରୁ ।
ଦିନେକ ଶଶଧର ବିଦ୍ୟା ପଢ଼ିଗଲେ
ଅନେକ ବିଦ୍ୟା ତାଙ୍କୁ ଗୁରୁ ଶିଖାଇଲେ ।

ଏମନ୍ତେ ଅନେକ ଦିନ ପଢ଼ିଲେ ଶଶୀ ତହିଁ
ସୁନ୍ଦର ରୂପ ତୋର ସବୁରୀ ମୋହଇ ।
ବୃହସ୍ପତିଙ୍କ ଘରଣୀ ଅଟନ୍ତି ଯେ ତାରା
ଚନ୍ଦ୍ରଙ୍କୁ ଦେଖିଣ ମନକଲେ ତ୍ୱରା ।
ବଳତ୍କାର ଚନ୍ଦ୍ରଙ୍କୁ ଶରୀର ସମର୍ପିଲେ
ଶଶୀଧର ସଙ୍ଗରେ ଶୃଙ୍ଗାର ରତିକଲେ ।
ଚନ୍ଦ୍ରଙ୍କର ବିନ୍ଦୁ ତାରାର ଗର୍ଭେ ରହି
ଶୃଙ୍ଗାର ଭାବ ବିନୋଦ ସେଠାରୁ ସରେ ତହିଁ ।
ଶୃଙ୍ଗାର ସରୁ ସରୁ ଦଶଘଡ଼ି ବହିଗଲା
ତାରା ଗର୍ଭରୁ ଏକ ପୁତ୍ର ଜନମିଲା ।
ଚନ୍ଦ୍ରଙ୍କର ସଦୃଶେ ଦିଶଇ ଉଜ୍ଜ୍ୱଳ
ଗର୍ଭରୁ ପଡ଼ନ୍ତେ ଶୁକ୍ର ଯୁବା ଯେ ଶରୀର ।
ବୃହସ୍ପତି ସେଦିନ ଇନ୍ଦ୍ରଙ୍କ ପୁରେ ଥିଲେ
ନିଜ ପୁରେ ମିଳିବାରୁ ପୁତ୍ରକୁ ଦେଖିଲେ ।
ବିଚାରିଲେ ଏ ପୁତ୍ର ଯେ ନୁହଇ ମୋହର
ଚନ୍ଦ୍ରଙ୍କର ପ୍ରାୟ ଏତେ ଦିଶଇ ଉଜ୍ଜ୍ୱଳ ।
ଏମନ୍ତ ବିଚାର ମନେ କଲେ ବୃହସ୍ପତି
ବେଦଙ୍କୁ ଗୁରୁ ମନେ ସୁମରନ୍ତି ।
ଜାଣିକରି ବେଦବର ସେଠାରେ ଯାଇଁ ମିଳି
ଦେଖିକରି ବୃହସ୍ପତି ନମସ୍କାର କରି ।
ବୋଇଲେ ଅଭୂଷଣ ହେଲା ମୋର ସ୍ତିରୀ
ଚନ୍ଦ୍ରଙ୍କର ସଙ୍ଗରେ ଏ କେମନ୍ତେ ପ୍ରୀତି କରି ।
ଚନ୍ଦ୍ରର ବୀର୍ଯ୍ୟରେ ଏ ଯେ କୁମର ସମ୍ଭୂତ
ଦେଖ ଦେଖ ଚନ୍ଦ୍ରଙ୍କର ଦିଶଇ ସଞ୍ଜାତ ।
ଶୁଣିଣ ବେଦବର କହିଲେ କଥା ସତ
ଚନ୍ଦ୍ରର ମନ ନାହିଁ ତୋ ନାରୀ ବଳବନ୍ତ ।
ଏବେ ଏ କୁମର ହେଉ ଯେ ଦିଗପାଳ
ଦୁଇ ପିତାଙ୍କର ସଙ୍ଗେ ରହୁ କାଳ କାଳ ।
ଏତେବୋଲି ନବଗ୍ରହ ସଙ୍ଗତରେ ରଖି
ସେ କୁମର ନାମକୁ ବୁଧ ଦେଲେ ସେଟି ।
ବୃହସ୍ପତି ବୋଇଲେ ଏ ନାରୀ ଦୋଚାରୁଣୀ
ଏହାକୁ ଶାପ ମୁଁ ଦେଉଅଛି ପୁଣି ।
ମୃତ୍ୟୁପରେ ଚାମରୀ ମୃଗରୂପେ ଜାତ
ତିନି ଯୁଗ କଲେ ଏ ହୋଇବ ମୁକତ ।
ଅସୁରଙ୍କୁ ମାରିବାକୁ ବାସୁଦେବ ଯିବେ
ମାନବ ରୂପଧରି ସେ ଅବତାର ହେବେ ।

ପିତାର ସତ୍ୟ ପାଳି ବୁଲିବେ ବନଲତା
ଏହାର ଲାଞ୍ଜରେ ବାଳ ହୋଇବ ଅପ୍ରମିତା ।
ଶ୍ରୀରାମ ଘରଣୀ ସେଥିରେ ଚିତ୍ତ ବଳି
ଲାଞ୍ଜକୁ କାଟିବେ ରାମ ଧନୁଶର ଧରି ।
ତେତେବେଳେ ଏହାର ନିଜ ଜ୍ଞାନ ଉପୁଜିବ
ରଘୁନାଥଙ୍କୁ କହି ମୁକତି ଲଭିବ ।
ବୃହସ୍ପତିଙ୍କ ଶାପରେ ତାରା ଅପସରୀ
ତିନି ଯୁଗ ରହିଲା ଏଥିରେ ଶାପଧରି ।
ରଘୁନାଥ ସଙ୍ଗରେ ହୋଇଲା ଏବେ ମେଳ
ଗୀତ ଗାଇ ସ୍ୱର୍ଗକୁ ଆସି ଚଳିଲା ସତ୍ୱର ।
ଶ୍ରୀରାମ କହିବାରୁ ଜାଣିଲେ ଜାନକୀ
ସ୍ୱାମୀଙ୍କର ଚରଣରେ ଓଳଗି ହେଲେ ସତୀ ।
ସେଠାରେ ଦୁଇଦିନ ରହିଲେ ରଘୁନାଥ
ସେ ବାଳକୁ ଚଉଁରୀ ବଳିଲେ ଜାନକୀ ତ ।
ରତ୍ନ ଚଉଁରୀ ମୁଦିରେ ତାଙ୍କୁ ସମର୍ପିଲେ
ଝରାକାଠି ଝୁମ୍ପୀର ସଙ୍ଗରେ ସଙ୍ଗକଲେ ।
ସେଦିନ ରଘୁନାଥ ଜାନକୀ କୋଳେଧରି
ରତ୍ନ ପାନିଆଁରେ କେଶ ଶାମଳ ଚାପଧାରୀ ।
ଜାନକୀର ଜୁଡ଼ାରେ ଯତନ କରି ବାନ୍ଧି
ଜୁଡ଼ାର ଉପରେ ଭ୍ରମର ଅଛି ବନ୍ଦୀ ।
ଲୋଟଣୀ ଉଦରେ ପୁଷ୍ପମାଳା ବେଢ଼ାଇଲେ
ମସ୍ତକରେ ସିନ୍ଦୂର ନେତ୍ରେ ଅଞ୍ଜନ ରଞ୍ଜିଲେ ।
ଫଳମୂଳ ସେଠାରେ କଲେକ ଭୋଜନ
ତିନିଦିନ ସେଠାରେ ରହିଲେ ରାମରାଣ ।
ସେଠାରୁ ତିନିଜଣ ସଙ୍ଗ ହୋଇ ଗଲେ
ଟିକରା ବନରେ ଯାଇଁ ପ୍ରବେଶ ହୋଇଲେ ।
ସେ ବନେ ନଦୀକୂଳେ କଲେକ ଯେ ସ୍ନାନ
ସେଠାରେ ବିସ୍ତାର ପାଷାଣ ଦେଖି ପୁଣ ।
କାଣ୍ଡମୁନେ ଶ୍ରୀରାମ ତିନିରୂପ ଲେଖି
ରାମ ଲକ୍ଷ୍ମଣ ବେନିଭାଇ ପାଶରେ ରଖି ।
ମଧ୍ୟରେ ଜନନୀ ରୂପ କରିଣ ଘଟଣ
ଆପଣାର ସ୍ୱରୂପ ଲିହିଲେ ରାମରାଣ ।
ତିନିଜଣଙ୍କ ହୃଦରୁ ତିନିରୂପ ନେଲେ
ସେହି ତିନି ରୂପରେ ନେଇଣ ଲଗାଇଲେ ।
ତେଣୁକରି ଜୀବନ୍ୟାସ ହୋଇଲା ତିନିରୂପ
ତିନି କଳା ତିନି ରୂପରେ ହୋଇ ପ୍ରକାଶ ।

ତୁଳସୀ ଫୁଲ ଦେଇ ତାହାଙ୍କୁ ପୂଜା କଲେ
ଆପଣା ନାମଦେଇ ସେଠାରୁ ଚଳିଗଲେ ।
କୁରୁମ ଗିରିତଳେ ହେଲେ ପରବେଶ
ଗହଳ ଲତା ଦେଖି ହୋଇଲେ ହରଷ ।
ଗିରି ଉପରେ କୁରୁମ ନାରାୟଣ ଦେଖି
ତିନିଜଣ ଦର୍ଶନ କରି ହେଲେ ସୁଖୀ ।
ଜାନକୀ ପଚାରିଲେ ଏଦେବ ନାମ କିସ
ରାମଚନ୍ଦ୍ର ବୋଇଲେ ଏ କୁରୁମ ପୁରୁଷ ।
ଯେତେବେଳେ ଦେବତା ସାଗର ମନ୍ଥିଲେ
ପାତାଳେ ମନ୍ଦିର ଲୁଚିଲା ନ ଦେଖିଲେ ।
ତେତେବେଳେ ନାରାୟଣ କୁରୁମ ରୂପହୋଇ
ସେ ମନ୍ଦର ଟେକି କରି ଧଇଲେ ଗୋସାଇଁ ।
ସାଗର ମନ୍ଥିବାରୁ ସକଳ ଜାତ ହେଲା
ଦେବ ଅସୁରଙ୍କର କଳହ ଲାଗିଲା ।
ଅସୁରଙ୍କୁ ମାରିଣ ଦେବ ଚକ୍ରଧର
ବିଶ୍ରାମ କଲେ ଆସି ଏ ଗିରି ଉପର ।
ଏହିରୂପ ଧରି ପୁଣି ଅସୁର ନିବାରି
ଶୁଣିକରି ଜାନକୀ ହରଷ ମନେ କରି ।
ସେ କୂର୍ମ ରୂପକୁ ଦେବୀ ବନ୍ଦାପନା କଲେ
କୂର୍ମର ଶିରେ ନେଇ ପୁଷ୍ପ ଯେ ଖଞ୍ଜିଲେ ।
ମେଲାଣି ମାଗିଣ ସେଠାବରୁ ଚଳିଗଲେ
ମୀନ ଲତା ବନରେ ଯାଇଣ ମିଳିଲେ ।
ସେ ଗିରି ଉପରେ ଦେଖିଲେ ତିନିଜଣ
ପାଷାଣେ ରୋହୀ ମୀନ କରିଛି ଆଶ୍ରମ ।
ସେ ରୂପକୁ ରାମ ଯେ ନମସ୍କାର କଲେ
ଜାନକୀ ଓଳଗି ଯେ ସେଠାରେ ହୋଇଲେ ।
ଲକ୍ଷ୍ମଣ ପାଏ ପଡ଼ି ଶୋଇଲେ ସେଠାରେ
ତିନିଜଣ ସ୍ତୁତିକରି ସେଠାରୁ ଚଳିଗଲେ ।
ସେ ଗିରି ତଳରେ ରହିଲେ ଦଶଦିନ
ପ୍ରତିଦିନ ଯାଇଣ କରନ୍ତି ଦରଶନ ।
ସେଠାରେ ଜାନକୀ ରାମଙ୍କୁ ପଚାରି
ମୀନ ଗୋଟି ଶଙ୍ଖ ଚକ୍ର ଅଛି କିମ୍ପା ଧରି ।
ଶ୍ରୀରାମ ବୋଇଲେ ସେ ଆଦ୍ୟରେ ଅବତାର
ଶଙ୍ଖାସୁର ନାମେ ଦୈତ୍ୟ ମାଇଲେ ଚକ୍ରଧର ।
ଅସୁରଙ୍କୁ ମାରିଣ ଏଠାରେ ଛନ୍ତି ରହି
ଶୁଣିକରି ବୈଦେହୀ ହରଷ ମନ ହୋଇ ।

ଆପଣା ଅଙ୍ଗ ବୋଲି ବନ୍ଦାପନା କଲେ
ବନର ପୁଷ୍ପ ନେଇ ଶିରରେ ନିଉଡ଼ିଲେ ।
ତିନିଜଣ ମୀନରୂପ ଦେଖିଣ ନମସ୍କାରେ
ବିନତି କରିଣ ଯେ ରହିଲେ ସେଠାରେ ।
ସେଠାରୁ ତିନିଜଣ ବେଗେ ଚଳିଗଲେ
ବଉଳ ଗିରିତଳେ ଯାଇଣ ମିଳିଲେ ।
ରୁଧିର ଦନ୍ତ ବୋଲିଣ ଏକ ନଦୀ ପୁଣ
ନଦୀର ସ୍ରୋତ ଅତି ଅଟଇ ଟାଣ ଜାଣ ।
ସେ ନଦୀରେ ସ୍ନାନ ଯେ କଲେ ତିନିଜଣ
ଫଳ ମୂଳ ସେଠାରେ କଲେକ ଭୋଜନ ।
ସେଠାରେ କୃଷ୍ଣାଜିତ ମୃଗକୁ ମାରି ପୁଣ
ସେଠାରେ ପାନକଲେ ଜାନକୀ ନିଶ୍ଚିନ୍ତେଣ ।
ସେଠାରେ ପାଞ୍ଚଦିନ ରହିଲେ ଦାଶରଥି
ସେ ଗିରି ଉପରେ କଥା ନ ଯାଇଣ ଦେଖି ।
ବରେହା ମୁରତି ରୂପ ସେଠାରେ ଦେଖି ଅଛି
ଦେଖିଣ ଜାନକୀ ଯେ ତୋଷକଲେ ମତି ।
ଦେଖିଣ ଶ୍ରୀରାମ ଯେ ନମସ୍କାର କଲେ
ଲକ୍ଷ୍ମଣ ସେ ରୂପ ଦେଖି ଓଳଗି ହୋଇଲେ ।
ଶ୍ରୀରାମଙ୍କୁ ଜାନକୀ ପଚାରେ ସେହିଠାରେ
ବନଜୀବ ରୂପତ ଅଟଇ ଏହାରେ ।
କିମ୍ପା ପ୍ରଣମିତ ହେଲ ଆହେ ଚାପଧାରୀ
ସେ କଥାକୁ ମୋର ଆଗେ କହ ଫେଡ଼ିକରି ।
ଜାନକୀର ବଚନେ କହନ୍ତି ଦାଶରଥି
ବରେହା ଅବତାର ନାରାୟଣ ଏଟି ।
କଶ୍ୟପ ବୋଲିଣ ଏକଇ ଦୈତ୍ୟ ଥିଲା
ସପତ ପୁରକୁ ସେ ହେଳେଣ ଜିଣିଲା ।
ଶୟନେ ବାସୁଦେବଙ୍କୁ କଲାକ ଯାଇ ପୀଡ଼ା
ତେଣୁ ସେ ନାରାୟଣ ବରେହା ରୂପେ ତୋରା ।
ବିକ୍ରମ ମୂର୍ତ୍ତି ଧରି ସେ ଅସୁରକୁ ମାରି
ଦନ୍ତ ଅଗ୍ରେ ମହାସ୍ଥଳୀ ଧଇଲେ ଟାଣକରି ।
ତେଣୁ ସେ ତିନିପୁର ସମ୍ଭାଳିଣ ହୋଇଲା
ସେ ରୂପ ଏ ଗିରିରେ ଆସିଣ ସମ୍ଭବିଲା ।
ଶୁଣିଣ ବଇଦେହୀ ପରମ ତୋଷ ହେଲେ
ବରେହା ମୁରତିଙ୍କି ବନ୍ଦାପନା କଲେ ।
ଅନେକ ପୁଷ୍ପ ଆଣି ଶିରରେ ନିଉଡ଼ିଲେ
ମାନ୍ୟ ଗଉରବ ସେଠାରେ ଦେବୀ କଲେ ।

ସେଠାରୁ ତିନିଜଣ ଗଲେ ଅପତ୍ରରି
ସେ ବନରୁ ବାହାର ହେଲେ ଚାପଧାରୀ ।
ଏଥୁ ଅନନ୍ତରେ ଶୁଣିବା ଦିବ୍ୟରସ
ଅଗସ୍ତି ଆଶ୍ରମେ ରାମ ହୋଇଲେ ପ୍ରବେଶ ।
ନମସ୍କାର କରିଣ ବସିଲେ ରାମସାଇଁ
ଲକ୍ଷ୍ମଣ ଜାନକୀ ଯେ ନମସ୍କାର ହୋଇ ।
କୁଶଳ ବାରତା ଯେ ପୁଚ୍ଛିଲେ ମୁନିବର
ସକଳ କଥା ମୁନିଙ୍କି କହିଲେ ଚାପଧର ।
ଶୁଣିଣ ଅଗସ୍ତି ଯେ ଗଉରବ କଲେ
ବନର କନ୍ଦମୂଳ ଭୁଞ୍ଜିବାକୁ ଦେଲେ ।
ବୋଇଲେ ପାପକ୍ଷୟ ଯେ ହୋଇଲା ମୋହର
ତୁମ୍ଭର ଦେଖିଲି ମୁଁ ଯେ ଦଶରଥ ବାଳ ।
ଅନେକ କାଳରୁ ମୁଁ ଯେ ଅଛିବାଟ ଚାହିଁ
ଏ ବାଟରେ ଅବଶ୍ୟ ଆସିବେ ରଘୁସାଇଁ ।
ନିତ୍ୟେ ମୁଁ ଭାବୁଥାଇ ତୋର ଆଗମନ
ଆଜ ଜୀବନ ମୋର ହୋଇଅଛି ଧନ୍ୟ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ମୁନିବର
ବିଶ୍ୱାମିତ୍ର ମୁନି କହେ ମହିମା ତୁମ୍ଭର ।
ସମୁଦ୍ର ଶୋଷିବାର ମନ୍ଦାର ପ୍ରସ୍ତାବ
ଏମାନଙ୍କ କ୍ରୋଧ ତୁମ୍ଭେ ବଳରେ କଲ ହତ ।
ଆତାପି ବାତାପି ଅସୁରଙ୍କୁ ବଧ କଲ
ଯେଣୁ ସେ ଦକ୍ଷିଣକୁ ଅଇଲ ମୁନିବର ।
ଏ କଥା ବିଶ୍ୱାମିତ୍ର କହିଲେ ମୋତେ ପୁଣି
ଏବେ ପ୍ରତ୍ୟକ୍ଷରେ ଦେଖିଲି ମୁନିମଣି ।
ଏ ମୋର ଜୀବନ ଯେ ଅଟଇ ସୁଫଳେ
ଦ୍ୟୁତି ବ୍ରହ୍ମାମୂର୍ତ୍ତି ମୁଁ ଦେଖିଲି ବେନିଡୋଳେ ।
ଧନ୍ୟ ଧନ୍ୟ ବୋଲିଣ ଯେ ପ୍ରଶଂସା କରନ୍ତି
ଶୁଣିଣ ମୁନିବର ହରଷ ହୁଅନ୍ତି ।
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟରସ
ଶ୍ରୀରାମଙ୍କୁ ଅଗସ୍ତି ହୋଇଲେ ମନତୋଷ ।
ମୁନି ତୋଷ ହେବାରୁ ଶ୍ରୀରାମ ତୋଷ ହୋଇ
ତିନିଜଣ ହରଷେ ବିହରନ୍ତି ତହିଁ ।
ଏମନ୍ତ ପାଞ୍ଚଦିନ ଉତ୍ତାରୁ ମୁନିବର
ଶ୍ରୀରାମ ଅଗସ୍ତି ଯେ ଦେଲେ ଧନୁଶର ।
ଭୋ ରଘୁନନ୍ଦନ ତୁମ୍ଭେ ଶୁଣ ମୋର ବାଣୀ
ପୂର୍ବେ ଏ ଧନୁ ବହିଥିଲେ ଚକ୍ରପାଣି ।
ଏ ଧନୁ ଶସ୍ତ୍ର ଯେ ଯୁଗତେ ଅଟେ ତୋର
ତୁହି ସେ ନାରାୟଣ ମାନବେ ଅବତାର ।
ରାକ୍ଷସ ବଳକୁ ବିନାଶ ଏହା ଘେନି
ଏ ଧନୁରେ ଉଦ୍ଧାର ହେବ ମେଦିନୀ ।
ମୁହିଁ ଯାହା କହୁଛି ଏକଥା ଅଟେ ସତ
ଏହାଶୁଣି ଏ ଧନୁକୁ ଧରେ ସୀତାକାନ୍ତ ।
ଶ୍ରୀରାମ ହସ୍ତରେ ଯେ ଧଇଲେ ଧନୁର୍ବାଣ
ସେହିଠାରେ ହରଷେ ରହିଲେ ରାମରାଣ ।
ମୁନିଙ୍କି ପଚାରିଲେ ଦଶରଥ ସୁତ
କେବଣ ସ୍ଥାନରେ ମୁଁ ରହିବି ତପୋବନ୍ତ ।
ନିର୍ଝର ପାଣି ମୁଁ ଯେ ପିଇବି ପୁଣ କାହିଁ
ଫଳମୂଳ ମୃଗ ଯେ ମିଳିବ ମୋତେ ଯହିଁ ।
ଆଜକୁ ନବବରଷ ତିନିମାସ ହେଲା
ବହୁତ କଷ୍ଟରେ ଯେ ମୋର ଦିନଗଲା ।
ଆଉ ଚାରି ବରଷ ନବମାସ ସତ୍ୟ
କି ରୂପେ ଦିନ ମୋର ସରିବ ତପୋବନ୍ତ ।
ସୁସ୍ଥାନ କେଉଁଠାରେ ବିଚାରିଣ କହ
ଯେଉଁଠାରେ ରହିଲେ ସୁସ୍ଥହେବ ଦେହ ।
ବହୁତ ଲତାବନ ଅଇଲି ବୁଲିବୁଲି
ତୁମ୍ଭର ଦୁହିତା ଦେଖ ନ ପାରଇ ଚାଲି ।
କଷାପିତା ଫଳ ଯେ ଅନେକ ଖାଇଲା
ଅଯୋଧ୍ୟା ଛାଡ଼ିଲାଦିନୁଁ ଚିନ୍ତାଭର ହେଲା ।
କିଛି ନ ଜାଣଇ ମୋର ସାନୁଜ ଭ୍ରତ ବୀର
କେମନ୍ତେ ରାଜ୍ୟ ରକ୍ଷା କରୁଥିବେ ମୋର ।
ଜାନକୀ ମୋର ତହିଁ କି କରୁଥିବେ ପୁଣ
ଶୋକଭରେ ତାଙ୍କର ଯାଉଥିବ ଦିନ ।
ଚିନ୍ତାର୍ଥୀ ହୋଇ ଦୁଇଭାଇ ଦିନ ନେବେ
ରାଜ୍ୟର ପ୍ରଜା ମୋତେ ନ ଦେଖି ଭାଳୁଥିବେ ।
ପାତ୍ର ମନ୍ତ୍ରୀମାନେ ସର୍ବେ ହେଲେଣି ଯେ ଦୁଷ୍ଟ
ବଶିଷ୍ଠ ବ୍ରହ୍ମଚାରୀ କେବଳ ଛନ୍ତି ଶ୍ରେଷ୍ଠ ।
ସ୍ନେହଭରେ ସମସ୍ତେ ଗୋଡ଼ାଇ ଆସିଲେ
ସୁରଲୋକେ କହିବାରୁ ଫେଡ଼ିଣ ରାଜ୍ୟେଗଲେ ।
କି କାର୍ଯ୍ୟ କରିବି ମୁଁ ଦେବତାଙ୍କର ପୁଣ
ପାଞ୍ଚିଣ ଏତେ କଷ୍ଟ ଦେଲେ ଦେବଗଣ ।
ଆମ୍ଭେତ ଦୁଇଭାଇ ବନରେ ହେଲୁ ଯୋଗୀ
ଜାନକୀ ଯୋଗୀଆଣି ଯେ ଆମ୍ଭର କର୍ମଭାଗି ।

ରାଜପୁତ୍ର ହୋଇକରି ହେଲୁଁ ଦେଶାନ୍ତରୀ
ବୁଦ୍ଧିବଳ କ୍ଷୀଣହେଲା ହୃଦରୁ ମୋହରି ।
ତେଣୁ ଭଲସ୍ଥାନ ଇଚ୍ଛା ହୁଅଇ ମୋହରି
ପ୍ରସନ୍ନ ହୋଇ ମୋତେ କହ ବ୍ରହ୍ମଚାରୀ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ଦାଶରଥି
ଯୋଗବଳେ ମୋତେ ଦୃଶ୍ୟ ହୋଇଲାକ ଆସି ।
ଭ୍ରଥ ରାଜା ନୋହିଲା ନ ହେଲା ଶତ୍ରୁଘନ
ତୋର ପ୍ରାୟ ତପସ୍ୱୀ ହେଲେ ବେନିଜନ ।
ବଶିଷ୍ଠ ଋଷି ତୋର ରାଜ୍ୟ ସମ୍ଭାଳିଲା
ପାତ୍ର ମନ୍ତ୍ରୀ ତାଙ୍କର ବୋଲରେ ରହିଲା ।
ତୋହର ପାଦୁକାକୁ ସିଂହାସନରେ ଥୋଇଲେ
ପାଦୁକା ପୂଜା କରନ୍ତି ଦୁଇଭାଇ ଭଲେ ।
ଶ୍ରୀରାମ ସୀତା ବୋଲି ଜଗତେ ନିତିକରେ
ଦିନ ହରୁଛନ୍ତି ରାମ ନାମ କହିବାରେ ।
ନିଶ୍ଚିନ୍ତରେ ରାଜ୍ୟ ତୋର ଅଛିରେ ରଘୁନଥ
ଲୀଳାବତୀ ମାତା ତୋର ଅଛିରେ ସାମର୍ଥ ।
ରାଜା ଦଶରଥ ପ୍ରାୟ ବୁଝାଇ ପ୍ରଜାଜନ
ରାଜବେଶ ଧରିଅଛି ସାନମାତ ପୁଣ ।
ସବୁ ଜନନୀକି ତୋର ରଖିଛି ଦମ୍ଭକରି
ଦୁଇ ପୁତ୍ରକୁ ବୁଝାଇ ନିତି ବୋଧକରି ।
ପିତା ଦଶରଥ ପ୍ରାୟ ରାଜ୍ୟ ଯେ ପାଳଇ
ପରଜା ବୋଲୁଛନ୍ତି ଆମ୍ଭର ରାଜା ଏହି ।
ପ୍ରଜାଙ୍କୁ ସୁଖ ଦେଇ ପାତ୍ରମନ୍ତ୍ରୀଙ୍କ କରେ ଆଛା
ବଶିଷ୍ଠଙ୍କୁ ପ୍ରତିଦିନ ପଚାରେ ତୋର କଥା ।
ମହେଶ୍ୱର ଶିରେ ଚମ୍ପା ତଣ୍ଡୁଳ ଚଢ଼ାଇ
ବୋଲଇ ରାମ ଲକ୍ଷ୍ମଣ ବନକୁ ଛନ୍ତି ଯାଇ ।
ସେହି ଦୁଇଜଣଙ୍କୁ ତୁମ୍ଭେ ହୁଅ ସାହା
ଯେମନ୍ତେ ଦୁଃଖ ନ ପାନ୍ତି ସଙ୍ଗେଘେନି ପ୍ରିୟା ।
ଅନେକ ସ୍ତୁତି କରି ଶିବଙ୍କୁ କରେ ତୋଷ
ଏଥୁ ଅନନ୍ତରେ ତୁ ଶୁଣ ରଘୁବଂଶ ।
ଗ୍ରାମ ଦେବୀମାନଙ୍କୁ ଯେ ଦିଅଇ ଛାଗଳ
ବୋଲନ୍ତି ରାମ ଲକ୍ଷ୍ମଣ ସୀତାଙ୍କୁ ଦେଖାକର ।
ମାଜଣା କରାଇ ଯେ ଦେବୀଙ୍କୁ କରେ ତୋଷ
ଚଣ୍ଡୀ ଗୁଣାଇ ତାକୁ ଖୁଆଏ ମେଷ ମାଂସ ।
ବିଷ୍ଣୁ ପ୍ରତିମ ମାନଙ୍କୁ ଫୁଲ ଚନ୍ଦନ ଦେଇ
ଅମଳାଣ ବସ୍ତ୍ର ଯେ ବାଛିଣ ପିନ୍ଧାଇ ।

ଅନେକ ସ୍ତୁତି କରି କହେ ସେ ମଣାଇ
ପ୍ରତିଦିନ ବ୍ରାହ୍ମଣ ଡାକି ଦାନ ସେ ଦିଅଇ ।
ବୋଲଇ କୁଳବଧୂ ଶ୍ରୀରମ ମୋର ଆସୁ
ରାଜ୍ୟରେ ରାଜାହୋଇ ସବୁରି ମନ ତୋଷୁ ।
ଶାମଳ ରୂପ ଦେଖୁଯେ ଆମ୍ଭେ ପ୍ରତିଦିନ
ବାଟରେ ତାହାଙ୍କୁ ଯେ ପ୍ରସନ୍ନ ହୋନ୍ତୁ ଧର୍ମ ।
ମାତା ତୋର କଉଶଲ୍ୟା ଶୋକରେ ନିଏ ଦିନ
କୈକେୟୀ ମାତା ତୋର ଚିନ୍ତାରେ ତନୁକ୍ଷୀଣ ।
କଳାବତୀ ମାତା ତୋର ନ୍ୟାୟରେ ଜଗଜ୍ଜିତା
ବୋଲନ୍ତି ଶ୍ରୀରାମ ଆସିବେ ନକର କେହିଚିନ୍ତା ।
ତୋର ରାଜ୍ୟ ଭଲମନ୍ଦ ସବୁ ମୋତେ ଜଣା
ଲୀଳାବତୀ ମାତା ତୋର ଅଟେ ପିତା କିନା ।
ଅଗସ୍ତିଠାରୁ ବାଣୀ ଦାଶରଥି ଶୁଣିଲେଟି
ବୋଇଲେ ଭଲଯୋଗେ ଜନମ ମାତାଟି ।
ଭଲଯୋଗେ ଜାତ ତୁ ହୋଇଥିଲୁ ଆଇ
ବଦଳ ପିତା ରୂପ ଧରିଣ ଦିନ ନେଇ ।
ମୁନି ମୁଖରେ ପ୍ରଶଂସା ପାଇଲି ହାଦେ ମୁହିଁ
ଏ ବେନି ନେତ୍ରରେ କି ଦେଖିବି ପୁଣ ଯାଇ ।
ମୋହର ଭାଗ୍ୟେ ଥିଲେ କରିବି ଦରଶନ
ଏତେକହି ଚାପଧାରୀ ହରଷ କଲେ ମନ ।
ଏତେବୋଲି ଶ୍ରୀରାମ ଯେ ହେଲେ କୃତ୍ୟ କୃତ୍ୟ
ବୋଇଲେ କୁଳଧର୍ମ ରଖିଲେ ସାନମାତ ।
ମାତାଙ୍କୁ ବୋଧକଲା ପରଜା ମୋର ପାଳି
ପାତ୍ର ମନ୍ତ୍ରୀ ଗୁରୁଙ୍କୁ ଚିତ୍ତେ କହେ ଫେରି ।
ଦେବତା ଦେବୀଙ୍କି ଯେ କରେ ପ୍ରତିବୋଧ
ଧର୍ମ ପାଇଁ ଦାନ ଧର୍ମ କରଇ ନିତିଯୋଗ ।
ବେନି ଭାଇଙ୍କି ପ୍ରବୋଧ କରିଣ ଯେବେ କହି
ମୋର କଥା ଯେବେ ଯେ ମନରେ ତାରଥାଇ ।
ଦୁଃଖୀ ଦରିଦ୍ରଙ୍କୁ ଦିଅଇ ଅନ୍ନବସ୍ତ୍ର
ପଥୁକୀ ଜନ ଯେବେ ସଦାବର୍ତ୍ତରେ ତୋଷ ।
ଭାଙ୍ଗିଲା ରାଜ୍ୟକୁ ଯେବେ ରଖିଲା ସମ୍ଭାଳି
ପରଥାଟ ଯେବେ ମୋର ରାଜ୍ୟରେ ନ ମିଳି ।
ତେବେ ସେ କଥା ମୋର ଅଟଇ କୁଶଳ
ନିଶ୍ଚୟ ମାତା ମୋର ଲଭିବ ସ୍ୱର୍ଗପୁର ।
ଏଥୁ ଅନନ୍ତରେ କହନ୍ତି ମୁନିବର
ସୂକ୍ଷ୍ମଥାଟେ ତୁ ମୋତେ ପଚାରୁ ରଘୁବୀର ।

ତିନିବରଷ ଦଶମାସ ପାଖରେ ଦିନ ନେବ
ଚଉଦମାସ ତୋତେ ଅଜ୍ଞାନ ଘୋଟିବ ।
ତେବେ କାର୍ଯ୍ୟ ହୋଇବ ଅଜ୍ଞାତ ଭିତରେ
ତେବେ ତୁ ସୁଖ ପାଇବୁ ଯେ ରଘୁବୀରେ ।
ତିନି ବରଷ ଏଣିକି ସୁଖରେ ଦିନଯିବ
ସେଠାରୁ ଚଉଦମାସ ଅଜ୍ଞାନ ଘୋଟିବ ।
ଅଜ୍ଞାନ ଭୋଗହେଲେ ନିଶ୍ଚିନ୍ତ ଦାଶରଥି
ଦେବତାଏ ଖଟିବେ ତୋର ପାଦେ ଏଥି ।
ଏଗାର ସହସ୍ର ବରଷ ତୋର ଭୋଗଯିବ
ତିନିପୁର ଲୋକତୋତେ ହେବେ ସଦଭାବ ।
ଅଳପ ଦିନ ତୁ କଷ୍ଟରେ ଦିନ ନେବୁ
ଅଯୋଧ୍ୟା ଗଲେ ଯଶ ଗୁଣ ବିକାଶିବୁ ।
ପଞ୍ଚବଟୀ ବନ ଯେ ଏକଇ ଚାରୁ ବର୍ଣ୍ଣ
ସେ ସ୍ଥାନ ଅଟଇ ଯେ ନିକାଞ୍ଚନ ସ୍ଥାନ ।
ସେହିଟି ଭଲସ୍ଥାନ ସେଥିରେ ବସାକର
ଜାନକୀ ଘେନି ସେହୁ ବନରେ ବିହର ।
ମୁନିଙ୍କଠାରୁ ବଚନ ଶୁଣିଣ ଶ୍ରୀରାମ
ଯିବାକୁ ସଜ ଯେ ହେଲେ ତିନିଜଣ ।
ମୁନିଙ୍କି ଓଳଗି ମେଲାଇଣ ଚଳିଗଲେ
ଲାଭ ଲୋହିତା ସକଳ ଲକ୍ଷ୍ମଣ କନ୍ଧେ ଦେଲେ ।
ଆଗରେ ସଉମିତ୍ରୀ ଚଳଇ ଯେ ଖରେ
ଲକ୍ଷ୍ମଣ କପାଳେ ବିହି ଲେଖିଛି ତିନିଗାରେ ।
ଲକ୍ଷ୍ମଣ ପଛରେ ଗଲେ ବଇଦେହୀ
ଅଗସ୍ତିଙ୍କ ଶ୍ରୀରାମ କହିଣ ପଛେ ଯାଇ ।
ସୀତାଙ୍କ ପଛରେ ରାମ ଚଳନ୍ତି ଧନୁଧରି
ଚାରିଦିଗକୁ ଯେ ଚାହାନ୍ତି ଚାପଧାରୀ ।
ଯାନ୍ତେଣ ଦେଖିଲେ ଯେ ମାରିଚ ଦଇତ
ମୃଗରୂପ ଧରିଣ ଓଗାଳେ ଆସି ପଥ ।
ସଙ୍ଗରେ ତାହାର ବେନି ଦୈତ୍ୟଛନ୍ତି ଜାଣ
ବାହୁଟିଆ ତିନିଜଣ ବାଟଜଗେ ପୁଣ ।
ମାରୀଚ ବୋଇଲା ଶୁଣ କିରଟୀର ସୁତ
ଏହି ମୋର ମାତାଙ୍କୁ କଲା ପ୍ରାଣେ ହତ ।
ଏବେ ଆସି ବନସ୍ତେ ଭେଟପଡ଼େ ଏକା
ଆଜ ମୁଁ ସଂହାରିବି କେ ଆସି କରୁ ରକ୍ଷା ।
ଇକାର ବାଣୀ ତାର ଶୁଣି ରଘୁନାଥ
କାକା ଚରିତ୍ର ବିଦ୍ୟା ଶ୍ରୀରାମ ପ୍ରାପତ ।

ଦେଖିଲେ ମାରୀଚ ବାଟ ଜଗିଲା ନିର୍ବନ୍ଧେ
ଘନ ଘନ କରିଣ ଗର୍ଜଇ ମୃଗରାବେ ।
ଦେଖିଣ ଶ୍ରୀରାମ ଯେ ତୀକ୍ଷ୍ଣ ଶର ସାଜେ
ଗୁଣ ଟଙ୍କାର କରିଣ ଶବଦ ଗଳଗାଜେ ।
ଗର୍ଜନ ଶୁଣି ମାରୀଚ ମନରେ କରି ଭୀତି
ଜାଣିଲା ଶ୍ରୀରାମ ନାରାଚ ଟାଣଗତି ।
ଧନୁରେ ବାଣ ଯୁଚନ୍ତେ ପଳାଇ ସେ ଗଲା
ରହ ରହ ବୋଲିଣ ଶ୍ରୀରାମ ଡାକଦେଲା ।
ବଡ଼ ପ୍ରତାପ କରୁରେ ତାଡ଼କୀର ସୁତ
ଏବେ ତୁ ପଳାଉ ଅଛୁ ନରହି ଆଗେ ତ ।
ଶୁଣିକରି ମାରୀଚ ଏକ ମୁହଁ କଲା
ବନ ପର୍ବତ ନଦୀ ଭିତରେ ପଳାଇଲା ।
ସମୁଦ୍ରର ତୀରରେ ସେ ଲୁଚିଲାକ ଯାଇଁ
ଦାଶରଥି ବାଣକୁ ମନରେ ଭୟପାଇ ।
ଆରଦୁଇ ଅସୁରଙ୍କୁ ନକହି ପଳାଇଲା
ନିଜପ୍ରାଣ ଘେନିଣ ସେ ଲୁଚିଣ ରହିଲା ।
ଆରଦୁଇ ଅସୁର ଯେ ମୃଗରୂପେ ଛିଡ଼ା
ମାରୀଚ ପଳାଇବାରୁ ବିଚାର କଲେ ମୂଢ଼ା ।
ବିଚାରିଲେ ପଳାଇଲେ ନିସତ ହେବ ସିନା
ନିଉନ ହେଲା ପ୍ରାୟ ଜଣାଯିବ କିନା ।
ପିତା ମୋର ତିନିପୁର ଜିଣେ ବାହୁବଳେ
କାଳେ ନାରାୟଣ ହସ୍ତରେ ସେହୁ ମଲେ ।
ନାରାୟଣ ହସ୍ତେ ମରି ଅଚିନ୍ତା ସ୍ୱର୍ଗେ ଗଲା
ଦେବଙ୍କର ସଙ୍ଗେ ଯାଇ ନିଶ୍ଚିନ୍ତେ ରହିଲା ।
ଏ ଯେବେ ଶ୍ରୀରାମ ଅଟେ ନାରାୟଣ
ଏହାର ହସ୍ତେ ମଲେ ଲଭିବା କାରଣ ।
ଏମନ୍ତ ବିଚାର କଲେ କିରଟୀର ସୁତ
ଜୀଇଲେ ଉତ୍ତମ ମଲେ ଦେଖିବା ପିତା ତ ।
ଏମନ୍ତ ବିଚାରି କାୟା ବିସ୍ତାରି ବନ୍ଧିଲେ
ଦେଖିକରି ରାମଚନ୍ଦ୍ର ମନେ ବିଚାରିଲେ ।
ବାହୁଟିଆ ନୁହନ୍ତି ଅଟନ୍ତି ଦୈତ୍ୟ ଏହୁ
ଗୁଣରେ ନାରାଚ ଯେ ବସାଇଲେ ତହୁଁ ।
ନାରାଚେକ ବିନ୍ଧିଲେ ଯେ ରଘୁନାଥ ଟାଣି
ସେ ଦୁଇ ଦଇତଙ୍କୁ ପକାଇଲେ ହାଣି ।
ମଲାବେଳେ ରାକ୍ଷସ ଯେ ନିଜରୂପ ଧରି
ଶ୍ରୀରାମଙ୍କୁ ବେନିଜନ କହିଲେ ଉଚ୍ଚାରି ।

ଶୁଣହେ ରଘୁନାଥ ଆମ୍ଭର ଉତ୍ତର
ତାଡ଼କୀର ପୁତ୍ର ଯେ ମାରୀଚ ନାମେ ବୀର ।
ସେ ତୋତେ ମାରିବାକୁ ବିଚାର କରିଥିଲା
ତୋ ହସ୍ତରେ ବାଣଦେଖି ସମୁଦ୍ରେ ଲୁଚିଲା ।
ଆମ୍ଭେ ଦୁଇଭାଇ ଅଟୁଁ ଶଙ୍ଖାସୁର ପୁତ୍ର
ମାରିଚ ଦୈତ୍ୟର ଆମ୍ଭେ ଭଣଜା ସମ୍ଭୁତ ।
ତୋତେ ସେ ମାରିବାକୁ ଆମ୍ଭଙ୍କୁ ସଙ୍ଗକଲା
ତୁମ୍ଭେ ବାସୁଦେବ ବୋଲି ଆମ୍ଭଙ୍କୁ କହିଲା ।
ପଳାଇ ଯିବାରୁ ଆମ୍ଭେ ଜାଣିଲୁ ତାର ଛନ୍ଦ
ବିଚାରିଲୁ ନିଶ୍ଚୟ ଏ ଶ୍ରୀରାମ ଆଦିକନ୍ଦ ।
ତେଣୁ କରି ଆମ୍ଭର ଆନନ୍ଦ ହେଲା ଚିତ୍ତ
ନିଉନ ନେଲେ ନ ମାରନ୍ତୁ ରଘୁନାଥ ।
ତୋରହସ୍ତେ ମଲେ ଆମ୍ଭେ ପାଇବୁ ମୁକତି
ପିତାର ସଙ୍ଗେ ରହିବୁ କହ ହେ ଦାଶରଥି ।
ଶୁଣିଣ ଶ୍ରୀରାମ ଯେ ହରଷ ହୋଇଲେ
ମନରେ ଯାହା ସୁମରିଲେ ଲଭରେ ବୋଇଲେ ।
ଶୁଣିକରି ବେନି ଜନ ଦେବ ଅଙ୍ଗ ହୋଇ
ଶ୍ରୀ ରାମଚନ୍ଦ୍ରଙ୍କୁ ଯେ ବଚନ ପୁଣ କହି ।
ଆଜଠାରୁ ଜାଣିଥାଅ ଅସୁର ଭୟ ତୋତେ
ନାନା ଛନ୍ଦେ ଅସୁର ମିଳିବେ ତୋ ଅଗ୍ରତେ ।
ତାଡ଼କୀର ପୁତ୍ର ଯେ ମାରିଚ ଅଛି ଲୁଚି
ମରିବ ତୋର ହସ୍ତେ ନିଶ୍ଚେ କହିଲୁଟି ।
ତାର ଯୋଗୁଁ ତୋତେଯେ ଅନେକ ଦୁଃଖହେବ
ଚଉଦ ମାସ ପରିଯନ୍ତେ ତୋ ଦୁଃଖ ନ ସରିବ ।
ଏତେକହି ବେନିଜନେ ସ୍ୱର୍ଗକୁ ଚଳିଗଲେ
ତାଙ୍କଠାରୁ ଶୁଣିରାମ ମନରେ ଚିନ୍ତାକଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ
ସେଠାରୁ ଶ୍ରୀରାମଙ୍କୁ ଜାନକୀ ପଚାରି ।
ଶୁଣ ତୁମ୍ଭେ ଦାଶରଥି ମୋହର ବଚନ
ଯେଉଁ ମୃଗ ତିନିଗୋଟି ଓଗାଳେ ପଥପୁଣ ।
ଗୋଟିଏ ବାହୁଟିଆ ପଳାଇଣ ଗଲା
ଦୁଇଗୋଟି ବାହୁଟିଆ ତୁମ୍ଭର ବାଣେ ମଲା ।
ସେହି ଦୁଇ ମୃଗ ଯେ ସ୍ୱର୍ଗକୁ ଚଳିଗଲେ
ଅନେକ କଥା ତୁମ୍ଭର ଆଗରେ କହିଲେ ।
ସେମାନଙ୍କ ପୂର୍ବଜନ୍ମ କହ ମୋ ଆଗରେ
ଶୁଣିଣ ଶ୍ରୀରାମ କହନ୍ତି ହରଷରେ ।

ଶୁଣ ଗୋ ବଇଦେହୀ ସେମାନଙ୍କ କଥା
ତାଡ଼କା ଅଟେ ତା ରଜୁ ଅସୁରର ସୁତା ।
ଅନେକ ତପକରି ବ୍ରହ୍ମାଙ୍କୁ ତୋଷକଲା
ଅଭୟ ବରମାଗି ନିଶ୍ଚିନ୍ତ ହୋଇଲା ।
ତିନିପୁର ଜିଣିଣ କଲା ସେହୁ ସାଧ
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଜିଣି ଦୈତ୍ୟରାଜ ।
ଜନ୍ମ ବେଳେ ବିହି ଯେ କର୍ମରେ ତାର ଲେଖି
ସଦାଶିବ ପୁତ୍ରହସ୍ତେ ମରିବ ଦୈତ୍ୟନିକି ।
ତେଣୁ ସେହୁ ଦୈତ୍ୟକୁ ନ ଜିଣିଲେ କେହି
ନର ବାନର ଦେବତା ସମସ୍ତେ ସାଧହୋଇ ।
ଏମନ୍ତେ କେତେକାଳ ସେଥିରେ ବହିଗଲା
ପାର୍ବତୀ ଈଶ୍ୱରଙ୍କର ଶୃଙ୍ଗାର ଲୀଳହେଲା ।
ଈଶ୍ୱର ଅଙ୍ଗରୁ ବୀର୍ଯ୍ୟ ଖସିଲାକ ପୁଣ
ପାର୍ବତୀ ଅଙ୍ଗେ ସଂଯୁକ୍ତ ହେଲା ତତକ୍ଷଣ ।
ଈଶ୍ୱର ବୀର୍ଯ୍ୟ ପାର୍ବତୀ ଗର୍ଭେ ନ ରହିଲା
ତେଣୁ ସେ ବୀର୍ଯ୍ୟ ଗୋଟି ଉଛୁଳି ପଡ଼ିଲା ।
ଷଡ଼ଭାଗ କରି ଷଡ଼ ଚଣ୍ଡୀ ଯେ ଭକ୍ଷିଲେ
ସ୍ୱାମୀର ବୀର୍ଯ୍ୟବୋଲି ସେଥିରେ ଲୋଭକଲେ ।
ଏକମୁଖ ବେନି ହସ୍ତ ଦେବୀଙ୍କ ଗର୍ଭୁ ଜାତ
ଷଡ଼ ଦେବୀଙ୍କଠାରୁ ଷଡ଼ ପ୍ରକାରେ ସମ୍ଭୁତ ।
ଚରଣ ନଥିବାରୁ ଦେବୀମାନେ ତାଙ୍କୁ
ଗଙ୍ଗାରେ ପକାଇଣ ଦେଲେ ଯେ ତାହାଙ୍କୁ ।
ତେଣୁ ସେ ଧବଳାଙ୍ଗୀ ଏକଅଙ୍ଗ କଲା
ବେନିଗୋଟି ଚରଣ ଏକ ଅଙ୍ଗ ତୋରା ।
ଷଡ଼ଗୋଟି ମୁଣ୍ଡ ତାର ବାରଗୋଟି ହସ୍ତ
ଏକରୂପରେ ପୁତ୍ର ହୋଇଲା ସମ୍ଭୁତ ।
ଦେଖିଣ ଧବଳାଙ୍ଗୀ ଆନନ୍ଦ ମନ ହେଲା
ରଖିଣ ସେ ପୁତ୍ରକୁ ଯତନେ ପାଳିଲା ।
ଏକଦିନେ ଧବଳାଙ୍ଗୀ ପୁତ୍ର ଘେନି ଚଳି
ଈଶ୍ୱରଙ୍କ ଛାମୁରେ ଯାଇଣ ବେଗେ ମିଳି ।
ପୁତ୍ରକୁ ବୋଇଲେ ତୋର ପିତା ଅଟେ ଏହି
ଶୁଣିକରି କୁମର ପିତାଙ୍କୁ ଓଳଗଇ ।
ପାର୍ବତୀ ବୋଇଲେ ପୁତ୍ର ଅଟଇ କାହାର
ଈଶ୍ୱର ବୋଲନ୍ତି ଏହୁ ପୁତ୍ର ଅଟେ ମୋର ।
ପାର୍ବତୀ ବୋଇଲେ କେଉଁ ନାରୀ ଜାତକଲା
ଈଶ୍ୱର ବୋଇଲେ ବୀର୍ଯ୍ୟ ସମ୍ଭାଳି ନୋହିଲା ।

ତୋର ଗର୍ଭୁ ବୀର୍ଯ୍ୟ ଉଛୁଳି ପଡ଼େ ଯହୁଁ
ଷଡ଼ଦେବୀ ସେ ବୀର୍ଯ୍ୟକୁ ଭକ୍ଷିଲେକ ତହୁଁ ।
ତାଙ୍କ ଗର୍ଭୁ ଷଡ଼ରୂପ ହୋଇଲାକ ଜାତ
ପୁତ୍ରମାନ ଘେନି ସର୍ବେ ଚଳିଲେ ତ୍ୱରିତ ।
ଧବଳାଙ୍ଗୀଠାରେ ନେଇ ସମସ୍ତ ସମର୍ପିଲେ
ତେଣୁ ସେ ଧବଳାଙ୍ଗୀ ଏକରୂପ କଲେ ।
ଶୁଣିକରି ପାର୍ବତୀ ହରଷ ମନେ ହେଲେ
କାର୍ତ୍ତିକେଶ୍ୱର ବୋଲି ତାଙ୍କ ନାମ ଦେଲେ ।
ସେଠାରୁ ଧବଳାଙ୍ଗି ନିଜପୁର ଗଲା
ତ୍ରିଦଶ ଦେବତାଏ ହୋଇଲେ ଏକମେଳା ।
ସଦାଶିବଙ୍କୁ ଯାଇ ବହୁତ ସ୍ତୁତି କଲେ
ଏ ପୁତ୍ରକୁ ଧନୁ ଦିଅ ବୋଲିଣ ବୋଇଲେ ।
ତେଣୁ ସେ ତ୍ରିଲୋଚନ ପୁତ୍ରକୁ ଧନୁ ଦେଲା
ଧନୁଧରି ପୁତ୍ର ମଣି ହରଷ ହୋଇଲା ।
ଦେବତା ବୋଇଲେ ଶୁଣ ଧବଳ ଷଡ଼ାନନ
ତାଡ଼କାସୁର ଦୈତ୍ୟ ପ୍ରବଳ ବଡ଼ ଜାଣ ।
ଦୈତ୍ୟକୁ ମାଇଲେ ଯେ ତିନିପୁର ରକ୍ଷା
ଆମ୍ଭେମାନେ ସ୍ୱର୍ଗେ ବିହରିବୁ ମନଇଚ୍ଛା ।
ଶୁଣିକରି ଷଡ଼ାନନ ଧନୁ କରେ ଧରି
ଐରାବତ ପର୍ବତକୁ ବାଟୁଳି ଯେ କରି ।
ସେ ବାଟୁଳି ବାଜନ୍ତେ ତାଡ଼କାସୁର ମଲା
ତାହାର ଘରଣୀ ପୁତ୍ର ଘେନି ପଳାଇଲା ।
ବିଶ୍ୱାମିତ୍ର ଯାଗ ମୁଁ ଯେ ରଖିବାର କାଳେ
ତାଡ଼କାସୁର ଘରଣୀ ତାଡ଼କୀମାଇଲି ଯେ ଶରେ ।
ତାହାର କୁମର ଯେ ଅଟଇ ମାରୀଚି
ଶଙ୍ଖାସୁର ପୁତ୍ରଘେନି ଓଗାଳିଲା ଏଥି ।
ବାଣକୁ ଦେଖନ୍ତେ ସେ ସମୁଦ୍ରେ ଯାଇ ଲୁଚି
ଶଙ୍ଖାସୁର ବେନି ପୁତ୍ର ମଲେ ଯେ ବାଣେଟି ।
ଜାନକୀ ବୋଲେ ଶଙ୍ଖାସୁର କଥା କହମୋତେ
ଶଙ୍ଖ ଗୋଟି ହୋଇଲା ଦେହ ତା କେମନ୍ତେ ।
ଶ୍ରୀରାମ ବୋଇଲେ ସେ କଥା ଏବେ ଶୁଣ
ଆୟୁଧ ଶଙ୍ଖ ମୋର ହସ୍ତରେ ଥାଇ ପୁଣ ।
ଏକଦିନେ ଡାହାଣ ଶଙ୍ଖ ମୋର ଗଲା
ଧବଳ ରୂପ ଧରିଣ ସମୁଦ୍ରେ ସ୍ନାନ କଲା ।
ତାହାର ସ୍ନାନ ବେଳେ ଶଙ୍ଖୁନି ଅପସରି
ସେ ଦିନ ଯାଇଥିଲା ସାଗରେ ସ୍ନାନକରି ।

ଧବଳ ରୂପ ଦେଖି ମତି ତା ଭ୍ରମହେଲା
ଶଙ୍ଖକୁ ଧରିଣ ସେ ଶୃଙ୍ଗାର ରତିକଲା ।
ସେ ଗାନ୍ଧାରୀ ଅପସରୀ ବଳବନ୍ତ ପୁଣ
ପୁତ୍ରେକ ଜାତ ହେଲା ଶଙ୍ଖର ରୂପେଣ ।
ତେଣୁ ସେ ଅପସରୀ ତାହାଙ୍କୁ ନ ଦେଲା
ସାଗର ଭିତରକୁ ପକାଇ ଚଳିଗଲା ।
ଶଙ୍ଖ ଗୋଟି ତେଣୁ ଯେ ହୋଇଲା ମାତୃହୀନ
ରୋଦନ କରିବାରେ ଜଗତ ପୂରେ ଜାଣ ।
ଦେଖିଣ ସିନ୍ଧୁ ରାଜା ତାହାକୁ ଘେନିଗଲା
କୋଳରେ ବସାଇଣ ପ୍ରବୋଧ ତାଙ୍କୁ ଦେଲା ।
ଯେତେ ସେ ପ୍ରବୋଧିଲେ ନୋହିଲା ଶାନ୍ତିପୂର୍ଣ
ବୋଇଲା ଦୁଷ୍ଟବୁଦ୍ଧି ହେଉ ସେ ତାର ଜାଣ ।
ଏତେ ବୋଲି ଜଳରେ ନେଇଣ ପକାଇଲା
ଶଙ୍ଖାସୁର ଦୈତ୍ୟ ହୁଅ ବୋଲିଣ ବୋଇଲା ।
ତେଣୁ ସେ ବଳବନ୍ତ ହୋଇଲା ଶଂଖାସୁର
ତିନିପୁର ଜିଣିଲା ସେ କିଞ୍ଚିତ ମାତର ।
ତିନିପୁର ଧନ ରତ୍ନ ସମୁଦ୍ରେ ଠୁଳକଲା
ତିନିପୁରେ ସମ୍ପାତି ସେ କିଛି ନ ରଖିଲା ।
ବିଧାତାଙ୍କ ବେଦ ସେହୁ ବଳେ ହରିନେଲା
ବାସୁଦେବ ସୁମରଣା ବେଦବର କଲା ।
ତେଣୁ ସେ ନାରାୟଣ ଶୟନ ତେଜ୍ୟାକଲେ
ସେହି ମୀନ ରୂପ ମରି ଶଂଖାକୁ ମାଇଲେ ।
ମଲାବେଳେ ଶଂଖାସୁର ଅଇଶ୍ୱର୍ଯ୍ୟ ଲୋଡ଼ି
ତେଣୁ ଅଇଶ୍ୱର୍ଯ୍ୟ ଦେଲେ ଦେବ ହରି ।
ଜାନକୀ ବୋଇଲେ ସେ ଦୁଷ୍ଟ ଶଂଖାସୁର
ତିନିପୁର ପଦାର୍ଥକୁ କଲା ସେ ଉଜାଡ଼ ।
କୁବେର ଭଣ୍ଡାର ଯେ ଦେବଙ୍କ ଆୟମାନ
ସେମାନ ଜଳରେ ବୁଡ଼ାଏ ନେଇ ଜାଣ ।
ସେ ରତ୍ନମାନ ହରି ଆଣିଲେ ଖୋଜିକରି
ବିଧାତାଙ୍କର ବେଦ ଆଣିଲେ ସେ ହରି ।
ଶ୍ରୀରାମ ବୋଇଲେ ତାର ଘରଣୀ କିରିଟୀ
ତରଙ୍ଗ ମନ୍ତ୍ରୀର ସେ ଅଟଇ ଦୁହିତାଟି ।
ବେଦକୁ ଦେଇଣ ତାର ହସ୍ତେ ଶଂଖା ଦେଲା
ସେ ବେଦ କିରିଟୀ ଯତନେ ରଖିଥିଲା ।
ସ୍ୱାମୀ ନାଶ ଯିବାରୁ ସମର୍ପିଲା ଆଣି
ତେଣୁ ସେ ସନ୍ତୋଷ ହୋଇଲେ ଚକ୍ରପାଣି ।

ମୀନରୂପ ତେଜ୍ୟାକିର ବେଗେ ଚଳିଗଲେ
କୁର୍ମରୂପ ଧରିଣ ସାଗର ମନ୍ଥିଲେ ।
ତେଣୁ ସେ ତିନିପୁର ଧନ ରତ୍ନ ଦେଲେ
ମନ୍ଦର ଧରନ୍ତେ ଧନ କୂଳରେ ଆଉଜିଲେ ।
ଦେଖିକରି ଦେବତାଏ ଯେ ଯାହାଦ୍ରବ୍ୟନେଲେ
ହରଷରେ ଚକ୍ରଧର ମନ୍ଦର ଘେନି ଚଳେ ।
ମନ୍ଦରକୁ ନିଜସ୍ଥାନେ ରଖିଲେ ଦେବହରି
ଅନନ୍ତ ଶୟନରେ ବିଜୟ ଯାଇ କରି ।
ଦେବତାଏ ଯେ ଯାହାର ନିଜପୁରେ ରହି
ଭଣ୍ଡାର ଘେନି କୁବେର ଅଳକା ପୁର ଯାଇ ।
ଏଥୁ ଅନନ୍ତରେ ଗୋ ଶୁଣ ବଇଦେହୀ
ସେ କିରିଟୀ ନାରୀର ଚାରିପୁତ୍ର ରହି ।
ମଉଳା ବୋଲରେ ସେ ଦୁଇପୁତ୍ର ମଲେ
କିରିଟୀ ନାରୀର ଦୁଇପୁତ୍ର ଯେ ରହିଲେ ।
ବେନି ପୁତ୍ର ମରିବାର ବେଳରେ ଶାନ୍ତିହେଲେ
ଦୃଷ୍ଟାନ୍ତର କଥା କହି ମୋତେ ଶାନ୍ତକଲେ ।
ତେଣୁ ସେ ପିତାସଙ୍ଗ ଲଭିଲେ କୁମର
ଶୁଣିକରି ଜାନକୀ ଯେ ହରଷ ମନର ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ସେଠାରୁ ତିନିଜଣ କିସ କଲେ ପୁଣ ।
ଈଶ୍ୱର ବୋଇଲେ ଗୋ ଶୁଣ ଭଗବତୀ
କଥା ସରିବାରୁ ଚଳିଗଲେ ଦାଶରଥୀ ।
ସୀମାଞ୍ଚଳ ନିକଟେ ହୋଇଲେ ଦେବଯାଇଁ
ପର୍ବତ ଉପରେ ଉଠିଲେ ରଘୁସାଇଁ ।
ନୃସିଂହ ଅବତାର କଲେ ଦରଶନ
ପ୍ରତ୍ୟକ୍ଷ ସିଂହରୂପେ ହୋଇଛନ୍ତି ନାରାୟଣ ।
ପକ୍ୱଫଳ ନିର୍ଝର ପାଣି ମୂଳ ଦେଲେ
ନୃସିଂହ ମୂରତିକି ସେ ଫଳ ପୂଜା କଲେ ।
ପୂଜା ସାରି ରାମ ଯେ କଲେ ନମସ୍କାର
ଲକ୍ଷ୍ମଣ ଓଳଗିଲେ ନୃସିଂହ ପୟର ।
ଜାନକୀ ବନ୍ଦାପନା କଲେ ଅର୍ଘ୍ୟଦେଇ
ଏକଅଙ୍ଗ ବୋଲି ଯହୁଁ ଜାଣିଲେ ବଇଦେହୀ ।
ତିନିଜଣ ମାନ୍ୟ ଧର୍ମ ଦେଖି ସିଂହରୂପ
କନ୍ଦମିଠା ଚାରୁଫଳ ଅଣାଇ ତୁରିତ ।
ଆମ୍ବ, ପଣସ ଯେ ପଇଡ଼ ତାଳସଜ
ପାଚିଲା ରମ୍ଭାଫଳ ଯେ ଅଣାଇଲେ ବେଗ ।

ଶ୍ରୀରାମ ଆଗରେ ଶାର୍ଦ୍ଦୋଳ ମାନଦେଲେ
ନୃସିଂହ ବୋଇଲେ ଭୁଞ୍ଜ ଶୀତଳ ଦ୍ରବ୍ୟଭଲେ ।
ଶ୍ରୀରାମ ବୋଇଲେ ତୋର ଶାର୍ଦ୍ଦୋଳ କି କୃତ
ନୃସିଂହ ବୋଇଲେ ସେ ସେବନ୍ତି ଅନୁବ୍ରତ ।
ଶୁଣିକରି ଦାଶରଥି ସନ୍ତୋଷ ହୋଇଲେ
ତିନିଜଣ ବସିଣ ଭୋଜନ ସୁସ୍ଥେ କଲେ ।
ଆଞ୍ଚୋବନ ସାରିଣ ଭୁଞ୍ଜିଲେ କଷ ଫଳ
ହରଷହୋଇଲେ ଯେ ବସିଣ ଏକମେଳ ।
ସେଠାରେ ଜାନକୀ ଯେ ରାମଙ୍କୁ ପଚାରି
ନୃସିଂହ ମୂରତି କିମ୍ପାଇ ହୋଇଲେ ଯେ ହରି ।
ଶ୍ରୀରାମ ବୋଇଲେ ଶୁଣ ଗୋ ବଇଦେହୀ
କଶ୍ୟପ ଋଷିଙ୍କର ଦୁଇ ନନ୍ଦନ ଯେ ହୋଇ ।
ହିରଣୀ ହିରଣାକ୍ଷ ବୋଲିଣ ଦୁଇପୁତ୍ର
ଦୁଷ୍ଟ ଭାବ ଘେନି ସେ ହୋଇଲେ ଦଇତ ।
ତପକରି ସଦାଶିବେ ମନାଇଲେ ବର
ତେଣୁକରି ଅଜୟ ହୋଇଲେ ଦୈତ୍ୟବୀର ।
ତିନିପୁର ସାଧକରି ଦେବଙ୍କୁ ଜିଣିଲେ
ପୁରନ୍ଦରକୁ ଘଉଡ଼ି ସ୍ୱର୍ଗରେ ଇନ୍ଦ୍ର ହେଲେ ।
ମଞ୍ଚରେ ନରେନ୍ଦ୍ର ଯେ ହୋଇଲେ ଅସୁର
ମହେନ୍ଦ୍ର ପଣ କଲେ ପାତାଳ ପୁରର ।
ହିରଣ୍ୟ ରାକ୍ଷସର ପୁତ୍ରେକ ଉପୁଜିଲା
ପ୍ରହ୍ଲାଦ ନାମ ଯେ ଅସୁରୀ ତାକୁ ଦେଲା ।
ସେ କୁମର ଶ୍ରୀହରିଙ୍କି ଭଜିଲା ଅନୁକ୍ଷଣେ
ହିରଣ୍ୟ ଅସୁର ଦଣ୍ଡିଲା ତାକୁ କ୍ରୋଧ ମନେ ।
ତେଣୁକରି ନୃସିଂହ ଅବତାର ହରି
ସ୍ତମ୍ଭରୁ ଅବତରି ତାହାକୁ ବିଦାରି ।
ତେଣୁ ସେ ଦେବତାଏ ପାଇଲେ ପୁଣ ସୁଖ
ଶୁଣିଣ ଜାନକୀ ଯେ ହୋଇଲେ ସନ୍ତୋଷ ।
ବଇଦେହୀ ବୋଇଲେ ଶୁଣ ହେ ଚାପଧାରୀ
ହିରଣାକ୍ଷକୁ କେ ମାଇଲା କହ ତଥ୍ୟକରି ।
ଶ୍ରୀରାମ ବୋଇଲେ ସେ କଥା ଏବେ ଶୁଣ
ହିରଣାକ୍ଷ ପାତାଳରେ ପଶିଲା ଯାଇଣ ।
ନାଗବଳ ମାନଙ୍କୁ ସେ ବଳରେ ଜିଣିଲା
ତେଣୁ ସେପୁରେ ମହେନ୍ଦ୍ର ବୋଲି ରାଜାହେଲା ।
ବାସୁଦେବ ପାଶକୁ ପେଶଇ ଦୂତ ପୁଣ
ବୋଇଲେ ସେବା ମୋତେ କରନ୍ତୁ ଆସିଣ ।

ଶୁଣିକରି ନାଗରାଜା ହରିଙ୍କି ସୁମରିଲା
ଜାଣିକରି ହରି ଯେ ବରେହ ରୂପହେଲା ।
ବେନିଦନ୍ତ ବାହାର ହୋଇଲା ମୁଖରୁ
ଏକଦନ୍ତେ ମେଦିନୀ ଧଇଲା ଦନ୍ତାକାରୁ ।
ତେଣୁ ନାଗରାଜା ଯେ ସେଠାରୁ ଚଳିଗଲା
ହିରଣ୍ୟ ଦୈତ୍ୟ ଆଗେ ଯାଇଣ ମିଳିଲା ।
ବାସୁକୀ କି ଚାହିଁଣ ବୋଲେ ଦୈତ୍ୟରାଣ
ଧରଣୀ କିଏ ଧଇଲା ଅଇଲୁ ତୁହି ପୁଣ ।
ନାଗରାଜ ବୋଇଲା ଶୂକର ଜୀବ ଆସି
ମୋତେ ଘଉଡ଼ି ଦେଇ ସେ ଧଇଲା ମେଦିନୀକି ।
ଶୁଣିଣ ଦୈତ୍ୟ ବୀର ବେଗେ ଚଳିଗଲା
ନାଗରାଜା ବାସୁକୀକି ସେ ସଙ୍ଗତେ ନେଲା ।
ନାଗରାଜା ବାସୁକୀ ଦେଖାଇ ଦେଲା ପୁଣ
ବୋଇଲା ଏ ଜୀବ ଧରଣୀ ଧରେ ଜାଣ ।
ଶୁଣିକରି ଅସୁର କ୍ରୋଧ ମନ ହେଲା
ବରେହା ରୂପକୁ ଯାଇ ମୁଥେକ ମାଇଲା ।
ଯେତେବେଳେ ମୁଥ ସେ ପ୍ରହାର କଲା ନେଇ
ଅସୁରକୁ ଦନ୍ତରେ ବରେହା ଭୁଷଇ ।
ସେଠାରେ ହିରଣାକ୍ଷର ପ୍ରାଣହତ କରି
ବାସୁକୀର ଶିରରେ ମେଦିନୀ ଦେଲେ ହରି ।
ହରଷରେ ଅନନ୍ତ ଶୟନ ଯାଇଁ କଲେ
ଶୁଣିକରି ଜାନକୀ ସନ୍ତୋଷ ହୋଇଲେ ।
ତିନିଜଣ ନୃସିଂହକୁ କହି ଚଳିଗଲେ
ବନେ ବନେ ସେଠାରୁ କେତେ ଦୂରଗଲେ ।
କୁରଙ୍ଗୀ ବନରେ ଯାଇ ପ୍ରବେଶ ଦାଶରଥି
ସେଠାରେ ତିନିଜଣ ସ୍ନାହାନ କରି ଶାନ୍ତି ।
ସେଠାରେ ଶ୍ରୀରାମ ଯେ ଲକ୍ଷ୍ମଣଙ୍କୁ କହି
ଏଠାରେ ଲିଙ୍ଗ ପୂଜା କରିବାରେ ଭାଇ ।
ଶୁଣିକରି ଲକ୍ଷ୍ମଣ ବେଗେ ଚଳିଗଲେ
କନକର ପାଷାଣ ଶ୍ରୀରାମ ପାଶେ ଦେଲେ ।
ଦେଖିକରି ଶ୍ରୀରାମ ସୁବର୍ଣ୍ଣ ପାଷାଣକୁ
ଜୀବନ୍ୟାସ କଲେ ଯେ ବିଚାରି ମନକୁ ।
ଫୁଲଚନ୍ଦନ ଦେଇଣ ବାଣ ପୂଜାକଲେ
ସୋମନାଥ ବୋଲିକରି ସେ ଲିଙ୍ଗନାମଦେଲେ ।
ମନଭେଦି ଶରକୁ ଭେଦି ରାମରାଣ
ଗୋଦାବରୀ ନଦୀ ବହେ ଶତେ ଧାରେ ପୁଣ ।
ସପତ ଗୋଦାବରୀ ତାର ନାମ ଦେଲେ
ନମସ୍କାର କରିଣ ସେଠାରୁ ଚଳିଗଲେ ।
ଗୋଦାବରୀ କୂଳରେ ହେଲେ ପରବେଶ
ସେଠାରେ ପତ୍ର କୁଡ଼ିଆ କଲେ ରଘୁନାଥ ।
ଗୋଦାବରୀ ଜଳରେ ସ୍ନାହାନ ଯାଇ କଲେ
ଜାନକୀଙ୍କି ସେଠାରେ ଦାଶରଥି ବୋଇଲେ ।
ଏହିଟି ଆଦ୍ୟ ଗଙ୍ଗା ବିଧାତା ଯାକୁ କରି
ପଛେ ଜାହ୍ନବୀ କି ଯେ ଭାଗୀରଥି ବରି ।
ଧବଳାଙ୍ଗୀ ଶୂନ୍ୟ ଗଙ୍ଗା ମଝରେ ଏହୁ ସାର
ଆଦ୍ୟରେ ଏ ନଦୀ ଯେ ଗିରିରୁ ବାହାର ।
ଶୁଣିଣ ଜାନକୀ ଯେ ପରମ ତୋଷହେଲେ
ସେଠାରୁ ତିନିଜଣ ବେଗେ ଚଳିଗଲେ ।
ପତ୍ର କୁଟୀରେ ଯାଇଣ ପ୍ରବେଶ ହୋଇଲେ
ବନ ଶୋଭା ଦେଖିଣ ଯେ ହରଷ ହୋଇଲେ ।
ସେଠାରେ ଅମଳାଣ ପିନ୍ଧିଲେ ତିନିଜଣ
ଗୋଦାବରୀ ପ୍ରବେଶ ହୋଇଲେ ତହିଁ ପୁଣ ।
ଜାନକୀର ଚରଣେ ଓଳଗ ମେଲାଇଲେ
ଉହାଡ଼ରେ ରାମଙ୍କୁ ଯେ ନମସ୍କାର କଲେ ।
ଅଗୁରୁ ଚନ୍ଦନ ନେଇ ଜାନକୀ ଅଙ୍ଗେ ବୋଳି
ଜାନକୀର ଜୁଡ଼ାରେ ଦେଲେ ପୁଷ୍ପମାଳି ।
ଆମ୍ବ, ପଣସ ଯେ କଦଳୀ ନଟୀକାଳ
ଟଭା ନାରଙ୍ଗ ସେ ସେଥିରେ କନ୍ଦମୂଳ ।
ଜାନକୀଙ୍କ ଛାମୁରେ ନିଉଡ଼ିଲେ ନେଇ
ଦେଖିଣ ଜାନକୀ ଯେ ହରଷ ମନ ହୋଇ ।
କରଯୋଡ଼ି ଗୋଦାବରୀ ସୀତା ଆଗେ କହି
ତୁମର ସାନୁଜକୁ ଦର୍ଶନ କରିବି ଯାଇ ।
ଶୁଣିଣ ଜାନକୀ ଯେ ସଙ୍ଗେ ଘେନି ଚଳି
ସଉମିତ୍ରୀ ଛାମୁରେ ଯାଇଣ ବେଗେ ମିଳି ।
ଗୋଦାବରୀ ଲକ୍ଷ୍ମଣ ଚରଣେ ଓଳଗିଲା
ଦେଖିଣ ସଉମିତ୍ରୀ ହରଷ ହୋଇଲା ।
ଲକ୍ଷ୍ମଣ ବୋଇଲେ ଶୁଣ ଆଗେ ଚାନ୍ଦମୁହିଁ
ତୋହର ପାଶରେ ଆମ୍ଭେ ରହିବୁ ଯାଇ ।
ଶୁଣିକରି ଗୋଦାବରୀ ହରଷ ହୋଇଲା
ଓଳଗ ମେଲାଇଣ ନିଜପୁରେ ଗଲା ।
ସେଥିରେ ତିନିଜଣ କଲେକ ଭୋଜନ
ସେଦିନ ସେଠାରେ ରହିଲେ ରାମରାଣ ।

କୁଟପଲ୍ଲୀ ବୋଲିଣ ସେଠାରେ ନାମ ଦେଲେ
ଏ ସ୍ଥାନରେ ସ୍ନାନକଲେ ସୁକୃତ ହେବ ଭଲେ ।
ସେଠାରୁ ତିନିଜଣ ଚଳିଗଲେ ବେଗେ
ଅଙ୍ଗାର ପନ୍ନଗ ସ୍ଥାନେ ପ୍ରବେଶ ସରାଗେ ।
ଦେଖିଲେ ଉତ୍ତମ ସ୍ଥାନ ହୋଇଛି ନିର୍ମଳ
ସେଠାରେ ମଢ଼ିଆ ଯେ ରଚିଲେ ରଘୁବୀର ।
ଫଳ ମୂଳ ଆଣିଣ ଭୋଜନ ତହିଁ କଲେ
ସେହିଦିନ ସେଠାରେ ନିଶ୍ଚିନ୍ତେ ରହିଲେ ।
ରାତ୍ରରେ ଗୋଦାବରୀ ଆସି ଭେଟ ହେଲା
ଶାଚୀ କନ୍ଦ ପକ୍ୱଫଳ ଆଣି ଦେଇଗଲା ।
ସେଠାରେ ସୁଖ ପାଇ ରହିଲେ ପାଞ୍ଚଦିନ
ସେହିଠାରେ ଜାନକୀ ପାକ ଯେ କଲେ ପୁଣ ।
କସ୍ତୁରୀ ଜୀବ ଗୋଟିଏ ମାରି ରାମ ଆଣି
ଲକ୍ଷ୍ମଣ କେଳାଇ ଦେଲେ ତାହାବେଗେ ପୁଣି ।
ସୁପକ୍ୱ ମାଂସ ରାନ୍ଧି ତିନିଜଣ ଖାଇ
ପାଞ୍ଚଦିନ ସେ ରହିଣ ସେଠାରୁ ଚଳିଯାଇ ।
ଗଲାବେଳେ ସେ ସ୍ଥାନକୁ କହିଲେ ରାମରାଣ
ରାଜଭୋଗ ଏଠାରେ ମିଳିଲା ମୋତେ ପୁଣ ।
ଏ ସ୍ଥାନର ନାମ ରାଜ ମହେନ୍ଦ୍ର ହୋଇଲା
ଏ ସ୍ଥାନରେ ସ୍ନାନ କଲେ ସୁକୃତ ପାନ୍ତି ପରା ।
ତିନିକୁଳ ଉଦ୍ଧରି ସ୍ୱର୍ଗକୁ ପୁଣ ଯିବେ
ନର ବାନର ଦେବତା ଏସ୍ଥାନେ ମୋକ୍ଷହେବେ ।
ଏତକ କହି ଶ୍ରୀରାମ ବେଗେ ଗଲେ ଚଳି
ଲତାର ଗହଳେ ବ୍ୟୁହରେ ଯାଇଁ ମିଳି ।
ସେଠାରେ ସେହିଦିନ ରହିଲେ ଦାଶରଥି
ସେହିଦିନ ସଉମିତ୍ରି ମୃଗୟାକୁ ଯାନ୍ତି ।
ଗଣ୍ଡାଜୀବ ଗୋଟିଏ ମାରିଣ ଲକ୍ଷ୍ମଣ
ଶ୍ରୀରାମ ଛାମୁରେ ଦେଲେକ ନେଇ ପୁଣ ।
ଦେଖିକରି ରାମଚନ୍ଦ୍ର ହରଷ ହୋଇଲେ
ଜାନକୀଙ୍କି ଘେନିଣ ସ୍ନାନ ସେ ବେଗେ କଲେ ।
ପୁଣି ଗଙ୍ଗାରେ ପିତୃଙ୍କୁ ଜଳ ତିଳ ଦେଲେ
ସନ୍ଧ୍ୟା ତର୍ପଣ ସାରି ସେଠାରୁ ଅଇଲେ ।
ମଢ଼ିଆରେ ପ୍ରବେଶ ହେଲେ ବେନିଜନ
ଅମଳାଣ ପିନ୍ଧିଣ ହରଷ କଲେ ମନ ।
ସେଠାରେ ଜାନକୀ ଯେ ପାକ ସମ୍ପାଦିଲେ
ଗଣ୍ଡାଗୋଟି ଲକ୍ଷ୍ମଣ କେଳାଇ କରିଦେଲେ ।
ପାକସାରି ଜାନକୀ ରାମଙ୍କ ଆଗେ କହି
ସଉମିତ୍ରୀ ସ୍ନାନକରି ଅଇଲେକ ତହିଁ ।
ଶ୍ରୀରାମ ସେଠାରେ ପିତୃଶ୍ରାଦ୍ଧ କଲେ
ଗଣ୍ଡାର ମାଂସରେ ପିତୃଙ୍କୁ ଦାନ ଦେଲେ ।
ସେଠାରେ ତିନିଜଣ ଭୋଜନ ପୁଣ କଲେ
ହରଷରେ ଦଶଦିନ ସେଠାରେ ରହିଲେ ।
ସେଠାରେ ଶୀରାମ ଯେ ଲକ୍ଷ୍ମଣଙ୍କୁ କହି
ଗୋଦାବରୀକି ତୁ ଯେ ଡାକିଆଣ ଭାଇ ।
ଶୁଣିଣ ସଉମିତ୍ରୀ ବେଗେ ଚଳିଗଲେ
ଯାଇଣ ଗୋଦାବରୀକି ବେଗେ ସେ ଆଣିଲେ ।
ସଉମିତ୍ରୀ ଶିରରେ ଅର୍ଘ୍ୟ ବନ୍ଦାଇଲେ
ଚରଣ ଧରି କରି ସେ ଓଳଗି ହୋଇଲେ ।
ଲକ୍ଷ୍ମଣ କୋଳକରି ପ୍ରବୋଧ କରାଇଲେ
ସ୍ୱାମୀର ଆଜ୍ଞା ଅଛି ଆସ ଗୋ ବୋଇଲେ ।
ଶୁଣିକରି ଗୋଦାବରୀ ଲକ୍ଷ୍ମଣ ପଛେ ଆସି
ଅନେକ ଋଷିଗଣ ଶୁଭକଥା ଭାଷି ।
ଜାନକୀ ଚରଣେ ଆସି ତହୁଁ ଓଳଗିଲେ
ଦାସୀମାନେ ସମସ୍ତେ ହୁଳହୁଳି ଦେଲେ ।
ଆଡ଼ ଉହାଡରେ ଶ୍ରୀରାମଙ୍କୁ ମାନ୍ୟକରି
ଦେଖିକରି ରାମ ଯେ କହିଲେ ଧୀରକରି ।
ବୋଇଲେ ଏ ସ୍ଥାନ ଯେ ଆଜହୁଁ ପବିତ୍ର
ଏହିଠାରେ ସ୍ନାହାନ କରିବେ ଯେତେଲୋକ ।
ଗୋହତ୍ୟା, ବ୍ରହ୍ମହତ୍ୟା, ଦେବତା ଦ୍ରୋହ ପୁଣ
ମାତୃହରଣ ଦୋଷ କ୍ଷୟହେବ ଜାଣ ।
ଏ ପୁଣ୍ୟ ସ୍ଥାନ ଯେ ଅଟେ ସ୍ୱର୍ଗପୁର
ନିଶ୍ଚୟ ସ୍ୱର୍ଗ ଗତି ହୋଇବେ ଏଠାର ।
ଏହି ସ୍ଥାନର ନାମ ଆଜଠାରୁ ପୁଣି
ଭୋ ମନ୍ଦିର ବୋଲି ନାମ ଦେଲି ଜାଣି ।
ଶୁଣିଣ ଗୋଦାବରୀ ହରଷ ହୋଇଲା
କୃତାର୍ଥ ହୋଇଲି ବୋଲି ମନରେ ବିଚାରିଲା ।
ରାମ ବୋଇଲେ ଏ ସ୍ଥାନ ସବୁଦିନରେ ଭଲ
ସିଂହ ବୃହସ୍ପତି ହେଲେ ଏ ସ୍ଥାନ ଉଜ୍ୱଳ ।
ଶୁଣିଣ ସର୍ବ ସଖୀ ହୁଳହୁଳି ଦେଲେ
ଗୋଦାବରୀ ଚରଣେ ଯାଇଣ ନମିଲେ ।
ଆୟ ଅଳଙ୍କାର ଖଞ୍ଜିଲେ ସର୍ବନାରୀ
ସଖୀମାନେ ମାଜଣା କଲେ ଧୀରକରି ।

ମେଲାଣି ମାଗିଣ ଯେ ଶିବନାରୀ ଗଲା
ନିଜ ମନ୍ଦିରେ ଯାଇ ପ୍ରବେଶ ହୋଇଲା ।
ପାର୍ବତୀ ବୋଇଲେ ସେଠାରୁ ହେଲା କିସ
ସେକଥା ମୋର ଆଗେ କହ ବିଶ୍ୱନାଥ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସେ ସ୍ଥାନର ନାମ ଦେଇ ଚଳିଲେ ଦାଶରଥି ।
ପୁଣ୍ୟ ଗଙ୍ଗାରେ ଯାଇ ପ୍ରବେଶ ହୋଇଲେ
ଆଗରେ ଦାଶରଥି ପଛରେ ସୀତା ଚଳେ ।
ତହିଁ ପଛେ ଲକ୍ଷ୍ମଣ ଭାର କନ୍ଧେ ଧରି
ଏମନ୍ତେ ତିନିଜଣ ଧୀର ଧୀର ଚଳି ।
ପଞ୍ଚବଟୀ ବନରେ ହେଲେ ପରବେଶ
ଶ୍ରୀଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
ଦେଖିଲେ ସେ ବନ ଅପୂର୍ବ ଶୋଭାବତୀ
ଫଳଭରେ ଡାଳ ଭୂମିରେ ଆସି ଲୋଟି ।
ନାନା ବର୍ଣ୍ଣର ପୁଷ୍ପ ଦିଶେ ଶୋଭାବନ
ଗୋଦାବରୀ ନଦୀ ଯେ ବହେ ନିକଟେଣ ।
ପିଆଶାଳ ବୃକ୍ଷେ ବସା କରିଛି ଜଟାୟୁଷ
ସମ୍ପାତିର ଭାଇ ସେ ଯେ ଗରୁଡ଼ର ଶିଷ୍ୟ ।
ଶ୍ରୀରାମଙ୍କୁ ଦେଖିଣ ଯେ ଉଷତ ଖଗମଣି
ବୋଇଲା ସାକ୍ଷାତରେ ମିଳିଲେ ତିନି ପ୍ରାଣୀ ।
ଏମନ୍ତ ବିଚାରି ଖଗ ବୃକ୍ଷରୁ ଓହ୍ଲାଇଲା
ଶ୍ରୀରାମ ଆଗରେ ଯାଇଣ ଉଭାହେଲା ।
ପକ୍ଷୀଜଟା କହେ ଦେବ ଶୁଣ ମୋର ବାଣୀ
ଦଶରଥ ସୁତ ତୁମ୍ଭେ ପୂର୍ବେ ମୁହିଁ ଶୁଣି ।
ରାମ ବୋଇଲେ ପକ୍ଷୀ ତୁ କେମନ୍ତେ ଜାଣିଲୁ
ଦକ୍ଷିଣ ଦିଗ ଏହୁ ଏଥି ତୁ ରହିଲୁ ।
ଦଶରଥ ରାଜା ଘର ଉତ୍ତର ଦିଗରେ
ସେ ରାଜାର ନଗ୍ର ଅଟେ ଅଯୋଧ୍ୟାନାମେ ପୁରେ ।
ତୁହି କେମନ୍ତେ ଜାଣିଲୁ କହରେ କ୍ଷୁଦ୍ରପକ୍ଷୀ
ପକ୍ଷୀଜଟା ବୋଇଲା ଶୁଣ ହେ ଦାଶରଥି ।
ଏହି ସେ ପଞ୍ଚବଟୀ ତୀର୍ଥଙ୍କ ସଙ୍ଗେସରି
ଏ ତୀର୍ଥରେ ରହିଲେ ଅନେକ ଫଳ ମିଳି ।
ଅନେକ ଋଷି ପୁଣି ଏ ତୀର୍ଥେ ଆସନ୍ତି
ଭବିଷ୍ୟ ଜ୍ଞାତମାନ ଏ ତୀର୍ଥ ଭାଷନ୍ତି ।
ବୋଲନ୍ତି ଶ୍ରୀରାମ ଯେ ଲକ୍ଷ୍ମଣ ସୀତା ତିନି
ଅବଶ୍ୟ ଏ ସ୍ଥାନକୁ ଆସିବେ ରଘୁମଣି ।
ତାଙ୍କଠାରୁ ଶୁଣି ମୁଁ ଅଛି ହେତୁକରି
ଧର୍ମରେ ତୁ ମୋହର ପୁତ୍ର ସମସରି ।
ଦଶରଥ ମହାରାଜା ସେ ମୋର ମଇତ୍ର
ଗରୁଡ଼ର ପୁତ୍ର ମୁଁ ଯେ ସମ୍ପାତି ମୋର ଭ୍ରାତ ।
ଏହି ସ୍ଥାନ ଉତ୍ତମ ଏହିଠାରେ ରହ
ତୁହି ମୋର ସ୍ନେହକାରୀ ଧର୍ମରେ ଅଟୁ ପୁଅ ।
ନିକାଞ୍ଚନ ସ୍ଥାନ ଏହୁ ଏଥିରେ ରହସି
ତୋତେ ମୁହିଁ ଜଗିଥିବି ଏଥିଭ ଦଣ୍ଡୁଆସି ।
ତୁ ଯେତେବେଳେ ବନକୁ ଯିବୁ ମୃଗମାରି
ଧର୍ମରେ ତୋହର ନାରୀ ମୋହର ବଧୂସରି ।
ତୋହର ଘରଣୀକି ଜଗିଥିବି ମୁହିଁ
ମୋହର ସତ୍ୟବାଣୀ ଶୁଣ ରଘୁସାଇଁ ।
ଶ୍ରୀରାମ ବୋଇଲେ ତୋ କଥା ମୋତେ ଭିନ୍ନ
ଗରୁଡ଼ର ନନ୍ଦନ କି ରୂପେ ଅଟୁ ପୁଣ ।
ଯେଉଁ ଖଗ ଅଟଇ ବିଷ୍ଣୁର ବାହାନ
ରମ୍ୟକ ଦ୍ୱୀପରେ ଅଟଇ ତାର ସ୍ଥାନ ।
ସେ ରମ୍ୟକ ଦ୍ୱୀପକୁ ବୈକୁଣ୍ଠ ସ୍ଥାନ କହି
କ୍ଷୀର ସାଗର ମଧ୍ୟରେ ଦ୍ୱୀପ ଅଛି ରହି ।
ସେଥିରେ ଶୟନ ଯେ ଅନନ୍ତ ବାସୁଦେବ
ଶ୍ରୀହରି ପାଟଣା ଅଛି ଶ୍ରୀହରିର ଭାବ ।
ସେ ପାଟଣାରେ ନଉସାଗର ଗ୍ରାମବାସୀ
ସମସ୍ତେ ନାରାୟଣଙ୍କୁ ଭଜନ୍ତି ଅହର୍ନିଶି ।
ସପତ ପୁରେ ଯେତେ ଅଛନ୍ତି ଜୀବଜନ୍ତୁ
ନର ବାନର ଦେବତା ଅସୁରକୁଳ ହେତୁ ।
ସମସ୍ତଙ୍କର ପିତା ଏ ଯେ ପାଟଣାରେ ରହି
ସେ ପାଟଣାରେ ଯେତେ ଅଛନ୍ତି ଦଇବଇଁ ।
ସେ ଗରୁଡ଼ ଖଗ ଯେ ବିଷ୍ଣୁର ଦ୍ୱାରପାଳ
ଶୟନ ପୂର୍ବଦ୍ୱାର ଜଗଇ ନିରନ୍ତର ।
ଯେତେବେଳେ ଶୟନରୁ ଉଠନ୍ତି ବାସୁଦେବ
ସେହି ଖଗ ଉପରେ ବିଜେ କରନ୍ତି ଦେବ ।
ସପତ ପୁର ଭ୍ରମଣ କରିଣ ସେ ଯାନ୍ତି
ଶାରଙ୍ଗ ଧନୁ ଧରି ଦୁଷ୍ଟ ନିବାରନ୍ତି ।
ସପତ ପୁରକୁ କରିଣ ଧୀର ପୁଣ
ନିଜ ଶୟନ ସ୍ଥାନେ ମିଳନ୍ତି ଯାଇଣ ।
ନିଶ୍ଚିନ୍ତରେ ଶୟନ କରନ୍ତି ଶ୍ରୀହରି
ଗରୁଡ଼ ପୂର୍ବଦ୍ୱାର ରହଇ ଆବୋରି ।

ଶ୍ରୀହରିଙ୍କ ଦାସ ସେହି ଅଟଇ ସର୍ବକାଳେ
ସେ କେମନ୍ତେ ଜମ୍ବୁଦୀପ ଅଇଲା ଯେବେଳେ ।
କେହୁ ତାର ଘରଣୀ ତା ସଙ୍ଗେ ସଙ୍ଗ ହେଲା
ସେ ନାରୀ ଦୁଇପୁତ୍ର କେମନ୍ତେ ଜାତକଲା ।
କେମନ୍ତେ ଅଯୋଧ୍ୟାକୁ ଯାଇଥିଲୁ କହ
କେଉଁଠାରୁ ଭେଟହେଲୁ ଆଜ ରାଜାପୁଅ ।
ସେହିକଥା ମୋର ଆଗେ କହ ତୁ ବୁଝାଇ
ନକହିଲେ ତୋତେ ଆଜ ମାରିବି ଯେ ମୁହିଁ ।
ମାୟାବୀ ଦୈତ୍ୟରୂପେ ଛନ୍ଦରେ କଥାକହୁ
ବାଟ ଜଗିବସିଛୁ ଆଗୁଳ ମୋତେ ହେଉ ।
ଶ୍ରୀରାମର ବଚନରେ ପକ୍ଷୀଜଟା କହି
ଶୁଣ ବାବୁ ଶ୍ରୀରାମ ପୂର୍ବର କଥା ଏହି ।
ଗରୁଡ଼ ମୋର ବାପ ରମ୍ୟକ ଦ୍ୱୀପେ ରହି
ସବୁଦିନେ ବାସୁଦେବ ଚରଣେ ଖଟଇ ।
ଏମନ୍ତେ କେତେ ଯୁଗ ପୁଣ ଗଲା ବହି
ସପତ ପୁରେ ଅସୁର ପ୍ରବଳ ହେଲେ ଯାଇ ।
ସ୍ୱର୍ଗରେ ଦେବତାଏ ସହି ନ ପାରିଲେ
ବିଧାତାଙ୍କୁ ଘେନିଣ ବୈକୁଣ୍ଠେ ମିଳିଲେ ।
ଚାରିଦ୍ୱାରେ ବସିଣ ଅନେକ ସ୍ତୁତି କଲେ
ଜାଣିକରି ନାରାୟଣଙ୍କୁ ଶୟନୁ ଉଠିଲେ ।
ସରସ୍ୱତୀ ବୀଣାଯନ୍ତ୍ର ବାଉଥିଲେ ପୁଣ
ଚାହିଁଣ ବାସୁଦେବ ବୋଇଲେ ତାଙ୍କୁ ଜାଣ ।
ବୋଇଲେ ଦେବତାଏ ଚାରିଦ୍ୱାରେ ଛନ୍ତି
ଅନେକ କାଳରୁ ମୋତେ ସ୍ତୁତି ଯେ କରନ୍ତି ।
ମୋତେ ଦେଖିବାକୁ ଯେ ତାଙ୍କର ହୁଏ ଇଚ୍ଛା
ଫିଟାଅ କବାଟ ତୁମ୍ଭେ ଆସନ୍ତୁ ସୁରରକ୍ଷା ।
ଶୁଣିଣ ସରସ୍ୱତୀ ବେଗେ ଚଳିଗଲେ
ଦାସୀଗଣ ଘେନିଣ କବାଟ ଫେଡ଼ିଦେଲେ ।
କବାଟ ଫେଡ଼ିବାରୁ ଅଇଲେ ସୁରଦେବ
ଚତୁର୍ମୁଖ ବ୍ରହ୍ମା ନମିଲେ ଆସି ପାଦ ।
ଶ୍ରୀହରି ପଚାରିଲେ କିମ୍ପାଇ ତୁମ୍ଭେ ଆସ
ରାଜ୍ୟ ସମ୍ଭାଳିବାକୁ କି ପାଇଲ ମନେ ତ୍ରାସ ।
ବେଦବର ବୋଇଲେ ଅସୁର ବଡ଼ ଦୁଷ୍ଟ
ଦେବତାଙ୍କୁ ଦଇବେ ଦେଲେ ବଡ଼ କଷ୍ଟ ।
ଆମ୍ଭେ ଦାଏ ଧନରତ୍ନ ଦେବତାଙ୍କର ନେଲେ
ଅପସରୀମାନଙ୍କୁ ଘରଣୀ ନେଇ କଲେ ।
ଦେବତାଙ୍କୁ ଘଉଡ଼ିଦେଲେ ସ୍ୱର୍ଗପୁର
ଗିରିବନ ଲତାରେ ଦେବତା ରହିଗଲୁଁ ।
ତେଣୁ ସେ ତୁମ୍ଭଙ୍କୁ କହିବେ ବୋଲିକରି
ଯୁଗେ ହେଲା ତୋର ଦ୍ୱାରେ ଅଛନ୍ତି ଶ୍ରୀହରି ।
ଏମନ୍ତ ସମୟରେ ସପତ ଧରଣୀ
ରୋଦନ କରିଣ କହିଲେ ଯାଇ ପୁଣି ।
ବୋଇଲେ ତୋର ସୃଷ୍ଟି ତୁହି ରକ୍ଷାକର
ଧରଣୀ ନାମ ଆମ୍ଭର ତେଜ ହେ ଦାମୋଦର ।
ଶୁଣିକରି ବାସୁଦେବ କ୍ରୋଧେ ଜରଜର
କମଳାକୁ ବୋଇଲେ ସମ୍ଭାଳ ଏହୁ ପୁର ।
ଏତେବୋଲି ଗରୁଡ଼ ଉପରେ ବିଜେ କଲେ
ଅସୁର ବଳଦେବ ମାଇଲେ ସେଠି ଭଲେ ।
ଅସୁରଙ୍କର ରାଜା ଯେ ଅଇରାବତ ସୁର
ଗଦାରେ ତାହାକୁ ଯେ ମାଇଲେ ଚକ୍ରଧର ।
ନିସଂଶୟ କରିଣ ଅସୁର ଦୁଷ୍ଟଗଣ
ଦେବତାଙ୍କୁ ସେ ପୁରେ ରଖିଲେ ନାରାୟଣ ।
ମର୍ତ୍ତ୍ୟପୁର ଅସୁରଙ୍କୁ ଧନୁଶର ମାରି
ସପତ ଦ୍ୱୀପରୁ ଯେ ନିସଂଶୟ କରି ।
ମର୍ତ୍ତ୍ୟପୁରେ ଅସୁରଙ୍କୁ ରାଜନ କରେ ତପ
ଗଦାଧରି ତାହାକୁ ମାଇଲେ ଶ୍ରୀହରି ତ ।
ସାତଲକ୍ଷ ରାଜା ଯେ ସାତ ଦ୍ୱୀପରେ କରି
ମହୀଆଳୀ ସମ୍ଭାଳନ ବୋଲିଣ କହେ ହରି ।
ମର୍ତ୍ତ୍ୟପୁରରୁ ଯାଇ ପାତାଳେ ପ୍ରବେଶ
ଅସୁରଙ୍କୁ ମାରିଣ ମନରେ ହେଲେ ତୋଷ ।
ସେ ପୁରେ ଅସୁର ରାଜା ଅନାଟ ନାଟେଶ୍ୱର
ଜେମାମଣି ପାଟଣାରେ ଅଟେ ତାଙ୍କ ଘର ।
ଚକ୍ରରେ ତାହାଙ୍କୁ ଯେ ନାଶକଲେ ହରି
ଅସୁର ବଳ ସେପୁରୁ ନିସଂଶୟ କରି ।
ଗୋଲୋକ ମଣ୍ଡଳରେ ହେଲେ ପରବେଶ
ସେଠାରେ ରାଧାକୃଷ୍ଣ ରାହାସ ଦେଖି ତୋଷ ।
ସେଠାରୁ ସୁତଳରେ ପରବେଶ ହେଲେ
ଧନୁଧରି ଅସୁର ବଳକୁ ନିବାରିଲେ ।
କର୍ମଠ ଅସୁର ଅନେକ ଯୁଦ୍ଧକଲା
ସୁଦର୍ଶନ ଚକ୍ର ତାହା ହୃଦେ ନ ଭେଦିଲା ।
ଦେବଶର ବ୍ରହ୍ମଶର ବଜ୍ର ଯେ ବାବଳ
ନୀରଭୁଜ ବାଣ ଯେ କାଳ ମହାକାଳ ।

ଗଦାରଣକତି ଯେ କାଂଶିକା ଶର ଶୁଣି
ଏ ଶରମାନଙ୍କରେ ନ ମଲା ଦୈତ୍ୟମଣି ।
ଦେଖିଣ ବାସୁଦେବ ଗରୁଡ଼େ ପଚାରି
କିମ୍ଭୁତ କଥା ଏ ଯେ ଜାଣୁକି ଖଗଧାରୀ ।
ଶତେବର୍ଷ ପର୍ଯ୍ୟନ୍ତେ ସମର କଲି ମୁହିଁ
ଅସୁର ଦେହରେ ଯେ ଶର ନ କାଟଇ ।
ଗରୁଡ଼ ବୋଇଲେ ଦେବ କଥାଏ ଅଛି ଶୁଣ
ଜୟଦୁର୍ଗା ତାହାଙ୍କୁ ବରଦେଲେ ପୁଣ ।
ବୋଇଲେ କାହାର ହସ୍ତେ ନୋହିବ ମରଣ
ବାସୁଦେବ ଯେତେବେଳେ ମୋରୂପହେବେ ଜାଣ ।
ତୋର ରୂପ ଧରି ମୋତେ ମାରିବେ ନିଶ୍ଚୟ
ତେବେ ତୁ ମରିବୁ ଯେ ମୁକତି ନ ହୁଏ ।
ତାଙ୍କ ହସ୍ତେ ମଲେ ତୁ ବୈକୁଣ୍ଠପୁର ଯିବୁ
ଶୁଣିଣ ଅସୁର ଯେ ଅମର ହେଲା ପୂର୍ବୁ ।
ଜୟଦୁର୍ଗା ରୂପ ଧର ଆହେ ଦେବହରି
ତେବେ ସେ ଅସୁରକୁ ମାରିବ ଦଇତାରି ।
ଶୁଣିକରି ବାସୁଦେବ ବଳଦ ରୂପ ହେଲେ
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତରୁ ତେଜ୍ୟାକଲେ ।
ଶାରଙ୍ଗ ଧନୁକୁ ରଖିଲେ ଦେବହରି
ଖଣ୍ଡା ଖର୍ପର କରେ ଧରିଲେ ଦଇତାରି ।
ଦେଖିଣ ଦଇତ ରଣକୁ ତେଜ୍ୟା କରି
ତହୁଁ ସେ ବାସୁଦେବ କରବାଳ ମାରି ।
ବେନି ଖଣ୍ଡ ଅସୁରକୁ କଲେ ଦେବ ହରି
ଅସୁରକୁ ମାରିଣ ସେ ପୁର ସ୍ଥିର କରି ।
ସେଠାରୁ ନାରାୟଣ ନିଜ ରୂପ ଧରି
ସୁତାଳରେ ପ୍ରବେଶ ହେଲେ ଯାଇଁକରି ।
ସୁତାଳ ପୁରରେ ଅସୁର ନିବାରିଲେ
ସେ ପୁରେ ଅସୁର ରାଜା କର୍କଟାସୁର ଭଲେ ।
ବାସୁଦେବ ସଙ୍ଗରେ ଅନେକ ଯୁଦ୍ଧ କଲା
ସପତ ବରଷରେ ସେହି ପୁଣ ମଲା ।
ସେଠାରୁ ବାସୁଦେବ ଗଲେକ ବହନ
ଅନ୍ତରାଳ ପୁରରେ ପ୍ରବେଶ ହେଲେ ଜାଣ ।
ସେ ପୁର ଅସୁରଙ୍କୁ ନିସୁଦନ କରି
ଅସୁରଙ୍କର ରାଜା କର୍ମୁସୁରଧାରୀ ।
ବସୁଦେବ ସଙ୍ଗରେ କଲେ ବହୁରଣ
ବାଆଷଠି ବରଷରେ ମାଇଲେ ନାରାୟଣ ।

ସେଠାରୁ ଶ୍ରୀହରି ବେଗେ ଚଳିଗଲେ
ରସାତଳ ପୁରରେ ପ୍ରବେଶ ଯାଇଁ ହେଲେ ।
ସେ ପୁର ଅସୁରଙ୍କୁ ମାରିଲେ ଦେବହରି
ନିସଂଶୟ କଲେ ଯେ ଦୈତ୍ୟବଳ ମାରି ।
ସେ ପୁରେ ମଞ୍ଜାରିସୁର ଅସୁରଙ୍କର ରାଜା
ଅସୁର ମରିବାରୁ ଯୁଦ୍ଧକୁ କଲା ତାଜା ।
ଶ୍ରୀହରିଙ୍କ ସଙ୍ଗରେ ଅନେକ ଯୁଦ୍ଧ କଲା
ପଞ୍ଚାନବେ ବରଷରେ ସେ ଅସୁର ମଲା ।
ସପତ ପୁର ସାଧି ବାସୁଦେବ ଗଲେ
ବଇକୁଣ୍ଠପୁରେ ଯାଇ ପ୍ରବେଶ ହୋଇଲେ ।
ଅନନ୍ତ ଉପରେ ଶୟନ ବାସୁଦେବ
ମୋର ପିତାଙ୍କୁ ବୋଇଲେ ଶୁଣ ଖଗରାଜ ।
ମୋର ସଙ୍ଗେ ରହିଣ ଅନେକ ଦୁଃଖ ପାଇ
ଆହାରେ ସୁସ୍ଥ ନାହିଁ ଯୁଗ ଗଲା ବହି ।
ଜମ୍ବୁଦ୍ୱୀପକୁ ତୁହି ଯେ ବେଗ ହୋଇଚଳି
ଆହାରେ ସୁସ୍ଥ ହୋଇଣ ମୋର ଦ୍ୱାରେ ମିଳି ।
ଶୁଣିକରି ମୋର ପିତା ବେଗେ ଆସେ ପୁଣ
ଜମ୍ବୁଦ୍ୱୀପରେ ଆସି ମିଳିଲା ତତକ୍ଷଣ ।
ଅନେକ ନାଗବଳ ମାରିଣ ସେ ଭକ୍ଷିଣ
ଶତେ ବରଷରେ ତୃପତ ମନ ହେଲା ।
ମାଣିକ ପର୍ବତରେ ବସିଲା ଯାଇ କରି
ବାଆନ ବରଷରେ ଧୀର ମତୀ ଧରି ।
କମଳ କେଶରୀ ଋଷି ଯେ ସେ ପର୍ବତେ ଥିଲେ
ଅନେକ କାଳ ଗିରିଉପରେ ତପକଲେ ।
ତାଙ୍କର ଘରଣୀ ନମୀବତୀ ପୁଣି
କାଳେ ସେ ଦୁହିତା ଜାତ କଲା ଜାଣି ।
ସେ ଦୁହିତା ତ୍ରିପୁର ରୂପରେ ସୁନ୍ଦରୀ
ବାର ବରଷରେ ଯୁବା ହେଲା ବାରନାରୀ ।
ଶୁଦ୍ଧ ସ୍ନାନ କରନ୍ତେ ଦେଖିଲା ଖଗବର
ବରଣମାଳା ଦେଇ ବରିଲା ସତ୍ୱର ।
ଦେଖିକରି ପିତାମୋର ହରଷ ହୋଇଲା
ସେ ନାରୀକି ଘେନିଣ ଅନେକ ଭୋଗକଲା ।
ଏମନ୍ତେ ବାସ୍ତରି ବରଷ ଗଲାକ ବହି
ସେ ନାରୀ ଗର୍ଭେ ଆମ୍ଭେ ଜନ୍ମିଲୁ ବେନିଭାଇ ।
ତେଣୁ ସେ ପିତା ମୋର ମାତାକୁ କହିଗଲା
ବୈକୁଣ୍ଠପୁରେ ଯାଇ ପ୍ରବେଶ ହୋଇଲା ।

ଶ୍ରୀହରି ପୂର୍ବଦ୍ୱାରେ ରହିଲେ ସୁସ୍ଥହୋଇ
ବେନିପୁତ୍ର ଘେନି ମାତା ସେ ପୁରରେ ରହି ।
ଏମନ୍ତେ ଶତେବରଷ ସେଠାରେ ବହିଗଲା
ବେନିଭାଇ ମାତାଙ୍କୁ ପଚାରିଲୁଁ ପରା ।
ବୋଇଲୁ ପିତା ଆମ୍ଭର କେଉଁଠାରେ ଛନ୍ତି
ମାତା ବୋଇଲେ ଅନନ୍ତ ଶୟନ କରିଛନ୍ତି ।
ମାତାଙ୍କୁ କହିଣ ଆମ୍ଭେ ବେନିଭାଇ ଗଲୁ
ଅନନ୍ତ ଶୟନ ବୈକୁଣ୍ଠପୁରେ ଯାଇଁ ହେଲୁ ।
ପିତାଙ୍କୁ ଯାଇଣ କଲୁଁ ନମସ୍କାର
ପିତା ବୋଇଲେ କି କାର୍ଯ୍ୟେ ଅଇଲ କୁମର ।
ଆମ୍ଭେ ବୋଇଲୁଁ ପିତାହେ ଆମ୍ଭଙ୍କୁ ଜାତକଲ
କି କାରଣେ ଆମ୍ଭଙ୍କୁ ତେଜିଣ ଅଇଲ ।
ପିତା ବୋଇଲେ ମାତାଙ୍କୁ ମୁଁ ଯେ ସମର୍ପିଦେଲି
ବାସୁଦେବ ଦ୍ୱାର ଜଗିବାକୁ ମୁଁ ଅଇଲି ।
ମୁଁ ବୋଇଲି ପକ୍ଷୀରାଜ ହେବ କେହୁ ପୁଣ
କାହାକୁ ତୋର ମନ କହହେ ବହନ ।
ଶୁଣିଣ ପିତା ବୋଇଲେ ଶୁଣରେ କୁମର
ରବିର ରଥ ଯେ ଛୁଇଁବ ଆଗର ।
ସେହି ପକ୍ଷୀରାଜ ହେବ ଏହି ଯେ ଦ୍ୱୀପରେ
ଶୁଣିକରି ବେନିଭାଇ ଚଳିଲୁ ଆଗଭରେ ।
ମାତାର ଆଗରେ ଆମ୍ଭେ ଯାଇଣ ଜଣାଇଲୁ
ପିତା କହିବାର କଥା ବୁଝାଇ କହିଲୁଁ ।
ଯାଅରେ କୁମର ବୋଲି ମାତା ଆଜ୍ଞା ଦେଲେ
ବାପଙ୍କର କଥା ତୁମ୍ଭେ ପାଳରେ ବୋଇଲେ ।
ଶୁଣିଣ ବେନିଭାଇ ସ୍ୱର୍ଗକୁ ଉଠିଗଲୁଁ
ଉଡ଼ି ଉଡ଼ି ମନରେ ଚିନ୍ତା ଯେ ପାଇଲୁଁ ।
ଉଡ଼ି ନପାରି ମୁଁ ଯେ ଫେରିଣ ଅଇଲି
ଅଯୋଧ୍ୟା ଶୀତଳ ଗିରି ଉପରେ ପଡ଼ିଲି ।
ସମ୍ପାତି ଭାଇ ମୋର ରଥ ଯାଇଁ ଛୁଇଁ
ପକ୍ଷୀ ଯୋଡ଼ି ଯିବାରୁ ପଡ଼ିଲା ଆସି ଭାଇ ।
ସମ୍ପାତି ପରବତେ ଅଚଳେ ରହିଲା
ରବି ଦେବତାଙ୍କୁ ସେ କ୍ରୋଧରେ ଶାପ ଦେଲା ।
ବୋଇଲା ଯେତେବେଳେ ଶ୍ରୀରାମ ଦୂତ ଦେଖି
ତେତେବେଳେ ଖଗ କଅଁଳୁ ତୋର ପକ୍ଷୀ ।
ସେଠାରୁ ଯାହାହେଲା ଶୁଣ ହେ ରଘୁନାଥ
ଶୀତଳଗିରି ଉପରେ ଅଚେତାରେ ମୁଁ ତ ।

ତିନିମାସ ପରିଯନ୍ତେ ସେ ଗିରିପରେ ଶୋଇ
ତୋହର ପିତା ମାତା ଯେ ସେ ଗିରିକି ଯାଇ ।
ଜ୍ୟେଷ୍ଠମାସ ଗ୍ରୀଷମ କାଳ ଅଟେ ପୁଣ
ଶୀତଳ ନାଥଦେଖି ତୋ ପିତାଆସିଲେ ସେସ୍ଥାନ ।
ରାତ୍ରରେ ଗହଳ ପୁଣି ମୁହିଁ ଯେ ଉଠିଲି
ତୋହର ପିତା ମାତାଙ୍କୁ ଯାଇଣ ଭେଟିଲି ।
ଏହି ସମୟରେ ଶୁଣ ହେ ଦାଶରଥି
ସେ ଗିରିକି ଅଜଗର ସାପ ଆସେ ଦେଖି ।
ଦେଖିଣ ପିତା ତାଟକା ତୋହର ହୋଇଲେ
ନିଶ୍ଚୟ ଭକ୍ଷିବ ବୋଲି ମନେ ବିଚାରିଲେ ।
ଦଇବର ପାଞ୍ଚ ତୁମ୍ଭେ ଶୁଣହେ ଦାଶରଥି
ତିନିମାସ ଭୋକ ଯେ ମୋହର ଦେହରେଟି ।
ଧାଇଁଯାଇ ସେ ସର୍ପକୁ ଭକ୍ଷିଲି ମୁହିଁ ପୁଣ
ଦେଖିଣ ହରଷ ହେଲେ ଦଶରଥ ରାଣ ।
ତେଣୁ ସେ ପିତାତୁମ୍ଭର ମିତ ମୋସଙ୍ଗେହେଲେ
ସକଳ କଥା ମୋରଠାରୁ ସେ ଶୁଣିଲେ ।
ଆରଦିନ ପିତା ତୋର ଅଇଲା ନିଜପୁର
ଏକା ହୋଇ ସେ ପର୍ବତେ ରହିଲି ରଘୁବୀର ।
ଏହି ସମୟେ ପବନ ମୋତେ କହି
ଏଠାରେ ରଣ ହେବ ଯାଅଯା ବେଗ ତୁହି ।
ମୁଁ ବୋଇଲି କେହୁ ସେ କରିବ ଏଥେ ରଣ
ସେ ବୋଇଲେ ଦଶରଥ ଶନି ବାଦ ପୁଣ ।
ମୁଁ ବୋଇଲି କେଉଁଠାରେ ଯାଇଣ ରହିବି
ପବନ ବୋଇଲା ପଞ୍ଚବଟୀ ଚଳ ବେଗି ।
ଦକ୍ଷିଣ ଦିଗରେ ଯେ ଗୋଦାବରୀ କୂଳେ
ନିଶ୍ଚିନ୍ତେ ରହିଥାଅ ଦେଖିବୁ ରଘୁବାଳେ ।
ପବନଠାରୁ ଶୁଣି ଏ ସ୍ଥାନେ ରହିଲି
ଋଷିମୁଖେ ମୁହିଁ ତୁମ ବାରତା ପାଇଲି ।
ଶୁଣିକରି ରାମ ଯେ ହରଷହୋଇଲେ
ଏହିକଥା ସତ୍ୟ ବୋଲି ମନେ ବିଚାରିଲେ ।
ନୋହିଲେକି ପକ୍ଷୀ ଛାର କହଇ ଦୃଷ୍ଟାନ୍ତର
ନିଶ୍ଚୟ ଗରୁଡ଼ ସୁତ ଅଟେ ଖଗବର ।
ଏମନ୍ତ ବିଚାରି ରାମ ପ୍ରଶଂସା ତାକୁ କଲେ
ଏ ସ୍ଥାନେ ରହିବା ବୋଲି ମନେ ଆନନ୍ଦହେଲେ ।
ତୁହି ତୋ ମହାତମା ଗରୁଡ଼ର ସୁତ
ଆଗରୁ ବିଶେଷେ ମୋର ପିତାର ମଇତ୍ର ।

ଅନୁରୂପେ ପିତାପ୍ରାୟ ଅଟୁ ତୁ ମୋହର
ସାଧୁ କଥାମାନ ମୁହିଁ ଶୁଣିଲି ତୋହର ।
ଅଗସ୍ତି କହିଲେ ପବିତ୍ର ସ୍ଥାନ ଏହି
ତେଣୁ ପକ୍ଷୀବର ତୋ କଥା ମନକୁ ଆସଇ ।
ଶିଆଳି ପତ୍ର ଆଣି ଛୁଆଁଇଲେ ଯତ୍ନକରି
ହାତୀଭଙ୍ଗା କାଠମାନ ଆଣି ଘରକରି ।
ତୁ ମୋହର ଦଶରଥ ପିତା ପ୍ରାୟ ହେଲୁ
ତୋର ଆଶ୍ରିତେ ଆମ୍ଭେ ଏଠାରେ ରହିଲୁ ।
ଏତେ କହି ରାମ ଲକ୍ଷ୍ମଣ ବେନିଭାଇ
ହରିଦ୍ରା ଗଛତଳେ ସୀତାଙ୍କୁ ବସାଇ ।
ହାତୀଭଙ୍ଗା କାଠମାନ ଆଣି ଘରକରି
ଶିଆଳି ପତ୍ର ଆଣି ଛୁଆଇଲେ ଯତ୍ନକରି ।
ଲକ୍ଷ୍ମଣଙ୍କୁ ଭିନ୍ନେ ମଢ଼ିଆ ଦେଲେ ରଚି
ଯେବଣ କାଳେ ଯାହା ବିଧାତା ଅଛି ସଞ୍ଚି ।
ଘରକୁ ତୋଳିଣ ଯେ ଲିପାପୋଛା କଲେ
ଚୂଲା ଗୋଟିଏ ସେ ସେଥିରେ ସଜାଡ଼ିଲେ ।
ସେଦିନ ଶ୍ରୀରାମ ଯେ ମୃଗମାରି ଗଲେ
ଅରଣ୍ୟ ଭିତରେ ଯାଇଁ ପ୍ରବେଶ ହୋଇଲେ ।
ସୀତା ଲକ୍ଷ୍ମଣ ଯେ ଅଛନ୍ତି ବେନିଜନ
ହରିଣ ମାରି ଆଣିଲେ କୌଶଲ୍ୟା ନନ୍ଦନ ।
ଲକ୍ଷ୍ମଣ ଆଗରେ ଯେ ଦେଲେକ ପକାଇ
ଶ୍ରମପାଇ ମଢ଼ିଆରେ ବସିଲେ ରଘୁସାଇଁ ।
ଲକ୍ଷ୍ମଣ ବେଗେ ଯାଇ ମୃଗ କେଳାଇଲେ
ସଜାଡ଼ି ଜାନକୀ ଛାମୁରେ ଆଣି ଦେଲେ ।
ଦେଖିକରି ବଇଦେହୀ ହରଷ ହୋଇଲେ
ନୀର ଆଣ ବୋଲି ଲକ୍ଷ୍ମଣଙ୍କୁ ବୋଇଲେ ।
ଲାଉତୁମ୍ବା ଘେନିଣ ସଉମିତ୍ରୀ ସୁତ ଗଲେ
ଗୋଦାବରୀ ନଦୀରୁ ଜଳ ଯେ ଆଣିଲେ ।
ବନରୁ ଶୁଷ୍କକାଷ୍ଠ ରାମ ଭାଙ୍ଗି ଆଣି
ଜାନକୀଙ୍କ ପାଶରେ ଦେଲେ ରଘୁମଣି ।
ଝକମକି ପଥର ତଳରେ ଶୋଲ ଦେଇ
ଇସିପାତ ଲୁହାକୁ ଠୁକିଲେ ରଘୁସାଇଁ ।
ତତକ୍ଷଣେ ହୁତାସନ ହେଲେ ତହୁଁ ଜାତ
ସେ ଅଗ୍ନି ଚୂଲା ଜାଳିଲେ ଜାନକୀ ତ ।
ଲକ୍ଷ୍ମଣଙ୍କୁ ଜନାକୀ ଯେ କହୁଛନ୍ତି ବାଣୀ
କେତେ ଦୁଃଖ ପାଇଲ ଆମ୍ଭର ଲାଗି ପୁଣି ।

ଶୁଣିଣ ଶ୍ରୀରାମ ଯେ ହସିଣ କହନ୍ତି
କିମ୍ପା ମନେ ଅନ୍ତର ବିଚାର ନାରୀମତି ।
ସଉମିତ୍ରୀ ଭାଇ ମୋର ଅଟଇ ସୋଦର
ସବୁ କାଳେ ସଖା ସେ ଅଟଇ ମୋହର ।
କନ୍ଦମୂଳ ମୃଗ ମାଂସ ଖାଇ ପିଣ୍ଡ ତୋଷି
ଅପୂର୍ବ ପଦାର୍ଥମାନ ଖାଇଣ ମନେ ଖୁସି ।
ମାତା ମୋର କୈକେୟୀ ଏତେ ଗୁଣ କଲେ
ପିତାଙ୍କୁ ସତ୍ୟକରାଇ ବନକୁ ପେଶିଲେ ।
ବନକୁ ପେଶିବାରୁ ସୁଖ ମୁ ପାଇଲି
ବହୁଋଷିମାନଙ୍କୁ ଦରଶନ ମୁଁ କଲି ।
ଅଗମ୍ୟ ବନସ୍ତରେ ଘରକରି ରହି
ଏଥର ଆନ କିମ୍ପା ବିଚାରୁ ବଇଦେହୀ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଭଗବତୀ
ହରିଣ ମାଂସ ରାନ୍ଧଣା କଲେ ମହାସତୀ ।
ଶୁଣିକରି ଶାକମ୍ଭରୀ ଈଶ୍ୱରଙ୍କୁ କହି
ପ୍ରତିଦିନ ମାଂସ କି ତିନିଜଣ ଖାଇ ।
କେତେକାଳ ପରିଯନ୍ତେ ମାଁଏସ ଖାଇଲେ
ରାଜପୁତ୍ର ହୋଇ କିମ୍ପା ବିକୃତି ନୋହିଲେ ।
ସଦାଶିବ ବୋଇଲେ କମଳା ପାକକରି
କମଳା ହସ୍ତ ଲାଗିଲେ ଅମୃତ ସଙ୍ଗେ ସରି ।
ଶୁଣିଣ ତୃପତ ଯେ ହେଲେ ଦେବୀ ଉମା
ବହୁ ତପେ କମଳା ଅବତାର ସିନା ।
ରାମ, ଲକ୍ଷ୍ମଣ ଦୁହେଁ ସ୍ନାନକୁ ଯେ ଗଲେ
ଗୋଦାବରୀ ନଦୀରେ ସ୍ନାହାନ ଯାଇଁ କଲେ ।
ସନ୍ଧ୍ୟା ତର୍ପଣ ଯେ ସାରି ନଦୀକୂଳେ
ପିତୃଙ୍କୁ ଜଳ ତିଳ ସେଠାରେ ଦାନ କଲେ ।
ସେଠାରୁ ବେନିଭାଇ ଅଇଲେ ଚଳି ପୁଣ
ମଢ଼ିଆରେ ପ୍ରବେଶ ହେଲେ ତତକ୍ଷଣ ।
ଆଗରୁ ସ୍ନାହାନ କରିଥିଲେ ବଇଦେହୀ
ସେଥିର ଚରିତ ତୁମ୍ଭେ ଶୁଣ ମହାମାୟୀ ।
ଶ୍ରୀଅଙ୍ଗ ପଖାଳିଲେ ପବିତ୍ର ଜଳେ ପଶି
ସ୍ନାହାନ ସାରି ଅଇଲେ ଶୁଭ୍ରକେଶୀ ।
ଝରି ଜଳରେ ପାଦ ଧୋଇଲେ ବଇଦେହୀ
ଭିତରକୁ ଗଲେ ସେ ହରଷ ମନ ହୋଇ ।
ପଳାଶପତ୍ର ଦନା ଲକ୍ଷ୍ମଣ ସିଇଁଲେ
ଭୁଞ୍ଜି ବସିବାକୁ ଶ୍ରୀରାମ ସ୍ଥାନ କଲେ ।

ମୃଗଛାଲ ମାଡ଼ିଣ ବସିଲେ ରଘୁନାଥ
ପାଣି ଝରୀ ନେଇ ଦେଲେ ସୁମିତ୍ରାଙ୍କ ସୁତ ।
କରରେ ଜଳ ଧରିଣ ପତ୍ରରେ ରାମ ସିଞ୍ଚି
ବିଷ୍ଣୁ ବିଷ୍ଣୁ ବୋଲିଣ ଭୂମିରେ ପତ୍ରବିଞ୍ଚି ।
ଲକ୍ଷ୍ମଣ ଥୋକେ ଦୂରରେ ଭୁଞ୍ଜିବାକୁ ବସି
ଜନକ ଦୁହିତା ଦୁଇ ଭାଇଙ୍କି ପରଶି ।
ଅଭ୍ୟାଗତ ପାଇଁକି ଏକ ଦନାକରି
ଜଟାୟୁଷ ଛାମୁରେ ଦେଲେକ ଚାପଧାରୀ ।
ପୁଣି କନ୍ଦମୂଳ ଦନା ଏକ ନେଇଦେଲେ
ଭୁଞ୍ଜରେ ଖଗବର ବୋଲିଣ ବୋଇଲେ ।
ଶୁଣିକରି ଜଟାୟୁଷ ଗଛରୁ ଓହ୍ଲାଇଲା
ଭୁଞ୍ଜିବା ଦନାଠାରେ ଯାଇଁଣ ମିଳିଲା ।
ବିଚାରିଲା ଏହି ମାଂସ କନ୍ଦମୂଳ ଏହି
ଏଥିରେ ମୋହର ଆତ୍ମା ଶୀତଳକି ହୋଇ ।
ଏମନ୍ତ ବିଚାରି ଯେ ଭୁଞ୍ଜି ଜଟାୟୁଷ
ଅଧେକ ନ ସରୁ ଯେ ହୋଇଲା ତାକୁ ଗ୍ରାସ ।
ମନେ ବିଚାରିଲା ଏକଥା ହେଲା ବିପରୀତ
ଦନାକ ମାଂସରେ ମୁଁ ହୋଇଲି ସନ୍ତୋଷ ।
ବାସୁଦେବ ନାରୀ କମଳା ଅଟେ ପୁଣ
ମାଂସର ତିଅଣ କାହିଁ ଅମୃତ ପାକ ଜାଣ ।
ମୋହର ମନରେତ ବିଚାର କଲି ଯେଣୁ
ଜାଣିକରି ଜାନକୀ ଗର୍ବ ଗଞ୍ଜେ ତେଣୁ ।
ଏମନ୍ତ ବିଚାରିଣ ମନେ ସ୍ତୁତି କଲା
ଚିହ୍ନି ନ ପାରିଲି ବୋଲଇ ହୃଦରେ ବିଚାରିଲା ।
ତେଣୁ ସେ ଦୁଇଦନା କଲାକ ଭୋଜନ
ତାହାର ଦଇନୀ ଯେ ଜାଣିଲେ ରାମରାଣ ।
ଏଥୁ ଅନନ୍ତରେ ହୋ ଶୁଣ ଶାକମ୍ଭରୀ
ଶ୍ରୀରାମ ଲକ୍ଷ୍ମଣ ଯେ ଭୋଜନ ବେଗେ ସାରି ।
ମାଂସ କନ୍ଦମୂଳ ଭକ୍ଷି ଆତ୍ମାକୁ ସୁସ୍ଥ କଲେ
ଜଳ ଚଳୁ ଦେଇଣ ସେଠାରୁ ଉଠିଲେ ।
ଆଞ୍ଚୋବନ ସାରିଣ ଶ୍ରୀରାମ ଲକ୍ଷ୍ମଣ
ମୃଗ ଛାଲ ଉପରେ ବସିଲେ ରାମରାଣ ।
କଷାଫଳ ଆଣିକରି ସଉମିତ୍ରୀ ଦେଲେ
ଭୁଞ୍ଜିଣ ରଘୁନାଥ ଶୟନ ପୁଣି କଲେ ।
ସେଠାରୁ ଜାନକୀ ଯେ ଭୁଞ୍ଜିଲେ ବସି ପୁଣ
କନ୍ଦମୂଳ ମାଂସ ତହିଁ କଲେକ ଭୋଜନ ।

ଆଞ୍ଚୋବନ ସାରିଣ ଉଚ୍ଛିଷ୍ଟ ପୋଛିଦେଲେ
ସ୍ଥାନକୁ ସଉଚ ନିର୍ମଳ ଦେବୀ କଲେ ।
ଲକ୍ଷ୍ମଣ କଷାଫଳ ଆଣିଣ ବେଗେ ଦେଲେ
ହରଷରେ କଷାଫଳ ଜାନକୀ ଭୁଞ୍ଜିଲେ ।
ରାମ ନାମ ପଦକୁ ସୀତୟା ତୁଣ୍ଡେ ଘୋଷୀ
ମନରେ ହରଷହୋଇ ବସେ ଶଶୀମୁଖୀ ।
ବେନି ଜନକୁ ଦେଇଣ ଲକ୍ଷ୍ମଣ ଭୁଞ୍ଜେ କଷା
ମନେ ବିଚାରିଲେ କେତେ କାଳରେ ଯିବ ଦଶା ।
ମୃଗ ଛାଲ ଉପରେ ଶୟନ ରାମ ରାହୁ
ବହୁତ କଥା ଜାଣିଲେ ଅରଣ୍ୟରେ ସେହୁ ।
କେତେବେଳ ଉତାରୁ ଉଠିଲେ ରାମରାଣ
ଶ୍ରୀମୁଖ ପଖାଳି ମୃଗ ଛାଲେ ବସି ପୁଣ ।
ଅଯୋଧାର କଥାମାନ କୁହାକୋହି ହୋନ୍ତି
ଲକ୍ଷ୍ମଣକୁ ଶ୍ରୀରାମ ବଚନ କହନ୍ତି ।
ଅଯୋଧାରୁ ଆସିବାର ଦଶ ଯେ ବରଷ
ଅଗସ୍ତି କହିବାରୁ ମନ ହେଲା ତୋଷ ।
ଭ୍ରଥ ଅଯୋଧାରେ ରାଜାହିଁ ନୋହିଲା
ଶତ୍ରୁଘନ ଭାଇ ପୁଣି ରାଜ୍ୟ ନ ବୁଝିଲା ।
ସାତଶ ପଚାଶ ମାତା ଆମ୍ଭର ଅଟନ୍ତି
ଲୀଳାବତୀ ଜନନୀ ଯେ ତାହାକୁ ସମ୍ଭାଳନ୍ତି ।
ଏହି ସେ ଏତେ ଜନନୀରେ ଅର୍ଜେ ଭଲପଣ
ରାଜ୍ୟରେ ପରଜାଙ୍କୁ ସେ ସୁଖରେ ପାଳେ ପୁଣ ।
ଭଲ ମନ୍ଦ କଥା ଯେ ବଶିଷ୍ଠ ସମ୍ଭାଳିଲେ
ପରରାଷ୍ଟ୍ର ଯେବେ ମୋ ରାଜ୍ୟେ ନ ପଶିଲେ ।
କି ବିଚାର କରୁଥିବ ସୁମନ୍ତ ବାମଦେବ
ଅଗସ୍ତି କହିଲେ କୁଶଳ ଅଛନ୍ତି ଯେ ସର୍ବ ।
ଶତ୍ରୁଘନ ଭ୍ରଥକୁ କରିଅଛି ସେବା
ଲକ୍ଷ୍ମଣବୋଇଲେ ଦେବ ସେକଥା ପାସୋରିବା ।
ସାବତ ଜନନୀର ପୁତ୍ର ସିନା ସେହି
ତାଙ୍କର ଚିନ୍ତା ତୁମ୍ଭଙ୍କୁ ଲାଗିଛି କିମ୍ପାଇ ।
ବନରେ ରହିବାର ସେ କଥା ବିଚାର
ଆଉ ଚାରି ବରଷେ ଅଯୋଧା ଦେଖିବାର ।
ଆମ୍ଭର କଷ୍ଟ ଦେବ କହିଲେ ନ ସରଇ
ଅଯୋଧାର କଥା ମୋତେ ଭଲ ନ ଲାଗଇ ।
ଶ୍ରୀରାମ ବୋଲନ୍ତି ଭାଇ ଶୁଣରେ ଲକ୍ଷ୍ମଣ
ଦେବତାମାନେ ମୋତେ ଦୁଃଖଦେଲେ ପୁଣ ।

କୂଟ କରାଇ ମୋତେ ଅଣାଇଛନ୍ତି ବନ
ସବୁଦିନେ ଦେବଙ୍କର ଅଟେ ମନ୍ଦପଣ ।
ଏତେଦିନେ ଭାଇରେ ଶୁଣାଟି ନ ଥିଲା
ବନ ଜୀବ ପ୍ରାୟେ ମୋ ଦିନ ଯାଉଥିଲା ।
ଏବେ ଶୁଣିଲି ଭରଥ ନ ବୁଝିଲା କିଛି
ଲୀଳାବତୀ ଜନନୀକି ଦେଖିବିରେ ନେତ୍ରେ ।
ପିତାର ପ୍ରାୟ ରାଜ୍ୟ ସମ୍ଭାଳିଲା ସୁଖେ
ଧନ୍ୟ ଗୋ ଜନନୀ ତୋ ଦେହର ଗୁଣଥିଲା ।
ଋଷି କହିବାରୁ ମନୁ ପିତାର ଶୋକକଲା ।
ତୁ ବୋଇଲୁ ସାବତ ଜନନୀ ପୁତ୍ର ସେହି
ମୋହର କୁଳଧର୍ମ ରଖିଲେରେ ଭାଇ ।
ସାବତ ପୁତ୍ରମାନେ ଅଛନ୍ତି ରାଜ୍ୟରେ
ସାବତ ଭାଇଠାରେ ମନ୍ଦ ବୁଦ୍ଧି ତୋରେ ।
ତାହାର ମୋଠାରେ ଯେବେ ମନ୍ଦ ବୁଦ୍ଧି ଥାନ୍ତା
ଅଯୋଧାରେ କିମ୍ପାଇ ରାଜୁତି ନ କରନ୍ତା ।
ରାଜ୍ୟହିଁ ନ ବୁଝିଲା ଦେଶରେ ନ ରହିଲା
ମୋରଯୋଗୁଁ ସେହି ଏତେ କଷ୍ଟ ଯେ ଭୋଗିଲା ।
ତାହାର ଦେହରେ କିଛିହିଁ ହିଂସା ନାହିଁ
ବନବାସୀ ବେଶ ଧରି ରହିଅଛି ସେହି ।
କେମନ୍ତେ କହୁଛୁରେ ତାକୁ ନିନ୍ଦାକରି
ତୋତେ ସେହି କଥାରେ ମିଳିବ ଅନୁସରି ।
ଶୁଣରେ ଲକ୍ଷ୍ମଣ ଆମ୍ଭର ଶ୍ରେଷ୍ଠକର୍ମ
ଲୀଳାବତୀ ଜନନୀ ରଖିଲା କୁଳଧର୍ମ ।
ଆଜକୁ ଦଶବରଷ ହେଲା ରାଜବେଶ
ପାତ୍ର, ମନ୍ତ୍ରୀ, ଜନ, ପ୍ରଜା ତାହାକୁ ସନ୍ତୋଷ ।
ଏମନ୍ତେ କୁହାକୁହି ହୋନ୍ତେ ବେନିଭାଇ
ଦିବସ ଯାଇ ରଜନୀ ହେଲା ଘଡ଼ି ଦୁଇ
ଶ୍ରୀରାମ ବୋଇଲେ ଶୁଣ ଗୋ ବଇଦେହୀ
ନିଦ୍ରା ଆକର୍ଷିଲାଣି ଶଯ୍ୟାକର ଯାଇ ।
ଶୁଣିକରି ବଇଦେହୀ ଉଠିଲେ ବହନ
ପୂର୍ବ କୁଟୀର ଭିତରକୁ ଚଳିଲେ ତତକ୍ଷଣ ।
ମୃଗଛାଲ ଉପରେ ଶଯ୍ୟା ଯାଇ ପାଡ଼ି
ଅମଳାଣ ବସନ ତହିଁ ଉପରେ ସଜାଡ଼ି ।
ସେହି ଶେଯରେ ଯାଇଁ ପହୁଡ଼ିଲେ ରଘୁନାଥ
ନିଦ୍ରାର ଆଳସରେ ବିହ୍ୱଳିତ ଚିତ୍ତ ।
ଜାନକୀ ମଞ୍ଜାଳନ୍ତି ଶ୍ରୀରାମ ଚରଣ
ଧନୁଶର ଧରି ଜଗି ବସିଲେ ଲକ୍ଷ୍ମଣ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗଉରୀ
କେତେବେଳେ ଉତ୍ତାରୁ ଶ୍ରୀରାମ ନିଦ୍ରାଛାଡ଼ି ।
ସୀତାକୁ ଧରି ବିନୋଦ କଲେ ରଘୁମଣି
ରଜନୀର ଶେଷରେ ବିନୋଦ ତେଜି ପୁଣି ।
ପ୍ରଭାତୁ ତିନିଜଣ ସ୍ନାନ କରି ଗଲେ
ଗୋଦାବରୀ କୂଳରେ ପ୍ରବେଶ ଯାଇଁ ହେଲେ ।
ସ୍ନାହାନ କରି ତହିଁ ନିତ୍ୟକର୍ମ ସାରି
ପର୍ଣ୍ଣ କୁଟୀରେ ପ୍ରବେଶ ହେଲେ ଯାଇଁକରି ।
ଅମଳାଣ ଶାଢ଼ୀକି ପିନ୍ଧି ଦେବୀ ତହିଁ
ଦୁଇଗୋଟି ବସନ ପିନ୍ଧିଲେ ବେନିଭାଇ ।
ଦେଖିଣ ଶ୍ରୀରାମ ଯେ ହସିଣ ବୋଇଲେ
ଅଯୋଧା ମନେ ପଡ଼ିଲା ସତୀର ଏତେକାଳେ ।
ଯତି ବେଶରେ ଶ୍ରୀରାମ ପିନ୍ଧେ ଅମଳାଣ
ବ୍ରହ୍ମଚାରୀ ବେଶେ ହେଲେ ସଉମିତ୍ରୀ ପୁଣ ।
ମଢ଼ିଆ ଜଗିଥାଇ ପକ୍ଷିଜଟା ପୁଣ
ସଜ ହୋଇଣ ରାମ ଧରିଲେ ଧନୁର୍ବାଣ ।
ପଞ୍ଚବଟୀ ବନରେ ସୁଖରେ ବିହରନ୍ତି
ମୃଗପଲ ଆଗରେ ଦେଖିଲେ ଦାଶରଥି ।
ମୃଗ ପଲରୁ ଗୋଟିଏ ମାରି ରାମରାଣ
ପର୍ବତରୁ ଫଳ ମୂଳ ଆଣନ୍ତି ଲୋଡ଼ିଣ ।
ପ୍ରତିଦିନ କନ୍ଦମୂଳ ମୃଗ ମାଂସ ଖାଏ
ବସନ୍ତ ଋତୁ ଶେଷେ ଗ୍ରୀଷମ ଋତୁ ହୁଏ ।
ଗୋଦାବରୀକି ଗଲେ ଜାନକୀ ସଙ୍ଗେ ଘେନି
ଶ୍ରୀରାମରେ ଜଳକ୍ରୀଡ଼ା କରନ୍ତି ତହିଁ ବେନି ।
ଶରଦ ଋତୁରେ ଯେ ପର୍ବତ ପରେ ଉଠି
ଉଚ୍ଚସ୍ଥାନେ ରହିଣ ଜଗତ ଦେଖନ୍ତିଟି ।
ଏମନ୍ତେ ତିନିବର୍ଷ ସେଠାରେ ବହିଗଲା
ସୀତାଙ୍କୁ ଘେନି ରାମ କରନ୍ତି ବହୁ ଲୀଳା ।
ଏହା ଶୁଣି ବୋଇଲେ ଈଶ୍ୱର ପାଟରାଣୀ
କଥାଏ ମୋର ମନେ ପଡ଼ିଲା ଦେବ ପୁଣି ।
ତେର ବରଷ ଯେ ସେଥିରେ ବହିଗଲା
ଜାନକୀ ରଜସ୍ୱଳା ବନରେ ହୁଏ ପରା ।
ଚିକ୍କଣ କୁଙ୍କୁମ ସେ ଆଣିଛ ଯେ କାହିଁ
ଅଗ୍ନିରେ କିରୂପେ ସ୍ନାହାନ କରେ ସେହୁ ।

ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଯେତେବେଳେ ଅଯୋଧ୍ୟାରୁ ଗଲେ ରାମସତୀ ।
ପ୍ରଥମ ବାରଦିନେ ମାଇଲେ ରାମଜୀବ
କସ୍ତୁରୀ ଜୀବ ଗୋଟିଏ ମାଇଲେ ରାଘବ ।
ସେ ଜୀବକୁ ଦେଖିଣ ଜାନକୀ ତୋଷ ହୋଇ
ଲକ୍ଷ୍ମଣଙ୍କୁ ବୋଇଲେ କି ଜୀବ ଅଟେ ଏହି ।
ସଉମିତ୍ରୀ ବୋଇଲେ କସ୍ତୁରୀ ଜୀବ ଗୋଟି
ପବିତ୍ର ଜୀବ ଏ ଯେ ଅଟେ ଶୁଭ୍ରକେଶୀ ।
ଜାନକୀ ବୋଇଲେ ଏ ଜୀବ ମାଂସ ଭଲ
ଲକ୍ଷ୍ମଣ ବୋଇଲେ କେହି ନୁହେଁ ସମତୁଲ ।
ଏହାର ନାଭି ଗୋଟି କସ୍ତୁରୀ ହୁଅଇ
ଦେବତାଙ୍କ ଅଙ୍ଗରେ ନିତି ଦିଅନ୍ତି ନେଇ ।
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସଭିଙ୍କ ଭୂଷଣ
ସମସ୍ତଙ୍କ ଅଙ୍ଗେ ଥିଲେ ଆମୋଦ କରେ ଜାଣ ।
ଚନ୍ଦନ, କର୍ପୂର, କସ୍ତୁରୀ ଏହି ସାର
ଦେବତାଙ୍କ ଅଙ୍ଗରେ ଲାଗିଲେ ଶୀତଳ ।
ଜାନକୀ ବୋଇଲେ ଏହାର ରଖିବା ଚିକ୍‌କଣ
ଶୁଣିକରି ସଉମିତ୍ରୀ ହେଲେ ତୋଷମନ ।
କଟାରୀ ଘେନି ଲକ୍ଷ୍ମଣ ବେଗେ ଚଳିଗଲେ
କୁମ୍ଭା ବୃକ୍ଷକୁ ସେ ଅଧାରୁ ହାଣିଲେ ।
ଯେଉଁ ପବ ଭିତରେ ଅଧିକ ପଦା ଥିଲା
ସେ ପବକୁ ଘେନିକରି ଲକ୍ଷ୍ମଣ ଅଇଲା ।
ଅଷ୍ଟଧାତୁ ଲୋଧାରେ ମାଂସ ସିଝାଇଲେ
ଚିକ୍‌କଣକୁ ନିଗାଡ଼ି ସେ ନଳରେ ରଖିଲେ ।
ସେଥିରେ ସଉମିତ୍ରୀ ମୃଗ ନାଭି ନେଇ
ନଳର ଭିତରକୁ ଦେଲେ ସେ ପକାଇ ।
ସେ ନଳକୁ ଯତନେ ରଖିଲେ ବଇଦେହୀ
ସେ ବେନି ନଳକୁ ଯେ ଜାବ ମୁଦ ଦେଇ ।
ପ୍ରତିଦିନ ସେ ଚିକ୍‌କଣ ଲଗାଇ ବାନ୍ଧେ ଜୁଡ଼ା
ଶୁଦ୍ଧସ୍ନାନ ଦିନ ତାହା ଲଗାଏ ଅବଳା ।
ପାର୍ବତୀ ବୋଇଲେ ସେ କୁଙ୍କୁମ କାହୁଁ ଆଣି
ଈଶ୍ୱର ବୋଇଲେ ବନୁ ଲକ୍ଷ୍ମଣ ଦିଏ ଆଣି ।
ସଉମିତ୍ରୀ ଅଗ୍ନି ପୁଣ କରଇ ସଂଯୋଗ
ସେଥିରେ ସ୍ନାନ କରେ ବଇଦେହୀ ବେଗ ।
ହୃଦୟ ନିର୍ମଳ ତାର ଶାଢ଼ୀ ଯେ ଉଜ୍ଜ୍ୱଳ
ମୃଗ ନାଭି କସ୍ତୁରୀରେ କେଶ ତା ଜରଜର

ପାର୍ବତୀ ବୋଇଲେ ଦେବ ଗୁପତ କଥା ହେଲା
ଜାନକୀ କି ରୂପରେ ସେ କଥା ଜାଣିଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ହୈମବନ୍ତୀ
ଯେଉଁଦିନ ଜନକ ଯାଗ ଶାଳ କରନ୍ତି ।
ଲଙ୍ଗଳରେ ଚଷନ୍ତେ ମଞ୍ଜୁଷ ଉକୁଟିଲା
ସେ ମଞ୍ଜୁଷ ଜନକ ଭୂମିରୁ କଢ଼ାଇଲା ।
ମଞ୍ଜୁଷକୁ ଫେଡ଼ନ୍ତେ ଜାନକୀକି ଦେଖି
ମଞ୍ଜୁଷ ଭିତରୁ କାଢ଼ିଲେ ଜାନକୀଙ୍କି ।
ଜନକ ଛୁଁଅନ୍ତେ ଜାନକୀ ଯୁବା ହେଲା
ଯାଗ ଶାଳ ମଧ୍ୟରେ ହାଲ ହୋଳି ପଡ଼ିଲା ।
ତେଣୁ ସେ ସର୍ବଜନେ ଦେଖିଲେ ତାହାକୁ
ମୁନିମାନେ ଯାଇଣ ଦେଖିଲେ ଦୁହିତାକୁ ।
ପ୍ରସିଦ୍ଧ ମୁନିମାନେ ଜାଣିଲେ କମଳା
ଅସୁରଙ୍କୁ ମାରିବାକୁ ଜନମ କମଳା ।
ଦେଖିଣ ମୁନିମାନେ ସନ୍ତୋଷ ହୋଇଲେ
ନାରାୟଣ ନିଶ୍ଚେ ମହୀରେ ଜନ୍ମିଲେ ବୋଇଲେ ।
ଜାନକୀଙ୍କ ପାଶକୁ ଦୁର୍ବାସା ମୁନି ଗଲେ
ବଇଦେହୀ ଆଗରେ ଓଁକାର ନାଦ କଲେ ।
ବୋଇଲେ ଜାନକୀ ଗୋ ମୋ ବାଣୀ ଶୁଣ
ତୁମ୍ଭେତ କମଳା ଆମ୍ଭେ ତାହା ଜାଣୁ ପୁଣ ।
ଯେଉଁଦିନ ରଜସ୍ୱଳ ଋତୁ ସ୍ନାନ କରି
ସେ ଦିନ ଆମ୍ଭ କଥାକୁ ପାଳିବୁ ଦୁଲାଳୀ ।
ସେ ଦିନ ଅଗ୍ନିରେ ତୁ କରିବୁ ସ୍ନାହାନ
ତୋହର ପତି ହେବେ ନିଶ୍ଚେ ନାରାୟଣ ।
ଅଏଁଳା ସାବିତ୍ରୀ ଅଙ୍ଗେ ଲେପିବୁ ଯେ ତୁହି
କୁଙ୍କୁମ ଚିକ୍‌ଣ ତୁ ଅଙ୍ଗରେ ଲଗାଇ ।
ଅଗ୍ନିରେ ସ୍ନାନ କଲେ ଦିଶିବୁ ଉଜ୍ଜ୍ୱଳ
ରଜକରୀ ତୋ ବସନ ଛୁଇଁବ ତେତେବେଳ ।
ଆହୁରି କଥାଏ ତୁ ଶୁଣ ବଇଦେହୀ
ସେବାକାରୀମାନଙ୍କୁ ତୋ ଅଙ୍ଗ ନ ଛୁଁଆଇ ।
ଆପଣାର ଦାସୀମାନେ ତୋତେ ବେଶକରି
ଏତେ କହି ମୁନିବର ସେଠାରୁ ଗଲେ ଚଳି ।
ଯାଗଶାଳୁ ଜନକ ଦୁହିତା ଘେନି ଚଳି
ମିଥିଳା ନିଜପୁର ଯାଇଣ ବେଗେ ମିଳି ।
ଘରଣୀ ଆଗରେ ଜନକ ଋଷି କହି
ଯାଗଶାଳ ଶୋଧନରୁ ଏ ଦୁହିତା ଜାତ ହୋଇ ।

ଶୁଣିକରି ଜନକ ରଷିର ଘରଣୀ
କୋଳରେ ବସାଇଲା ଆନନ୍ଦ ହୋଇ ପୁଣି ।
ଏଥୁ ଅନନ୍ତରେ ଯେ ପକ୍ଷେକ ବହିଗଲା
ସୀତା ପରା ସତୀ ଯେ ରଜସ୍ୱଳା ହେଲା ।
ପାଞ୍ଚଦିନେ ଶୁଦ୍ଧ ସ୍ନାନ ହୋଇବାର ନୀତି
ଅଗ୍ନିରେ ସ୍ନାନ କଲେ ଯାଇଣ ଜାନକୀଟି ।
ଦେହ ତାର ଉଜ୍ଜ୍ୱଳ ଶାଢ଼ୀ ଯେ ଉଜ୍ଜ୍ୱଳ
ସେହିଦିନୁ ଶୁଦ୍ଧ ସ୍ନାନ ଅଗ୍ନିର ଭିତର ।
ଶୁଣିକରି ପାର୍ବତୀ ଯେ ହରଷ ହୋଇଲେ
ଶ୍ରୀରାମ କିସ କଲେ ବୋଲିଣ ପଚାରିଲେ ।
ଆଜକୁ ତେରବରଷ ଏଥିରେ ବହିଗଲା
ଜାନକୀ ଏ ରୂପରେ ବନରେ ନିର୍ଭା ହେଲା ।
ରଜସ୍ୱଳା ହୋଇଲେ ସେ କରେ ଶୁଦ୍ଧ ସ୍ନାନ
ଶୁଦ୍ଧସ୍ନାନ ଦିନ ଅଗ୍ନିପରୀକ୍ଷା କରେ ପୁଣ ।
ପିତାରଘରେ ଏଗାରବର୍ଷ ଷଡ଼ମାସ ପୁଣି
ଅଗ୍ନିରେ ସ୍ନାନ କରେ ଶଉଚଦିନ ଜାଣି ।
ସେଠାରୁ ଶ୍ରୀରାମ ଯେ ତାଙ୍କୁ ବିଭା ହେଲେ
ଅଯୋଧ୍ୟାକୁ ଯାଇଣ ସୁଖେ ବିଳସିଲେ ।
ତିନିବରଷ ଷଡ଼ମାସ ତହିଁରେ ଭୋଗକି
ସ୍ୱାମୀର ସଙ୍ଗେ ନାରୀ ହେଲେ ଦେଶାନ୍ତରି ।
ସଙ୍ଗରେ ଦାସୀଗଣ ନ ଗଲେ ତାହାଙ୍କରି
ଦେଶକୁ ନ ଆସିବ କୈକେୟୀ ମନାକରି ।
ପନ୍ଦର ଦିନରେ ପଡ଼ଇ ତାର ପାଳି
ରଜସ୍ୱଳା ହୁଅଇ ଜନକ କୁମାରୀ ।
କସ୍ତୁରୀ ଚିକ୍‌କଣ ବନର ଯେ କୁଙ୍କୁମ
ଅଁଳା ସାବିତ୍ରୀ ନବହର ଜାଣ ।
ସେମାନେ ଲୋଡ଼ିବାରୁ ଲକ୍ଷ୍ମଣ ଆଣି ଦେଇ
ଅତୁଟରେ ଅମଳାଣ ପିନ୍ଧେ ଚାନ୍ଦମୁହିଁ ।
ସକଳ ପଦାର୍ଥ ଯେ ତାଙ୍କୁ ମିଳେ ବନ
ଯାହାର ସ୍ୱାମୀ ଅଟନ୍ତି ସ୍ୱୟଂ ନାରାୟଣ ।
ଯାହାର ଦିଅର ଅନନ୍ତ ଈଶ୍ୱର
କେଉଁ କଥା ଅପୂର୍ବ ତାହାଙ୍କୁ ବନର ।
ସବୁକଥା କୁଶଳ ତାହା ମୁଁ ଜାଣିଲି
ଏକ କଥାଏ ତୁମ୍ଭ ମୁଖରେ ନ ଶୁଣିଲି ।
ଶୁଦ୍ଧ ସ୍ନାନ ଦିନ କେହୁ ବେଶ ତାଙ୍କୁ କରି
ସେକଥା ମୋହ ଆଗେ କହ ହେ ଫେଡ଼ିକରି ।
ଶ୍ରୀରାମ ତ୍ରୈଲୋକ୍ୟ ଠାକୁର ଶିରୋମଣି
ଲକ୍ଷ୍ମଣ ତ ଅନନ୍ତ ଈଶ୍ୱର ଅଟେ ପୁଣି ।
ମାସେ ପକ୍ଷେ ନୁହେଁ ଚଉଦ ବରଷ
କନ୍ଦ ଶବର ନୁହନ୍ତି ଶ୍ରୀରାମ ପୀତବାସ ।
ପ୍ରଥମ ଓଁକାରରୁ ଆପଣେ ହେଲେ ଜାତ
ଦ୍ୱିତୀୟେ ସ୍ତିରୀରୂପେ ହୋଇଲେ ସମ୍ଭୁତ ।
ତୃତୀୟେ ଦେବତାଙ୍କୁ ଜାତ କଲେ ସେହି
ଚତୁର୍ଥେ ଅସୁର ସ୍ୱରୂପେ ଜାତ ହୋଇ ।
କ୍ଷତ୍ରିୟ, ଦ୍ୱିଜବର ବୈଶ୍ୟ, ଶୂଦ୍ର ଚାରି
ଏମାନଙ୍କର ରୀତି ଭିନ୍ନ ଭିନ୍ନ କରି ।
ଏଚାରି ଜାତିରୁ ଜାତ ଛତିଶ ପାଟକ
ଯାହାର ଜାତି ଆଚାର ଯେ କରନ୍ତି ବିବେକ ।
ଯାହାକୁ ଯେଉଁମତେ ଦେବତା ଦେଲେ ବର
ସେ ଧାରାରେ ସମସ୍ତେ କହନ୍ତି ବେଭାର ।
ସେ ଧାରା ବୁଝାଇ ମୋତେ କହ ତ୍ରିଲୋଚନ
ତେବେ ମୋର ମନ ଯେ ହୋଇବ ସୁସ୍ଥ ପୁଣ ।
ଶୁଣିକରି ଶଙ୍କର ଅମ୍ବିକା ବାଣୀ ପୁଣି
ବୋଇଲେ ଏକଥା ଗୋ କହିବା ଗୋସାମଣି ।
ପନ୍ଦର ଦିନରେ ସ୍ତିରୀ ହୁଅନ୍ତି ଅଲଗା
ପାକ ସେ ନ କରନ୍ତି ପୁରୁଷ କରି ତେଜ୍ୟା ।
ପାଞ୍ଚଦିନ ପରଯନ୍ତେ ଅଶୁଦ୍ଧ ହୋଇଥାନ୍ତି
ଶଉଚ ସ୍ନାନ କଲେ ପାକ ପୁରୁଷେ ଗତାଗତି ।
ସୀତା ଯେ ଶ୍ରୀରାମ ସଙ୍ଗତେ ବନେ ଗଲେ
ପକ୍ଷେକ ରଜସ୍ୱଳା ହୁଏ ସତୀ ଭଲେ ।
ପାଞ୍ଚଦିନେ ଅଲଗା ହୋଇ ବସିଥାଇ
ଲକ୍ଷ୍ମଣ ରାନ୍ଧିଣ ସୁପକ୍ୱ ପରଶଇ ।
ଚାରିଦିନ ଉତ୍ତାରୁ ପାଞ୍ଚଦିନ ଜାଣ
ସେ ଦିନ ଶୁଦ୍ଧସ୍ନାନ ଜାନକୀ କରେ ପୁଣ ।
କସ୍ତୁରୀ ଚିକ୍‌କଣ ଯେ ବାଉଁଶ ନଳରେ
ଆଗରୁ ସଞ୍ଚି ତାକୁ ରଖିଛି ନାରୀବରେ ।
କୁଙ୍କୁମ ଚନ୍ଦନ ସାବିତ୍ରୀ ନବହର
ଏମାନ ଲକ୍ଷ୍ମଣ ସଂଯୋଗ ତତପର ।
ସେ ଗନ୍ଧ ଜାନକୀ ଅଙ୍ଗରେ ହୋଇ ବୋଳି
ହୁତାସନ ମଧ୍ୟରେ ଯାଇଣ ସ୍ନାନ କରି ।
ଦେହ ତାର ଉଜ୍ଜ୍ୱଳ ଶାଢ଼ୀ ତା ନିର୍ମଳ
ପାଦକୁ ସରି ନୁହେଁ ଅନ୍ୟ ସ୍ତିରୀ ତାର ।

ସ୍ନାନ କରି ଆସିଣ ପିନ୍ଧି ଅନ୍ୟ ଶାଢ଼ୀ
ପାଲଟି ସେ ଶାଢ଼ୀକି ରଖଇ ଯତ୍ନକରି।
ଅଗ୍ନିତାର ରଜକାରୀ ବୋଲି ତୁମ୍ଭେ ଜାଣ
ମଳିଣ ହେଲେ ଶାଢ଼ୀ ଦୁଅଇ ତତକ୍ଷଣ ।
ନିର୍ମଳ କରି ଜନନୀ ଶାଢ଼ୀ ନେଇ ଥୋଇ
ବେନି ନଳ ଭିତରେ ନେଇଣ ସମ୍ଭାଳଇ ।
ସୁବର୍ଣ୍ଣ ଦନ୍ତ ପାନିଆ ସଙ୍ଗରେ ରଖିଥାଇ
ମସ୍ତକେ ଚିକ୍କଣ ଦେଇ ରାମଙ୍କୁ କହଇ ।
ବୋଲଇ ମୋର କେଶ ସୁନା ଦନ୍ତରେ ଶାମଳ
ଜୁଟାଗୋଟିଏ ସେଥିରେ ଯତନେ ତିଆର ।
ଶୁଣିକରି ଶ୍ରୀରାମ ସୁବର୍ଣ୍ଣ କମ ଧରି
ଜାନକୀର କେଶକୁ ଶାମଳି ଜୁଡ଼ାକରି ।
ଝରାକାଠି ଝୁମ୍ପୀ ଯେ ଚଉଁରୀମୁଣ୍ଡି ଦ୍ୟନ୍ତି
ଦର୍ପଣ ଦେଇଣ ରାମ ଜାନକୀକି ପୁଛନ୍ତି ।
ବନର କୁସୁମକୁ ଲକ୍ଷ୍ମଣ ମାଳ କରି
ରାମଙ୍କର ହସ୍ତକୁ ଦିଅନ୍ତି ନେଇ ତୋଳି ।
ଶ୍ରୀରାମ ନେଇକରି ଜୁଡ଼ାରେ ବେଢ଼ାଇ
ମସ୍ତକରେ ସିନ୍ଦୂର ଘେନଇ ଚାନ୍ଦମୁହିଁ ।
ରତ୍ନ କାଞ୍ଚୁଲା ଗୋଟିଏ ହୃଦରେ ହୁଏ ଲାଗି
ନାନାରତ୍ନ ମୁଦି ଯେ ଅଙ୍ଗୁଷ୍ଠିରେ ହୁଏଲାଗି ।
ଏଥୁ ଅନନ୍ତରେ ଗୋ ଅମ୍ବିକାଇ ଶୁଣ
ଜ୍ୟୋସ୍ନା କାନ୍ତିରେ ରାମ ଲଗାନ୍ତି ଚିକ୍‌କଣ ।
ଅଗ୍ନିକି ଦେଖାଇଲେ ଅଞ୍ଜନ ପେଡ଼ି ପୁଣ
ରାମ ଦ୍ୟନ୍ତି ଜାନକୀଙ୍କ ଅଞ୍ଜନେ ଏନାନ୍ତ ।
ପୁଣି ବଇଦେହୀ ଯେ ରାମ ନେତ୍ରେ ଦେଇ
ଲକ୍ଷ୍ମଣଙ୍କ ନେତ୍ରରେ ଜାନକୀ ଲଗାଇ ।
ଏହି ମତେ ତିନିଜଣ ଅଞ୍ଜନ ଘେନନ୍ତି
ଜାନକୀଙ୍କ ରାମ ବେଶ ଯତନେ କରନ୍ତି ।
ବନସ୍ତ ଭିତରୁ ବନ ପୋଇ କୋଳି
ଶ୍ରୀରାମ ଖୋଜି ଆଣି ଦିଅନ୍ତି ବେଗକରି ।
ସେ କୋଳି ରସ ଜାନକୀ ପୟରେ ଲଗାଇ
ଅଳତା ଘେନିଲା ପ୍ରାୟ ଚରଣ ଦିଶଇ ।
ସେଦିନ ଶ୍ରୀରାମ ଯେ ଚିକ୍‌କଣେ ମାଜଣା
ଅଙ୍ଗରେ କର୍ପୂର ଚନ୍ଦନ ବୋଳି ସିନା ।
ଲକ୍ଷ୍ମଣ ସେଦିନ ଚିକ୍‌କଣ ଘେନନ୍ତି
ସେଠାରୁ ପନ୍ଦରଦିନ ବିଭୂତି ବୋଳିହୋନ୍ତି ।

ପକ୍ଷେ ପରିଯନ୍ତେ ରାମ ଜାନକୀ ସଙ୍ଗରେ
ରାମ ସଙ୍ଗେ ଜନକ ଦୁହିତା ସ୍ନେହଭରେ ।
ଏହି ରୂପେ ତେର ବରଷ ବହିଗଲା
ଶ୍ରୀରାମଙ୍କୁ ଅଜ୍ଞାନ ସେଠାରୁ ଘୋଟିଲା ।
ସୀତାଙ୍କୁ ଦଶା ଆସି ଘୋଟିଲାକ ପୁଣ ।
ଏଥୁ ଅନନ୍ତରେ ଦେବୀ ରାମ କଥା ଶୁଣ ।
ତେର ବରଷ ଯିବାରୁ ଶ୍ରୀରାମ ଅଜ୍ଞାନ
ବରଷକେ ଦେବ କାର୍ଯ୍ୟ ହୋଇବ ଯେ ପୁଣ ।
ପାର୍ବତୀ ବୋଲନ୍ତି ଶୁଣ ଆହେ ଯୋଗେଶ୍ୱର
ସେଠାରୁ ତିନିଜଣ କି କଲେ ବିଚାର ।
ସଦାଶିବ କହନ୍ତି ଶୁଣ ଗୋ ମହାମାୟୀ
ଅରଣ୍ୟେ ଦିନ ବଞ୍ଚନ୍ତି ତିନିଜଣ ରହି ।
ଏଥୁ ଅନନ୍ତରେ ଯେ ରଜନୀ ହୁଏ ପୁଣ
ଈଶ୍ୱର ପାର୍ବତୀ ଯେ ବନୁ ଅଇଲେ ଜାଣ ।
ହର ବନୁ ପାର୍ବତୀ ଅଇଲେ ସିଂହପରେ
ଈଶ୍ୱର ଅଇଲେ ଯେ ବୃଷଭ ଉପରେ ।
ରାତ୍ରରେ କପିଳାସକୁ ଅଇଲେ ଯେ ପୁଣ
ନିତ୍ୟ କର୍ମ ସାରିଣ ସେ କରନ୍ତି ଭୋଜନ ।
ରଜନୀର ଶେଷରେ ଈଶ୍ୱର ପାର୍ବତୀ
ହରବନେ ପ୍ରବେଶ ହୁଅନ୍ତି ଯାଇ ନିତି ।
ରାମର କଥାମାନ ପଚାରି ଭଗବତୀ
ବନରେ ତିନିଜଣ କି ରୂପେ ବଞ୍ଚନ୍ତି ।
ସେ କଥା ମୋର ଆଗେ କହ ବିଶ୍ୱନାଥ
ପାର୍ବତୀ ପଚାରିବାରୁ କହନ୍ତି ଶୂଳହସ୍ତ ।
ପଞ୍ଚବଟୀ ବନରେ ବାସ କରନ୍ତି ପ୍ରତିଦିନ
ଗୋଦାବରୀ ନଦୀରେ ସ୍ନାନ ଯେ ତର୍ପଣ ।
ଏକଦିନେ ଲଙ୍କାଗଡ଼ ରାଜାର ଭଉଣୀ
ସୂର୍ପଣଖା ନାମ ଯେ ଅଟଇ ତାର ପୁଣି ।
ଜମ୍ବୁଦ୍ୱୀପରେ ଆସି କରଇ ଭ୍ରମଣ
ନରକୁ ଦେଖିଲେ ସେ ଯେ କରଇ ଭକ୍ଷଣ ।
ପୁରୁଷ ସୁନ୍ଦର ଦେଖି ବୋଲେହୁଅ ମୋର ବର
ମନୁଷ୍ୟଙ୍କ ପାଶେ ନ ଯାଏ ଶାପକୁ ବଡ଼ ଡ଼ର ।
ଏହି ସମୟରେ ଯେ ରାକ୍ଷସୁଣୀ ଆସି
ସ୍ନାନ କଲା ସେ ଯେ ଗୋଦାବରୀରେ ପଶି ।
ମନୁଷ୍ୟଙ୍କ ଚରଣ ଯେ ବାଲିରେ ଦେଖିଲା
ଖୋଜ ବାରିକରି ଯେ ବନସ୍ତକୁ ଗଲା ।

ଦେଖିଲା ରାମ ଲକ୍ଷ୍ମଣ ବଇଦେହୀ ତିନି
ନାହିଁ ଯେ ପଟାନ୍ତର ତ୍ରିଭୁବନେ ପୁଣି ।
ବୃକ୍ଷ ନ ଥିବାର ପର୍ବତେ ବସିଛନ୍ତି
ବସନ୍ତ ଋତୁରେ ଘୋର କନ୍ଦରେ ବୁଲନ୍ତି ।
ଅସୁରୀ ବିଚାରେ ଏ ତ ଅପୂର୍ବ ପଦାର୍ଥ
ଏମାନଙ୍କୁ ଖାଇଲେ ମୋ ଉଦର ହେବ ଶାନ୍ତ ।
ଏ ଦୁଇଜଣଙ୍କୁ ମୁଁ କରିବି ଆହାର
ଏ କନ୍ୟାକୁ ଦେଇ ଦେବି ରାବଣ ଛାମୁର ।
ଏତେ ବିଚାରି ସେ ସୁନ୍ଦରୀ ସ୍ଥିରୀ ହେଲା
ଉପମା କି ଦେବା ତାକୁ ତ୍ରିପୁର ମୋହିଲା ।
ରାମର ଛାମୁରେ ସେ ମିଳିଲକ ଯାଇଁ
ଛନ ଛନ ମନ ତାର ନୟନ ଢାଳି ଚାହିଁ ।
ପଚାରଇ ଅସୁରୀ ଯେ କଥାକରି ଛନ୍ଦ
ଦଇବ ତୁମ୍ଭ ତିନିଙ୍କି କରିଛି ଏକ ବୃନ୍ଦ ।
କେବଣ ଦେଶରୁ ତୁମ୍ଭେ ଏଥକୁ ଅଇଲ
ଏ ଘୋର ଅରଣ୍ୟରେ କିମ୍ପାଇଁ ରହିଲ ।
ଅସୁରଙ୍କୁ ଭୟ ମନେ ନୁହଇ ତୁମ୍ଭର
ଶିରରେ ଜଟା ବାନ୍ଧି ଧନୁଶର ଧର ।
କେ ତୁମ୍ଭର ମାତା ଯେ କେ ତୁମ୍ଭର ପିତା
ଏ ସୁନ୍ଦରୀ ଅଟଇ ଯେ କାହାର ବନିତା ।
ରାମଚନ୍ଦ୍ର ବୋଇଲେ ଅଯୋଧ୍ୟା ଆମ୍ଭ ଦେଶ
ଦଶରଥ ରାଜା ଯେ ଅଟନ୍ତି ସୂର୍ଯ୍ୟବଂଶ ।
ସାତଶ ପଚାଶ ରାଣୀ ଅଟଇ ତାଙ୍କର
ପାଞ୍ଚରାଣୀ ଶ୍ରେଷ୍ଠ ଅଟେ ଶୁଣ ନାରୀବର ।
ତିନି ରାଣୀଠାରୁ ଆମ୍ଭେ ଚାରିପୁତ୍ର ଜାତ
କଉଶଲ୍ୟା ରାଣୀ ଯେ ମୋର ନିଜମାତ ।
ମୋହରଟି ଏହି ନାରୀ ଅଟଇ ସୁନ୍ଦରୀ
ଜନକ ଋଷିର ଏ ଅଟଇ କୁମାରୀ ।
ଏହାର ନାମ ଲକ୍ଷ୍ମଣ ମୋର ସାନଭାଇ
ଦଶରଥଙ୍କର ରାଣୀ ସୁମିତ୍ରା ତନୟୀ ।
ଏହାର ତଳେ ଶତ୍ରୁଘନ ଭାଇ ଯେ କନିଷ୍ଠ
କୈକେୟୀ ଜନନୀର ଭ୍ରତ ଅଟେ ସୁତ ।
ଆଉ ଜନନୀମାନଙ୍କର ନାହିଁ ପୁତ୍ର ପୁତ୍ରୀ
ମୋର ଉପରେ କେବଳ ଭଗ୍ନୀଏ ଅଛି ସତୀ ।
ସେ ଭଗ୍ନୀକି ବିଭାହେଲେ ଋଷ୍ୟଶୃଙ୍ଗ ପୁଣ
ବିଭାଣ୍ଡେକ ଋଷିର ସେ ଅଟଇ ନନ୍ଦନ ।
କୈକେୟୀ ଜନନୀ ଯେ ପିତାଙ୍କୁ ମୋର କହି
ମନ୍ଥରାର ବୋଲେ ମୋ ପିତାଙ୍କୁ ମାୟାବହି ।
ପିତାଙ୍କୁ ସତ୍ୟ ସେ ଗୁପତେ କରାଇଲା
ମୋର ପୁତ୍ର ରାଜାହେବ ବୋଲିଣ ବୋଇଲା ।
ରାମ ଲକ୍ଷ୍ମଣ ସୀତୟା ଯିବେ ସେ ବନକୁ
ଚଉଦ ବରଷ ଗଲେ ଆସିବେ ରାଜ୍ୟକୁ ।
ମୁହିଁତ ଜ୍ୟେଷ୍ଠରାଣୀ ମୋ ପୁତ୍ରଅଟେ ସାର
ଆଗ କରି ରାଜାହେବ ମୋହର କୁମର ।
ଚଉଦ ବରଷ ଗଲେ ରାମ ରାଜା ହେଉ
ତେଣିକି ମୋ ପଛେ ରାମକୁ ଖଟିଥାଉ ।
ସତ୍ୟ କରାଇଣ ସେ ଯେ ମାଗିଲା ରାଜାକୁ
ତେଣୁକରି ମୁହିଁ ଯିନା ଅଇଲି ବନକୁ ।
ଏ ବଚନ ଶୁଣିଣ ବୋଲଇ ସୂର୍ପଣଖୀ
ଶ୍ରୀରାମଚନ୍ଦ୍ର ତୁ ତ ଅଇଲି ତୋତେ ଦେଖି ।
ଯୁବା ବୟସ ତୋର ସୁନ୍ଦର ତୁହି ଅଟୁ
ମୋହର ସଙ୍ଗକୁ ତୁ ଯେ ପତିପଣେ ଖଟୁ ।
ସୀତାର ସଙ୍ଗେ ମୋତେ ଏବେ ତୁ ଭୋଗକର
ତୋତେପରା ଶରଧା ବଳିଲା ମୋହର ।
ତୋହର ଘରଣୀ ଏବେ ମୋତେ ନୋହେ ସରି
ତୁ ରାମ କଥା ଯେ ବିଚାର ମନେ ତୋହରି ।
ମୋହର ରୂପକୁ ତୁ ଯେ ଅନୁରୂପେ ବର
ତୋତେ ଦେଖି ଚିତ୍ତ ଯେ ବଳିଲା ମୋହର ।
ମୁହିଁ ସେ ସୂର୍ପଣଖା ସୁନ୍ଦରୀ ଯୁବତୀ ।
ଅନୁରୂପେ ବେଶ ହେଲେ ମୋହିପାରେ ପୃଥ୍ୱୀ ।
ରତି ଶୃଙ୍ଗାରରେ ମଦନ ପାରେ ଜିଣି
ମୋହର ମହିମା ତୁମ୍ଭେ ଶୁଣ ରଘୁମଣି ।
ଶରଦ ଚନ୍ଦ୍ରମା ପ୍ରାୟେକ ହୋ ବଦନ
ବିଚାରିଲେ ବଶ୍ୟକରି ପାରଇ ମଦନ ।
ବେନି ନୟନରେ ମୁଁ ଯେ ଚାହିଁବା ଛଟକ
ଦେଖିଲେ ମଞ୍ଚକୁ ଯେ ଆସିବେ ସ୍ୱର୍ଗଲୋକ ।
ମୋହର ଯଉବନ ସୁବର୍ଣ୍ଣ କୁମ୍ଭ ଜିଣି
ମୁହିଁ ସେ ଅଟଇ ରାମ ଅପସରୀ ପୁଣି ।
ମୋ ରୂପକୁ ତୁ ଯେ ଅନୁରୂପେ ଶୋଭା
ସୁନ୍ଦର ମୁରତି ତୁ ଯେ ରୂପରେ ଅଟୁ ଲୋଭା ।
ରତିଶାସ୍ତ୍ର ପଢି ମୁଁ ଯେ ଅଛଇ ରଘୁବୀର
ସାବେଳି ଔଷଧ ଦେବି ହେବୁ ଯେ ଅସ୍ଥିର ।

ଆସ ଆସ ଶ୍ରୀରାମ ରମଣ ମୋତେ କର
ଏତେ କହି ସୁନ୍ଦରୀ ନମିଲା ପୟର ।
ଉଠିକରି ଅସୁରୀ ତୋଳେ ବେନିକର
କାଖକୁ ଆଉଁସି ଯେ ଦେଖାଏ କୁଚଭାର ।
ନାକ କୁଣ୍ଡିଆଇ ଯେ ଚାହେଁ ବକ୍ରକରି
ଅଳପ ହସଇ ସେ ନୟନ କୋଣେ ଠାରି ।
ବାନ୍ଧିବାର ଜୁହାର ଉପରୁ ବସ୍ତ୍ରମାଡ଼ି
ଜାନୁ ଜଙ୍ଘ ଦେଖାଇ ସେ ଆଡ଼କରି ମୋଡ଼ି ।
ମଦନ ମୋହିବାର ଚେରେଷ୍ଟା ଦେଖାଇଲା
କେବେହେଁ ଶ୍ରୀରାମର ଚିତ୍ତ ନ ଟଳିଲା ।
ରାମ ଘାଉକାର ନ କଲେ ଅସୁରୀକି
ମାୟାରେ ରୋଦନ ଯେ କରେ ସୂର୍ପଣଖୀ ।
ନିବର୍ତ୍ତ ହୋଇଣ ବୋଲଇ ସେହୁ ବାଣୀ
ମୋହର ବଚନକୁ ଶୁଣ ରଘୁମଣି ।
ରତିରଙ୍ଗ ସଂଗ୍ରାମ ଯେ ମୋର ସଙ୍ଗେ କର
ସହଜେ ଅଟୁ ତୁ ଯେ କ୍ଷତ୍ରୀର କୁମର ।
ରାଜପୁତ୍ର ହୋଇ ରତି ସଂଗ୍ରାମକୁ ଡର
କେମନ୍ତେ ରାଜ୍ୟଭାର ସମ୍ଭାଳିବୁ ତୋର ।
ରାଜ୍ୟରେ ରାଜାହେଲେ ଅନର୍ଥ ଉପୁଜଇ
ରଣ ଯୁଦ୍ଧ କରିବାକୁ ଶତ୍ରୁ ଯେ ଆସଇ ।
ଶତ୍ରୁକୁ ମାରି ଯେବେ ରାଜ୍ୟକୁ ରଖିପାରେ
ତେବେ ସେ ପ୍ରଜାଜନେ ରହନ୍ତି କୁଶଳେ ।
ସ୍ତିରୀଙ୍କି ବିଭାହେଲେ ଆର୍ଦୋଳି ଅଟେ ବଡ଼
ଯୁବାକାଳେ ମନ ଯେବେ ତୋଷନ୍ତି ତାହାର ।
ଯେତେବେଳେ ମନଇଚ୍ଛା ତେତେବେଳେ ରତି
ତେବେ ସେ ନବଯୁବା ଯୁବତୀ ହୋନ୍ତି ଶାନ୍ତି ।
ରତି ରଣ ନପାଇଲେ ଯୁବତୀ ବିକୋତି
କେବେହେଁ ସେ ନାରୀର ମନ ନୁହେଁ ଶାନ୍ତି ।
ସୁନ୍ଦର ପୁରୁଷ ଦେଖିଲେ ସ୍ତିରୀଙ୍କି ଲୋଭବଡ଼
ବିଚାରଇ ଏ ପୁରୁଷ ସଙ୍ଗେ ହୋନ୍ତା ଯୋଡ଼ ।
ଏମନ୍ତ ବିଚାରି ମନ କରଇ ଛନ୍ନ ଛନ୍ନ
ଆଡ଼େଇ ଆଡ଼େଇ ତାକୁ ଅନାଉଥାଇ ପୁଣ ।
ପୁରୁଷ ଯୁବା ଯେବେ ଦେଖଇ ଯୁବାସ୍ତିରୀ
ଯୁବା ସ୍ତିରୀଠାରେ ଲୋଭ ରହଇ ତାହାରି ।
ବିଚାରଇ ଏ ସ୍ତିରୀକି କରନ୍ତି ଯେବେ ଭୋଗ
ଜୀବନ ମୋହର ସାର୍ଥକ ହୁଅନ୍ତା ତ ।
ଏମନ୍ତ ବିଚାରି ଯେ ଝୁରଇ ପୁରୁଷ
ତେଣୁକରି ଧର୍ମରେ ନରହେ ବିଶ୍ୱାସ ।
ଯାଚିଲା ପଦାର୍ଥ ଯେବେ ଛାଡ଼ ହେ ଦାଶରଥି
ପାଇଲା ପଦାର୍ଥ ଯେବେ ଛାଡ଼ିକରି ଯାନ୍ତି
ଖାଇଲା ପଦାର୍ଥ ଯେବେ ହୋଇଥାଇ ମନ୍ଦ
ପ୍ରତିଦିନ ତାରଘରେ ଲାଗେ ବଡ଼ ଦ୍ୱନ୍ଦ୍ୱ ।
ଜନନୀ ଯେବେ ପୁତ୍ରକୁ ଦେଖି ନ ପାରଇ
ପୁତ୍ରହୋଇ ଯେବେ ପିତାକୁ କଷ୍ଟଦେଇ ।
ଭାଇ ହୋଇ ଯେବେ ହୁଅଇ ଭଗାରି
ଭାରିଯା ହୋଇ ଯେବେ ହୁଅଇ ଦୋଚାରୀ ।
ବ୍ରାହ୍ମଣ ହୋଇ ଯେବେ ଦେବତା ନ ପୂଜଇ
ବଣ୍ୟହୋଇ ଯେବେ ବାଣିଜ୍ୟ ନ କରଇ ।
ଶୁଦ୍ରହୋଇ ଯେବେ ନ କରଇ କୃଷି
ତପିହୋଇ ଯେବେ ତପରେ ନ ବସି ।
ରଜାହୋଇ ଯେବେ ପରଜାଙ୍କୁ ନ ପାଳେ
ମନ୍ତ୍ରୀହୋଇ ଯେବେ ରାଜ୍ୟକୁ ନ ସମ୍ଭାଳେ ।
ସାମନ୍ତ ହୋଇ ଯେବେ ମର୍ଯ୍ୟାଦା ଖୋଲାହୋଇ
ହସ୍ତୀ ହୋଇ ଯେବେ ମୁକୁଳା ବୁଲଇ ।
ଅଶ୍ୱର ସଙ୍ଗେ ଯେବେ ପାଇକ ନ ରହଇ
ରାଜାର ରାଜ୍ୟେ ଯେବେ ସୈନ୍ୟ ଯେ ନ ଥାଇ ।
ବିଦେଶକୁ ଗଲେ ଯେ ନ ଥାଇ ଧନ ହସ୍ତ
ଏତେ ଲୋକ ଅକାରଣ ଶୁଣହେ ରଘୁନାଥ ।
ମୁଁ ତୋତେ ରସିଣ ଯେ ଯାଚଇ ଶୃଙ୍ଗାର
ଅଧରେ ଚୁମ୍ବନ ଦିଅ ତୁମ୍ଭେ ଯେ ମୋହର ।
ତୋହର ହସ୍ତରେ ଯେ ମୋର କୁଚଧର
ଅଧରେ ଚୁମ୍ବନ ଦିଅ ତୁମ୍ଭେ ଯେ ମୋହର ।
କନକର କୁଚକୁ ମର୍ଦ୍ଦ ହେ ରଘୁବୀର
ନଖ ଦନ୍ତ ତୁମ୍ଭର ଲଗାଅ ଗଣ୍ଡସ୍ଥଳ ।
ଦୁଇଭୁଜେ ଭିଡ଼ିଣ କୋଳକର ଗାଢ଼େ
ମୋର କାମଜ୍ୱର ପୀଡ଼ା ହର ରଘୁବାଳେ ।
ଶ୍ରୀରାମଙ୍କୁ ସୂର୍ପଣଖା କହେ ଏ ବଚନ
ନପୁଂସକ ପୁରୁଷ ପ୍ରାୟତୁ ରଘୁରାଣ ।
ବୋଲନ୍ତି ରଘୁନାଥ ଶୁଣରେ ଯୁବତୀ
ସୀତାରୁ ଆନେ ଯେ ନ ବଳେ ମୋର ମତି ।
ବିଭାର କାଳେ ଯେ ନିୟମ କରିଅଛି
ତେଣୁ ଅନ୍ୟ ସ୍ତିରୀ ନ ଇଚ୍ଛଇ ସଖୀ ।

ଏକ ପତ୍ନୀ ବ୍ରତ ଯେ ଅଟଇ ମୋହର
ପାଗୁ ଯେବେ ତୁ ଯାଇ ଲକ୍ଷ୍ମଣଙ୍କୁ ବର ।
ଯୁବତୀ ନାହିଁ ତାର ତା ପାଶକୁ ଯାଆଯା
ସେ ଅବା ତୋତେ କରି ପାରଇ ଭାରିଯା ।
ଶୁଣିକରି ସୂର୍ପଣଖା କହଇ ବଚନ
ଈଶ୍ୱର ବିଭାହେଲେ ପାର୍ବତୀଙ୍କି ପୁଣ ।
ସେ ପାର୍ବତୀ ଅଟନ୍ତି ଯେ ପରମ ସାଧବୀ
ତାହାର ସତ୍ୟ ରଖେ ଈଶ୍ୱର ବାରାନିଧି ।
ନବକୋଟି ଦେବୀଙ୍କି ପୁଣି ହେଲେ ବିଭା
ଚଉଷଠି ଯୋଗ୍ନୀ ଯେ ହେଲେ ଦାସୀ ପ୍ରଭା ।
ବାଉନକୋଟୀ ପିଶାଚୁଣୀ ହେଲେ ମୁଦୁସୁଲି
ଦୁର୍ଗାଙ୍କୁ ସୁନ୍ଦରୀ ଦେଖି ରମିଲେ ତ୍ରିପୁରାରି ।
ଶ୍ରୀରାମ ବୋଇଲେ ସେ ପାର୍ବତୀ ଅଂଶୁ ଜାତ
ସେଥିର ସକାଶୁ ଯେ ରମିଲେ ଭୋଳାନାଥ ।
ସୂର୍ପଣଖା ବୋଇଲା ବଡ଼ ଜଗନ୍ନାଥ
କମଳା ତାର ଘରଣୀ ଅଟେ ପତିବ୍ରତ ।
ସେ କିମ୍ପାଇ ଏକ ବ୍ରତୀ ହୋଇ ନ ରହିଲେ
ବୁଦ୍ଧସ୍ତିରୀ ସଙ୍ଗରେ ରମଣ ରତି କଲେ ।
ଶ୍ରୀରାମ ବୋଲନ୍ତି ଗୋ ସେକଥା ଅଟେ ସତ
କମଳା ଅଂଶରୁ ହେଲେ ସେହି ଜାତ ।
ତେଣୁ ସେ ବାସୁଦେବ ତାହାକୁ ଭୋଗକଲେ
ସେତେବେଳେ କମଳାକ୍ଷୀ ପ୍ରମାଣ ନ କଲେ ।
ସୂର୍ପଣଖା ବୋଇଲା ବିଧାତା ବେଦବର
ସ୍ତିରୀ ପୁରୁଷ ଜାତକରି କଲେ ଯେ ସଂସ୍କାର ।
କାଳେ ସେ ଗାୟତ୍ରୀକି ବିଭାହେଲେ ପୁଣ
ସୁନ୍ଦରୀ ଦେଖି ସାବିତ୍ରୀକି ବରିଲେ ଦେବରାଣ ।
ଶ୍ରୀରାମ ବୋଇଲେ ସେ ଦୁଇ ନାରୀ ଏକ
ଏକଅଙ୍ଗ ଗୋଟି କଲେ ସେହି ଦୁଇମତ ।
ସୁର୍ପଣଖା ବୋଇଲା ବ୍ରହ୍ମା, ବିଷ୍ଣୁ, ଶୂଳପାଣି
ଏମାନଙ୍କ ସତ୍ୟକୁ ଯେ ନ ରଖିଲେ ପୁଣି ।
ଶ୍ରୀରାମ ବୋଇଲେ ସେହୁ ଅଂଶରୁ ଜାତ ବୋଲି
ସେ ନାରୀମାନଙ୍କୁ ସେ ସେହୁ ଭୋଗକରି ।
ସୂର୍ପଣଖା ବୋଇଲା ଇନ୍ଦ୍ରଦେବ ବଡ଼
ତାର ଘରଣୀ ଶଚୀଦେବୀ ଅଟନ୍ତି ଯେ ଗାଢ଼ ।
ସବୁଦିନେ ନବଯୁବା ବରାଙ୍ଗନା ନାରୀ
ସ୍ୱର୍ଗପୁର ସ୍ତିରୀ ତାଙ୍କୁ କେହି ନୁହେଁ ସରି ।

କୋଟିଏ ଇନ୍ଦ୍ରଗଲେ ମଳିଣ ନୋହେ ଦେହ
ସେ ନାରୀକି ଛାଡ଼ି ରାଜା ହୋଇଲା ଯେ ମୋହ ।
ଗଉତମ ଋଷି ନାରୀ ଦେଖିଣ ସୁନ୍ଦର
ତା ସଙ୍ଗେ ପୀରତି କଲେ ସ୍ୱର୍ଗ ପୁରନ୍ଦର ।
କୋଟି କୋଟି ଅପସରୀ ଯାର ପାଦେ ଖଟି
ସେ କିମ୍ପା ସୁନ୍ଦରୀ ଦେଖି ହେଲା ନଟପଟୀ ।
ଶ୍ରୀରାମ ବୋଇଲେ ତୁ ଯେ ସେକଥା ଏବେଶୁଣ
ମାୟାରେ ସେ ଥିଲାକୁ ହରିଲେ ଇନ୍ଦ୍ର ପୁଣ ।
ଗଉତମ ଶାପରେ ସେ ସହସ୍ର ଯୋନି ହେଲା
ଶରୀରଯାକ ତୋର ଯୋନି ପ୍ରକାଶିଲା ।
ତେଣୁ ସେ ଲଜ୍ଜା ଯେ ପାଇଲା ସୁରରାଜା
ମରିବାର କଥାରୁ ସେ କଥା ବଡ଼ ଲଜ୍ଜା ।
ପୁଣି ସୂର୍ପଣଖା ଯେ କହଇ ବଚନ
ରବିଙ୍କର ଦୁଇନାରୀ ଅଟନ୍ତି ଯେ ପୁଣ ।
ଶ୍ରୀରାମ ବୋଇଲେ ସେ ଅଟନ୍ତି ଛାୟା ମାୟା
ବେଳହୁଁ ଦୁଇନାରୀ ଅଟେ ଏକ କାୟା ।
ସୂର୍ପଣଖା ବୋଇଲା ଚନ୍ଦ୍ର ଯେ ଉଜ୍ଜ୍ୱଳ
ସେ ଚନ୍ଦ୍ରକୁ ଉପମା ଦିଅନ୍ତି ସର୍ବଠାର ।
ସେ ଚନ୍ଦ୍ର ବୃହସ୍ପତି ଭାରିଜା ହରିଲା
ତାହାର ଅଂଶନୁହେଁ କେମନ୍ତେ ଅଟେ ପରା ।
ସେ ଚନ୍ଦ୍ରର ସତାଇଶ ଅଟନ୍ତି ଘରଣୀ
ରୋହିଣୀ ଘରଣୀ ତାର ଲେଖା ସତୀରେ ପୁଣି ।
ଯେତେ ନାରୀ ସ୍ୱର୍ଗରେ ଦେବଙ୍କ ଅପସରୀ
ସମସ୍ତଙ୍କୁ ତେଜରେ ମୋହେ ସେହୁ ନାରୀ ।
ଚନ୍ଦ୍ରଦେବ ବଳି କିମ୍ପା ପରଦାରା କଲା
ତେଡ଼େ ତେଡ଼େ ଲୋକଙ୍କର ଏମନ୍ତ ରୀତିହେଲା ।
ଶ୍ରୀରାମ ବୋଇଲେ ସେ ଗୁରୁପତ୍ନୀ ହରି
ତେଣୁ ସେ ବୃହସ୍ପତି ଯେ ଚନ୍ଦ୍ରକ୍ଷୟ କରି ।
ସୂର୍ପଣଖା ବୋଲେ ତୁମ୍ଭେ ଶୁଣ ଦାଶରଥି
ରମ୍ଭା ଅପସରୀ ଯେ ହରିଲା ରାବଣଟି ।
ତିନିକୋଟି ପଚାଶଲକ୍ଷ ଯାର ରାଣୀ
ସ୍ୱର୍ଗର ଅପସରୀ ହରିଲା ସେ ପୁଣି ।
ଶ୍ରୀରାମ ବୋଇଲେ ଯେ ଅଟେ ତାର କାଳ
ନିଶ୍ଚୟ ନାଶଯିବ ବିଶ୍ରବାର ବାଳ ।
ଯେତେ ପ୍ରକାର ସୂର୍ପଣଖା ବୁଝାଇ କହିଲା
କେବେହେଁ ଶ୍ରୀରାମ ଚିତ୍ତ ନ ଟଳିଲା ।

ସେଠାରୁ ଅସୁରୀ ଯେ ବେଗେ ଗଲାଚଳି
ପର୍ବତରୁ ଓହ୍ଲାଇଣ ବିଶ୍ରବାର ବାଳୀ ।
ଲକ୍ଷ୍ମଣ ମଢ଼ିଆର ଦୁଆରେ ଅଛି ବସି ।
ସୂର୍ପଣଖା ବୋଇଲା ଦେଖିଣ ତାଙ୍କୁ ହସି ।
ଧନ୍ୟ ତୋର ରୂପ ଗୁଣ ଧନ୍ୟ ତୋର ରାଶି
କି ଜାଣି ପଞ୍ଚାନ୍ତର ତୁ ମଦନ ପୁରବାସୀ ।
ଯୁବତୀ କୁଳକୁ ତୁ ଅଟୁ ଧନୁର୍ଦ୍ଧର
ଚାଟୁ ଭାଷା କହି ଚିତ୍ତ ହର ଯେ ମୋହର ।
ତୁ ମୋର କାମବାଧା ଶାନ୍ତି କର ସ୍ୱାମୀ
ଦାସୀପଣେ ଖଟିଥିବି ହେବି ତୋ ଘରଣୀ ।
ମୋହର ରୂପକୁ ତୁ ଅନୁରୂପେ ବର
ତୋଠାରେ ଚିତ୍ତ ମୋର ବଳିଛି ରକ୍ଷାକର ।
ଲକ୍ଷ୍ମଣ ବୋଇଲେ ମୁଁ ଶ୍ରୀରାମର ଦାସ
ଦାସର ଘରଣୀ ହେଲେ କିସ ପଉରୁଷ ।
ତୋହର ପରା ଲୋକ ହୋଇବୁ ଯେ ଦାସୀ
ଆପଣାର ମନକୁ ବିଚାର କର ବସି ।
ଦାସୀ ହେଲେ ଜାନକୀର ଘଷିବୁ ଚରଣ
ଏ କଥାକୁ ବିଚାର କର ତୁ ମନେଣ ।
ତୋହର ରୂପକୁ ହାଦେ ନୁହେଁ ମୁହିଁ ସରି
ଶ୍ରୀରାମଚନ୍ଦ୍ର ସ୍ୱାମୀ ଅଟନ୍ତି ମୋହରି ।
ଆହୁରି କଥାଏ ଏବେ ଶୁଣରେ ସୁନ୍ଦରୀ
ମୁହିଁ ନପୁଂସକ ଯେ ଶ୍ରୀରାମ ସଙ୍ଗେ ଫେରି ।
ଯେତେବେଳେ ରାମଚନ୍ଦ୍ର ବନକୁ ଗମନ
ଜନନୀ ମୋତେ ଯେ ସଙ୍ଗରେ ଦେଲା ପୁଣ ।
ଜନକ ରାଜାଝିଅ ଉର୍ମିଳା ମୋ ଘରଣୀ
ସେ ନାରୀ ଅଟଇ ଯେ ଚତୁର ବଡ଼ ପୁଣି ।
ବିଭାର କାଳେ ମୋତେ ସତ୍ୟ କରାଇଲା
ଅନ୍ୟ ସ୍ତିରୀଙ୍କର ଦେହ ନ ଛୁଅଁ ବୋଇଲା ।
ତୁମ୍ଭେ ଯେବେ ବିଦେଶକୁ ଯିବ ପ୍ରାଣନାଥ
ଆସିବା ପର୍ଯ୍ୟନ୍ତେ ମୁଁ ନୋହିବି ପାକରତ ।
ଦେଖିଲେ ତୁମ୍ଭଙ୍କୁ ମୁଁ ରଜବତୀ ହେବି
ନୋହିଲେ ଯୁବା ବାଳକରେ ଦିନ ନେବି ।
ଏ ବଚନ ସତ୍ୟ ତାର ମୋତେ ଅଛି କହି
ଏ କଥାକୁ ଶୁଣିକରି ସତ୍ୟକଲି ମୁହିଁ ।
ମୁହିଁ ସତ୍ୟ କରିଛି ତା ଆଗରେ ଜାଣ
ନପୁଂସକ ହୋଇଥିବି ବିଦେଶେ ଯେତେଦିନ ।
ତୋତେ ଦେଖିଲେ ମୋର ପୁରୁଷପଣ ହେବ
ସେକାଳେ ମଦନବାଣ ପୀଡ଼ା ଯେ କରିବ ।
ନପୁଂସକ ଲକ୍ଷଣ ମୋର ଦେହୁଁ ଯିବ
କୋଟିଏ କାମକଳା ମୋ ଦେହୁ ଜାତ ହେବ ।
ଏମନ୍ତ ସତ୍ୟ ମୁଁ ଯେ କରିଛି ତାର ସଙ୍ଗେ
ସେହିଦିନୁ ମୋର ମନ ନାହିଁ ରତିରଙ୍ଗେ ।
ତୋତେ ଭାରିଯା କଲେ ହେବ ମୋର କିସ
ମୋହଠାରୁ ତେଜ୍ୟାକର ତୁହି ରତିରସ ।
ଶ୍ରୀରାମ ପାଶକୁ ଏବେ ତୁ ବାହୁଡ଼ି ଯାଅସି
ସେ ତୋତେ ରତି ରସ ଦେବେରେ ଶୁଭ୍ରକେଶୀ ।
ଶୁଣିକରି ସୂର୍ପଣଖା କହଇ ବଚନ
ମିଛ କହି ଭଣ୍ଡୁ ମୋତେ କି କାରଣ ।
ସ୍ତିରୀଙ୍କର ଆଶା ସ୍ୱାମୀ ବହିଲା ପାଣି ପ୍ରାୟେ
ପାଣିକି ଆଗୋଳ ଦେଲେ ଆକଟରେ ରହେ ।
ସ୍ତିରୀଙ୍କର ଆକଟ ଯେ ପୁରୁଷଟି ପୁଣ
ପୁରୁଷ ଭ୍ରମର ଅଟେ ସ୍ତିରୀ ପୁଷ୍ପ ଜାଣ ।
ଭ୍ରମର ଚୁମ୍ବିଲାର ପୁଷ୍ପରେ ଫଳ ଫଳି
ମାତା ସଙ୍ଗେ ରହଇ ସେହି ଫଳ ଜଡ଼ି ।
ସେ ପୁଷ୍ପର ଆଶା ଯେ ଭ୍ରମରଠାରେ ରହି
ଭ୍ରମରକୁ ନ ଦେଖିଲେ ସେ ପୁଷ୍ପ ମରଇ ।
ସେହିରୂପେ ଆଶା ଯେ କରିଅଛି ମୁହିଁ
ମୋ ଆଶା ନଭାଙ୍ଗ ଯେ ଧର୍ମର ତନୟୀ ।
ନିଉନ ନୁହଇ ମୁଁ ଋଷିର କୁମାରୀ
ମାତା ମୋର ନଉକେଶୀ ଅଟଇ ଅସୁରୀ ।
ବିଶ୍ରବା ଋଷି ମୋର ଅଟନ୍ତି ପିତାପୁଣ
ନଉକେଶୀ ସୁମାଳୀ ଦୈତ୍ୟର ସୁତା ଜାଣ ।
ସେ ଅସୁରୀ ଋଷିଙ୍କି ଭାବରେ ମୋହକଲା
ତେଣୁ ସେ ବିଶ୍ରବା ଋଷି ତାହାକୁ ବିଭାହେଲା ।
ତିନିପୁତ୍ର ଦୁହିତାଏ ତାଠାରୁ ହେଲେ ଜାତ
ସେ ପୁତ୍ରର ନାମ ଶୁଣ ହେ ତପୋବନ୍ତ ।
ଜ୍ୟେଷ୍ଠପୁତ୍ର ରାବଣ କନିଷ୍ଠ ବିଭୀଷଣ
ମଝିଆର ନାମ ମାତାଦେଲେ କୁମ୍ଭକର୍ଣ୍ଣ ।
ସେ ତିନି ଭାଇଙ୍କ ପଛେ ଜନମ ମୁଁ ଯେ ହେଲି
ପିତା ମୋତେ ନାମ ଦେଲେ ସୁର୍ପଣଖା ବୋଲି ।
ପିତା ମୋତେ ବିଭା କରିବାକୁ ହେଲେ ଶ୍ରଦ୍ଧା
ଭାଇ ମୋର ରାବଣ ତହିଁ ଦେଲା ବାଧା ।

ବୋଇଲା ରାଜାଘରେ କରିବୁଁ ଆମ୍ଭେ ବିଭା
ଶୁଣିଣ ପିତା ମୋର ମନୁ ଛାଡ଼ିଲା ଲୋଭା ।
ମାତା ମୋର ଅସୁରକୁ ବର କରିଥିଲା
ବକାସୁର ନନ୍ଦନ ନନ୍ଦା ଦଇତ ଅଟେ ପରା ।
ବଳରାମ ଦାସ ଯେବେ ଶ୍ରୀହରି ଚରଣ
ନୀଳଗିରି ଜଗନ୍ନାଥ ସାହା ଅଟେ ପୁଣ ।
ଏଥୁ ଅନନ୍ତରେ ପାର୍ବତୀ କହେ ବାଣୀ
ଲକ୍ଷ୍ମଣ ସୂର୍ପଣଖାର କହ ହେ କାହାଣୀ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ସୂର୍ପଣଖା ଅସୁରୀ କହଇ ଭାବରେଟି ।
ଅନେକ ଛନ୍ଦରେ କଥା ଦୃଷ୍ଟାନ୍ତରେ କହି
ନପୁଂସକ ହେଲା ଜନ ପଥର ତାର ଦେହୀ ।
ପାଷାଣ ବି ତରଳଇ ନ ଥିଲେ ଜୀବଅଙ୍ଗେ
କେବେହେଁ ଲକ୍ଷ୍ମଣର ନୋହିଲା ବିଭଙ୍ଗେ ।
ପାର୍ବତୀ ବୋଇଲେ ଦେବ ଏ କଥା କିମ୍ପାକହ
ପାଷାଣ କେମନ୍ତେ ଯେ ଅଟଇ ତାର ଦେହ ।
ଈଶ୍ୱର ବୋଇଲେ ତୁ ଗୋ ଶୁଣ ଶାକମ୍ଭରୀ
ମନ୍ତର ଜୀବନ୍ୟାସେ ପାଷାଣ ତରଳି ।
ମନ୍ତରେ ଶୁଖିଲା ତରୁ ପଲ୍ଲବିତ ହୁଏ
ମନ୍ତରେ ମଲା ପ୍ରାଣୀ ଜୀବ ପୁଣି ପାଏ ।
ମନ୍ତଟି ଜୀବନ୍ୟାସ ଧାରା ଅଟେ ପୁଣ
ମନ୍ତରେ ଅଗ୍ନି ମୁଖେ ଆହୁତି ଦେଲେ ଜାଣ ।
ସକଳ ଦେବତାଏ ହରିଙ୍କି ମନେ ଭଜି
ମନ୍ତଗୋଟି ସାର ଅଟେ ଶୁଣ ଗୋ କଥାବୁଝି ।
ଦେଖାଇ ଭାବ କଥା କହେ ସୂର୍ପଣଖୀ
ମଦନକୁ ଗୁପତ କରିଛି ସଉମିତ୍ରୀ ।
ମନ୍ତବଳେ ନିର୍ବିକାର ହୋଇଛି ମଦନ
ବାରଣ ଦେଇଛି ଦଶରଥର ନନ୍ଦନ ।
ମିଆଦର ବାରଣ ସରିଲେ ଘୋଟିବ
ତେତେବେଳେ ସଉମିତ୍ରୀକାମରେ ଲୋଭୀହେବ ।
ପାର୍ବତୀ ବୋଇଲେ ଏକଥା ଅଟଇ ଯେ ଧାରା
ଅର୍ଜିଲା ପଦାର୍ଥ ଭୋଗ ଅଟଇ ପସରା ।
ଆଗତ ସେ କଥାକୁ ଅର୍ଜିଲା ଲକ୍ଷ୍ମଣ
ବାରଣ ନ ସରିଲେ ହେବ କଥା ଆନ ।
ପୁଣ ସୂର୍ପଣଖା ଯେ କି କହେ ଲକ୍ଷ୍ମଣରେ
ସେ କଥା ମୋର ଆଗେ କହ ହେ ଦିଗାମ୍ବରେ ।
ଈଶ୍ୱର ବୋଇଲେ ତୁ ଶୁଣ ଭଗବତୀ
ଲକ୍ଷ୍ମଣର ଆଗରେ କହେ ସୂର୍ପଣଖୀ
ବୋଇଲା ମୋ ପାଇଁକି ମାତା କଲେ ବର
ସେ କଥାକୁ ନାସ୍ତି ମୁଁ ଯେ କଲି ଶତେବାର ।
ମାତାଙ୍କୁ କହିଲି ମୁଁ ବରିବି ଇଚ୍ଛାବର
ତୁମ୍ଭର ବରିବାର ତ ନୁହଇ ବେଭାର ।
ଏମନ୍ତ କହନ୍ତେ ଯେ ମାତା ମୋତେ କହି
ସପତ ଦ୍ୱୀପେ ବୁଲିଣ ବର ବର ତୁହି ।
ମାତାଙ୍କର ବାଣୀ ମୁଁ ଯେ ଶୁଣିଣ ବୁଲିଲି
ଦଇବର ଯୋଗରେ ତୁମ୍ଭଙ୍କୁ ଭେଟ ହେଲି ।
ତୁମ୍ଭେ ଦୁଇଭାଇ ଯେ ନାସ୍ତିକର ମୋତେ
ମନ ମୋର ବ୍ୟାକୁଳ ହେଉଅଛି ଚିତ୍ତେ ।
ସଉମିତ୍ରୀ ବୋଇଲେ ଶୁଣରେ ନାରୀବର
ମିଥ୍ୟା ମୁଁ ନ କହଇ ସତ୍ୟ ଅଟେ ମୋର ।
ଶୁଣିକରି ସୂର୍ପଣଖା ଦେହରୁ ବସ୍ତ୍ର କାଢ଼ି
ଜାନୁ ଯଉବନକୁ ଦେଖାଏ ଚତୁରୀ ।
ଭୂଲତା ଅର୍ଦ୍ଧରେ କରଇ ଆଲିଙ୍ଗନ
ଅଧର କମ୍ପାଇ ନେତ୍ର ଢାଳେ ଘନ ଘନ ।
ଯେତେ ପ୍ରକାରେ ନାରୀ ଭେଳକି ଆଚ୍ଛାଦିଲା
କେବେ ସେ କାମରିପୁ ତାର ନ ଦେଖିଲା ।
ନିଶବ୍ଦ ହୋଇଲା ସେ ରାବଣ ଭଉଣୀ
ଶିରରେ ବସନ ଢାଙ୍କିଲା ନେଇ ପୁଣି ।
ବିଚାରିଲା ଏ ପୁରୁଷ କଥା ଅଟେ ସତ
ଜାଣିଲି ନିଶ୍ଚୟ ମୁଁ ଅଟେ ଯେ ନପୁଂସକ ।
ଏମନ୍ତ ବିଚାରି ସୂର୍ପଣଖା ଲେଉଟିଲା
ଶ୍ରୀରାମ ଆଗରେ ଯାଇ ପ୍ରବେଶ ହୋଇଲା ।
ବୋଇଲା ତୋ ସାନଭାଇ ନ ବରିଲା ମୋତେ
ବୋଇଲା ନପୁଂସକ ଅଟେ ମୁଁ ଯୁକତେ ।
ବନରେ ଥିବାତକ ମୋର ନାହିଁ ତେଜ
ଘରକୁ ଗଲେ ମାଦକ କରିବ ମୋତେ ଉଜ ।
ସ୍ତିରୀର ଭାବ ମୁଁ ଯେ ତାକୁ ଦେଖାଇଲି
ତେବେହେଁ ମଦନ ବାଧା ତରଳ ନ ଦେଖିଲି ।
ନିଶ୍ଚିନ୍ତେ ସଉମିତ୍ରି କହିଲା ବଚନ
ନିଜ ସ୍ତିରୀ ଦେଖି ପୀଡ଼ା କରିବ ମଦନ ।
ଏକଥା ଶୁଣି ବାହୁଡ଼ି ଅଇଲଇଁ ମୁହିଁ
ମୋହର କାମବାଧା ବୋଧ ରଘୁସାଇଁ ।

ମୋହର ବୟସ ଦେଖ ଷୋହଳ ସମ୍ପୂର୍ଣ୍ଣ
ସୁରତି ରସ ଦେଇ ତୋଷ ମୋର ମନ।
ଏ ନବ ଯଉବନ ଧାରଣା ନ ଯାଇ
ବିରହରେ ବିହ୍ୱଳ ମୁଁ ହେଲି କାମେ ବାଇ।
ତୁହିକି ଶ୍ରୀରାମ ମୋତେ ନିଉନ ଯେ ମଣୁ
ଯାହାର ଅଟେ ଭଉଣୀ ତୁହି ତ ନ ଜାଣୁ ।
ଲଙ୍କାଗଡ଼ ରାଜା ଯେ ଅଟଇ ରାବଣ
ତାହାର ସାନୁଜ ଭାଇ ଅଟେ କୁମ୍ଭକର୍ଣ୍ଣ ।
ଅଠରଗଣ୍ଡା କୁମର ତେରଶତ ନାତି
ସାତଲକ୍ଷ ପଚାଶ ସହସ୍ର ଯୁବତୀ।
ଚାରିଯୁଗରେ ସେ ଯେ ଅଟେ ବଳିଯାର ।
ତେତିଶ କୋଟି ଦେବତା ଖଟନ୍ତି ପୟର।
ତିନିପୁର ସପତ ଦ୍ୱୀପରେ ଧନୁର୍ଦ୍ଧର
ଶୂନ୍ୟରେ ରହୁବର ଗମଇ ତାହାର ।
ଏକ ଏକ ପୁତ୍ରର ସନ୍ତାନ ତାର ଶୁଣ
ଶତେ ଶତେ ନାତି ଯେ ଦଶକୁମାରୀ ଜାଣ ।
ଶତେ ଶତେ ଘରଣୀ ଯେ ପୁତ୍ରମାନଙ୍କର
ସାତ ସସ୍ର ଦୁଇଶ ବଧୂ ଅଟେ ତାର।
ସମସ୍ତେ ସାମର୍ଥ ନିଉନ କେହି ନୁହେଁ
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ବୁଲନ୍ତି ନାତି ପୁଏ।
ଦିଗପାଳମାନଙ୍କୁ ସେ ବାନ୍ଧିଣ ଆଣନ୍ତି
ଭଲ ଦ୍ରବ୍ୟ ଦେଖିଲେ ସେମାନେ ନ ଛାଡ଼ନ୍ତି।
ତିନିପୁର ନବଖଣ୍ଡ ଚଉଦ ଭୁବନ ।
ଯେତେକ ଭଲଥିଲା ଆଣିଲା ସେମାନ।
ଲଙ୍କାଗଡ଼ରେ ସବୁ କରିଛନ୍ତି ଠୁଳ
ଅଷ୍ଟରତ୍ନ ଭଣ୍ଡାର ସେ ଲଙ୍କାଗଡ଼ର।
ଦେବ ଅସୁରଙ୍କୁ ଯେ ଅଟଇ ଦୁର୍ଲ୍ଲଭ
ନର ବାନରଙ୍କୁ ଗୋଚର ନୁହେଁ ସର୍ବ ।
ଦଶଗୋଟି ମୁଣ୍ଡ ତାର କୋଡ଼ିଏ ଭୁଜ ଜାଣ
ଏମନ୍ତ ପ୍ରକାରେ ରାବଣ ଜନ୍ମ ପୁଣ ।
ଗିରିବର ସମାନରେ ଅଟେ ତା ଶରୀର
ଚାରିବେଦ ତାର ଦ୍ୱାରେ ପଢ଼େ କୁଶଧର ।
ଅଗ୍ନିବାସେ ପଖାଳେ ଚନ୍ଦ୍ର ଦଣ୍ଡୁଆସି
ପବନ ଦେବତା ଯେ ଆଲଟ ଘେନି ବିଞ୍ଚି ।
ସଦାଶିବ ଆସି ନୃତ୍ୟ କରନ୍ତି ଆଗରେ
କନକ ଦଣ୍ଡ ବରୁଣ ଧରେ ତାର ପରେ ।

ଛପନ ଗଣ୍ଡା ଯୁଗକୁ ଦେବତା ଦେଲେ ବର
ଜନ୍ତୁପତି ବୈଦ୍ୟପଣେ ଖଟଇ ପୟର ।
ଆଜକୁ ଚଉଦ ଗଣ୍ଡାଯୁଗ ଭୋଗହେଲା।
ବୟାଳିଶି ଗଣ୍ଡା ଯୁଗ ଅଛି ତାର ପରା ।
ଜ୍ୟେଷ୍ଠଭାଇ ତାହାର ଯେ ଅଟଇ କୁବେର
ସ୍ୱର୍ଗରେ ଦିଗପାଳ ମଧ୍ୟରେ ସେ ସାର ।
ବିଶ୍ରବା ଋଷି ଜ୍ୟେଷ୍ଠ ଭାରିଜା ପୁତ୍ର ସେହି
କନିଷ୍ଠ ଭାରିଜାର ତିନି ପୁତ୍ର ହୋଇ।
ଚାରି ଭାଇରେ ମୁଁ ଏକା ଅଟଇ ଭଉଣୀ
ଶୁଣ ତୁମ୍ଭେ ରଘୁନାଥ କହୁଛି ମୁଁ ପୁଣି ।
ବାରଗୋଟି ପାଟରାଣୀ କୁବେରର ପୁଣ
ଏକଗୋଟି ପୁତ୍ର ଅଟେ ନଳ ନାମ ପୁଣ ।
ଚାରିଗୋଟି ଦୁହିତା ଅଟେ ଯେ ତାହାର
ଦେବତାଙ୍କୁ ବରି ବିଭା ହେଲା ସେ କୁବେର।
ସ୍ୱର୍ଗପୁର ଦେବତାଙ୍କର ଭଣ୍ଡାର ଅଧିକାରୀ
ଛପନ କୋଟି ଜୀବଙ୍କୁ ଦିଏ ନିତ୍ୟେ ପଢ଼ି ।
ତାହାର କନିଷ୍ଠ ଭାଇ ଅଟେ କୁମ୍ଭକର୍ଣ୍ଣ
ମୋଟ ବତିଶ ଯୁଣ ଉଭା ତେତେ ଜାଣ ।
ଶୟନ ଶତେ ଯୁଣ ମେଲା ଘରେ ଶୋଇ
ବିଧାତାଙ୍କୁ ମାଗିଣ ଶୟନ କରେ ସେହି।
ଲକ୍ଷେକ ଘରଣୀ ଯେ ତାହାର ଅଟଇ
ସମସ୍ତେ ଖଟନ୍ତି ଶୟନ ସ୍ଥାନେ ରହି ।
ଦୁଇଶତ କୁମର ନବଶତ ନାତି
ଗୋଟିଏ ପୁତ୍ରରେ ଦୁଇଶତ ଯୁବତୀ ।
ନାତି ଗୋଟିକରେ ଅଟେ ଶତ ନାରୀ
ଆବର ତାହାର ଯେ ତିନିଶତ କୁମାରୀ ।
ଶ୍ରୀରାମ ବୋଇଲେ ଶୁଣରେ ସୁନ୍ଦରୀ
ଏତେ ପୁତ୍ର ଦୁହିତା କାହୁଁ ହୋଇଲେ ତାହାରି ।
ତାହାର ଘରଣୀମାନେକି ଅନ୍ୟରେକରେ ପ୍ରୀତି
ଅନ୍ୟ ପୁରୁଷ ଆଡ଼େ କି କୁମର ଜନ୍ମନ୍ତି ।
ସୂର୍ପଣଖା ବୋଇଲା ଶୁଣ ଦାଶରଥି
ବରଷକେ ଥରେ ଯେ କୁମ୍ଭକର୍ଣ୍ଣ ଉଠି ।
ହସ୍ତୀ, ଘୋଡ଼ା, ମଇଁଷି ଯେ ଛାଗଳ ଆଦି ମେଷ
ଗୃଧ୍ର, ଶୃଗାଳ, ଶ୍ୱାନ, କୁକୁଟ ଯେ ମାଂସ ।
ନର, ବାନର, ଗୋରୁ ଅନେକ ଜୀବ ପୁଣ
ଭକ୍ଷିଣ କୁମ୍ଭକର୍ଣ୍ଣ ତୃପତ ହୁଏ ଜାଣ ।

ବାରଦିନ ପରିଯନ୍ତେ ଏହିରୂପେ ଭକ୍ଷି
ରାବଣେଶ୍ୱର ତାହା ରଖିଥାଇ ସଞ୍ଚି ।
ଏହି ବାରଦିନ ଲକ୍ଷନାରୀ କରଇ ରମଣ
ଏମାନଙ୍କଠାରୁ ପୁତ୍ର ଦୁହିତା ଜାଣ ପୁଣ ।
ବାରଦିନ ସରିଲେ ଶୟନ ସେହୁ କରି
ବରଷେ ପରିଯନ୍ତେ ସେବିଣଥାନ୍ତି ନାରୀ ।
ଶୁଣିକରି ଶ୍ରୀରାମ ମନରେ ହେଲେ ତୋଷ
ଜାନକୀ ବୋଇଲେ ଏକଥାମାନ ସବୁମିଛ ।
ବାରଦିନେ ଲକ୍ଷେ ନାରୀ ସେ କେମନ୍ତେ ରସଇ
ଲେଖିଲେ ଦିନକେ ନବ ସହସ୍ର ଶତେ ପଡ଼ଇ ।
ସୂର୍ପଣଖା ବୋଲେ କେବେ କଥା ନୁହେଁ ମିଛ
ରାତ୍ରଦିବସରେ ସେ ମୋହର ତାଙ୍କ ଚିତ୍ତ ।
ଏଗାର ଦିନ ସେ ଯେ ନିଶ୍ଚିନ୍ତେ ଭୋଗକରେ
ସରନ୍ତିଦିନ ସେ ଯେ ବୁଲେ ତିନିପୁରେ ।
ଏକଦିନେ ତିନିପୁର ବୁଲିଣ ଆସଇ
ପଲଙ୍କ ସୁପାତି ପରେ ଯାଇଣ ପହୁଡ଼ଇ ।
ବିଧାତା କହିଛନ୍ତି କଣ୍ଟରେ ତୁ ଉଠିବୁ
କଣ୍ଟ ନ ପୂରି ଉଠିଲେ ଅବଶ୍ୟ ମରିବୁ ।
ଏମନ୍ତ ଶାପ ତାକୁ ଯେ କୁଶପାଣି ଦେଲା
ସେ କଥା ମାନି ଭାଇ ଶୟନ ମୋର କଲା ।
ତାହାର ସାନଭାଇ କନିଷ୍ଠ ବିଭୀଷଣ
ବିଷ୍ଣୁରେ ଭକତି ଯେ ଅଟେ ସେହୁ ଜାଣ ।
ଅନ୍ୟ ଦେବତାଙ୍କୁ ନକରେ ସେହୁ ପୂଜା
ବିଷ୍ଣୁଠାରେ ବିଶ୍ୱାସ ମନରେ ବଡ଼ ହେଜା ।
ଶତେକ ଭାରିଯା ତାର ବାରଗୋଟି ପୁଅ
ଷାଠିଏ ନାତି ତାର ଦୁଇଗୋଟି ଝିଅ ।
ବଡ଼ଝିଅ ଏକସ୍ତନୀ ସାନ ଯେ ତ୍ରିଜଟା
ପୋଷିଆ ଝିଅର ନାମ ଦେଇଛି ତାରା, ତା
ତାରାକୁ ବିଭାକଲା ବିଲଙ୍କା ଗଡ଼ରେ
ଝିଅ ଜୁଆଇଁ ରଖିଛି ସମ୍ଭାଳି ନିଜପୁରେ ।
ଏକସ୍ତନୀ ଦୁହିତାକୁ କେହି ନୋହେ ବିଭା
ସେ ନାରୀର କାହାରିଠାରେ ନାହିଁ ଶ୍ରଦ୍ଧା ।
ସାନଝିଅ ତ୍ରିଜଟାକୁ ବାର ଯେ ବରଷ
ସେ କନ୍ୟା ଏକଦିନେ ପିତାଙ୍କୁ କହିଲା ତା ।
ବୋଇଲା ମୋ ଇଚ୍ଛାରେ ମୁଁ ମୁନିଙ୍କି ବରିବି
ନୋହିଲେ ଦଇବ ବଳେ ମୁହିଁ ବିଭାହେବି ।

ଏମନ୍ତ ବଚନ ଯେ କହିଲା ତ୍ରିଜଟା
ଶୁଣିକରି ବିଭୀଷଣ ମନେ କଲେ ଚିନ୍ତା ।
ଏମନ୍ତ ପ୍ରକାରେ ଯେ ଅଟେ ମୋର ତୁଳ
ମୋତେ ଘରଣୀ କଲେ ତୁମ୍ଭର କୁଶଳ ।
ଶ୍ରୀରାମ ବୋଇଲେ ତୁ ଅଟୁ ବୃଦ୍ଧା ନାରୀ
ବାଳକଙ୍କ ପରେ କିମ୍ବା ସ୍ନେହ ଭାବ କରି ।
ଚଉଦ ଗଣ୍ଡା ଯୁଗ ଗଲାଣି ଏବେ ବହି
ତୋତେ ଛୁଇଁଲେ ଦୋଷ ଲାଗିବ ଆମ୍ଭ ଦେହୀ ।
ଶୁଣିକରି ସୂର୍ପଣଖା ବୋଲଇ ବଚନ
ଆୟୁଷର ପ୍ରଥମ ସମୟ ମୋର ପୁଣ ।
ଯେତେବେଳେ ବିଧାତା ସଂସାର ସର୍ଜିଲା
ପୁର ପୁର କରି ସପତ ପୁର କଲା ।
ପୁର ଗୋଟିକେ ସପତ ସାଗର ଅଟଇ
ସାଗର ଭିତରେ ଦ୍ୱୀପେ ଦ୍ୱୀପକେ ଅଛଇ ।
ଦ୍ୱୀପ ଗୋଟିକରେ ଲକ୍ଷେ ଯୂଣ ଆୟତନ
ସାଗର ଗୋଟିକେ ଲକ୍ଷେ ଯୂଣ ଅଟେ ପୁଣ ।
ଅଠରମନୁ ପର୍ଯ୍ୟନ୍ତେ ଦ୍ୱୀପ ସାଗର ଯେ ଥାନ୍ତି
ଅଠର ମନୁ ଗଲେ ଏମାନେ ମୃତ୍ୟୁ ପାନ୍ତି ।
ସପତ ସାଗରରେ କୂଦ ପଦା ଜାଣ
କେଉଁ କୁଦ କେତେ ବିସ୍ତାର ଅଟେ ପୁଣ ।
ସେ କଥା ଶ୍ରୀରାମ ମୋତେ ନାହିଁତ ଗୋଚର
ଚାରି ଲଙ୍କାଗଡ଼ର ମୁଁ ଜାଣଇ ବିସ୍ତାର ।
ପ୍ରଥମେ ସୁବର୍ଣ୍ଣ ଲଙ୍କା ଆୟତନ ଶୁଣ
ଚାରି ଚଉରସ ବାରଶ ଯୂଣ ପୁଣ ।
ଆଠଶ ଯୂଣ ପଦା ପର୍ବତ ବାଲିକୁଦ
ଚାରିଶତ ଯୂଣ ଗଡ଼ର ଦୀର୍ଘ ଯେ ପତିତ ।
ଚାରିପାଖେ ମେଘନାଦ ପାଚେରୀ ସୁବର୍ଣ୍ଣ
ଚାରିଦିନେ ଚାରି କବାଟ କରିଛି ନିର୍ମାଣ ।
ଗଡ଼ର ମଧ୍ୟରେ ବତିଶ ସାଗର ଦୈତ୍ୟଘର
ଚଉଷଠି କନ୍ଦି ବିକନ୍ଦି ଦାଣ୍ଡ ଅପାର ।
ଏମନ୍ତ ପ୍ରକାରେ ସୁବର୍ଣ୍ଣ ଗଡ଼ ଲଙ୍କା
ସେଥିରେ ରାବଣ ଅଛି ହୋଇଣ ନିଶଙ୍କା ।
ତହିଁର ପାଶରେ ଅଲଙ୍କା ନାମରେ ଗଡ଼
ସେ ଗଡ଼ ଆୟତନ ଦୀର୍ଘ ପ୍ରତିରେ ଗାଢ଼ ।
ଆଠଶତ ଯୋଜନ ଅଟଇ ଆୟତନ
ପ୍ରଥମେ ସାଗର ବେଢ଼ିଛି ତୁମ୍ଭେ ଜାଣ ।

ଦ୍ୱିତୀୟରେ ପର୍ବତ ତହିଁରେ ଅଛି ବେଢ଼ି
ତୃତୀୟରେ ଜାହ୍ନବୀ ଅଛଇଁ ଆବୋରି ।
ଚତୁର୍ଥ ଦାବାନଳ ନଦୀ ଅଛି ଘେରି
ନୀଳକଣ୍ଠ ପାଚେରୀ ଅଛଇଁ ଆବୋରି ।
ବାସ୍ତରି ଗଣ୍ଡା ଦାଣ୍ଡ କନ୍ଦି ବିକନ୍ଦି ଅକଳିତ
ବୟାଳିଶ ସାଗର ତହିଁରେ ଘର ଦୈତ୍ୟ ।
ଶତେ ମୁଖା ରାବଣ ତହିଁରେ ରାଜା ପୁଣ
ମୋହର ଭାଇ ସଙ୍ଗେ ସେ ମଇତ୍ର ଜାଣ ।
ଲକ୍ଷେ କୁମର ତାର ଦଶଲକ୍ଷ ନାତି
ପାଞ୍ଚ ସହସ୍ର ତାର ଅଟଇ ଯୁବତୀ ।
ଜୁଆଇଁ ତାର ବାରଲକ୍ଷ ଶୁଣ ରାମରାଣ
ବ୍ରହ୍ମା, ବିଷ୍ଣୁ ଈଶ୍ୱରଙ୍କୁ ନ ମାନେ ରାଜନ ।
ତାହାର ଦକ୍ଷିଣେ ଯେ ବିଲଙ୍କା ନାମେ ଗଡ଼
ଚାରିପାଶେ ସମୁଦ୍ର ହୋଇଛି ତାର ବେଢ଼ ।
ବନ, ପର୍ବତ, ଲତା ପାଷାଣ ଚଉପାଶ
ଖାଲ, ଖଣା, ଠଣା ଯେ ସେଥିରେ ବିଶେଷ ।
ଚାରିଦିଗେ ଚାରି ଦ୍ୱାର ଶୁଣ ହେ ରଘୁନାଥ
ତୁମ୍ଭର ଆଗରେ କହୁଅଛଇ ଶୁଣତ ।
ନଉଦାଣ୍ଡ ତାହାର କନ୍ଦି ବିକନ୍ଦି ଜଣା
ଷାଠିଏ ସାଗର ଘର ସେଥିରେ କଳଣା ।
ସମସ୍ତ ଏକ ଜାତି ବାରଣ ସେଥିରେ ନାହିଁ
ସ୍ତିରୀ ପୁରୁଷ ଧବଳ ଶୁଣ ହେ ରଘୁସାଇଁ ।
ଖରସନ ଦୈତ୍ୟ ଯେ ଆସନ ତାର ଗାଢ଼
ସହସ୍ର ମୁଖା ରାବଣର ସେ ଗଡ଼ରେ ଘର ।
ଦୁଇଲକ୍ଷ କୁମର ଯେ ବାରଲକ୍ଷ ନାତି
ଅଠର ଲକ୍ଷ ଜୁଆଇଁ ତାର ଅନେକ ସନ୍ତତି ।
ଦେବତାମାନଙ୍କୁ ସେ ମଣେ ତୁଚ୍ଛକରି
ବୋଲଇ ପୂର୍ବରେ ମୁଁ ଅଟଇ କୁଶଧାରୀ ।
ସେହି ରାବଣ ସଙ୍ଗେ ମୋ ଭାଇ ସହିଧି
ତାର ଜ୍ୟେଷ୍ଠ ପୁତ୍ରକୁ ମୋ ଭାଇ ଝିଅରୁଦ୍ଧି ।
ଏକ ମୁଖା ରାବଣ କଥା ଶୁଣ ଚାପଧାରୀ
ଇନ୍ଦ୍ରଜିତ କୁମର ମହୀରାବଣ ନାମ ତାରି ।
ତାର ଶତେ ଭଉଣୀ ମୋ ଭାଇ ବିଭାହେଲା
ପ୍ରସନ୍ନ ହୋଇ ତାକୁ ସୁଲଙ୍କା ଗଡ଼ ଦେଲା ।
ସେ ସୁଲଙ୍କା ଗଡ଼ ଯେ ଲଙ୍କାର ଆୟତନ
ତାହାର ତଳେ ଜ୍ୟୋତି ଲଙ୍କା ଅଛି ପୁଣ ।

ସେ ଜ୍ୟୋତି ଲଙ୍କା ଅଟେ ଅଲଙ୍କା ଆୟତ
ଏ ବେନି ଗଡ଼େ ଏକମୁଖା ହେଲା ରାଜନ ।
ରାବଣର ନାତି ଯେ ଶାଳକ ପୁଣ ହେଲା
ବିଂଶପାଣି ଏକ ମୁଖା ରାବଣ ନାମ ଦେଲା ।
ମୋହର କୁଳ ଗୋତ୍ର ଏ ରୂପେ ଅଟେ ସାର
ମୋତେ ଘରଣୀ କଲେ ପାଇବୁ ସୁଖବଡ଼ ।
ବୋଲଇ ଯେ ବୃଦ୍ଧାନାରୀ ଅଟୁ ତୁ ଅବଳା
ଇନ୍ଦ୍ରର ଶଚୀ କେମନ୍ତେ ସବୁଦିନେ ଦ୍ୱରା ।
ବ୍ରହ୍ମାଙ୍କର ବେନିନାରୀ ସବୁଦିନେ ଯୁବା
ବିଷ୍ଣୁଙ୍କର ପାଟରାଣୀ କମଳା ଅଟେ ଶୋଭା ।
ଈଶ୍ୱରଙ୍କର ନାରୀ ଅଟନ୍ତି ପାର୍ବତୀ
ସବୁଦିନେ ନବଯୁବା ପତିରେ ଭକତି ।
ଛପନ ଯୁଗକୁ ଯେ ମୋହର ଆୟୁଷ ପୁଣ
ପ୍ରଥମ ବୟସ ମୋତେ ଭୋଗହେଲା ଜାଣ ।
ମୋତେ ବିଭାହେଲେ ମଞ୍ଜେ ସୁଖେ ହେବୁରାଜ ।
ଭାଇମାନେ ମୋହର କରିବେ ପାଦେ ପୂଜା ।
ଏ ଯେଉଁ ପାଞ୍ଚଗଡ଼ର ମୁଁ କହିଲି ଯେ ନାମ
ଏ ଚାରି ରାବଣକୁ ଦେବତା ଖଟେ ପୁଣ ।
ସୁବର୍ଣ୍ଣ ଅଷ୍ଟରତ୍ନ ପୁର ସବୁଙ୍କରି
ପ୍ରତିଦିନ ମେଘ ଯେ ବରଷେ ଉଇଁକରି ।
ଆହୁରି କଥା ମାନ କହିବି ଆଉ କିସ
କହିଲେ ସରିବନି ଶତେକ ବରଷ ।
ଏ କୁଳକୁ ସେ ଗଡ଼ ଶତେ ଯୂଣ ଛଡ଼ା
ଅନ୍ୟ ଲୋକ ଯିବାକୁ ନାହିଁ ପର୍ବତ ଲତାହୁଡ଼ା ।
ଅକଳିତ ପାଣି ଯେ ଥଳ କୂଳ ନାହିଁ
ଏ ରୂପେ ଚାରିଲଙ୍କା ଶୁଣହେ ରଘୁସାଇଁ ।
ଅଲଙ୍କା ଦୁଇଜଣ ଛଡ଼ା ଏ କୂଳକୁ
ଆଉ ଦୁଇ ଲଙ୍କା କଥା କହିବି ତୁମ୍ଭଙ୍କୁ ।
ସୁଲଙ୍କା ସତେ ଯୂଣ ଜ୍ୟୋତି ଲଙ୍କାଶତେ
ଅକଳିତ ବାରାନିଧି ଅଛନ୍ତି ନିଶ୍ଚିନ୍ତେ ।
ମୋର ସଙ୍ଗେ ଯେବେ ହେବ ତୁମ୍ଭେ ପ୍ରୀତିଭାବ
ଭାଇକହି ମରାଇବି ଜମ୍ବୁଦ୍ୱୀପ ରାଜା ସର୍ବ ।
ଏକାକେ ଜମ୍ବୁଦ୍ୱୀପେ ହୋଇବୁ ତୁ ରାଜା
ତିନିପୁରେ ଲୋକ ତୋତେ କରିବେ ପାଦପୂଜା ।
ବିଭୂତି ଗୋଟିକ ଯେ କରିବୁ ବଇଭୋଗ ।
ଏତେ ସୁଖ ପ୍ରାପତ ବିଧାତା କଲା ଯୋଗ ।

ମୋହର ସ୍ୱାମୀ ହେଲେ ପାଇବୁ ତୁ ଯଶ
ଉଠ ହେ ଦାଶରଥି କୋଳ କରିଣ ବସ ।
ଶ୍ରୀରାମ ବୋଇଲେ ତୁ ଯେ ସୂର୍ପଣଖା ଶୁଣ
ବିଶ୍ରବା ଋଷିର ଯେବେ ଦୁହିତା ଅଟୁ ପୁଣ ।
ଏକଭାଇ ଦେବତା ଦୁଇଭାଇ ରାକ୍ଷସ
ସାନଭାଇ ଗୋଟି ତୋର ହୋଇଲା ମନୁଷ୍ୟ ।
ଋଷି କିମ୍ବା ଦେବତାଙ୍କୁ ନ ଦେଲେ ଯେ ତୋତେ
ଋଷିଙ୍କି ତୁ ନ କରିଲୁ କେବଣହିଁ ମତେ ।
ରାଜାମାନଙ୍କୁ ସେ ନ କଲେ କିମ୍ପା ବିଭା
କହିବାର କଥା ତ ଦିଶୁନାହିଁ ଶୋଭା ।
ଏକ ଲୋକର ଯେବେ ହୋଇଥାନ୍ତୁ ଭଗ୍ନୀ
ଅସୁର ରାଜାଙ୍କୁ ବିଭା ହୋଇଥାନ୍ତୁ ପୁଣି ।
ଋଷିର ନନ୍ଦିନୀ ଯେବେ ହୋଇଥାନ୍ତୁ ତୁହି
ଦେବତାଙ୍କୁ ବିଭା ଯେ କରାଇ ଥାନ୍ତେ ସେହି ।
ବୃଦ୍ଧା ସ୍ତିରୀ ହୋଇ ତୁହି ଅବେଭାର କହୁ
ବାଳୁତ ପୁଅ ଆମ୍ଭେ ବିଚାରେ ନ ରହୁ ।
ସମକକ୍ଷ ହୋଇ ହେଲେ ଧର୍ମସିନା ସହେ
ଅଧର୍ମ କଥା କିମ୍ପା କହୁଛ ଗୋ ମାଏ ।
ଦେଖ ଜାନକୀ ମୋ ଘରଣୀ ଅଟେ ମୋ ସରିସା
ଷୋଡ଼ଶ ବୟସେ ଯେ ଅଟେ ଦେବୀ ସୀତା ।
ଶ୍ରୀରାମ ବୋଲନ୍ତି ଋଷିଙ୍କ ଜେମା ଶୁଣ
ଜାନକୀର ଅଛି ତହିଁ ଅନେକ ଯେ ଗୁଣ ।
ମୋହରନିମନ୍ତେ ସେ ଯେ ଅଛି ମୋତେ ମୋହି
କେବେ ହେଁ ଏହାକୁ ମୁଁ ଛାଡ଼ି ନ ପାରଇ ।
ଏ ଦେହ ସମର୍ପିଛି ମୋର ସତ୍ୟବାଣୀ
ଏତେ କହି ରାମ ଯେ କରନ୍ତି ନାସ୍ତିବାଣୀ ।
ଋଷିର ଦୁହିତା ଯେ ଅଟେ ବଡ଼ ଦୁଃଖୀ
ବନସ୍ତକୁ ଗୋଡ଼ାଇ ଆସିଛି ଚନ୍ଦ୍ରମୁଖୀ ।
ଦୁଃଖରେ ଦିନ ହରଇ ମୋର ସଙ୍ଗେଥାଇ
କେବେହେଁ ଏହାକୁ ମୁଁ ଛାଡ଼ି ନ ପାରଇ ।
ପ୍ରାଣ ଏ ସମର୍ପିଛି ଏ ମୋର ଅଟେ ସତ୍ୟ
ଜାନକୀ ଛାଡ଼ି ମୁଁ ଯେ ନ ପାରେ କଦାଚିତ ।
ମୋତେ ସୂର୍ପଣଖା ଗୋ ଆଶା ନ କର ଆଉ
ଅନେକ ପ୍ରକାରେ ବୋଧ କରନ୍ତି ରାମରାହୁ ।
କାକୁସ୍ଥ ହୋଇଣ ତାକୁ ଅନେକବୋଧ ଦେଲେ
ରାମର ନିରାଶ ବାଣୀ ରାକ୍ଷସୀ ଜାଣିଲେ ।
ମନରେ ବିଚାରିଲା ନୋହିଲା କାର୍ଯ୍ୟ କିଛି
ସତ୍ୟ ରଖି ମୋତେ ଏ କଲେ ନିରିମାଖୀ ।
ଏତେଭାଳି ନିଜରୂପ ଧଇଲା ଯେ ବାଳୀ
ପ୍ରତିଜ୍ଞା କରିଣ ସେ ବୋଲଇ ଆଷ୍ଟକରି ।
ଏହାକୁ ଖାଇଲେ ତୋର ଗରବ ସରଇ
ଏତେ ବୋଲି ଜାନକୀର ଉପରେ ପଡ଼ଇ ।
ଦେଖିଣ ରଘୁନାଥ ମନେ କଲେ ଭୀତି
ଡାକନ୍ତେ ଲକ୍ଷ୍ମଣଙ୍କୁ ମିଳିଲେ ଝଟତି ।
ସୁମିତ୍ରାର ନନ୍ଦନ ଯେ ଓଳଗିଲା ଆସି
ଶ୍ରୀରାମ ବୋଇଲେ ତ ଦୁଷ୍ଟ ଏ ରାକ୍ଷସୀ ।
ସୀତାଙ୍କୁ ଡରାଏ ଏବେ ତୁହି ଯାକୁ ଚାହାଁ
କୁରାଳ ଚକ୍ର ପ୍ରାୟ ବୁଲାଇ ବେନି ବାହା ।
ନାସିକା ଶ୍ରବଣ ବେଗ ଛେଦ ଯେ ଏହାର
ଶୁଣିକରି ଲକ୍ଷ୍ମଣ ଧରିଲେ ଧନୁଶର ।
ବାଳଧରି ଲକ୍ଷ୍ମଣ ଅସୁରୀ ତଳେ ପାଡ଼ି
ଭୟରେ ଅସୁରୀ ଯେ ଛାଡ଼େ ସିଂହରଡ଼ି ।
ନାସିକା ଶ୍ରବଣ ଯେ ଛେଦିଲେ ଲକ୍ଷ୍ମଣ
ଦିଶିଲା ଅସୁନ୍ଦର ଅତି ଅପ୍ରଛନ୍ନ ।
ରୁଧିର ଖଳ ଖଳ ବହେ ସେ ସଳଖେ
ବିରୂପକୁ ଦେଖି ହସନ୍ତି ରଘୁନାଥେ ।
ଲକ୍ଷ୍ମଣଙ୍କୁ ବୋଇଲେ ଛାଡ଼ିଦିଅ ଏ ଯାଉ
ଦୋଷୀକୁ ଉଚିତ ଦଣ୍ଡ ପାଇଲାଣି ଏହୁ ।
ପ୍ରାଣରେ ମରନ୍ତା ଆଜ ସ୍ତିରୀ ନୋହିଥିଲେ
ଧର୍ମହିଁ ନୋହିବ ଆମ୍ଭେ ସ୍ତିରୀ ବଧକଲେ ।
ଲକ୍ଷ୍ମଣ ବୋଇଲେ ଦେବ ଶୁଣ ମୋର ବାଣୀ
ଏହି ରାକ୍ଷସୀକି ଯେ ପକାଇବା ହାଣୀ ।
ବେଳରେ ରାକ୍ଷାସୁଣୀ କରିବ ବଡ଼ ମନ୍ଦ
ଭାଇ ବଡିସିଆଙ୍କୁ କହି କରିବ ଏ ଦ୍ୱନ୍ଦ୍ୱ ।
ଅସୁରୀକି ମାଇଲେ ନାହିଁ ସେ ସ୍ତିରୀହତ୍ୟା
ବିଶ୍ୱାମିତ୍ର ଯାଗେ ପରା ମାର ଯେ ତାଡ଼କା ।
ସେ ଅସୁରୀ ତ ଅଟଇ ଜାତିରେ ସୁବତୀ
ତେଡ଼େ ମୁନିର ଓପ୍ରୋଧ ନୋହିଲା ରଘୁପତି ।
ବୋଇଲେ ଅସୁରୀକି ମାଇଲେ ଭଲକଥା
ଧରଣୀ ନ ସହଇ ଜୀବନରେ କର ବ୍ୟଥା ।
ଉଚିତ ଧର୍ମରେ ଯେ ନ ରହେ ଅସୁରୀ
ତେଣୁକରି ତାକୁ ମାଇଲ ଚାପଧାରୀ ।

ଏହାକୁ ମାରିବାକୁ କିମ୍ପାଇ କର ମନା
ଅନେକ ଛନ୍ଦକଥା କହୁଥିଲା ସିନା ।
ଗରିଷ୍ଠ ଅସୁରର ଅଟେ ଏ ଭଉଣୀ
ଚାରି ରାବଣ କଥା କହିଲା ତୋତେ ପୁଣ ।
ସିନ୍ଧୁର ଭିତରେ ପରା ଅଟେ ଯାର ଘର
ଦୁଷ୍ଟପଣ ଦେଖି ପିତା ନ ରଖେ ତାହାର ।
ଭାଇମାନେ ଦୁଷ୍ଟ ତା'ର ମାତାହିଁ ବିଟୋଳି
ଗିରସ୍ତକୁ ତେଜ୍ୟାକରି ପୁତ୍ରଙ୍କ ସଙ୍ଗେ ମିଳି ।
ଏ ନାରୀ ଯାହାକୁ ଯେ ଗିରସ୍ତ କରଇ
ସେହି ପୁରୁଷକୁ ନିଶ୍ଚୟ ଏ ନାରୀ ଭକ୍ଷଇ ।
ନୋହିଲେ କି ଚଉଦଗଣ୍ଡା ଯୁଗ ଗଲା
ଏ ନାରୀକି ଚଉଦିଗେ ବର ନ ମିଳିଲା ।
ପଦ୍ମପୁଷ୍ପ ପ୍ରାୟ ଯେ ଅଟଇ ଏହୁ ନାରୀ
ଫଳରେ ଯେସନେ ପଦ୍ମବନ ହେରି ।
ପୁରୁଷକୁ ଜଳର ଭିତରେ ଲୋଡ଼େ ପୁଣ
ସେ ବୃକ୍ଷରେ ପୁଷ୍ପ କାହୁଁ ଫୁଟେ ରାମରାଣ ।
ଶୁଭ୍ରଦେଖି ଭ୍ରମର ମିଳେ ଯାଇ ତହିଁ
ଶରୀର ମର୍ମପାଇ ଭିନ୍ନାଭିନ୍ନ ନାହିଁ ।
ପ୍ରୀତି କୁମୁଦ ହୋଇ କରାଇ ପ୍ରୀତି ଲୀଳା
କେତେବେଳରେ ତାର ଖସଇ ବୀର୍ଯ୍ୟପରା ।
ସେହି ବୀର୍ଯ୍ୟ ଗର୍ଭରେ ପଡ଼ନ୍ତେ ପୁଷ୍ପର
ଗର୍ଭବାସ ହେଲେ ଯେ ମୁହାଁସ ଭାଗେ ତାର ।
ତେତେବେଳେ ବିଚାରଇ ମନରେ ଯେ ପୁଷ୍ପ
ଏ ପୁରୁଷ ମୋହର ଶରୀର କଲା ଧ୍ୱଂସ ।
ମୁହିଁ ଏହାକୁ ପ୍ରୀତିରେ ରସାଇ ମାରିବି
ଛାଡ଼ିଦେଲେ ସପତଣୀ ଆପେ ମୁଁ ଲୋଡ଼ିବି ।
ନୋହୁ ସପତଣୀ ମୋର ଗିରସ୍ତ ପଛେ ମରୁ
ମୋତେ ପଛେ ଅଯଶ ଏ ସଂସାରରେ ମିଳୁ ।
ଏମନ୍ତ ବିଚାରି ସେ ଭ୍ରମର ବାଦ କରେ
ଚାରିଆଡ଼େ ମୁଦିଣ ସେ ରଖଇ ଗର୍ଭରେ ।
ବନ୍ଧନ ପାଶ ଘେନି ବନ୍ଧାଇ ଭ୍ରମରକୁ
ଭ୍ରମର ଶରୀର କ୍ଷୀଣ ରମଣ ରତି ରସୁ ।
ଆସକ୍ତ ହୋଇଣ ମରେ ସେ ପୁରୁଷ
ପୁରୁଷ ହତ୍ୟା ଦୋଷ ବହେ ସେହୁ ପୁଷ୍ପ ।
ତେଣୁ ସେ ଅଧର୍ମ ବୋଲାଏ ସେହୁ ନାରୀ
ସେହୁ ପୁଷ୍ପପ୍ରାୟ ସିନା ଅଟଇ ଅସୁରୀ ।

ଶ୍ରୀରାମ ବୋଇଲେ ଯେ ପୁଷ୍ପ ମାଗଇ ଗିରସ୍ତ
ଅଧର୍ମ ପୁଷ୍ପ ବୋଲି ବୋଲନ୍ତି ଜଗତ ।
ସେଥିର ସକାଶରୁ ଦଣ୍ଡ ତାକୁ ହୋଇ
ସପତଣୀ ତାହାକୁ ଅନୁକ୍ଷଣେ କହି ।
ନିଶ୍ଚିନ୍ତ ହେବାରୁ ତାର ନୁହଇ ନିଶ୍ଚଳ
ସପତଣୀ ଚିନ୍ତାରେ ସେ ହୁଅଇ ବିକଳ ।
ସପତଣୀ ବୋଲରେ ଥାଏ ଅନୁକ୍ଷଣ
ସପତଣୀ ଚରଣେ ଶରଣ ତାର ପୁଣ ।
ଗିରସ୍ତର ରିପୁ ଯେ ଧରି ସପତଣୀ
ସେ ପଦ୍ମ ବନକୁ ମାରଇ ପାଞ୍ଚୁ ପୁଣି ।
ସେ ଗିରସ୍ତ ଚିନ୍ତାରେ ଆପେ ଯାଏ ସୁଖୀ
ତେଣୁ ସେ ପଦ୍ମବନ ମରେ ତଳେ ଲୋଟି ।
ଏଥୁ ଅନନ୍ତରେ ଶୁଣ ଚାପଧାରୀ
ସେ ପୁଷ୍ପ ଅଛି ତାହା ଶୁଣ ହେ ବିସ୍ତାରି ।
କଣ୍ଟକୀ ପୁଷ୍ପ ଅଟେ କେତକୀ କିଆ ପୁଣି
ଫୁଟିଲେ ସେ ପୁଷ୍ପ ଗିରସ୍ତ ଯାଏ ପୁଣି ।
ସ୍ୱାମୀକି ଦେଖିଣ ସେ କରଇ ବିନତି
ଶତେବାର ପରିଯନ୍ତେ ଓଳଗିଲେ ସତୀ ।
ବୋଲଇ ପ୍ରାଣନାଥ ମୋର ବୋଲ ଘେନ
ତୁମ୍ଭେ କୁଶଳେ ଥିଲେ ମୁଁ ସାଧବୀ ଜାଣ ।
ମୋହର ଶରୀର ଯେ ଅଟେ କଣ୍ଟା ଗାତ୍ର
ମୋହଠାରେ ବୁଦ୍ଧି କିମ୍ପା କରୁଛ ଏମନ୍ତ ।
ଏ କଥାକୁ ବିଚାର କର ସ୍ୱାମୀ ମୋର
ମୋହଠାରେ ଦୁଃଖ ତୁମ୍ଭେ କରୁଛ ଅପାର ।
ଶୁଣିକରି ଭ୍ରମର ଯେ କହଇ ବଚନ
କେମନ୍ତେ ତୋତେ ମୁଁ ଯେ ତେଜିବି ହେ ପୁଣ ।
କେତକୀ ବୋଲଇ ଯେ ନ କରିବ ତେଜ୍ୟା
ଅଲଗା ତୁମ୍ଭେ ଚୁମ୍ବ ହେ ପୁଷ୍ପରାଜା ।
ଶୁଣିଣ ଭ୍ରମର ଅଲଗେ ଥାଇ ଚୁମ୍ବି
ସେ ପୁଷ୍ପର ମନ ରମଇ ମନ ସ୍ତମ୍ଭୀ ।
କଣ୍ଟା ପୁଷ୍ପ ଭଲପଣ ସ୍ୱାମୀର ଏତେ ସୁଖ
ପଦ୍ମପୁଷ୍ପ ହୋଇକରି ସ୍ୱାମୀରେ ଦିଏ ଦୁଃଖ ।
ସେ ପଦ୍ମ ପୁଷ୍ପ ଅଟେ ଏହି ଯେ ଅସୁରୀ
କହିଣ ଶ୍ରୀରାମ ଲକ୍ଷ୍ମଣେ ବୋଧକରି ।
ବୋଇଲେ ଅସୁରୀ ହସ୍ତେ କି କରିବ କରୁ
ଧର୍ମବନ୍ତ ଲୋକର ଧର୍ମ ଯେ ମହାମେରୁ ।

ସେ ଯେବେ ଅଧର୍ମରେ ହୋଇବ ପ୍ରବେଶ
ପଦ୍ମପୁଷ୍ପ ପ୍ରାୟେ ଯେ ହୋଇବ ପୁଣ ନାଶ ।
ଶ୍ରୀରାମ ଆଜ୍ଞାରେ ଲକ୍ଷ୍ମଣ ତାକୁ ଛାଡ଼ି
ପଳାଏ ସୂର୍ପଣଖା କରିଣ ଘୋରରଡ଼ି ।
ଉଚ୍ଚସ୍ୱରେ ରୋଦନ କରିଣ ସେହୁ ଗଲା
ଲଙ୍କା କଟକରେ ଯାଇ ପ୍ରବେଶ ହୋଇଲା ।
ଯାଇଣ ଖରଦୂଷଣ ଆଗରେ କହଇ
ଦେଖିଣ ଚକିତ ଯେ ହୋଇଲେ ବେନିଭାଇ ।
ପଚାରନ୍ତି ସୂର୍ପଣଖା ଏ କେମନ୍ତ ଚରିତ
କେଉଁଠାରେ ଏ କଥା ତ ହୋଇଲା ଏମନ୍ତ ।
ଅକାରଣେ ମୃତ୍ୟୁ ଏବେ ହୋଇବ କାହାର
ତାର ରକତ ଖାଇବାକୁ ମେଦିନୀ ବିଚାର ।
ସୂର୍ପଣଖା ବିକଳେ କାନ୍ଦେ ମହୀ ଲୋଟି
ହା ହା ଭାଇ ବୋଲିଣ ଧୂଳି ସେ ସାଉଁଟି ।
ବୋଇଲା ଦଶରଥ ଅଯୋଧ୍ୟାର ରାୟେ
ଶ୍ରୀରାମ ଲକ୍ଷ୍ମଣ ବୋଲି ତାହାର ତନୟେ ।
ଶ୍ରୀରାମ ଭାରିଯା ସୀତାନାମେ ନାରୀ
ରୂପଗୁଣେ ସୁନ୍ଦର ସମ ନାହିଁ ତିନି ପୁରୀ ।
ବନଗିରି, ପର୍ବତ ଯେ ମୁହିଁ ବୁଲୁଥିଲି
ଗୋଦାବରୀ ନଦୀ କୂଳରେ ମିଳିଲି ।
ପଞ୍ଚବଟୀ ବନରେ ମୁଁ ତାହାଙ୍କୁ ଦେଖିଲି
ମହୁମାଂସ ଦେଖିଣ ମୁହିଁ ଲୋଭକଲି ।
ଗୁପତରେ ଗଲି ମୁଁ ତାହାଙ୍କର ପାଶ
ସେ ମୋହର ନାସିକା ଶ୍ରବଣ କଲେ ନାଶ ।
ଏବେ ମୋର ମାନ ଉଦ୍ଧରିବ ଆଜ
ତେବେ ସିନା ଯିବ ତୁମ୍ଭର କୁଳ ଲାଜ ।
ଶ୍ରୀରାମ, ଲକ୍ଷ୍ମଣ ଦୁହେଁ ଅଟନ୍ତି ଜଟାଧାରୀ ।
ସ୍ତିରୀବୋଲି ଛାଡ଼ିଦେଲେ ସେ ପ୍ରାଣରେ ନମାରି
ତୁମ୍ଭକୁଳେ ଜାତହୋଇ ହେଲି ହୀନିମାନ
ବେଗେ ଆସ ଭାଇରେ ଉଦ୍ଧର ମୋର ମାନ ।
ଶୁଣିଣ ଖର ବଚନ ତାରେ କହି
ଅଲଙ୍କା ପଲ୍ଲୀକୁ ଯାଅ ତୁ ବେଗ ହୋଇ ।
ଦୁଷଣ ଆଗରେ କହ ତୁ ଏ କଥା
ବଳ ସାଜି ଆସୁ ମୋ ଭାଇ ସାମରଥା ।
ଶୁଣିଣ ସୂର୍ପଣଖା ବେଗେ ଚଳିଗଲା
ଅଲଙ୍କା ପଲ୍ଲୀରେ ଯାଇ ପ୍ରବେଶ ହୋଇଲା ।
ଦେଖିଣ ଦୂଷଣ ଯେ କ୍ରୋଧରେ ପ୍ରଜ୍ୱଳିତ
କେ ତୋତେ ଏ ଦଶାଦେଲା ବୋଲିଣ ପଚାରିତ ।
ସୂର୍ପଣଖା ବୋଲେ ଦଶରଥ ବେନିସୁତ
ନାସିକା ମୋର ଶ୍ରବଣ କଲେ ହତ ।
ଅଯୋଧ୍ୟାରେ ଦଶରଥ ଅଟନ୍ତି ନୃପତି
ଚାରି କୁମର ଯେ ତାହାର ଉତପତ୍ତି ।
ବେନି କୁମର ଯେ ବନକୁ ବୁଲି ଆସେ
ପଞ୍ଚବଟୀ ବନରେ ଅଛନ୍ତି ହରଷେ ।
ସୁକୁମାର ରୂପ ଦେଖି ତାକୁ ଲୋଭକଲି
ପାଇବି ବୋଲି ମୁଁ ଯେ ତାହାଙ୍କ ପାଶେ ଗଲି ।
ସେ ମୋତେ ଧରିଣ ନାସା ଶ୍ରବଣ ଛେଦିଲେ
ଭାଇ ବାପ ଆଗରେ କହ ଯା ବୋଇଲେ ।
ତେଣୁ ତୋର ଆଗରେ ଭାଇ ମୁଁ କହିଲି
ଶୁଣିଣ ଖରବୀର କହଇ ପ୍ରଜ୍ୱଳି ।
ଦୂଷଣ ଭାଇକୁ କହିଣ ଘେନିଆସ
ସୈନ୍ୟବଳ ଘେନିଣ ଆସୁ ମୋର ପାଶ ।
ଶୁଣିକରି ଦୂଷଣ ସୈନ୍ୟ ସଜ କଲା
ପାଞ୍ଚ ସହସ୍ର ବଳ ଯେ ତକ୍ଷଣେ ସାଜିଲା ।
ଟମକ ନିଶାଣ ଯେ ଭୋଡ଼ଙ୍ଗ ବୀର ବାଜା
ଶଙ୍ଖ ମହୁରୀ ଯେ ବଳକଲା ତେଜ୍ୟା ।
ବାହାର ହୋଇଲେ ସେ ଦୂଷଣ ମହାବୀର
ଧନୁଶର ହସ୍ତରେ ଧରିଣ ତାହାର ।
ଧବଳ ରଥ ଉପରେ ଦୈତ୍ୟ ବିଜେକଲା
ନିଶରେ ହାତମାରି ମୁକୁଟ ବାନ୍ଧିଲା ।
ସୂର୍ପଣଖାକୁ ଚାହିଁ କହଇ ବଚନ
ବିଲଙ୍କା ପଲ୍ଲୀଯାଏ ଯାଅ ତୁ ବହନ ।
ତ୍ରିଶିରା ଭାଇକୁ କହିବୁ ପୁଣ ଯାଇ
ତୋର ନାସା ଶ୍ରବଣ ତାହାକୁ ଦେଖାଇ ।
ବୋଲିବୁ ଦୁଇଭାଇ ହୋଇଲେଣି ସଜ
ଦଶରଥ ପୁତ୍ରହେଲେ ଆମ୍ଭଙ୍କୁ ରିପୁ ଆଜ ।
ସୈନ୍ୟବଳ ଘେନିଣ ତୁମ୍ଭେ ବେଗେ ଆସ
ରାମଲକ୍ଷ୍ମଣଙ୍କୁ ଯେ କରିବା ବିନାଶ ।
ଶୁଣିକରି ସୂର୍ପଣଖା ବେଗେ ଚଳିଗଲା
ବିଲଙ୍କା ପଲ୍ଲୀରେ ଯାଇ ପ୍ରବେଶ ହୋଇଲା ।
ତ୍ରିଶିରାକୁ ଦେଖିଣ ବୋଲେ ସୂର୍ପଣଖୀ
ତୁମ୍ଭେ ଥାଉଁ ମୁଁ ଯେ ହୋଇଲି ନିରିମାଖୀ ।

ତ୍ରିଶିରା ବୋଲଇ କହ ସୂର୍ପଣଖୀ
କିଏ ତୋତେ ଏ ଦଶାଦେଲା ଲୋ ଶଶୀମୁଖୀ ।
ସୂର୍ପଣଖା ବୋଲେ ଭାଇ କି କହିବି ତୋରେ
ଜାଣି ସଜ ହୋଇଲେଣି ଖର ଦୂଷଣ ବୀରେ ।
ତ୍ରିଶିରା ବୋଇଲା ଏ କିସ ବିପରୀତ
ନାସା ଶ୍ରବଣ ତୋର କେ ଛେଦିଲା କହତ ।
ସୂର୍ପଣଖା ବୋଇଲା ଶୁଣ ଭାଇ ମୋର
ସପତ ଦ୍ୱୀପେ ମୁହିଁ ବୁଲେ ନିରନ୍ତର ।
ସାତଦିବସେ ମୁଁ ଯେ ନର ମାଂସ ଖାଇ
ଆଉ ଦିନମାନ ଫଳ ମୂଳରେ ସାରଇ ।
ସାତବରଷ ହେଲା ରହିଲି ତୁମ୍ଭପୁରେ
ଭ୍ରମିଣ ନରମାଂସ ଖାଏ ଏ ଦ୍ୱୀପରେ ।
ଆଜକୁ ଚାରିଦିନ ହୋଇଲା ଯେ ଜାଣ
ଗୋଦାବରୀ ତଟରେ ମୁଁ ଦେଖିଲି ଯାଇଣ ।
ଅଯୋଧ୍ୟା ରାଜ୍ୟର ଯେ ରାଜା ଦଶରଥ
ତାର କୋଳେ ଜନମ ଚାରିଗୋଟି ସୁତ ।
ବେନି ପୁତ୍ର ତାର ବନକୁ ଆସିଛନ୍ତି
ବେନି କୁମର ନିଜ ରାଜ୍ୟରେ ଅଛନ୍ତି ।
ପିତାର ବଚନେ ରାମ ଲକ୍ଷ୍ମଣ ବେନିଭ୍ରାତ
ଭାରିଯାକୁ ଘେନି ବନେ ବୁଲନ୍ତି ଅବିରତ ।
ତାହାଙ୍କୁ ଦେଖିବାରୁ ମୁଁ ଭକ୍ଷିବାକୁ ଗଲି
ସୁକୁମାରୀ ଭାରିଯାକୁ ତାହାର ଧଇଲି ।
ତହୁଁ ତା ସାନଭାଇ ଲକ୍ଷ୍ମଣ ମୋତେ ଧରି
ମୋହର ନାସା ଶ୍ରବଣ ଛେଦିଲା ବେଗକରି ।
ଛାଡ଼ି ଦେବାରୁ ମୁଁ ଆସିଲି ପଳାଇ
ଖର ଭାଇ ଆଗରେ କହିଲି ବୁଝାଇ ।
ମୋ ଅବସ୍ଥା ଦେଖି ଭାଇ ବଡ଼ କ୍ରୋଧକଲା
ସୈନ୍ୟବଳ ତାହାର ସକଳ ସଜକଲା ।
ମୋତେ ସେ କହିଲା ଯେ ଲଙ୍କାପଲ୍ଲୀ ଯାଅ
ଦୂଷଣ ଭାଇକି ସବୁ ବୁଝାଇଣ କହ ।
ଶୁଣିକରି ତାହାପାଶୁଁ ବେଗେ ମୁଁ ଆସିଲି
ଦୂଷଣ ଭାଇକି ସବୁ ବୁଝାଇଣ କହିଲି ।
ଦୂଷଣ ଭାଇ ମୋଠାରୁ ସମସ୍ତ ଶୁଣିଲା
କ୍ରୋଧଭର ହୋଇଣ ସୈନ୍ୟ ସଜକଲା ।
ଖରର ପୁରକୁ ଯେ ଚଳିଗଲା ସେହି
ମୋତେ ବୋଇଲା ତୁଲୋ ଯାଅ ବେଗହୋଇ ।

ତ୍ରିଶିରା ଭାଇ ଆଗରେ କହ ତୁ ସକଳ
ବେଗେ ଆସୁ ସଙ୍ଗରେ ଘେନି ସୈନ୍ୟ ବଳ ।
ତାହାଠାରୁ ଶୁଣି ମୁଁ ତୋ ପୁରକୁ ଆସି
ସୈନ୍ୟବଳ ଘେନି ବେଗେ ତୁ ଚଳସି ।
ଶୁଣିଣ ତ୍ରିଶିରା ସୈନ୍ୟ ସଜ କଲା
ଚାରି ସହସ୍ର ବଳ ତାର ସାଜିଣ ଆଣିଲା ।
ବାଦ୍ୟ, ନିଶାଣ, ଶଙ୍ଖ, ମହୁରୀ ବଜାଇ
ବାହାରିଲା ଟମକ ଭେରୀ ସେ ବଜାଇ ।
ଲୁହାର ରଥଗୋଟି ସେ ଦିଶେ କଳାବର୍ଣ୍ଣ
ସେ ରଥରେ ତ୍ରିଶିରା ବସିଲା ଯାଇଣ ।
ସାରଥିକି ବୋଇଲା ରଥ ବାହା ମୋର
ଖର ଭାଇକି ମୋର ଦେଖାଅ ସତ୍ୱର ।
ଶୁଣିକରି ସାରଥି ରଥ ବାହି ନେଲା
ଖର ପୁରେ ବହନ ପ୍ରବେଶ ହୋଇଲା ।
ରଥରୁ ଓହ୍ଲାଇଣ ତ୍ରିଶିରା ବେଗେ ଗଲା
ଖର ଦୂଷଣଙ୍କ ଛାମୁରେ ପ୍ରବେଶିଲା ।
ବିନୟେ ବେନି ଭାଇଙ୍କି ନମସ୍କାର କଲା
ଉଠିକରି ଖର ଦୈତ୍ୟ ତ୍ରିଶିରାକୁ ନେଲା ।
କୋଳରେ ବସାଇଣ କହିଲା ବୁଝାଇ
ରାବଣର ସୂର୍ପଣଖା ଭଉଣୀ ଅଟଇ ।
ଆମ୍ଭର ମାଉସୀ ପୁଅ ଭାଇ ସେ ଯୁକତେ
ତିନିପୁର ଜିଣିଲା ସେ ତାର ସାମରଥେ ।
ତାର ଭଉଣୀର ଦେଖ ନାକ କାନ କାଟି
ରାଜାର କୁମର କେଡ଼େ ବଳବନ୍ତ ସେଟି ।
ତାର ସଙ୍ଗେ ଚାଲ ଆମ୍ଭେ କରିବା ସମର
ତାକୁ ମାରି ତା ଘରଣୀକି ଆଣିବା ଆମ୍ଭପୁର ।
ସୁନ୍ଦରୀ ହୋଇଥିଲେ ରାବଣକୁ ଦେବା
ଜମ୍ବୁଦ୍ୱୀପରେ ଯାଇ ଆମ୍ଭେ ରାଜା ହେବା ।
ତ୍ରିଶିରା ବୋଇଲା ଯେ କିମ୍ପା ବନ ଆସେ
ଖର ବୋଇଲା ପିତା ପେଶିଲା ବନବାସେ ।
ବାପର ପୁଅର ନ ପଡ଼ିଲା ଯହୁଁ
ଦୁଇପୁଅ ବୋହୂକୁ ନ ରଖିଲା ତହୁଁ ।
ତ୍ରିଶିରା ବୋଇଲା ପୁଅ କେଉଁ ଦୋଷ କଲା
ଆପଣା ପୁଅକୁ କିମ୍ପା ବନକୁ ପେଶିଲା ।
ଖର ବୋଇଲା ସେ ରାଜା ରାଣୀରେ ପ୍ରୀତିହେଲା
ସେ ନାରୀ ଶୋଭା ସୁନ୍ଦର ଦେଖିଣ ରସିଲା ।

ସେ ରାଣୀ ଶିକ୍ଷାରେ ପୁଅ ବୋହୂ ନ ରଖିଲା
ଜଣାଗଲା ପୁତ୍ର ପୁଣ ଧର୍ମକୁ ଜିଣିଲା ।
ତ୍ରିଶିରା ବୋଇଲା ତାକୁ ନ ମାରିବାର କାର୍ଯ୍ୟ
ଧର୍ମଆଶ୍ରେ କରି ସେ ବୁଲନ୍ତି ବନରାଜ୍ୟ ।
ସୂର୍ପଣଖା ଅନ୍ୟାୟ ଯାଇଣ ତହିଁ କଲା
ନିଃସହାୟ ଲୋକଙ୍କୁ ଖାଇବ ବିଚାରିଲା ।
ଏହିରୂପେ ଅନେକ ପଥୁକୀ ଲୋଡ଼ିଖାଇ
ଅଧର୍ମ କରିବାରୁ ତା ନାସା କର୍ଣ୍ଣ କଟାହୋଇ ।
ଖର ବୋଇଲା ଭାଇରେ ଆମ୍ଭଙ୍କୁ ବଡ଼ ଦ୍ୱନ୍ଦ୍ୱ
ରାବଣ ଶୁଣିଲେ ଆମ୍ଭଙ୍କୁ ବଡ଼ ମନ୍ଦ ।
ବୋଲିବ ଭଉଣୀ ମୋର ତାଙ୍କର ନୁହେଁକି
ନଉକେଶା ସୁକେଶା ବେଗଳ ଅଟନ୍ତି କି ?
ତେଣୁକରି ମାରିବ ଆମ୍ଭଙ୍କୁ ଆସି ମନ୍ଦ
ତାର ସଙ୍ଗେ ଆମ୍ଭେ କରି ନ ପାରିବା ଦ୍ୱନ୍ଦ୍ୱ ।
ଦଶରଥ ନନ୍ଦନ କକ୍ଷା ଜଗଜେଠୀ
ସୂର୍ପଣଖାର ନାକ କାନ ପକାଇଲା କାଟି ।
ନ ମାରି ଜୀଅନ୍ତା ସେ ରଖିଲା କିମ୍ପାଇଁ
ଗଲା ମଲା କଥା ଯେ ଗୋଚର ନୁହଇ ।
ଆମ୍ଭ ଆଗେ ସୂର୍ପଣଖା କହିବାରୁ ପୁଣ
ରଣ କରିବାରତ ବେଗାର ଅଟେ ଜାଣ ।
ରଣ କରିବାରେ ଯେବେ ମରିବା ରାମହସ୍ତେ
ଅଚିନ୍ତା ସ୍ୱର୍ଗକୁ ଆମ୍ଭେ ଯିବାରେ ନିଶ୍ଚିନ୍ତେ ।
ରାବଣ ହସ୍ତେ ମଲେ କିଛି କାର୍ଯ୍ୟ ନାହିଁ
ଅନ୍ୟାୟରେ ଦଶଗ୍ରୀବ ମାରିଲରେ ଭାଇ ।
ତ୍ରିଶିରା ବୋଇଲା ତାହା କେମନ୍ତେ ଜାଣିଲୁ
ତାର ହସ୍ତେ ମଲେ ସ୍ୱର୍ଗ ଯିବାକୁ ବୋଇଲୁ ।
ଖର ବୋଇଲା ରାମ ସଙ୍ଗେ ଘୋରରଣ
ରଣ ଯୋଗେ ମଲେ ହେବ ସ୍ୱର୍ଗକୁ ପ୍ରୟାଣ ।
ଶୁଣିକରି ତ୍ରିଶିରା ପରମ ତୋଷ ହେଲା
ଚାଲ ଚାଲ ଯିବା ତାକୁ ମାରିବା ବୋଇଲା ।
ବସିବାର ଠାବରୁ ଉଠି ତିନିଭାଇ
ରଥମାନ ଚଢ଼ିଣ ସୈନ୍ୟ ସଙ୍ଗେ ଯାଇ ।
ଚଉଦ ସହସ୍ର ବଳ ଘେନିଣ ସଙ୍ଗରେ
ଚଳିଗଲେ ତିନିଭାଇ ହରଷ ମନରେ ।
ପ୍ରତିଜ୍ଞା କରିଣ ସେ କହନ୍ତି କୋପଭରେ
ମାର ମାର ଧର ଧର ଡାକ ନିରନ୍ତରେ ।
କେ ବୋଲଇ ତାଙ୍କର ପୂରିଲା ଏବେକାଳ
ସେ ବେନିଭାଇ ଆଜ ଯିବେ ଯମଆଳ ।
ତାହାଙ୍କର ରକତ ଖାଇବ ମେଦିନୀ
ସେ ଦୁଇଜଣଙ୍କୁ ଯମଦୂତ ଯିବେ ଘେନି ।
ସେ ଦୁଇଟା ତପସ୍ୱୀ କେଡ଼େ ଯେ ଅଜ୍ଞାନ
ଜାଣୁ ଜାଣୁ ପଶିଲେ ଜଳନ୍ତା ହୁତାଶନ ।
ମତ୍ତଗଜ ଛାମୁରେ ପଡ଼ିଲେ ସେ ଜାଣି
କାଳସର୍ପ ମୁଖରେ ଭରିଲେ ସେ ପାଣି ।
ସାଗର ପହଁରିବାକୁ ଭରସା ତାହାଙ୍କର
ଦେଖୁ ଦେଖୁ ଗରଳ କଲେ ସେ ଆହାର ।
ସୂର୍ପଣଖା ନାକ, କାନ ସାହସେ କାଟିଲା
ଶୃଗାଳ ହୋଇ ସେ ଯେ ସିଂହକୁ ଚାଳିଦେଲା ।
ଆଜ ଜଣାଯିବ ସେ କେଡ଼େ ପାରିବାର
କେତେ ବଳ ଧନୁ ଯେ ଧରଇ ବଳିଯାର ।
ଧାଇଁ ଦଉଡ଼ିଣ ଯେ ଯାଆନ୍ତି ଚିରାମାରି
ଏକକୁ ଆରେକ ଯେ ହୁଅନ୍ତି ଆଗସରି ।
ବନ ପରବତ ଯେ କମ୍ପନ୍ତି ପାଦଭରେ
ବାସୁକୀଦେବତା ଶିର ନ ଟେକଇ ଡରେ ।
ବନଚର ଜୀବମାନେ ପଳାନ୍ତି ଭୟକରି
ପାଦଘାତରେ ପାଷାଣ ହୋଇଯାନ୍ତି ଚୂରି ।
ଧୂଳି ଉଡ଼ିବାରେ ନଦିଶେ ଗଗନ
ମୁଖରାବ ଶବଦ ଶୁଭଇ ଘନ ଘନ ।
ସୂର୍ପଣଖା ଆଗରେ କଢ଼ାଉଛି ବାଟ
ତାର ପଛେ ତିନି ଭାଇଙ୍କର ଲାଗିଛନ୍ତି ଥାଟ ।
ଶ୍ରୀରାମଙ୍କୁ ଲକ୍ଷ୍ମଣ ଜଣାଇଲେ ଯାଇ
ତାହାର ତୁଣ୍ଡ ଚହଳ ଶୁଭୁଛି ଗୋସାଇଁ ।
ପାଦଭରେ ଦଲ ଦଲ କମ୍ପେ ବସୁମତୀ
କେବଣ କାରଣ ଏ ବୁଝିବେ ଦାଶରଥି ।
ଶୁଣିଣ ଶ୍ରୀରାମ ଯେ ଉଚ୍ଚାଟ ମନ ହୋଇ
କିମ୍ଭୁତ କଥା ବୋଲି ମନରେ ଭାଳଇ ।
ପିଆଶାଳ ବୃକ୍ଷରେ ଜଟାୟୁଷ ଥିଲେ
ତାହାଙ୍କୁ ଶ୍ରୀରାମ ଯେ ବଚନ ପୁଛିଲେ ।
ପକ୍ଷୀଜଟା ବୋଇଲା ଶୁଣ ଦାଶରଥି
ସୂର୍ପଣଖୀର ନାକ, କାନ କାଟିଲା ସଉମିତ୍ରୀ ।
ଏ ସ୍ଥାନରୁ ଅସୁରୀ ଲାଜେ ପଳାଇଲା
ପୂର୍ବମୁଖା ହୋଇ ସେ ପଥ ବହିଗଲା ।

ଅଠର ଯୂଣ ଗଲା ସେ ସାତ ଘଡ଼ିରେ
ଲଙ୍କପଲ୍ଲୀ ବୋଲିଣ ଅଛି ଏକୂଳରେ ।
ସେ ପଲ୍ଲୀରେ ଅର ଅସୁର ଘରକରି
ରାବଣ ଅଇଲେ ପୁଣ ସେ ପୁର ସମ୍ଭାଳି ।
ପାଞ୍ଚ ସହସ୍ର ଘର ସେ ନବର ଅଟଇ
ସେଠାରେ ଖରଦୈତ୍ୟ ସୈନ୍ୟ ଘେନି ରହି ।
ଆଉ ନଗର କଥା ଶୁଣ ରଘୁସାଇଁ
ଏକଇ ନଗରେ ଦୂଷଣ ଅଛି ରହି ।
ସିନ୍ଦୂର ଭିତରେ ଯେ ଅଲଙ୍କାଗଡ଼ ଅଛି
ସେଥିରେ ଶତେମୁଖା ରାବଣ ରହିଛି ।
ଯେତେବେଳେ ଜମ୍ବୁଦ୍ୱୀପକୁ ସେ ଆସେ ପୁଣ
ଅଲଙ୍କା ପଲ୍ଲୀରେ ସେ ରହେ କିଛିଦିନ ।
ଜାତିକୁଳ ଘେନିଣ ହରଷେ ବିହରଇ
ମାସେ ପକ୍ଷେ ରହିଣ ନିଜଗଡ଼େ ଯାଇ ।
ପାଞ୍ଚସସ୍ର ଘର ଯେ ସେଥିରେ ପ୍ରମାଣ
ଦୂଷଣ ଦୈତ୍ୟ ସେଠିଅଛି ଆବୋରିଣ ।
ବିଲଙ୍କା ପଲ୍ଲୀ ବୋଲି ଗୋଟି ପଲ୍ଲୀ ଅଛି
ସେଥିରେ ତ୍ରିଶିରା ନଗର କରିଛି ।
ସହସ୍ର ମୁଖା ରାବଣର ବିଲଙ୍କା ନାମ ଗଡ଼
ଜମ୍ବୁଦ୍ୱୀପକୁ ଅଇଲେ ରହେ ସେ ସେଠାର ।
ଖର ଦୂଷଣ ତ୍ରିଶିରା ତିନିଭାଇ ଜାଣ
ସେହି ତିନି ପଲ୍ଲୀରେ ରହନ୍ତି ସୁଖେଣ ।
ସେ ତିନି ଦୈତ୍ୟ ଅଟନ୍ତି ରାବଣର ଭାଇ
ସୂର୍ପଣଖାର ସେମାନେ ମାଉସୀପୁଅ ଭାଇ ।
ସୂର୍ପଣଖା କହିବାରୁ ସେମାନେ ଆସନ୍ତି
ଅନେକ ସୈନ୍ୟବଳ ସଙ୍ଗରେ ଅଛନ୍ତି ।
ତୁମ୍ଭର ସଙ୍ଗେ ରଣ କରିବେ ଅପାର
ଲକ୍ଷ୍ମଣ କହିବାକଥା ଅଟଇଟି ସାର ।
ଶୁଣିକରି ଶ୍ରୀରାମ ଯେ ଧଇଲେ ଧନୁଶର
ପର୍ଣ୍ଣ କୁଟୀରୁ ତକ୍ଷଣେ ହୋଇଲେ ବାହାର ।
ଦେଖିଲେ ବନ୍ଦପୂରି ଆସନ୍ତି ସଇନୀ
ନଜାଣି ସମୁଦ୍ର ଯେ ଘୋଟିଲେ ମେଦିନୀ ।
ଦେଖିଣ ଶ୍ରୀରାମ ଯେ ହୋଇଲେ ଆଶ୍ଚର୍ଯ୍ୟ
ଦୁଇତୂଣ କନ୍ଧରେ ଭିଡ଼ିଲେ ରାମରାଜା ।
ଲକ୍ଷ୍ମଣର କଥାକୁ ମୁହିଁ ଯେ ନ କଲି
ନମାରିଣ ତାହାକୁ ଦୟାରେ ଛାଡ଼ିଦେଲି ।
ଲକ୍ଷ୍ମଣର କଥାତ ଘଟିଲା ତତକ୍ଷଣ
ଅସୁର ଅସୁରୁଣୀ ଅଧର୍ମ କଲେ ଜାଣ ।
ଏକଥାକୁ ରାମଚନ୍ଦ୍ର ବିଚାର ଯେ କଲେ
ପର୍ଶୁରାମ ଦେବାଧନୁ ବହନ ଧରିଲେ ।
ବଇଷବା ଧନୁରେ ଚଢ଼ାଇଦେଲେ ଗୁଣ
ତୀକ୍ଷ୍ଣଶର ଯୋଚିଣ ରଖିଲେ ରାମରାଣ ।
ସୈନ୍ୟଙ୍କର ପ୍ରବଳ ଦେଖିଣ ଜାନକୀ
ଆତ୍ମାର ଭିତରେ ବହୁତ ସେ ଶଙ୍କି ।
ମୋହର ରାଣ ତୁମ୍ଭଙ୍କୁ ନକର କେଭେ ରଣ
ତୁମ୍ଭ ବେନି ଜଣରେ କି ଅସୁରେ ହେବେଲୀନ ।
ବୟସରେ ଅଳପ ନ ଜାଣ ଯୁଦ୍ଧରୀତି
ପାପାତ୍ମା ଅସୁର ସେ ଦେବଙ୍କୁ ନ ଡରନ୍ତି ।
ଆସ ଆସ ଆମ୍ଭେ ଯେ ବିପିନେ ଲୁଚିବା
ଏ ସ୍ଥାନକୁ ଛାଡ଼ିଣ ଅନ୍ୟସ୍ଥାନେ ଯିବା ।
ଅକାରଣେ ଦହନ ନକର ଶରୀର
ଅସଂଖ୍ୟବଳ ଅଛନ୍ତି କରନା ସମର ।
ବିଷମ ଗୋଳକ ତୁମ୍ଭେ ନୁହ ହେ ଭାଜନ
ପ୍ରାଣ ଥିଲେ ବରଷେକ ହେବ ହେ ରାଜନ ।
ସାମର୍ଥ୍ୟ ପଣ ନକରି ଗର୍ବ ଯେ ନକର
ଅକଳିତ ଦୈତ୍ୟବଳ ଆସନ୍ତି ବନଘୋର ।
ତୁମ୍ଭଙ୍କୁ ମାରି ଅସୁରେ ମାରିବେ ସୌମିତ୍ରୀ
ମୋର ନାସା ଶ୍ରବଣ ପକାଇବେ କାଟି ।
ହୋଇବି ନିରିମାଖୀ ଆଉ ଯିବିକାହିଁ
ମୋହର ବୋଲ କରିଣ ବାହୁଡ଼ ଗୋସାଇଁ ।
ଶ୍ରୀରାମଚନ୍ଦ୍ର ବୋଇଲେ ନ ଜାଣ ଗୋ ସୀତା
ମୁଁ ରଣେ ବିରୁଦ୍ଧ ଯେ ଅଟେ ଜଗଜ୍ଜିତା ।
ଯେତେ ଅସୁର ଗୋ ଘୋଟିଣ ଆସୁଛନ୍ତି
ସମର କଲେ ସେ କି ଯିବେ ଏଥୁଁ ବର୍ତ୍ତୀ ।
ବଇଷବା ଧନୁ ଏ ଯେ ବିଷ୍ଣୁଙ୍କ ଆୟୁଧ
ଏ ଧନୁ ଧରିଲେ ହୁଏ ସପତପୁର ସାଧ ।
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରଘୁନାଥ
ଜାନକୀଙ୍କୁ ନିଅ ବେଗେ ସୁମିତ୍ରାଙ୍କ ସୁତ ।
ବନ ଗିରିକନ୍ଦରେ ଲୁଚିଣ ରହିଥାଅ
ଯେତେବେଳେ ଜାନକୀ ଦେଖିବେ ରଣଜୟ ।
ସେହିଠାରେ ରହିବେ ଧନୁ ଶର ଧର
ସୀତାଙ୍କୁ ଘେନିଣ ଏଠାରୁ ଯାଅ ଚଳି ।

ଆଜ୍ଞାମାନି ଲକ୍ଷ୍ମଣ ସୀତାଙ୍କୁ ଘେନିଗଲେ
ଗିରି ଉହାଡ଼ କନ୍ଦରେ ନେଇଣ ରହିଲେ ।
ଆପଣେ ସଉମିତ୍ରୀ ନାରାଚ କରେ ଧରି
ଜଗିରହିଲେ ସୀତାଙ୍କୁ ଲକ୍ଷ୍ମଣ ଆବୋରି ।
ଅସୁରବଳ ଆସିଣ ପ୍ରବେଶ ହୋଇଲେ
ସିଂହ ଆକର୍ଷଇ ଯେସନେ ମୃଗପରେ ।
କାଣ୍ଡ କୋଦଣ୍ଡ ଯେ ଧରିଣ ରାମ କରେ
ହସିଣ ଚାପଧାରୀ ପଚାରି ଅସୁରେ ।
କିହୋ ଦୈତ୍ୟ ବଳ ତୁମ୍ଭେ କେଣେ ଯାଅପୁଣ
କାଣ୍ଡ କୋଦଣ୍ଡ ଯେ ଧରିଛ ହସ୍ତେଣ ।
ଅସୁରେ ବୋଇଲେ ଆମ୍ଭେ ଆସିଛୁ ରଣକରି
ସୂର୍ପଣଖା ନାକ, କାନ କାଟିଲା କିଏ ଧରି ।
ଶ୍ରୀରାମ ବୋଇଲେ ସେ ଅନ୍ୟାୟ ଯେ କଲା
ପଥୁକୀ ଜନମାନଙ୍କୁ ଧରିଣ ଖାଇଲା ।
ଅସୁରେ ବୋଇଲେ ଆମ୍ଭ ସ୍ୱଭାବଟି ସେହୁ
ନର ବାନରଙ୍କୁ ଦେଖିଲେ ଆମ୍ଭେ ଖାଉଁ ।
ଶ୍ରୀରାମ ବୋଇଲେ ଯେବେ ଖାଇବ ଧରି
କିରୂପେ ସଂସାର ହେବ ବିଚାର ନ କରି ।
ଦୈତ୍ୟ ବୋଇଲେ ସଂସାରେ ଆମ୍ଭର କିକାର୍ଯ୍ୟ
ତୁଣ୍ଡବୁଜି ନେତ୍ରରେକି ଦେଖିବାର ବୁଝ ।
କ୍ଷୁଧାରେ ଆକୁଳ ଯେବେ ହୁଅଇ ଉଦର
ନର ମାଂସ ଖାଇ ଆମ୍ଭେ ହେଉଁ ଯେ ଶୀତଳ ।
ଶ୍ରୀରାମ ବୋଇଲେ କିମ୍ପା ଫଳମୂଳ ନ ଖାଅ
ବନ ଜୀବମାନଙ୍କୁ ଛାଡ଼ିଣ କିମ୍ପା ଦିଅ ।
ଅସୁରେ ବୋଇଲେ ସେ ବନର ଜୀବ ପୁଣ
ପାଇଲା ଦିନ ଆମ୍ଭେ କରୁଁ ଯେ ଭୋଜନ ।
ଶ୍ରୀରାମ ବୋଇଲେ ତୁମ୍ଭେ ଅଟେ ମୂଢ଼ଜାତି
ତୁମ୍ଭଙ୍କୁ ମାରିବାକୁ ଜାତ ଯେ ଶ୍ରୀପତି ।
ଅସୁର ବୋଇଲେ ସେ ବାସୁଦେବ କାହିଁ
ତାର ସଙ୍ଗେ ରଣ କରିବୁଁ ଆମ୍ଭେ ଯାଇ ।
ଶ୍ରୀରାମ ବୋଲନ୍ତି ସେ ଅଛନ୍ତି ବୈକୁଣ୍ଠରେ
ତୁମ୍ଭଙ୍କୁ ମାରିବାପାଇଁ ଜନମ ମର୍ତ୍ତ୍ୟପୁରେ ।
ଅସୁରେ ବୋଇଲେ ଯେ ତୋର ନାମ କିସ
କଥାକୁ ଛନ୍ଦ କରି କହିଲେ ବିଶେଷ ।
ଶ୍ରୀରାମ ବୋଇଲେ ମୁଁ ରାଜାର କୁମର
ଅଯୋଧ୍ୟା ନାମେ ଦେଶ ଅଟଇ ମୋହର ।
ମୋର ପିତା ଦଶରଥ ମାତା କଉଶଲ୍ୟା
ଚାରିଭାଇ ଆମ୍ଭେ ଯେ କ୍ଷତ୍ରୀ ମଧ୍ୟେ ଦ୍ୱରା ।
ଅସୁରେ ବୋଇଲେ ତୋର ନାମ ଅଟେ କିସ
ମୋର ନାମ ରଘୁନାଥ ବୋଇଲେ ଶ୍ରୀରାମ ।
ଏହି ଧନୁରେ ମୁଁ ତୁମ୍ଭଙ୍କୁ କରିବି ବିନାଶ
ଆଜରେ ଅସୁରଗଣ ସର୍ବେ ହେବ ଶେଷ ।
ଅସୁରେ ବୋଇଲେ ତୁ ମରିବୁ ଯେ ଏଥେ
ଭାଇ ଭାରିଜା କେହି ନାହାନ୍ତି ସଙ୍ଗତେ ।
ତୁହିପରା ସୂର୍ପଣଖାର ନାକ କାନ କାଟି
ଶ୍ରୀରାମ ବୋଇଲେ କଥା ଅଟଇ ସତଟି ।
ସୂର୍ପଣଖାର କାଟିଲି ନାସିକା ଶ୍ରବଣ
ଏବେ ତୁମ୍ଭେ ସର୍ବେ ଯେ ଲଭିବ ମରଣ ।
ଅସୁରେ ବୋଇଲେ ସାଗର ଆମ୍ଭେ ରଟୁ
ଜଣେ ତୁ ହୋଇକରି ଟାଣରେ କଥା ଅଟୁ ।
ଶ୍ରୀରାମ ବୋଇଲେ ଯେବେ ସାଗର ତୁମ୍ଭେଟି
ମନ୍ତ୍ରବଳେ ଅଗସ୍ତି ସାଗର ଶୋଷିଲେଟି ।
ଅସୁରେ ବୋଇଲେ ଆଜ ଦେଖିବା ତୋରରଣ
କହୁଅଛୁ କେଡ଼େ କେଡ଼େ କଥାମାନ ଟାଣ ।
ଶ୍ରୀରାମ ବୋଇଲେ ସମସ୍ତେ ଯିବ ନାଶ
ଜୀବେ ଆଶାଥିଲେ ପଳା ନ ରହ ମୋ ପାଶ ।
ଅସୁରେ ବୋଇଲେ ଯେବେ ଜଣେ ତୁ ମାରିପାରୁ
ତେବେ ନର ବାନର କୁଳଙ୍କୁ ଉଦ୍ଧରୁ ।
ଶ୍ରୀରାମ ବୋଇଲେ ପର୍ଶୁରାମ ଏକା ବୀର
ସପତପୁରର ଦୁଷ୍ଟ ମଲେ ତା ହସ୍ତର ।
ଏକା ବାସୁଦେବ ଯେ ଶାରଙ୍ଗଧନୁ ଧରି
ଅସୁରଙ୍କୁ କେତେ ବାଗେ ପକାଇଲେ ମାରି ।
ଏକା ମନ୍ଦରେକ ସେ ସାଗର ମନ୍ଥିଲା
ଆୟଦାୟ ପଦାର୍ଥ ସମସ୍ତ ଘେନିଗଲା ।
ଏକା ସୂର୍ଯ୍ୟକେ ଦେଖ ଆଲୋକ ସପ୍ତଦ୍ୱୀପ
ଏଠାକେ ଚନ୍ଦ୍ର ଶୀତଳ କରେ ମେଦିନୀ ତ ।
ଏକା ପବନ ବହେ ସକଳ ଶରୀରେତ
ଏକାକେ ବାସୁକୀ ଯେ ଧରଇ ଧରଣୀ ତ ।
ଏକଅଗ୍ନି ଦେଖ ସକଳଠାରେ ବ୍ୟାପି
ଏକା ବେଦରେ ଯେ ସକଳ ପୃଥ୍ୱୀ ସୃଷ୍ଟି ।
ଏକା ବୋଲି ମୋତେ ଯେ କହିଲ ଦୈତ୍ୟଗଣ
କେତେ ରଣ କରିବାରେ ମୋର ସଙ୍ଗେ ପୁଣ ।

ଦେଖିବାକୁ ତୁମ୍ଭର ଯେ ବୀର ସୂରପଣ
ଏକା ଜଣକୁ ଯେବେ ମାରିବ କରି ରଣ।
ଧର୍ମବନ୍ତ ଲୋକକୁରେ ଧର୍ମ ସାହା ହୋଇ
ଅଧର୍ମୀ ଲୋକକୁ ଦିନରେ ଅନ୍ଧାର ଦିଶଇ।
ଭାଇ ମୋର ସୂର୍ପଣଖାକୁ ମାରିଥାନ୍ତା ଜାଣ
ମୁହିଁ ଦୟାକରି ଯେ ଛାଡ଼ିଦେଲି ପୁଣ।
ସେ ଧର୍ମ ଗୋଟି ଏବେ ପଛକୁ ଯେ ଗଲା
ଦୁଷ୍ଟା ଅସୁରୁଣୀ ଯେ ତୁମ୍ଭଙ୍କୁ ଅଣାଇଲା।
ଆପଣେ ନ ପାରିବାରୁ ପରକୁ କରେ ହତ
ସୂର୍ପଣଖା ବୋଲେ ତୁମ୍ଭେ ଆସିଛ ସମସ୍ତ।
ଯେବେ କୁମ୍ଭେ ପୁରକୁ ଲେଉଟି ଯିବ ପୁଣ
ତେବେ ଜାଣିବି ଭଉଣୀର କଲ ମାନଉଦ୍ଧାରଣ ।
ସମସ୍ତଙ୍କୁ ମରାଇ ସେ ଯିବ ଯମପୁର
ନାରୀମାନେ ବିଧବା ହୋଇବେ ତୁମ୍ଭର ।
କେଉଁନାରୀ ଯୋଗ୍ୟଥିଲେ ସମୁଦ୍ରେ ଝାସଦେବ
ପୁତ୍ରନାତି ଦୁହିତା ଦୁଃଖ ଯେ ପାଇବ ।
ଯେତେବେଳେ ସୂର୍ପଣଖା କହିଲା ତୁମ୍ଭଙ୍କୁ
ଜନ୍ତୁପତି ଜାଣିଲା ଯେ କହିଲା ମନ୍ତ୍ରକୁ।
ଦୈତ୍ୟଙ୍କର ପାଞ୍ଜିକାଢ଼ ଦେଖିବା ଏଣିକି
କେତେଆଉ ଅଛିକି ଶେଷ ହେଲାଣିକି ।
ଶୁଣିଣ ଚିତ୍ରଗୁପ୍ତ ତୁମ୍ଭର ପାଞ୍ଜି ଫେଡ଼ି
ଜନ୍ତୁପତି ଆଗରେ କହିଲେ କରଯୋଡ଼ି।
ବୋଇଲେ ଏ ଖର ଦୂଷଣ ତ୍ରିଶିରା ତିନିଜଣ
ଚଉଦ ସହସ୍ରବଳ ସଙ୍ଗରେ ଘେନିଣ ।
ଚଉଦ ସେନାପତି ସହିତେ କାଲିଯିବେ
ଦଶରଥଙ୍କ କୁମର ସଙ୍ଗରେ ଯୁଝିବେ।
ସମସ୍ତଙ୍କୁ ରଘୁନାଥ କରିବେ ବିନାଶ
ଏହିକଥା ଚିତ୍ରଗୁପ୍ତ କହିଲେ ଯମ ପାଶ ।
ଅସୁରେ ବୋଇଲେ ତୁ ଛଳାଉ ଆମ୍ଭଙ୍କୁ
କେଉଁ ଦେବତା ଆସିଣ ରଖିବ ତୁମ୍ଭଙ୍କୁ।
ଏମନ୍ତ ସମୟରେ ସୂର୍ପଣଖା କହି
ଏହାର ସଙ୍ଗତରେ କିସକଥା ହୁଅ ଭାଇ ।
ଶୁଣିକରି ଅସୁରେ ଧଇଲେ ଧନୁଶର
ଦେଖିଣ ଶ୍ରୀରାମ ଯେ କୋଦଣ୍ଡ ଧରି କର।
ଗୁଣଟଙ୍କାର କରିଣ ବସାଇଲେ ଶର
ହସିଣ ଆଗୁସାର ହେଲେ ରଘୁବୀର।

ତ୍ରିପୁରା ସମରେ ଯେହ୍ନେ ସଦାଶିବ ପଶି
ତେସନକ ପରାୟ ରଘୁନାଥ ଦିଶି ।
ଚଉଦ ସେନାପତି କଥା ହେଉଥିଲେ
ରାମଙ୍କ ଉପରେ ସେ ନାରାଚ ବରଷିଲେ।
ଶ୍ରୀରାମଙ୍କ ଶରୀରେ ପଡ଼ିଲା କାଣ୍ଡଯାଇ
ସର୍ପ ଯେହ୍ନେ ଗାତରେ ପଳାଇ ପଶଇ।
ସେହିବାଣ ନାଶିରାମ ଚଉଦ ଶର ପେଶି
ଗୁଣରେ ବସାଇ ବିନ୍ଧିଲେ ରଘୁଶଷି।
ଶ୍ରୀରାମ ଲକ୍ଷ୍ମଣରେ ସମସ୍ୟା କରିଥିଲେ
ଜାନକୀଙ୍କୁ ନ ଛାଡ଼ିବୁ ନ ଆସିବୁ ଭଲେ ।
ରାମଙ୍କ ବଚନକୁ ପାଳିଣ ଲକ୍ଷ୍ମଣ
ସୀତାଙ୍କୁ ଘେନି ଗିରି ପରେ ରହେ ପୁଣ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସକଳ ଅସୁର ଠୁଳ ହେଲେ ଆସିକରି।
କାଳ ଦେବତାପ୍ରାୟ ଦିଶେ ତାଙ୍କ ମୂର୍ତ୍ତି
ଅନ୍ତରୀକ୍ଷେ ଥାଇ ସେ ନାରାଚ ବରଷନ୍ତି ।
ସମସ୍ତ ଅସୁରେ ଯେ ବେଢ଼ିଲେ ରଘୁନାଥ
ମେଘର ଭିତରେ ଯେହ୍ନେ ଲୁଚଇ ଆଦିତ୍ୟ।
ରାମଙ୍କୁ ଦେଖିଣ ଖର ଦୂଷଣ ଓଗାଳି
ନିଶ୍ଚୟ ମରଣ ଆଜ ହୋଇଲା ତୋହରି ।
ଶ୍ରୀରାମ ଶୁଣିଣ ବୋଲନ୍ତିରେ ଦୈତ୍ୟ
ତୁମ୍ଭର ଆମ୍ଭରତ ନୁହେଁ ରିପୁବନ୍ତ ।
କିମ୍ପାଇ ମୋର ସଙ୍ଗରେ କରୁଛରେ ଗୋଳ
ଏଥକୁ ସାକ୍ଷୀ ଥାଆନ୍ତୁ ଦଶଦିଗ ପାଳ।
ଖର ବୋଇଲା ଭଉଣୀ ଅଟେ ସୂର୍ପଣଖା
ତୁମ୍ଭଙ୍କୁ ଭେଟ ଯେ ଏଠେ ଆସି ହେଲା ।
ତାହାର ନାକ, କାନ କାଟିଲ କିମ୍ପାଇ
ସେ ଆମ୍ଭର ଆଗରେ କାନ୍ଦି କହିଲା ଯାଇ ।
ତୁମ୍ଭର ଦୁଷ୍ଟପଣ ସେ କହିଲା ଆମ୍ଭଙ୍କୁ
ତେଣୁ ତୁମ୍ଭଙ୍କୁ ମାରିବାକୁ ଅଇଲୁ ଏଥକୁ।
ଦେଖିବା ଯେ ବୀରପଣ କିପରି ତୋହରି
ସଞ୍ଜିବନୀ ପୁରକୁ ଆଜ ଯିବୁରେ ଜଟାଧାରୀ ।
ତୋହର ଘରଣୀର କାଟିବି ନାକ, କାନ
ଶୁଣିଣ ରାମଚନ୍ଦ୍ର ବୋଇଲେ ବଚନ।
ମୋତେ ଦେଖି ତା ଭଉଣୀ ଗିରସ୍ତକରି ମତି
ବିଭା ନ ଦେଇ ତାକୁ କିମ୍ପା ରଖିଛ ସାଇତି।

ଗିରସ୍ତ ନପାଇ ସେ ହେଉଛି ମାତାଲ
ତିନିଭାଇରୁ ଜଣେ କିମ୍ବା ତା ଗିରସ୍ତ ନୋହିଲ ।
ଶୁଣିଣ ଅସୁର ଯେ ମନରେ ହେଲା କ୍ରୋଧ
ବୋଇଲା ଆଜି ତୋତେ କରିବିରେ ବଧ ।
ସୈନ୍ୟଙ୍କୁ ଆଜ୍ଞା ଦେଲା ମୋର ବୋଲ କର
ସମସ୍ତେ ବେଢ଼ିଣ ଏ ତପସ୍ୱୀକି ମାର ।
ଖର ଦୂଷଣ ବଚନେ ଅସୁରେ ରୋଷକରି
ଗଦା, ମୁଦୁଗର, ଶାବେଳି ଘେନିଣ ମାରି ।
କେହୁ ପରିଘରେ ପ୍ରହାରିଲେ ନେଇ
କେହୁ ଶାବେଳି ଯେ ମାରଇ ନିଠାଇ ।
କେହୁ ତୀକ୍ଷ୍ଣ ଭାଲିପୁଣ ମାରେ କେହୁ କୁନ୍ତ
ବରଷା ଧାରପ୍ରାୟ ବିନ୍ଧନ୍ତି ଶର ତ ।
ଦେଖିକରି ଦାଶରଥି ବାବଲଶର ମାରି
ସକଳ ଅସୁରଙ୍କର ଶରକୁ ନିବାରି ।
ପୁଣି ତୀକ୍ଷ୍ଣ ନାରାଚ ପେଷିଲେ ଦାଶରଥି
ଦେଖିଣ ଅସୁର ବଳ ଘୁଞ୍ଚିଣ ପଳାନ୍ତି ।
ଦୂଷଣ ବୋଇଲା ତାର ନିଜବଳ ଚାହିଁ
ପଳାଇଲେ ଜଟାଧାରୀ ଛାଡ଼ିବତ ନାହିଁ ।
ସଂଗ୍ରାମ ଛାଡ଼ି କିମ୍ପା ହୁଅଇ ନିସତ
ଶାସ୍ତ୍ର ଶୁଣିଲାକି ନୁହରେ ଦଇତ ।
ରଣରେ ଝାସଦେଲେ ବହୁତ ହୁଏ ଧର୍ମ
ରଣଭୂମିରେ ମଲେ କ୍ଷତ୍ରୀଙ୍କ ଜୟଧର୍ମ ।
ଯୁଦ୍ଧକୁ ନିସତ ହୋଇଣ ତୁମ୍ଭେ ଡର
ଶିରଛିଡ଼ି ଭୂମିରେ ପଡୁରେ ତୁମ୍ଭର ।
ଶୁଣିକରି ଧାଇଁଲେ ସକଳ ଅସୁରେ
ମାର ମାର ଧର ଧର ଡାକନ୍ତି ଉଚ୍ଚରେ ।
ରାମଙ୍କ ଉପରକୁ ଶସ୍ତ୍ର ସେ ପ୍ରହାରି
ଡାକହାକ କରିଣ ନାରାଚମାନ ମାରି ।
ଶ୍ରୀରାମଙ୍କ ଉପରକୁ ବିନ୍ଧୁଛନ୍ତି ଶର
ଦୈତ୍ୟଙ୍କ ଶରକୁ ରାମ ଛେଦନ୍ତି ବାରମ୍ବାର ।
ବାବଲଶର ରାମ ମାରିଲେ ବ୍ୟଗ୍ରରେ
ଶିରଛିଡ଼ି ଅସୁରେ ପଡ଼ିଲେ ଭୂମିରେ ।
କଦଳୀ ବନ ଯେହ୍ନେ ପବନ ଘାତେ ଭାଜି
ଶ୍ରୀରାମଙ୍କ ଶରରେ ପଡ଼ିଲେ ଗଳଗାଜି ।
ବୃତା ଦୈତ୍ୟ ଯେହ୍ନେ ଯୁଝଇ ଇନ୍ଦ୍ର ସଙ୍ଗେ
ଖର ଦୂଷଣ ତ୍ରିଶିରା ଯୁଝନ୍ତି ସେ ବାଗେ ।
ଯହୁଁ ଶ୍ରୀରାମଚନ୍ଦ୍ର ମାରିଲେ ଦୈତ୍ୟବଳ
ଦେଖିକରି ଧାଇଁଲେ ଦୂଷଣ ମହାବଳ ।
ରାମଙ୍କ ଛାମୁରେ ହୋଇଲା ସେ ଭେଟ
ଅଇରାବତ ଯେହ୍ନେ ମେରୁର ନିକଟ ।
ଗୁଣ ଟଙ୍କାର କରି ବିନ୍ଧଇ ନାରାଚ
ପ୍ରତିଶର କରିଣ ଛେଦନ୍ତି ରଘୁରାଜ ।
ଦେଖିକରି ଦୂଷଣ ଦେବଶର ମାରି
ବ୍ରହ୍ମଶର ପେଶିଲା ଅସୁର ରିପୁକରି ।
ପ୍ରତିଶର କରି ସେ ଦଶରଥ ବାଳ
ନିବାରି ନ ପାରିବାରୁ ବସିଲା ବକ୍ଷସ୍ଥଳ ।
ଘାଏ ଘୁମାଇଲେ ଯେ ରଘୁକୁଳ ସାଇଁ
ପର୍ବତ ଉପରେ ଥାଇ ଲକ୍ଷ୍ମଣ ଦେଲେ ଚାହିଁ ।
ସୀତାଙ୍କୁ ବୋଇଲେ ତୁମ୍ଭେ ବସିଥାଅ ଲୁଚି
ଅସୁରଙ୍କ ବାଣେ ପ୍ରଭୁ ମୋହ ହୋଇଛନ୍ତି ।
ମୁହିଁ ଯାଉଅଛି ଯେ ରଣଭୂଇଁ ସ୍ଥାନ
ନିଶ୍ଚେ ଅସୁରଙ୍କୁ ମୁଁ କରିବି ନିଶୋଧନ ।
ଶୁଣିକରି ଜାନକୀ ଯେ ବୋଲନ୍ତି ବଚନ
ରାମ ଯେବେ ରଣରେ ହେଲେ ମୋହମନ ।
ତୁମ୍ଭେ ଯେବେ ଯିବ ମୁଁ ହୋଇବି ନିଶଙ୍କ
ଅସୁରଙ୍କୁ ଡରଇ ମୁଁ ହେ ସୁମିତ୍ରା ସୁତ ।
ଅସୁରେ କାମରୂପୀ ଜାଣନ୍ତି ମାୟାବଡ଼
ନପୁଣ ମୋତେ ଧରି ନିଅନ୍ତି ସେ ରାଢ଼ ।
ଭଉଣୀ ଛଳେ ମୋର କାଟିବେ ନାକକାନ
କେମନ୍ତେ ସମ୍ଭାଳି ମୁଁ ରହିବି ଲକ୍ଷ୍ମଣ ।
ଶୁଣିଣ ସଉମିତ୍ରୀ ଜଟାୟୁଷକୁ ଡାକି
ପିଆଶାଳ ବୃକ୍ଷରୁ ଜଟାୟୁଷ ଆସି ।
ପକ୍ଷୀଜଟାକୁ ଚାହିଁଣ ସଉମିତ୍ରି କହି
ତୋ ବଧୂକୁ ମଉସା ଜଗିଥାଅ ତୁହି ।
ଶୁଣିଣ ଜଟାୟୁଷ ବୋଇଲା ବଚନ
ଏ ପଥର ଗୁମ୍ଫାରେ ରହନ୍ତୁ ବଧୂପୁଣ ।
ଶୁଣିକରି ଜାନକୀ ଗୁମ୍ଫାରେ ଲୁଚିଲେ
ସୀତୟାଙ୍କୁ ଲକ୍ଷ୍ମଣ ବୁଝାଇ କହିଲେ ।
ନିଶ୍ଚିନ୍ତ ହୋଇ ରହ ଆଉ ଭୟନାହିଁ
ଅସୁରଙ୍କୁ ମାରିବି ଯାଉଅଛି ମୁହିଁ ।
ଧର୍ମରେ ତୁମ୍ଭର ଏ ଶ୍ୱଶୁର ଅଟନ୍ତି
ପିତାଙ୍କ ସଙ୍ଗରେ ମଇତ୍ର ହୋଇଛନ୍ତି ।

ବଳିଣ କଥା ଯାଙ୍କୁ ନ କହିବ କିଛି
ମନରୁ ଚିନ୍ତା ଛାଡ଼ ନ ବିଚାରି କିଛି ।
ଏହିକ୍ଷଣି ଦୁଇଭାଇ ଆସିବୁଁ ଏଠାକୁ
କ୍ଷଣକେ ସବୁ ଅସୁର ମାରିବୁଁ ଦେଖୁ ଦେଖୁ ।
ଏତେ କହି ଲକ୍ଷ୍ମଣ ଧନୁଶର ଧରି
ବାହାର ହୁଅନ୍ତେ ମୋହ ତେଜିଲେ ଚାପଧାରୀ ।
ଧନୁଶର ଧରିଣ ଶ୍ରୀରାମ ହେଲେ ଉଭା
ଦେଖିକରି ଲକ୍ଷ୍ମଣ ମନରେ ବଡ଼ ଲୋଭା ।
ଜାନକୀଙ୍କି ଡାକି କହନ୍ତି ବୀର ସଉମିତ୍ରୀ
ରଘୁନାଥ ଆମ୍ଭର ହେଲେଣି ତେଜ ମୂର୍ତ୍ତି ।
ଧନୁଶର ଧରିଣ ଉଭା ହେଲେଣି ପୁଣ
ମୁହିଁ ଆଉ କାହିଁପାଇଁ ଯିବି ସେଠାବେଣ ।
ଶୁଣିଣ ବଇଦେହୀ ହରଷ ହୋଇଲେ
ଜଟାୟୁଷକୁ ଚାହିଁଣ ଲକ୍ଷ୍ମଣ ବୋଇଲେ ।
ଦୁଆରୁ ଉଠ ମଉସା ଆସନ୍ତୁ ବଧୂ ତୋର
ଶ୍ରୀରାମଚନ୍ଦ୍ରଙ୍କୁ ସେ ଦେଖନ୍ତୁ ଗିରିପର ।
କ୍ରୋଟର ଭିତରୁ ଅଇଲେ ବଇଦେହୀ
ମେଲାରେ ରହିଣ ରାମଙ୍କ ରଣକୁ ଦେଖଇ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଅସୁରଙ୍କର ସଙ୍ଗରେ ରାମ ଯୁଦ୍ଧ କରି ।
କ୍ରୋଧରେ ରଘୁନାଥ ନାରାଚ କରେ ଧରି
ବିନ୍ଧିଲେ ତୀକ୍ଷ୍ଣ ଶର ଧନୁର୍ବେଦ ସ୍ମରି ।
ତୀକ୍ଷ୍ଣଶର ବିନ୍ଧନ୍ତେ ତାର ଅଶ୍ୱ ମଲେ
ଆରେକ ବାଣେ ରାମ ସାରଥିକି ସଂହାରିଲେ ।
ବିରଥି ହୋଇଣ ସେ ପରିଘ ଘେନି ଧାଇଁ
ଦୈତ୍ୟ ଆସିବାର ଯେ ଦେଖିଲେ ରଘୁସାଇଁ ।
ନାରାଚ ବିନ୍ଧିଣ ସେ ଛେଦିଲେ ତାର ହସ୍ତ
ମୁଣ୍ଡାବୃକ୍ଷ ପରାଏ ଦିଶିଲା ଦଇତ ।
ତୁଣ୍ଡ ବିସ୍ତାରିଲା ସେ ସ୍ୱର୍ଗ ମର୍ତ୍ତ୍ୟ ଦୁଇ
ଚନ୍ଦ୍ରମଣ୍ଡଳରେ ଶିର ଲାଗିଲା ତାର ଯାଇ ।
ଦେଖିଣ ଶ୍ରୀରାମ ଯେ ପେଶିଲେ ଅଗ୍ନିଶର
ତୁଣ୍ଡରେ ପଡ଼ିବାରୁ ଦହିଲା ବୈଶ୍ୱାନର ।
ପ୍ରାଣ ଛାଡ଼ିଣ ଦୈତ୍ୟ ପଡ଼ିଲା ଭୂମିଗତେ
ତିନିପୁର କମ୍ପିଲା ତାହାର ରଡ଼ିଘାତେ ।
ତଦନ୍ତେ ଶ୍ରୀରାମ ଯେ ତୀକ୍ଷ୍ଣ ଶର ପେଶି
ଚଉଦ ସହସ୍ରବଳ ପକାଇଲେ ନାଶି ।

ଗୋଟିଏ ସୈନ୍ୟବଳ ନ ରହିଲେ କେହି
ସତୁରି ସହସ୍ର ବାଣ ବିନ୍ଧିଲେ ରଘୁସାଇଁ ।
ଜଣକେ ପାଞ୍ଚଶର ଲେଖାଏ ବାଜିଲା
ଏକା ଥରକେ ଚଉଦ ସହସ୍ର ବଳ ମଲେ ପରା ।
ଦୂଷଣ ସହିତରେ ସୈନ୍ୟବଳ ମଲେ
ଖରତ୍ରିଶିରା ସେନାପତି କେବଳ ରହିଲେ ।
ଦେଖିଣ ଖରବୀର ଧାଇଁଲା କ୍ରୋଧକରି
ତ୍ରିଶିରା ତାହାକୁ ରୁହାଏ ବୋଧକରି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଜଟାୟୁଷ ଦେଖୁଥିଲା ଉପରେ ବସିକରି ।
ମନେ ବିଚାରନ୍ତି ଶ୍ରୀରାମ ବଡ଼ ଯୋଦ୍ଧା
ଏକାଥରକେ ସୈନ୍ୟ କରିଦେଲେ ପଦା ।
ତିନିବାଣେ ଦୂଷଣ ଦଇତକୁ ମାରି
ମୋହର ପୁରୁଷାର୍ଥ ନ ଜାଣେ ଚାପଧାରୀ ।
ଏତେ କହି ଜଟାୟୁଷ ବୃକ୍ଷ ଉପରୁ ଉଠି
ସେନାପତିଙ୍କ ମେଳରେ ଯାଇଣ ସେ ଜୁଟି ।
ଏକ ଏକ ସେନାପତିଙ୍କୁ ଧରିଣ ଥଣ୍ଟରେ
ଘେନିକରି ଉଡ଼ିଗଲା ଗଗନ ମାର୍ଗରେ ।
ଗିରି ଦେଖି ଉଚ୍ଚରୁ ଦେଲାକ ସେ ଛାଡ଼ି
ପର୍ବତଶିଳାରେ ପଡ଼ି ଗଲା ପ୍ରାଣ ଛାଡ଼ି ।
ଚଉଦ ରଥ ତାଙ୍କର ଭାଙ୍ଗିଲା ସେ ପୁଣ
ଥଣ୍ଟରେ ରଥମାନଙ୍କୁ କଲା ବିଦାରଣ ।
ଦେଖିକରି ଶ୍ରୀରାମ ଯେ ଆଶ୍ଚର୍ଯ୍ୟିତ ହେଲେ
ପକ୍ଷୀଜନ୍ତୁ ଭରସା ମୁଁ ଦେଖିଲି ବୋଇଲେ ।
ନିଶ୍ଚୟ ଗରୁଡ଼ର ପୁତ୍ର ଅଟେ ଏହି
ମନରୁ ବିରୋଧ କଥା ଛାଡ଼ିଲେ ରଘୁସାଇଁ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଖର ତ୍ରିଶିରା ଯେ ଦୁଇଜଣ ଛନ୍ତି ।
ସମସ୍ତଙ୍କର ମରଣ ଦେଖିଲେ ଦୁଇ ବୀର
ଶାଳଶିଳ ଘେନିଣ କରନ୍ତି ସମର ।
ଅକାଳ କୁହୁଡ଼ି ଯେ କ୍ଷଣକେ ଘଟାଇଲେ
ଭୂମି ଗଗନ ସମସ୍ତ ଅଦୃଶ୍ୟ କରାଇଲେ ।
ଦେଖିଣ ଶ୍ରୀରାମ ଯେ ପେଶିଲେ ରବି ଶର
କୁହୁଡ଼ି ପଳାଇଲା ନ ରହି ସେଠାର ।
ମାୟାକଲେ ଦୈତ୍ୟ ବୋଲି ସେକଥା ଜାଣିଲେ
ତେଣୁକରି ରବିଶର ପ୍ରକାଶ ଦେବ କଲେ ।

ମାୟାକୁ ଭୟ ନକଲେ ଦାଶରଥି
ଦେଖିକରି ଅସୁରେ ମେଘ ବରଷନ୍ତି ।
ବରଷାକୁ ଦେଖିଣ ବିଚାରନ୍ତି ଚାପଧାରୀ
ବାବଲ ଶର ଧରି ମାଇଲେ କ୍ରୋଧକରି ।
ମେଘମାନେ ପଳାଇ ଏଣେ ତେଣେ ଗଲେ
ଶୂନ୍ୟରେ ମେଘମାଳ କିଛି ନ ରହିଲେ ।
ଦେଖିକରି ଅସୁରେ ପର୍ବତ ଶର କଲେ
ମର୍ତ୍ତ୍ୟପୁର ଗୋଟିକୁ ପର୍ବତେ ଲୁଚାଇଲେ ।
ଦେଖିଣ ଶ୍ରୀରାମ ଯେ ପବନା ଶର କଲେ
ତହୁଁ ସବୁ ପର୍ବତକୁ ଉପାଡ଼ିଣ ଦେଲେ ।
ପୁଣିହିଁ ଶ୍ରୀରାମ ଯେ ହେଲେ କ୍ରୋଧଭର
ବାବଲ ତୀକ୍ଷ୍ଣ ଶର ବିନ୍ଧିଲେ ଧନୁପର ।
ବିନ୍ଧନ୍ତେ ଅସୁରେ ହୋଇଲେ ବିରଥି
ଅଶ୍ୱ ସାରଥିଙ୍କୁ ନାଶିଲେ ରଘୁପତି ।
ବାବଲ ଶରେ କାଟିଲେ ତାହାଙ୍କର ଶିର
ପ୍ରାଣ ଛାଡ଼ି ଅସୁରେ ପଡ଼ିଲେ ଭୂମିର ।
ଭୂମିରେ ପଡ଼ିଣ ଦୈତ୍ୟ ନିଦ୍ରାଗଲା
ତ୍ରିଶିରା ବୋଲି ନାମ ସେଠାରୁ ଲୁଚିଲା ।
ଦୁଇଦିନ ଏଥିରେ ବହିଗଲା ଜାଣ
ଜାନକୀ, ଲକ୍ଷ୍ମଣ ଯେ ବିକଳିତ ମନ ।
ପାର୍ବତୀ ବୋଇଲେ ଶୁଣ ଜଟାଧାରୀ
ଦୂଷଣ, ତ୍ରିଶିରା ଯେ ମଲେ ଯୁଦ୍ଧ କରି ।
ଚଉଦ ସହସ୍ର ସୈନ୍ୟବଳ ନାଶଗଲେ
ଏକାଦଶ ରଥି ଯେ ସବୁଙ୍କୁ ନିବାରିଲେ ।
ତାଙ୍କର ସଙ୍ଗରେ ଚଉଦ ସେନାପତି
ମାଣିକ୍ୟ ରଥ ଚଢ଼ି ଆଗରେ ଯୁଝନ୍ତି ।
ସେଠାରେ ଜଟାୟୁଷ ବଡ଼ ପଣ କଲା
ଚଉଦ ଥରେ ଚଉଦ ସେନାପତି ନେଲା ।
ଘେନିକରି ଉଡ଼ିଣ ଗଗନେ ଉଠିଣ
ଅକର୍ମ ଶିଳା ଉପରେ ଛାଡ଼ିଲା ଶୂନ୍ୟୁ ଜାଣ ।
ପାଷାଣରେ ପଡ଼ି ସେ ଧୂଳି ହୋଇଯାନ୍ତି
ସେନାପତିମାନଙ୍କର ଚିହ୍ନ ଗଲା ଛପି ।
ଖର ବୋଲି ଯେଉଁ ଅସୁର ଥିଲା ଜାଣ
ସେ ଦୈତ୍ୟ ମଲା କି ଫେରିଗଲା ପୁଣ ।
ପାର୍ବତୀ ପଚାରିବାରୁ ଈଶ୍ୱର କହନ୍ତି
ଖର ସଙ୍ଗେ ଯୁଦ୍ଧ ଯେ ଶ୍ରୀରାମ କରନ୍ତି ।
ସମସ୍ତେ ମରିବାରୁ ଖର ବିଚାରିଲା
ଏକାଦଶ କରେ ମୋର ସମ୍ପତ୍ତି ସାରିଲା ।
ବେନିଭାଇ ସୈନ୍ୟବଳ ମଲେ ଯେ ମୋହର
ଫେରିଗଲେ ଲଜ୍ୟା ମୋତେ ହୋଇବ ଅପାର ।
ଏତେ ଭାବି ଖର ଯେ କ୍ରୋଧରେ ଯୁଦ୍ଧକଲା
ଦଣ୍ଡକ ମଧରେ ମର୍ତ୍ତ୍ୟପୁରକୁ ଲୁଚାଇଲା ।
ଶାର୍ଦ୍ଦୂଳ ସିଂହ ପ୍ରାୟ ଦିଶନ୍ତି ବେନିବୀର
ଅସଂଖ୍ୟ ସମର ଯେ କରନ୍ତି ଅଗୋଚର ।
ଶାସ୍ତ୍ରଙ୍କର ତେଜରେ ନ ଦିଶେ ଗଗନ
ଦୁଇଜଣଙ୍କର ଅସଂଖ୍ୟ ହେଲା ରଣ ।
ଖର ବିନ୍ଧନ୍ତେ ବାଣ ଅଦୃଶ୍ୟ ରାମରାଣ
ଅସୁର ଧନୁ ଦିଶେ ବିଜୁଳି ସମାନ ।
ଶତେକ ନାରାଚ ପେଶିଲେ ଦାଶରଥି
ପୁଣି ସହସ୍ରେ ବାଣ ବିନ୍ଧିଲେ ରଘୁପତି ।
କୋଟିଏ ବାଣ ଯେ ଗୁଣରେ ବସାଇ
ଅକଳିତ ଶର ଯେ ପେଶିଲେ ରଘୁସାଇଁ ।
ଦେଖିଣ ଅସୁର ବୀର ଅନେକ ଶର କଲା
ଗର୍ଜନର ଘାଏ ମେରୁଗିରି ଚମକିଲା ।
ବିନ୍ଧିଲାକ ଅସୁର ଲକ୍ଷ ଲକ୍ଷ ଶର
ନିବିଡ଼ ଅନ୍ଧକାର ହୋଇଲା ମର୍ତ୍ତ୍ୟପୁର ।
ତାରାଗଣମାନେ ଯେ ଦିବସରେ ଦିଶି
ପଦାଝାଡ଼ ଜଙ୍ଗଲ ସମତୁଲ ଦିଶି ।
ବାଣର ଗହଳରେ ନ ଦିଶଇ ଦେହ
ଜୁଳୁଜୁଳା ପୋକ ଉଡ଼ିଲା ପ୍ରାୟ ହୟ ।
ଡକାଇ ଦଇତ ତପୁସି ଯିବୁ ନାହିଁ
ତୋହର ପ୍ରାଣ ଆଜିରେ ଯମପୁର ଯାଇ ।
ତାର ବାଣୀ ଶୁଣିଣ ବୋଇଲେ ରଘୁନାଥ
ଦେଖିବା ଆଜ ତୁରେ କେଡ଼େକ ସାମରଥ ।
ତୋହର ସଙ୍ଗରେ ଯେତେ ଆସିଥିଲେ ବଳ
ଦୁଇଭାଇ ସଙ୍ଗରେ ଚଳିଲେ ଯମଆଳ ।
ଜନ୍ତୁପତି ପୁରରେ ରହିବୁ ଯାଇ ଆଜ
ଲାଗିଲା ଅନ୍ଧାର ଯେ ଦିଶିଲା ଏକ ଦିଗ ।
ଯମପୁରେ ଭାଇ ତୋହର ଅଛନ୍ତି ବାଟ ଚାହିଁ
ସୁମର ଇଷ୍ଟ ତୋହର ଯିବୁରେ ବେଟ ହୋଇ ।
ଏତେକହି ରଘୁନାଥ ବିନ୍ଧିଲେକ ଶର
ଉଜ୍ଜ୍ୱଳ ଦିଶିଲା ତୁଟିଲା ଅନ୍ଧାର ।

କୋଟି କୋଟି ନାରାଚ ଗୁଣରେ ବସାଇଲେ
ଅପ୍ରମିତ ଶର ଯେ ରାମଚନ୍ଦ୍ର କଲେ ।
ଖରଦଇତ ରଥ ସାରଥି ସହିତରେ
ଏକାବାଣକେ ନାଶକଲେ ରଘୁବୀରେ ।
ବିରଥି ହୋଇଣ ଖର ଗଦା ଘେନି ଯାଇ
ତୀକ୍ଷ୍ଣ ଶରେ ସେ ଗଦାକୁ ନିବାରି ରଘୁସାଇଁ ।
ହତ ଆୟୁଧ ଯହୁଁ ହୋଇଲା ଖରବୀର
ପୁଣି ଉପାଡ଼ିଲା ସେହୁ ଶାଳ ତରୁବର ।
ଶ୍ରୀରାମଙ୍କ ଉପରେ ପିଟିଲା ତାହା ନେଇ
ତୀକ୍ଷ୍ଣ ନାରାଚେ ତାକୁ ଛେଦିଲେ ରଘୁସାଇଁ ।
ଶୂନ୍ୟହସ୍ତ ହୋଇଣ ଧାଇଁଲା ଖରସୁର
ବିଧାଏ ମାଇଲା ନେଇ ଶ୍ରୀରାମ ଉପର ।
ଅଙ୍ଗଢ଼ାଳି ଶ୍ରୀରାମ ପଛ ଘୁଞ୍ଚା ଦେଲେ
ପରିଘ ଘେନି ଶ୍ରୀରାମ ଦୈତ୍ୟକୁ ମାରିଲେ ।
ପ୍ରାଣହାରି କରି ପଡ଼ିଲା ଖରବୀର
ନିଶ୍ଚେଷ୍ଟ ହୋଇଲା ସେ ଗଡ଼ିଲା ଭୂମିର ।
ସ୍ୱର୍ଗରେ ଦେବତାଏ ସାଧୁ ସାଧୁ କଲେ
ଶ୍ରୀରାମଙ୍କର ଶିରରେ କୁସୁମ ବରଷିଲେ ।
ଅସୁର ବଳ ଯହୁଁ ହୋଇଲେ ପ୍ରାଣେ ନାଶ
ମନରେ ରଘୁନାଥ ହୋଇଲେ ସନ୍ତୋଷ ।
ଖର ଦୂଷଣ ତ୍ରିଶିରା ସଙ୍ଗରେ ଯେତେ ବଳ
ବନଲତା ମାଡ଼ିଣ ପଡ଼ିଲେ ସକଳ ।
ସମସ୍ତେ ବେନି ବେନି ଖଣ୍ଡ ହୋଇ ପଡ଼ି
ନଛିଡ଼ି ଛକେ ମରିବାର ନାହାନ୍ତି ଦୈତ୍ୟବଳି
ତାହାଙ୍କର ରୁଧିରେ ରକତ ନଦୀ ବହି
ବରଷିଲେ ମେଘ ଯହୁଁ ପଡ଼ିପାଣି ଧାଇଁ ।
ଶୋଣିତ ପାଣି ବହେ ରୁଧିର ନଦୀ ଗୋଟି
ସାତତଳ ଗଭୀର ଓଷାର କୋଶେ ଘୋଟି ।
ରୁଧିର ନଦୀରେ ଯେ ଉପୁଜନ୍ତି ମଢ଼ା
ଶୋଣିତରେ ଭାସିଯାନ୍ତି ହୋଇ ଯୋଡ଼ାଯୋଡ଼ା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦୈତ୍ୟଙ୍କୁ ମାରି ରାମ ମନେ ହେଲେ ଶାନ୍ତି ।
ଦୈତ୍ୟବଳ ଯହୁଁ ରାମ ପକାଇଲେ ମାରି
ବଳବନ୍ତ ହେଲେ ରାମ ପ୍ରଳୟ ସିନ୍ଧୁପରି ।
ଦୈତ୍ୟଙ୍କର ନିଧନ ଦେଖିଣ ଲକ୍ଷ୍ମଣ
ଜାନକୀଙ୍କୁ ବୋଇଲେ ଦେଖ ଗୋ ଆସିଣ ।
ଏକାସ୍ୱାମୀ ସଙ୍ଗରେ ତୋର ଯେତେ ବଳଲାଗି
ଆସିଲାର ବେଳେ ପରା ଦେଖିଛୁ ସଉଭାଗି ।
ଏବେ ତ ଗୋଟିଏ ନାହାନ୍ତି କେହି ପୁଣ
ଗହଳ ଭାଜିଲା ଆସି ଦେଖ ତୁ ବହନ ।
ଶୁଣିଣ ଜାନକୀ ଯେ ହରଷ ହୋଇଲେ
ଗୁପତ ସ୍ଥାନରୁ ଯେ ବେଗେ ବାହାରିଲେ ।
ଗିରିପରେ ରହିଣ ଦେଖନ୍ତି ଶଶୀମୁଖୀ
ମନ୍ଦାର ପୁଷ୍ପ ପରାଏ ରଣ ଭୂମି ଦିଶି ।
କୋଶେ ଆୟତନ ଦିଶଇ ରଙ୍ଗମଏ
ରକତ ନଦୀ ଦେଖ ଦକ୍ଷିଣକୁ ବହେ ।
କାକ ଶୃଗାଳ ଦେଖି ଚମତ୍କାର ହେଲେ
ଶ୍ରବଣ ଦୁଇଛୁଇଁ ଧର୍ମକୁ ସୁମରିଲେ ।
ଧାଡ଼ି ଧାଡ଼ି କବନ୍ଧ ନାଚନ୍ତି ଯୋଡ଼ି ଯୋଡ଼ି
ରୁଧିର ନଦୀତୀରେ ଗହଳ ତୁଣ୍ଡ ରଡ଼ି ।
ଦେଖିଣ ଜାନକୀ ଚମତ୍କାର ହେଲେ
ଧର୍ମକୁ ସୁମରି ସେ ଶ୍ରବଣ ଛୁଇଁଲେ ।
ନିଃସ୍ୱାର୍ଥୀ ଲୋକକୁ ଯେ ଧର୍ମ ଅଟେ ସାହା
ଶ୍ରୀରାମଙ୍କର ଅଟଇ ଦୁଇଗୋଟି ବାହା ।
ଦୈତ୍ୟଙ୍କର ଅନେକ ବାହୁ ଯେ ବିସ୍ତାର
ଏକା ଜଣକୁ ଘୋଟିଲେ ବଳଅଶୀ ସାଗର ।
ଅଗସ୍ତି ପୂର୍ବରେ ଯେଉଁ ବୁଦ୍ଧି କଲେ
ମନ୍ତ୍ରବଳେ ସପତ ସିନ୍ଧୁକୁ ଶୁଖାଇଲେ ।
ପର୍ଶୁରାମ ଯେଉଁ ରୂପେ ସାଧି ସପ୍ତପୁର
ସେହିରୂପେ ଶ୍ରୀରାମ କଲେ ଯୁଦ୍ଧ ଘୋର ।
ଏମନ୍ତ ବଚନ ଯେ ଜାନକୀ ଭାଷିଲେ
ଗତୁ ସତେ ଗୁଣରେ ପ୍ରଫୁଲ୍ଲିତ ହେଲେ ।
ଲକ୍ଷ୍ମଣଙ୍କୁ ବୋଇଲେ ଚାଲ ଆମ୍ଭେ ଯିବା
କୋଦଣ୍ଡ କାଣ୍ଡଧାରୀଙ୍କି ଦର୍ଶନ କରିବା ।
ଶୁଣିକରି ଲକ୍ଷ୍ମଣ ବୋଇଲେ ଆଗ ଚାଲ
ଶୁଭ ଅନୁକୂଳେ ଗିରିକି ଏବେ ଛାଡ଼ ।
ଶୁଣିକରି ସୀତୟା ଗିରିକି ଓଳଗିଲେ
ତାହାର ଭରସାରେ ଶତ୍ରୁ ସାଧ କଲେ ।
ଏତେ କହି ଦେବୀ ଯେ କରନ୍ତି ଗମନ
ଆଗେ ଚାଲେ ବଇଦେହୀ ପଛରେ ଲକ୍ଷ୍ମଣ ।
ଧୀରେ ଧୀରେ ଦେବୀ ଯେ ଗିରିରୁ ଓହ୍ଲାଇ
ରାମନାମ ପଦ ଯେ ହୃଦରେ ସୁମରଇ ।

ରାମଙ୍କ ଛାମୁରେ ପ୍ରବେଶ ହେଲେ ଯାଇ
ଯେଉଁଠାରେ ଦାଶରଥି ଅଛନ୍ତି ଉଭାହୋଇ ।
ଶ୍ରୀରାମ ଚରଣେ ଓଳଗ ମେଲାଇଲେ
ହସି ହସି ଶଶୀମୁଖୀ ଆଗେ ଉଭାହେଲେ ।
ଲକ୍ଷ୍ମଣ ପ୍ରଣିପାତ କଲେ ଶ୍ରୀରାମଙ୍କୁ
ଦେଖିକରି ରାମଚନ୍ଦ୍ର ହର୍ଷମନ ତାଙ୍କୁ ।
ରଘୁନାଥ ହସିଲେ ସୀତାଙ୍କ ମୁଖ ଚାହିଁ
ଜାନକୀ ସରସ ମନରେ ଉଭାହୋଇ ।
ଶ୍ରୀରାମ ବୋଇଲେ ଶୁଣ ଶଶୀମୁଖୀ
ଅସୁର ବଳ ଦେଖି ଡରୁଥିଲୁ ସଖୀ ।
ତୃପତ ହେଲୁଟିକି ମଲେ ଯେ ଅସୁର
ଆସିଲାବେଳେ ଦେଖିଲୁ କେତେ ସେ ପ୍ରବଳ ।
ଏବେ ଦେଖ ସଖୀରେ ଗୋଟିଏ କେହି ନାହିଁ
ରାମଙ୍କ ବଚନ ଶୁଣି ହସନ୍ତି ବଇଦେହୀ ।
ବିବରେ ଲୁଚିବାକୁ ଗୋ ବୋଲୁଥିଲୁ ମୋତେ
ମୋର ସାମର୍ଥ୍ୟ ପଣ ଦେଖିଲୁ ତ ନେତ୍ରେ ।
ସମୁଦ୍ର ପ୍ରାୟେ ଯେବେ ସଇନି ଘୋଟିବ
ତ୍ରିଦଶ ଦେବତା ଯେବେ ମୋ ସଙ୍ଗେ ବାଦୀ ହେବ ।
ତିନିପୁର ଅସୁରେ ଘୋଟିବେ ଯେବେ ପୁଣ
ତେବେ ତାଙ୍କୁ ଜିଣିବି ମୁଁ ମନେ ନ ଧର ଆନ ।
ବିଶ୍ୱାମିତ୍ର ମୁନି ମୋତେ ବିଦ୍ୟା ଶିକ୍ଷା ଦେଲେ
ପର୍ଶୁରାମ ବଇଷବୀ ଧନୁ ସମର୍ପିଲେ ।
ତେଣୁ କରି ମୋର ସଙ୍ଗେ କେହି ନୁହେଁ ସରି
ଶିବଧନୁ ଜନକ ଦେଲେ ଆଣିକରି ।
ସେ ଧନୁ ଗୋଟି ପୁଣ ଅଛି ମୋର ହସ୍ତେ
ତେଣୁ ସେ ଅଜୟ ସେ ମୁହିଁ ଏ ଜଗତେ ।
ତେଣୁକରି ସମସରି ନାହାନ୍ତି ମୋତେ କେହି
ସାମର୍ଥ୍ୟ ଦେଖି ଦେବେ କୂଟକଲେ ମୋହଠାଇଁ ।
ଅସୁର ମାରିବାକୁ ବନକୁ ମୋତେ ଆଣି
ଶୁଣିକରି ହରଷ ଜନକ ଦୁଲଣୀ ।
ହରଷରେ ଜାନକୀ କହନ୍ତି ବଚନ
ସ୍ୱୟଂ ନାରାୟଣ ତୁମ୍ଭେ ଅଟ ହେ ଜନାର୍ଦ୍ଦନ ।
ଏକଥାକି ତୁମ୍ଭଙ୍କୁ ଅଟେ ଅସମ୍ଭବ
ସ୍ତିରୀ ଜୀବନରେ କିଛିହିଁ ନାହିଁ ଲାଭ ।
ମୁଁ ନ ଜାଣି ସ୍ୱାମୀ ବୋଇଲି ସିନା ଏହା
ଦାସୀର ଦୋଷ କ୍ଷମା କର ହେ ପ୍ରାଣନାହା ।

ଏତେ କହି ଜାନକୀ ଯୋଡ଼ିଲେ ବେନିକର
ହସିକରି କୋଳକଲେ ପ୍ରଭୁ ରଘୁବୀର ।
ସୀତାଙ୍କ କରଧରି ସେଠାରୁ ଚଳିଗଲେ
ପଞ୍ଚବଟୀ ବନରେ ପ୍ରବେଶ ହୋଇଲେ ।
ମାଜଣା ହୋଇଣ ଚିକ୍କଣ ଲଗାଇଲେ
ଗୋଦାବରୀ ନଦୀରେ ସ୍ନାହାନ ସେ କଲେ ।
ପୂର୍ଣ୍ଣ କୁଟୀରେ ପ୍ରବେଶ ହେଲେ ତିନିଜଣ
ଅମଳାଣ ବସ୍ତ୍ର କାଢ଼ି ପିନ୍ଧିଲେ ଯତନ ।
ନିତ୍ୟକର୍ମ ସାରିଣ ମେଳକ ଲାଗି ହେଲେ
ବନରୁ ଫଳମୂଳ ଲକ୍ଷ୍ମଣ ଆଣିଦେଲେ ।
ଜାନକୀ କନ୍ଦମୂଳକୁ ପାଇ କଲେ ନେଇ
ଦୁଇଭାଇ ଭୁଞ୍ଜିଣ ବସିଲେକ ତହିଁ ।
ଆଙ୍କୋବନ ସାରିଣ ପିନ୍ଧିଲେ ଅମଳାନ
ମୃଗଛାଲ ଉପରେ ବସିଲେ ରଘୁନାନ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଏଥୁ ଅନନ୍ତରେ ଜାନକୀ ଭୁଞ୍ଜିଲେଟି ।
ସାତଦିନ ଭୁଞ୍ଜି ନ ଥିଲେ ଭୁଞ୍ଜି ହେଲେସୁସ୍ଥି
ସ୍ୱୟଂ ନାରାୟଣ ସେ ମାନବ ମୁରତି ।
ଅସୁରଙ୍କୁ ମାରଣ ଦେବଙ୍କୁ ସୁଖ ଦେବେ
ମୁନିଜନମାନଙ୍କର ଭୟ ନିବାରିବେ ।
ଦେବତାଏ ନିର୍ଭୟରେ ସ୍ୱର୍ଗରେ ରହିବେ
ଦଣ୍ଡକା ଅରଣ୍ୟକୁ ସେ ସକାଶେ ଗଲେ ଏବେ ।
ଖର ଦୂଷଣ ତ୍ରିଶିରା ପଡ଼ିଲେକ ତହିଁ
ସକଳ ସୈନ୍ୟ ମଲେ ଗୋଟିଏ ନ ରହି ।
ଦେଖିକରି ସୂର୍ପଣଖା ପଳାଇଲା ଏକା
ବୃକ୍ଷପରେ ଜଟାୟୁଷ ବସିଣ କରେ ଦେଖା ।
ଜଟାୟୁଷ ଡାକଦେଲା ଶୁଣ ହେ ରାମରାଣ
ସୂର୍ପଣଖା ପଳାଉଛି ଧରି ତାକୁ ଆଣ ।
ତାହାକୁ ବିନାଶ କର ନ ଦିଅ ହେ ଛାଡ଼ି
ନ ମାରିଲେ ଅନର୍ଥ ରହିଲାଟି ଘେରି ।
ରାବଣେଶ୍ୱର ଅଟଇ ତାର ନିଜ ଭାଇ
ତିନିପୁର ଜିଣିଲା ଦେବ ତାଙ୍କୁ ମନାଇ ।
ସେ ଯାଇଣ ଭାଇ ଆଗେ କରିବ ଗୁହାରି
ତୁମ୍ଭ ସଙ୍ଗେ ବଡ଼ ଦ୍ୱନ୍ଦ୍ୱ କରିବ ଦଶଶିରି ।
ଭାଇ ତାର କୁମ୍ଭକର୍ଣ୍ଣ ଆକାଶେ ଲାଗେ ଶିର
ବରଷକେ ଥରେ ସେ ଉଠେ ମହାବୀର ।

ତିନିପୁର ବୁଲିଣ ଯାହାକୁ ଦେଖେ ଖାଇ
ଅସ୍ଥିମୟ କରିଣ ସେ ଲଙ୍କାରେ ମିଳଇ ।
ଶୟନ ସ୍ଥାନରେ ବୀର ମିଳଇ ଯେ ଯାଇ
ସମସ୍ତେ ତାହାକୁ ଡରନ୍ତି ରଘୁସାଇଁ ।
ପୁତ୍ର ଇନ୍ଦ୍ରଜିତ ଯେ ତିନିପୁର ଜିଣି
ଦେବବର ବଳେ ସେ ପ୍ରବଳ ବଡ଼ ପୁଣି ।
ଛଳ କୂଟ ମାୟା ସେ ଜାଣଇଁ ବହୁତ
ତାହାକୁ ସମର୍ଥ ଯେ ନାହାନ୍ତି ଜଗତ ।
ନାତି ମହୀରାବଣ ଅଟଇ ଏକମୁଖା
ଚାରି ରାବଣ ସଙ୍ଗରେ ଦୈବକରେ ଲେଖା ।
ଦଶଗ୍ରୀବ ସମାନେ ଅଟଇ ତାର ବଳ
ଯେଉଁ ପୁରକୁ ଯାଏ ସେ ମେଦିନୀ ଟଳମଳ ।
ତାହାର ଭାରାରେ ବାସୁକୀ ନାଗ ଜାଣ
ମଥାଟେକି ନ ପାରଇ କହିଲି ତୋତେ ପୁଣ ।
ଏମନ୍ତ ନଉସାଗର ଅସୁର ଲଙ୍କାଗଡ଼େ
ସମସ୍ତେ ବଳବନ୍ତ ଯେ ଅଟନ୍ତି ବଖଡ଼େ ।
ଅଠର ଗଣ୍ଡା କୁମର ତେର ଶତ ନାତି
ଦୁଇ ସହସ୍ର ଜୁଆଇଁ ରାବଣେଶ୍ୱରରଟି ।
ପଚାଶ କୋଟି ମୁକୁଟ ବନ୍ଧା ସେନାପତି
ଶାଳକଗଣ ତାହାର ଅଟନ୍ତି ପାଞ୍ଚକୋଟି ।
ଆଉ କଥାମାନ ଯେ ଅକଳିତ ଜାଣ
ସୂର୍ପଣଖାର ଭାଇ ଅଟେ ସେ ରାବଣ ।
ନୋହିଲେ ବହୁତ ଦୁଃଖ ମିଳିବ ଚାପଧାରୀ
ଘରଣୀକି ତୋହର ନ ପାରିବୁ ସମ୍ଭାଳି ।
ଆଜିଠାରୁ ତୋର ବିପଦ ହେଲା ଜାଣ
ଗୁପତେ ଅସୁରେ ତୋତେ ଦୁଃଖଦେବେ ପୁଣ ।
ମୋର ଦୋଷ ନାହିଁ ବାବୁ କହିଦେଲି ତୋତେ
ପଛନ୍ତେ ଶ୍ରୀରାମରେ ନ ପୁଛିବୁ ମୋତେ ।
ଶୁଣିଣ ଦାଶରଥି ବୋଲନ୍ତି ବଚନ
ଶୁଣ ତୁ ଧର୍ମପିତା କହୁଛି ତୋତେ ପୁଣ ।
ଧର୍ମରେ ଥିଲେ ବାବୁ ସକଳ କଥା ଭଲ
ଧର୍ମକୁ ଲଙ୍ଘିଲେ ଯେ ନରହଇ କୁଳ ।
ଧର୍ମରେ ସମସ୍ତେ ହୁଅନ୍ତି ଆତଜାତ
ଅଧର୍ମରେ ସମସ୍ତେ ହୁଅନ୍ତି ସନ୍ତାପିତ ।
ପଳାଇଲା ଲୋକକୁ ନ ମାରଇ ମୁହିଁ
ତାହାର ହସ୍ତେ ଯା ହେବ ତାହା କରୁ ସେହି ।

ଶୁଣିଣ ଜଟାୟୁଷ କିଛି ନ କହିଲା
ହୃଦଗତେ ପକ୍ଷୀଜଟା ବିଚାର ପୁଣ କଲା ।
ଅସୁର ମାରିବାକୁ ଏ ହୋଇଅଛି ଜାତ
ଏହାକୁ ଦୁଃଖ ନଦେଲେ ନମରେ ଦଇତ ।
ଏଥୁ ଅନନ୍ତରେ ଶୁଣ ଗୋ ସଉରୀ
ଲଙ୍କା ପଲ୍ଲୀ ମଧ୍ୟକୁ ସୂର୍ପଣଖା ଗଲାଚଳି ।
ଜମ୍ବୁଦ୍ୱୀପ ମଣ୍ଡଳରେ ଅଟେ ଲଙ୍କାପଲ୍ଲୀ
ପ୍ରବେଶ ହୋଇଲା ବିଶ୍ରବାର ବାଳୀ ।
ଖରର ଘର ସେ ସେଠାରେ ଅଟେ ଜାଣ
ସୂର୍ପଣଖା ବାରତା କହିଲା ଯାଇଣ ।
ବୋଇଲା ଯେତେକ ଖର ଭାଇର ସଙ୍ଗେ ଗଲେ
ସମସ୍ତେ ମଲେ ସେଥିରୁ ଗୋଟିଏ ନ ବର୍ତ୍ତିଲେ ।
ଶୁଣିକରି ଦଇତୁଣୀ ରୋଦନ ଯେ କଲେ
ଲକ୍ଷେନାରୀ ସେଥିରେ ଅନାଥିନୀ ହେଲେ ।
ବୋଇଲେ ଏ ଜୀବନେ ଆଉକି ଅଛି କାର୍ଯ୍ୟ
ପରପାଇଁ ସ୍ୱାମୀମାନେ ମଲେ ଯାଇଁ ଆଜ ।
ଏତେ କହି ଶୁଷ୍କକାଷ୍ଠ ଆଣିକରି ଜାଳି
ସମସ୍ତେ ଅଗ୍ନିରେ ପଶିଲେ ଯାଇକରି ।
ପାର୍ଥିବ ଦେହ ଛାଡ଼ି ସ୍ୱର୍ଗକୁ ଚଳିଗଲେ
ସ୍ୱାମୀମାନଙ୍କ ସଙ୍ଗରେ ସମସ୍ତେ ରହିଲେ ।
ଏଥୁ ଅନନ୍ତରେ ସେ ବିଶ୍ରବାର ବାଳୀ
ଦେଖିକରି ସେଠାରୁ ବେଗେ ଚଳାଗଲି ।
ବିଲଙ୍କା ପଲ୍ଲୀରେ ସେ ହେଲା ପରବେଶ
ନଗ୍ରରେ ପଶନ୍ତେ ରୋଦନ ବିଶେଷ ।
ନଗ୍ରରେ ନର ନାରୀ ପଚାରିଲେ ତାକୁ
କିସ କିସ ଖବର କହ ତୁ ଆମ୍ଭଙ୍କୁ ।
ସୂର୍ପଣଖା ବୋଇଲା ଦୂଷଣ ଭାଇ ସଙ୍ଗେ
ସମସ୍ତେ ମଲେ ଗୋଟିଏ ନ ରହିଲେ ଏବେ ।
ସକଳ ଅସୁରୁଣୀ କରନ୍ତି ରୋଦନ
ସ୍ୱାମୀର ଗୁଣମାନ ବାହୁନିଣ ପୁଣ ।
ସେଥିରୁ ଲକ୍ଷେ ନାରୀ ବେଗେ ସଜହେଲେ
ସାଗର ମଧ୍ୟରେ ହରଷେ ଝାସ ଦେଲେ ।
ପାର୍ଥିବ ଦେହ ଛାଡ଼ି ସ୍ୱର୍ଗକୁ ଚଳିଗଲେ
ସ୍ୱାମୀର ସଙ୍ଗରେ ସେ ନିଶ୍ଚିନ୍ତେ ରହିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସେଠାରୁ ସୂର୍ପଣଖା ଗଲା ଯେ ଝଟତି ।

ଅଲଙ୍କା ପଲ୍ଲୀରେ ସେ ହେଲା ପରବେଶ
ନଗ୍ରରେ ପଶି ରୋଦନ କଲା ସେ ବିଶେଷ ।
ଭାଇ ଭାଇ ବୋଲିଣ ସେ କଲା ବିଳାପତ
ଶୁଣିକରି ପଲ୍ଲୀଲୋକେ ହେଲେ ତବଦତ ।
ବୋଇଲେ ନାକ କାଟି କିମ୍ପା ଅଇଲା ପୁଣ
ସୂର୍ପଣଖାକୁ ପଚାରନ୍ତି ସର୍ବଜନ ।
ସମସ୍ତେ ମଲେ ଗୋଟିଏ ନଇଲେ ଉବୁରି
ଶୁଣିକରି ଅସୁରୀଏ ରୋଦନ ଯେ କରି ।
ବୋଇଲେ ନାକକାଟିଲୋ କଢ଼ାଇ ଘେନିଗଲୁ
ଅଖଡ଼ରେ ନେଇଣ ସବୁଙ୍କୁ ନାଶକଲୁ ।
ଏତେ ବୋଲି ଲକ୍ଷେନାରୀ ରୋଦନ ଶାନ୍ତକଲେ
ଅଳତା ସିନ୍ଦୂର ଘେନି ବେଶ ସେ ହୋଇଲେ ।
ଶୁଖିଲା କାଷ୍ଠରେ ସେ ଅଗ୍ନି ଲଗାଇଣ
ସମସ୍ତେ ଅଗ୍ନିରେ ଝାସଦେଲେ ଜାଣ ।
ଅସୁରୀ ଦେହ ଛାଡ଼ି ବେଗେ ଚଳିଗଲେ
ଦେବତନୁ ଧରିଣ ସ୍ୱାମୀଙ୍କି ଭେଟିଲେ ।
ସ୍ୱାମୀଙ୍କ ସଙ୍ଗରେ ରହିଲେ ଯାଇଣ
ସେଠାରୁ ସୂର୍ପଣଖା ପଳାଏ ବହନ ।
ଏଥୁ ଅନନ୍ତରେ ବିଶ୍ରବାର ବାଳୀ
ଉତ୍ତର ମୁଖ କରିଣ ଚଳେ ଲଙ୍କପୁରୀ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଖର ଦୂଷଣ ତ୍ରିଶିରା ମଲେ ତିନିଜଣ ।
ଷୋଳ ସହସ୍ର ଅସୁର ତାଙ୍କ ସଙ୍ଗେ ଗଲେ
ତିନିଲକ୍ଷ ନାରୀ ଯେ ତହିଁ ସ୍ୱତୀ ଗଲେ ।
ସେହି ତିନି ପଲ୍ଲୀରେ ରହିଲେ ଆଉ କେତେ
ଜମ୍ବୁଦ୍ୱୀପେ ତିନିପଲ୍ଲୀ ଅଟଇ ଯୁକତେ ।
ଈଶ୍ୱର ବୋଇଲେ ଶୁଣ ହେଙ୍ଗୁଳାଇ
ତିନି ପଲ୍ଲୀରେ ଘର ପନ୍ଦର ସସ୍ର ହୋଇ ।
ସମର୍ଥ ଦୈତ୍ୟଯାକ ରଣକୁ ଯାଇ ମଲେ
ତାଙ୍କର ନାରୀମାନେ ଶୁଣି ଝାସ ଦେଲେ ।
ଅସମର୍ଥ ବାଳ ବୃଦ୍ଧ ରହିଲେ ଯେ ଜାଣ
ତାଙ୍କ ସଙ୍ଗେ ଥିବା ଯୁବା ସ୍ତ୍ରୀ ବର୍ତ୍ତିଗଲେ ପୁଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶାନ
ରାମଙ୍କ ମଢ଼ିଆକୁ କେତେଦୂର ରଣସ୍ଥାନ ।
ଈଶ୍ୱର ବୋଇଲେ ସେ ଯୁଝେ ଛଡ଼ା
ପଡ଼ିଆ ରାମ ବନରେ କରୁଥାନ୍ତି କ୍ରୀଡ଼ା ।

କନ୍ଦର ପର୍ବତରେ ଯାଇ ତିନିଜଣ
ସେ ଶିଳା ଉପରେ ବସି ଦେଖନ୍ତି ସର୍ବସ୍ଥାନ ।
ପାର୍ବତୀ ପଚାରିଲେ କହ ପ୍ରାଣେଶ୍ୱର
ବ୍ରହ୍ମଶର ମାଇଲା ଦୂଷଣ ଅସୁର ।
ସେ ଶରକୁ ଶ୍ରୀରାମ ପ୍ରତିଶର ନ କରି
ମୋହରେ ପଡ଼ିଲେ କୋଦଣ୍ଡ ଚାପଧାରୀ ।
କେମନ୍ତେ ଶ୍ରୀରାମ ମୋହ ତେଜ୍ୟା କଲେ
ସେକଥା ମୋର ଆଗେ କହ ଦେବ ଭଲେ ।
ଈଶ୍ୱର ବୋଇଲେ ଶୁଣରେ ପ୍ରାଣସହି
ଯେତେବେଳେ ମୋହରେ ପଡ଼ିଲେ ସୀତାସାଇଁ ।
ତେତେବେଳେ ଇନ୍ଦ୍ର ଯେ ଅମୃତ ସ୍ୱର୍ଗୁଢ଼ାଳି
ଶ୍ରୀରାମ ଉତ୍ତାନରେ ଯେ ସ୍ଥାନେ ଥିଲେ ପଡ଼ି ।
ଅମୃତ ଯାଇଣ ତାଙ୍କ ତୁଣ୍ଡରେ ପଶିଲା
ସେଠାରେ ଶ୍ରୀରାମ ଯେ ମୋହତେଜ୍ୟା କଲା ।
ଅମୃତ ଯୋଗରୁ ସେ ଅତ୍ୟନ୍ତ ବଳପାଇ
ଧନୁଶର ଧରି ଶ୍ରୀରାମ ଅସୁର ନିବାରଇ ।
ନିଶଂସୟ କରିଣ ମାରିଲେ ଦୈତ୍ୟବଳ
ସମସ୍ତେ ନାଶଗଲେ ସେ ସମର ଭୂମିର ।
ପାର୍ବତୀ ବୋଇଲେ କି କଲା ସୂର୍ପଣଖୀ
ସମସ୍ତେ ତ ନାଶଗଲେ କିକଲା ଏକାକୀ ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ଲଙ୍କାଗଡ଼କୁ ସୂର୍ପଣଖା ଗଲା ପୁଣ ।
ଲଙ୍କାର ଦାଣ୍ଡରେ ସେ କରଇ ଗମନ
ରଥର ଉପରେ ସେ କରଇ କ୍ରନ୍ଦନ ।
ଲଙ୍କା ନର ନାରୀ ଦେଖି ହେଲେ ଆଚମ୍ବିତ
ରାଜାର ଭଉଣୀ ଯେ ଦିଶେ ଅଶୋଭିତ ।
ବୋଇଲେ ସୂର୍ପଣଖା କେଉଁ ଦେଶେ ଥିଲା
କାହାର ସଙ୍ଗରେ ଏ ଦୁଷ୍ଟପଣ କଲା ।
ଏହାକୁ ଧରିଣ କାଟିଲେ ନାକ କାନ
ବିକଳେ ସୂର୍ପଣଖା ଅଇଲା ପଳାଇଣ ।
ଭାଇକି କହିଣ ଯେ ମରାଇବ ତାକୁ
ତେଣୁ ଯାଉଅଛି ଦଶଗ୍ରୀବର ପାଶକୁ ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ରାବଣ ସିଂହଦ୍ୱାର ସୂର୍ପଣଖା ମିଳି ।
ରଥରୁ ଓହ୍ଲାଇଣ ରାବଣ ଭଉଣୀ
ବନର ଭିତରେ ସେ ମିଳିଲା ପୁଣି ।

ଦେଖିଲା ରାବଣ ତ ହୋଇଛି ଅବକାଶ
ରାଣୀ ହଂସପୁରେ ଅଛି ମନଟି ହରଷ ।
ମନ୍ଦୋଦରୀ ସହିତେ ସମସ୍ତ ରାଣୀଛନ୍ତି
ଅପସରୀମାନେ ଯେ ସେବାରେ ଖଟନ୍ତି ।
କାମ କ୍ରୀଡ଼ା ରସରେ ଉନ୍ନତ ଲଙ୍କସାଇଁ
ତାରା ମେଳ ମଧ୍ୟରେ କି ଚନ୍ଦ୍ରମା ଅଛି ଉଇଁ ।
ବିବିଧ ବସନ ଯେ ଚାମର ନାନା ପୁଷ୍ପ
ମଣ୍ଡଣି ହୋଇଣ ଅଛି ଚଉପାଶ ।
ମଧ୍ୟରେ ପଲ୍ୟଙ୍କ ଶୋଭା ଚନ୍ଦନ କାଠେ ଦ୍ୱରା
ସୁବର୍ଣ୍ଣରେ ଝରା ଯେ ଗଜ ମୋତି ହୀରା ।
ଦେବାଙ୍ଗ ବସନେ ଯେ ସଜାଇଅଛି ତୁଳି
ଉପରେ ସିଞ୍ଚିଛି କର୍ପୂରର ଧୂଳି ।
ଚଉପାଶେ ଟେରା ଯେ ସିନ୍ଦୂଆ ପାଟଶାଢ଼ୀ
ଅଷ୍ଟରତ୍ନ ମାନ ଯେ ତହିଁରେ ଅଛି ଜଡ଼ି ।
ଚିତ୍ରଲିଖନ ଯେ ପ୍ରତିମା ପନ୍ତି ପନ୍ତି
ଅର୍ଘ୍ୟଧୂପ ଘେନି ଉଭା କେବଣ ଯୁବତୀ ।
କେ ଶ୍ୱେତ ଚାମର ଧରିଣ ବିଞ୍ଚନ୍ତି
ଆଲଟ ପଙ୍ଖାମାନ କେହୁ ଚଳାବନ୍ତି ।
କେଉଁ ନାରୀ ନଡ଼ପ ଧରିଣ ଉଭା ହୋଇ
କେଉଁ ନାରୀ ପରିଘ ଧରିଣ ଛିଡ଼ାହୋଇ ।
ଛୁରୀ ଖଣ୍ଡା ଧରିଛନ୍ତି କେବଣ ଯୁବତୀ
ଗଦାଶକ୍ତି ଧରିଣ ସମ୍ଭବେ ବେଢ଼ିଛନ୍ତି ।
ମନ୍ଦୋଦରୀ ସଙ୍ଗରେ ନୀଳାବତୀ ରାଣୀ
ରକ୍ତ ବୀର୍ଯ୍ୟଙ୍କର ସେ ଅଟଇ ଦୁଲଣୀ ।
ମୟ ଦୈତ୍ୟ ଦୁହିତା ଅଟେ ମନ୍ଦୋଦରୀ
ସବୁଙ୍କରି ଉପରେ ଅଟେ ସେ ଶୋଭାକାରୀ ।
ମନ୍ଦୋଦରୀ ଘେନିଣ ସକଳ ଯୁବତୀ
ଦଶଗ୍ରୀବ ସେବାରେ ସମସ୍ତେ ଘଟିଛନ୍ତି ।
ଏମନ୍ତ ସମୟରେ ସୂର୍ପଣଖା ମିଳି
ଅତି ଉଚ୍ଚରେ ସେ ଛାଡ଼ି ବୋବାଳି ।
ଭୂମିରେ ପଡ଼ିଣ ସେ ହୁଏ କୋଡ଼ି ଛେଚି
ଦେଖିଣ ନାରୀଗଣ ଆଶ୍ଚର୍ଯ୍ୟିତ ହୋନ୍ତି ।
ମନ୍ଦୋଦରୀ ଉଠିଣ ଧଇଲା ତାକୁ ତୋଳି
ଅନେକ ଯୁବତୀ ଯେ ପାଶରେ ତା'ର ମିଳି ।
ରାବଣ ବୋଇଲା ଲୋ କାନ୍ଦୁଛୁ କିମ୍ପାଇଁ
ଏପରି ଶାସ୍ତି ତୋତେ କେବଣ ଲୋକଦେଇ ।

ଅଗ୍ନିକି ଧରିଲା ସାଗରକୁ କେ ପୋତିଲା
ପଥର ପକାଇ କେ ମୂର୍ଦ୍ଧନା ପାତିଲା ।
କାଳସର୍ପ ମୁଖରେ କେ ଅଙ୍ଗୁଳି ଭରିଲା
ମତ ସିଂହ ସଙ୍ଗେ କେଉଁ ନାଗ ଯୁଦ୍ଧକଲା ।
କେବଣ ଲୋକର ଲୋ ଏଡ଼େକ ସାହସ
ଯମପୁର ଯିବାକୁ କେ କରିଅଛି ଆଶ ।
ଏ ମହୀ ମଣ୍ଡଳରେ ମୁହିଁ ବଳିୟାର
ଛପନ ଗଣ୍ଡା ଯୁଗକୁ ମୁଁ ପାଇଅଛି ବର ।
ଚଉଦ କୋଟି ଅମର ବିଧାତା ମୋତେ ଦେଲା
ତିନି ଭୁବନରେ ମୋତେ ବିଧାତା ସୃଜିଲା ।
ରଣଗୋଳ କରିଣ ମୁଁ ଜିଣିଲି ସୁରଗଣ
ଦେବତାଙ୍କୁ ଖଟାଇଲି ଆଣି ମୋ ଚରଣ ।
ତିନିପୁରେ ଖ୍ୟାତି ମୋର ବୀରସୁର ପଣ
କପିଳାସ ଉପାଡ଼ିଲି ଜିଣିଲି ପଞ୍ଚାନନ ।
ସୁରଗଣ ନର ଯେ ବାନର ଋକ୍ଷଗଣ
ଧନବସ୍ତ୍ର ଅଳଙ୍କାର ଯୁବତୀ ଦେଇ ପୁଣ ।
ମୋତେ କେ ସମସରି ନାହିଁ ତିନିପୁରୀ
ମୋହରେ ବନ୍ତ ନାହିଁ କେ ସମସରି ।
ନୋହିଲେକି ଦେବତାଏ ଥାଆନ୍ତେ ସେବାକରି
ବାସୁଦେବଙ୍କୁ ଛାଡ଼ିଣ ଆମ୍ଭଙ୍କୁ ଆଦରି ।
ଚଉଦ ଭୁବନେ ମୋର ନାମଟି ପ୍ରକାଶ
ପଚାଶ କୋଟି ଯୋଗୀଙ୍କୁ ଲାଗେ ମୋର ତ୍ରାସ ।
କେବଳ ଲୋକ ସେ ଯେ ବ୍ରହ୍ମାଣ୍ଡ ବାହାର
ମୋହର ମହିମା କି ଶୁଣିଲା ନାହିଁ ତାର ।
ମୋହର ଭଗ୍ନୀର ନାସା ଶ୍ରବଣ କାଟିଲା
ଯମ ପୁରକୁ ଯିବାକୁ ଭୟ ସେ ନ କଲା ।
ବେଗେ ମୋର ଆଗରେ କହ ଲୋ ସୂର୍ପଣଖୀ
ଆତ୍ମା ବିକଳ ହେଉଛି ମୋର ତୋର କଷ୍ଟଦେଖି ।
କରଯୋଡ଼ି ସୂର୍ପଣଖା କହଇ ଉତ୍ତର
ରାଗରେ ଥରହର କମ୍ପେ ତା ଶରୀର ।
ବୋଇଲା ଶୁଣ ଭାଇରେ ଲଙ୍କାରେ ଈଶ୍ୱର
ଜମ୍ବୁଦ୍ୱୀପ ମଣ୍ଡଳରେ ମାଉସୀ ପୁଅଘର ।
ଲଙ୍କା, ଅଲଙ୍କା, ବିଲଙ୍କା ପଲ୍ଲୀ ଯେ ଅଟଇ
ଖର, ଦୂଷଣ, ତ୍ରିଶିରା ତୋ ମାମୁଁ ପୁଅଭାଇ ।
ପାଞ୍ଚ ବରଷ ହେଲା ମୁଁ ସେହିଠାରେ ଥିଲି
ସେ ଦ୍ୱୀପରେ ବୁଲି ମେଦ ମାଂସ ଖାଉଥିଲି ।

ଗୋଦାବରୀ ନଦୀର ପୂରୁବ କୂଳରେ
ଭ୍ରମଣ କରିଯାଇ ମିଳିଲେ ସେଠାରେ ।
ପଞ୍ଚବଟୀ ବନରେ ପଶିଲି ଯାଇକରି
ଦେଖିଲି ସେଠାରେ ଅଛି ଅପୂର୍ବ ସୁନ୍ଦରୀ ।
ପୁରୁଷ ଦୁଇଜଣ ଏକ ଗୋଟି ସ୍ତିରୀ
ସେହିଠାରେ ଅଛନ୍ତି ପର୍ଣ୍ଣକୁଟୀ କରି ।
ଶିରରେ ଜଟାବାନ୍ଧି ଧନୁ କରେ ଧରି
ଫଳ ମୂଳ ମୃଗମାଂସ ଭୁଞ୍ଜନ୍ତି ଆଣିକରି ।
ସେ ବେନିଙ୍କ ସଙ୍ଗରେ ଏକଇ ଯୁବତୀ
ହରିହର ସଙ୍ଗରେ କି ସିନ୍ଧୁର ଦୁହିତୀ ।
ସେ ତିନିଜଣଙ୍କୁ ଶୋଭାରେ ନାହିଁ ପଟାନ୍ତର
ଅଯୋଧ୍ୟାର ରାଜା ଦଶରଥର କୁମର ।
ଜ୍ୟେଷ୍ଠଭାଇ ଶ୍ରୀରାମ କନିଷ୍ଠ ଲକ୍ଷ୍ମଣ
ବୃଷାଳ ତନୁ ତାଙ୍କର ଅତି ଶୋଭାବନ ।
ବିଭୂତି ବିଲେପନ ଶିରେ ଜଟାଭାର
ଅମଳାନ ବସ୍ତ୍ର ଶଯ୍ୟା କୃଷ୍ଣ ମୃଗଛାଲ ।
କାମଦେବ ତେଜକୁ ଉବୁରି ତାଙ୍କ ତେଜ
ସୁନ୍ଦର ଦେହ ବର୍ଣ୍ଣ ନୀଳ ମେଘ ଉଜ ।
ବୟସରେ ଛବିଶ ସତାଇଶ ପୁଣି
ବିକ୍ରମ ସିଂହ ପ୍ରାୟେ ରୂପ ଦିଶେ ଠାଣି ।
ଚାଲିବାର ଛଟକ ଗଜଗତି ଜାଣ
ବନସ୍ତ ଶୋଭାପାଏ ତାଙ୍କ ତେଜ ଗୁଣ ।
ବିସ୍ତାର ବୃଷାଳ କୁଞ୍ଚିତ କେଶ ଭାର
ସୀତା ନାମେ ରମଣୀ ଅଛି ଯେ ତାଙ୍କର ।
ରୂପ ଗୁଣେ ସୁନ୍ଦର ନବ ଯଉବନ
କି ଜାଣି ମୁଖ ତାର ଶୁକଳ ପକ୍ଷ ଜହ୍ନ ।
ପ୍ରତ୍ୟେକ୍ଷେ କମଳା ସେ ମାନବ ଦେହେ ଜନ୍ମ
ମର୍ତ୍ତ୍ୟରେ ଅବତାର କି ହୋଇଛି ନାରାୟଣ ।
ଲକ୍ଷ୍ମଣ ନାମରେ ଶ୍ରୀରାମ ସାନଭ୍ରାତ
ବାସୁଦେବ ସଙ୍ଗରେ କି ଅନନ୍ତ ହେଲେ ଜାତ ।
ଯେ ଶ୍ରୀରାମ ହସ୍ତରେ ଧନୁଶର ଥିଲେ
ସପତ ପୁରକୁ ସେ ଜିଣି ପାରେ ଭଲେ ।
ଏଥୁ ଅନନ୍ତରେ ଶୁଣ ଭାଇ ଜ୍ୟେଷ୍ଠ
ଶ୍ରୀରାମର ପ୍ରତିଜ୍ଞା ଅଟଇ ଗରିଷ୍ଠ ।
ଜମ୍ବୁଦ୍ୱୀପ ମଧ୍ୟରେ ଦେଖିଲି ତାକୁ ସାର
ତାହାର ସମାନ କ୍ଷତ୍ରୀ ନାହାନ୍ତି ତିନିପୁର ।

ବିଚାରିଲି କାମ ମୁଁ କରିବି ଏହାଙ୍କୁ
ଭାଇମାନଙ୍କର ଶିରୀ ରହେ ଦେଖୁଁ ଦେଖୁଁ ।
ମୋହ ରୂପକୁ ସେ ଆନରୂପେ ବର
ଏହାଙ୍କୁ ବରିବି ଦେଇ ଫୁଲମାଳ ହାର ।
ଦଇବେ ତୁମ୍ଭେ ଯେ ନ କଲ ମୋତେ ବିଭା
ତେଣୁ କରି ତିନିପୁରେ ଭ୍ରମଣ ମୋତେ ଶୋଭା ।
ଦେଖିକରି ପ୍ରସନ୍ନ ହୋଇଲା ମୋର ମନ
ବିଚାରିଲି ଏହିରୂପ ମୋତେ ପ୍ରସନ୍ନ ।
ପ୍ରସନ୍ନରେ ଜାଣିଲି ରାଜାର ପୁତ୍ର ଏହି
ନିଉନରେ ବଚନ କହିଲି ସମୁଝାଇ ।
ଜାତି, ଗୋତ୍ର ପଚାରି ମୋତେ କୋପକଲା
ନାସା ଶ୍ରବଣ ମୋର କ୍ରୋଧରେ କାଟିଲା
ସେଠାରୁ ପଳାଇ ଅଇଲି ଲଙ୍କା ପଲ୍ଲୀ ।
ଖରର ଆଗରେ କାନ୍ଦିଣ କହିଲି ।
ମୋତେ ଦେଖିକରି ଭାଇ ବିକଳ ହୋଇଲା
ଏ ଶାସ୍ତି କିଏ ଦେଲା ବୋଲିଣ ପଚାରିଲା ।
ସକଳ କଥା ତାକୁ ବୁଝାଇ କହିଲି
ଶୁଣିକରି ଖର ଭାଇ କ୍ରୋଧରେ ପ୍ରଜ୍ୱଳି ।
ସୈନ୍ୟବଳ ତାହାର ବେଗେ ସାଜିଲାକ
ଷଡ଼ ସହସ୍ର ବଳଠୁଳ କଲା ସେ ତ୍ୱରିତ ।
ମୋତେ କହିଲା ତୁ ଦୂଷଣକୁ କହ ଯାଇ
ସେ ଅଇଲେ ଆମ୍ଭର କାର୍ଯ୍ୟ ସିଦ୍ଧ ହୋଇ ।
ଏମନ୍ତ ଶୁଣିଣ ମୁଁ ଅଲଙ୍କା ପଲ୍ଲୀ ଗଲି
ଦୂଷଣର ଆଗରେ ସମସ୍ତ କହିଲି ।
ଶୁଣିଣ ଦୂଷଣ ଭାଇ ସୈନ୍ୟ ସଜକଲା
ପାଞ୍ଚ ସହସ୍ର ବଳ ସେ ସାଜିଣ ଆଣିଲା ।
ମୋତେ ଦୂଷଣ ଭାଇ କହିଲାକ ଗୀର
ତ୍ରିଶିରାକୁ ଡାକିଣ ଆଣ ଯା ସତ୍ୱର ।
ତାଠାରୁ ଶୁଣିଣ ବେଗେ ଚଳିଗଲି
ବିଲଙ୍କା ପଲ୍ଲୀରେ ପ୍ରବେଶ ହୋଇଲି ।
ସକଳ କଥା ତାକୁ କହିଲି ବୁଝାଇ
ଶୁଣିକରି ତ୍ରିଶିରା ଅତି କ୍ରୋଧ ହୋଇ ।
କଟୁଆଳକୁ ଡକାଇ ସୈନ୍ୟ ତାର ସାଜି
ପାଞ୍ଚ ସହସ୍ର ବଳ ଘେନି ବାହାର ହେଲାବେଗି ।
ବାଦ୍ୟ ନିଶାଣ ଯେ ଟମକ ଭୋଡ଼ଙ୍ଗ
ବଜାଇ ବୀରବର ଚଳିଲାକ ବେଗ ।

ସେହୁ ଆସିବାରୁ ଦୂଷଣ ବେଗେ ଆସି
ଖରର ଆଗରେ ମିଳିଲେ ହୋଇ ତୋଷି ।
ଦେଖିକରି ଖର ଭାଇ ପରମ ତୋଷ ହେଲା
ସଜ ହୋଇଥିଲା ସେ ବେଗେ ବାହାରିଲା ।
ଚଉଦ ସେନାପତି ସଙ୍ଗରେ ଘେନିଣ
ଚଳିଲେ ହରଷରେ ବାଜଣା ବଜାଇଣ ।
ଦିଗ ଦହନ ରଥରେ ବସି ତିନିଭାଇ
ପଞ୍ଚବଟୀ ବନରେ ମିଳିଲେ ସେ ଯାଇ ।
ଦେଖିଣ ଶ୍ରୀରାମ ଭାଇକି ତାର କହି
ଜାନକୀକି ଅନ୍ୟସ୍ଥାନେ ଘେନି ରହ ତୁହି ।
ଅସୁରଙ୍କ ସଙ୍ଗରେ ଯୁଝିବି ମୁଁ ଏକା
ଏତେ ବୋଲି ଧନୁ ଧରି ହୋଇଲା ନିଶଙ୍କା ।
ଷଡ଼ଦିନ ପରିଯନ୍ତେ ଅନେକ ଯୁଦ୍ଧ କଲା
ଷୋଳ ସହସ୍ର ସୈନ୍ୟ ଏକାକି ମାଇଲା ।
ସୀତାଙ୍କୁ ଘେନିଣ ରହିଲି ଲକ୍ଷ୍ମଣ
ଏକା ରାମ ସମସ୍ତଙ୍କୁ ମାଇଲା ଯେ ଜାଣ ।
ସୈନ୍ୟଙ୍କର ସଙ୍ଗରେ ତିନି ଭାଇ ମଲେ
ଗୋଟିଏ ବଳ ତହିଁରୁ ଉବୁରି ନଇଲେ ।
ସେଠାରୁ ପଲ୍ଲୀକି ମୁଁ ପଳାଇ ଆସିଲି
ଯୁଦ୍ଧର ବାରତା ସବୁ ବୁଝାଇ କହିଲି ।
ଶୁଣିକରି ରୋଦନ କଲେ ସର୍ବନାରୀ
ଅନଳ ଲଗାଇଣ ଦେଲେ ସର୍ବ ସ୍ତିରୀ ।
ଦେଖୁ ଦେଖୁ ଅନଳେ ଭସ୍ମ ହୋଇଗଲେ
ବାଳ ବୃଦ୍ଧମାନେ ମାତ୍ର ପଲ୍ଲୀରେ ରହିଲେ ।
ଏମନ୍ତ ଦେଖିଣ ସେ ପଲ୍ଲୀରୁ ଫେରିଲି
ଅଲଙ୍କା ପଲ୍ଲୀରେ ପ୍ରବେଶ ହୋଇଲି ।
ସେମାନେ ଯୁଦ୍ଧ ବାରତା ଶୁଣି ଶୋକକଲେ
ଅନଳ ଲଗାଇଣ ବହନ ଝାସ ଦେଲେ ।
ଏମନ୍ତ ଦେଖିଣ ସେଠାରୁ ଗଲି ପୁଣ
ବିଲଙ୍କା ପଲ୍ଲୀରେ ମିଳିଲି ତକ୍ଷଣ ।
ସକଳ ବୃତ୍ତାନ୍ତ ଯେ କହିଲି ବୁଝାଇ
ଶୁଣିକରି ନାରୀମାନେ ଅଗ୍ନିରେ ଝାସଦେଇ ।
ସେ ସବୁ ଦେଖି ରଥ ଚଢ଼ିଲି ମୁଁ ପୁଣ
ପ୍ରବେଶ ହୋଇଲି ଆସି ତୋହର ଛାମୁରେଣ ।
ତୋର ତିନିଭାଇ ଷୋଳ ସସ୍ରବଳ ମଲେ
ଏକା ଜଣକରେ ସବୁଙ୍କୁ ମାଇଲା ସେ ଭଲେ ।

ଦେଖିଣ ଦେବଗଣ ପୁଷ୍ପ ବୃଷ୍ଟି କଲେ
ଅପସରୀଗଣ ଯେ ଦୁନ୍ଦୁଭି ବଜାଇଲେ ।
ମୁନିଗଣମାନେ ଯାଇ ବସିଲେ ଯୋଗଧ୍ୟାନେ
ଅଦୋଷେ ଛେଦିଲେ ସେ ମୋହର ନାକକାନେ ।
ସ୍ତିରୀ ବୋଲିଣ ମୋତେ ପ୍ରାଣରେ ନ ମାଇଲେ
ଅଗୋଚର କର୍ମ ମୁଁ ଦେଖିଲି ଯାହାକଲେ ।
ଷଡ଼ଦିନରେ ସର୍ବ ସୈନ୍ୟଯାକ ନାଶି
ସାନଭାଇ ନ ଯୁଝିଲା ସୀତାଙ୍କୁ ଜଗିବସି ।
ଏତେ କଥା ସାନଭାଇ ନ ବୁଝେରେ କିଛି
ସେବେଳେ ଅଇଲି ଘେନିଣ ପରାଣଟି ।
ଭାଇ ଲଙ୍କପତି ଏବେ କର ନାହିଁ ହେଳା
ହେଳାକଲେ ଦୈତ୍ୟବଳ ମରିବେ ସର୍ବପରା ।
ମୋହର ମାନ ତୁମ୍ଭେ ଉଦ୍ଧର ଲଙ୍କପତି
ମୋତେ ଦୁଃଖ ଦେବାର ନୁହଇ ସଦଗତି ।
ତୋତେ ଯେବେ ସେହୁ ହୋଇବ ବଳିଯାର
ତେବେ ତୁ ତାହାକୁ କୌଶଳେ ସଂହାର ।
ସ୍ୱର୍ଗର ଇନ୍ଦ୍ରଦେବତା ତୋ ସେବାରେ ଛନ୍ତି
ମାନବ ଦୁଇଜଣଙ୍କୁ ମନେକରୁ ଭୀତି ।
କେ ତୋତେ ସଂଗ୍ରାମରେ ଅଛି ସମସରି
ପାରିଲେ ମାନ ମୋର ଉଦ୍ଧର ଦଶଶିରୀ ।
ତୋହର ପରି ଭାଇ କୁଳକୁ ଉଜ୍ଜ୍ୱଳ
କାହାର ଆଗେ କହିବି ତୁହିତ ମହାବଳ ।
ତୋହର ସୈନ୍ୟବଳ କେ କଳି ପାରିବ
ବୀରଙ୍କ ଉପରେ ତୁ ମହାବୀର ଦେବ ।
କୁପୁରୁଷ ସଙ୍ଗରେ ସରିହୁଅ ନାହିଁ ଭାଇ
ଶୋଣିତ ମାଂସ କେବଳ ଆହାର ନ ଖାଇ ।
କଡ଼ାକର କାର୍ଯ୍ୟ ସେ କରି ନ ପାରଇ
ତୁ କେଉଁ କୁଚାର ଯେ କରୁ ଲଙ୍କସାଇଁ ।
ତୋହର ଆଗରେ ମୁଁ କହିଲି ଦଣ୍ଡଧାରୀ
ମୋହର ମାନ ଉଦ୍ଧର ସୀତାଙ୍କୁ ଆଣଧରି ।
ମୋର ଅପମାନ ଯେ କହିବି କାହାକୁ
ତାହାର ଘରଣୀକି ଆଣ ମାନ ମୋ ରହିବାକୁ ।
ଏମନ୍ତ ବୁଝାଇଣ ସୂର୍ପଣଖା କହି
ଅଯୋଗ୍ୟ ପୁରୁଷେ ତୁ ଯେ ନୋହୁ ଲଙ୍କସାଇଁ ।
ଅଭିମାନ କଥା ମୋତେ ବହୁତ ବାଧଇ
କିମ୍ବା କଷ୍ଟ ସହିବିରେ ତୋ ପରା ଭାଇଥାଇ ।

ସୀତା ବୋଲି ରାମର ଯେଉଁ ନାରୀ ପୁଣ
ତ୍ରୈଲୋକ୍ୟରେ ତାର ସମ ନାହିଁ କେହିଜାଣ ।
ସେ ସ୍ତିରୀ ସଙ୍ଗରେ ଯେ କରିବ ରସକେଳି
ସେହି ସେ ପାରିବାର ବ୍ରହ୍ମା ବିଷ୍ଣୁଙ୍କୁ ବଳି ।
ଇନ୍ଦ୍ରପଦ ବହେ ଯେ ନୁହଇ ତାକୁ ସରି
ସେ ସୁନ୍ଦରୀ ସଙ୍ଗରେ ହାସ୍ୟରେ ଦିନସାରି ।
ଯେ ତାହାର ମୁଖରେ ଚୁମ୍ବନ ଦେବନେଇ
ଏ ମହୀମଣ୍ଡଳରେ ଜୀଇବା ଧନ୍ୟ ସେହି ।
ମନ୍ଦୋଦରୀ ସଙ୍ଗତରେ କେ ସରି ନୁହନ୍ତି
ତିନିକୋଟି ପଚାଶ ଲକ୍ଷ ନାରୀ ତୋରଛନ୍ତି ।
ତିନିପୁରେ ପ୍ରଶଂସା ଏହାଙ୍କୁ କରନ୍ତି
ଯେତେକ ନାରୀ ତୋର ଛନ୍ତି ରୂପବତୀ ।
ଏ ମନ୍ଦୋଦରୀ ତାର ପାଦକୁ ନୁହେ ସରି
ସବୁ ରାଣୀ ତୋହର ତାହାର ପରିଚାରୀ ।
ଗହନ ବନରେ ସେ ଉଦେ ପୂର୍ଣ୍ଣଚନ୍ଦ୍ର
ସକଳ ନାରୀଙ୍କ ପରେ ହୋଇବ ସେ ଇନ୍ଦ୍ର ।
ସେ ରାମ ଲକ୍ଷ୍ମଣଙ୍କୁ ମାରି ଦଶଶିରୀ
ତେବେ ତୋର ପାରିବାର ଦିଶିବ ତିନିପୁରୀ ।
ସେ କଥାରେ ଭାଇରେ ନକର ତୁ ହେଳା
ଜଗତ ବିଖ୍ୟାତ ତୋ ନାମ ହେବ ପରା ।
ସୀତାକୁ ଘରଣୀ କରି ଲଙ୍କାପୁରେ ରଖ
ଏ ଲଙ୍କାଗଡ଼ ଲୋକେ ଦେଖି ପାନ୍ତୁ ସୁଖ ।
ଶ୍ରବଣ ଦୃଢ଼ କରି ଶୁଣ ଦଶଶିରୀ
ଚଉଦ ଭୁବନେ ତୋର କୀର୍ତ୍ତି ଯିବ ପୂରି ।
ଶତେ ଜନ୍ମ ତପ କଲେ ଯାହାକୁ ନ ପାଇ
ସେ ତୋତେ ପ୍ରାପତ ଏବେ ହୋଇବରେ ଭାଇ ।
ସୂର୍ପଣଖା ବଚନ ଶୁଣିଣ ରାବଣ
ନିବର୍ତ୍ତି ହୋଇଣ ରହିଅଛି ଜାଣ ।
ମନ୍ଦୋଦରୀ ବୋଇଲା ଶୁଣ ଲୋ ପାମରୀ ।
ଲାଜ ନାହିଁ ନାକ କାନ କାଟିଲା ତୋତେ ଧରି ।
ମାତୁଳ କୁଳ ମରାଇ ଏବେ ହେଲୁ ସଳ
ବୁଲି ବୁଲି ଅନେକ ଗିରସ୍ତ କଲୁ ପର ।
ଯାହାକୁ ସ୍ୱାମୀ କରୁ ତାକୁ ନିତି ଖାଉ
ଅନେକ ପୁରୁଷକୁ ମାଇଲୁ ତ ଯହୁଁ ।
ଷୋଳ ସହସ୍ର ବଳ ତିନିଭାଇଙ୍କ ମରାଇଲୁ
ବିଶ୍ରବା ଋଷି କୁଳେ କଳଙ୍କ ଲଗାଇଲୁ ।

ନିଜେ ନ ମରିଣ ତୁ ଭାଇଙ୍କ ଆଗେ କହୁ
ତୁ ନାକକାଟି ଆସି ଏଥେ ଅନାର୍ଥ ଭିଆଉ ।
ତ୍ରିଶିରା ଖର ଦୂଷଣ ନାମକୁ ଲୁଚାଇଲୁ
ସୈନ୍ୟବଳ ମରାଇ ସନ୍ତୋଷ ନୋହିଲୁ ।
ଏ ତିନି ଭାଇଙ୍କି ମରାଇବୁ କି ପୁଣ
ତେବେ ନାକୋଇଲେ ତୋର ସନ୍ତୋଷହେବମନ ।
ଲଙ୍କାଗଡ଼କୁ ତୁ ଲୋ ଅଟୁ ଯେ ଶଙ୍କୁନୀ
କହିବାରୁ ତୋ କଥାରୁ ଜଣାଯାଏ ପୁଣି ।
ମନ୍ଦୋଦରୀ ବୋଇଲା ଶୁଣସପତଣୀ
ମାର ଏ ନାକୋଇକି ଏଠାରୁ ଯାଉ ପୁଣି ।
ଋଷିର ଦୁହିତା ହୋଇ ହେଲା ଏ ନାକୋଇ
ସୁନ୍ଦର ପୁରୁଷ ଦେଖି ଗିରସ୍ତ ଲୋଡ଼ଇ ।
ନାକ, କାନ ଯିବାର ନାହିଁ ଯାକୁ ଲାଜ
ମାତୃକୁଳ ଅଂଶକୁ ଏ ଖାଇଲା ହୋଇ ସଜ ।
ପୁଣି ନିଜ ଭାଇର ବଂଶ ମରାଇବ
ତେବେ ଏହାର ମନ ସନ୍ତୋଷ ହୋଇବ ।
ଏ ନାକକାଟି ମୁଖ ଚାହିଁଲେ ଅଶୁଭ
ଚୂନ କଳା ଦେଇ ଯାକୁ ଘଉଡ଼ାଅ ବେଗ ।
ଏହାର ବୋଲକରେ ଆପେ ଯାଇ ନାଶ
ପରଦ୍ରବ୍ୟ ହରିଲେ ହତ ହୁଏ ବଂଶ ।
ଇନ୍ଦ୍ର ଦେବତା ଯେ ମର୍ତ୍ତ୍ୟକୁ ବିଜେ କଲେ
ଗଉତମ ନାରୀଙ୍କି ମନରେ ଦେଖିଲେ ।
ସୁନ୍ଦର ରୂପ ଦେଖି ମାୟାରେ ହେଲେ ଋଷି
ଅହଲ୍ୟାଙ୍କୁ ହରିଲେ ଋଷିଙ୍କ ଘରେ ପଶି ।
ଜାଣିପାରି ବ୍ରହ୍ମ ଋଷି ତାଙ୍କୁ ଶାପ୍ୟଦେଲେ
ସହସ୍ରଯୋନି ତୋରଦେହେ ହେଉରେ ବୋଇଲେ ।
କଳଙ୍କ ଲାଗିଲା ସେ ଯୋଗେ ଇନ୍ଦ୍ରଠାରେ
ଯୋନିମୟ ହୋଇଲା ତାହାର ଶରୀରେ ।
ନିଲକ୍ଷଣ ରୂପ ହୋଇ ହେଲା ସେ ବ୍ୟାକୁଳ
ଲଜ୍ୟାରେ ମୁଖପୋତି ବସିଲା ସୁନାଶିର ।
ଅହଲ୍ୟାକୁ ଶାପ୍ୟଦେଲେ ଋଷି କ୍ରୋଧେ
ପଥର ହୋଇ ରହିଲା ଦୁଇଯୁଗ ଏବେ ।
ଯେଉଁ ରାମ କଥା କହିଲା ସୂର୍ପଣଖୀ
ତାହାର ପାଦ ଲାଗି ଅହଲ୍ୟା ହେଲା ମୁକ୍ତି ।
ସେହି ରାମ ଶିବଧନୁ ମିଥିଳାରେ ତୋଳି
ପର୍ଶୁରାମ ଦର୍ପକୁ ପଥରେ ଦେଲେ ଦଳି ।

ପିତାଙ୍କ ସତ୍ୟପାଳି ଆସିଛନ୍ତି ବନ
ଭାଇ ଭାରିଯା ସଙ୍ଗରେ ଆଣିଛନ୍ତି ପୁଣ ।
ବସନ୍ତରେ ଦେଖିଲେ ମାରନ୍ତି ଦୁଷ୍ଟଜନ
ସନ୍ଥଙ୍କୁ ପାଳିବାରେ ଅଟେ ତାଙ୍କ ମନ ।
ମୋର ବୋଲ କର ସ୍ୱାମୀ ନ ଯା ତାଙ୍କ ପାଶ
ଗଲେ ନିଶ୍ଚେ ନାଶ ଯେ ହେବ ତୁମ୍ଭ ବଂଶ ।
ବାସୁଦେବ ଜାତ ସେ ହୋଇଛନ୍ତି ଜାଣ
ଅନ୍ୟାୟ କଲେ ଅଳ୍ପ ଦିନରେ ମରଣ ।
ଶୁଣିକରି ରାବଣ କ୍ରୋଧଭର ହେଲା
ଆଣିବି ତା ଘରଣୀକି ବୋଲିଣ ବୋଇଲା ।
ସୀତାଙ୍କୁ ଆଣିବାକୁ ବଳିଲା ମୋର ମତି
କେତେ ଛନ୍ଦ କରିଣ କହୁଛ ଯୁବତୀ ।
ଶୁଣିକରି ସୂର୍ପଣଖା ହରଷ ହୋଇଲା
ମନ୍ଦୋଦରୀ ବଚନ କହିବା ତୁଚ୍ଛ ହେଲା ।
ଶ୍ରୀରାମର ବଳ ଯହୁଁ ଶୁଣିଲା ଅପ୍ରମିତ
ରାବଣର ମନରେ ଭୟ ହେଲା ଜାତ ।
ବିଚାରିଲା କି ଉପାୟ କରି ମୁଁ ହରିବି
ରୂପଗୁଣ ସୁନ୍ଦର ତାହାର ଦେଖିବି ।
ଏମନ୍ତ ବିଚାରି ସେ ଭାଳି ଦୈତ୍ୟ ମନ
ସୂର୍ପଣଖା କଥାକୁ କଲା ଦୃଢ଼ପଣ ।
କାମ ସମୁଦ୍ର ମଧରେ ବୁଡ଼ିଲା ଲଙ୍କସାଇଁ
ଜାନକୀଙ୍କୁ ଆଣିବାକୁ ଉଦ୍‌ବେଗ ହୋଇ ।
ଆପଣାର ମନରେ ଭାଳେ ଦଶ ମୌଳି
ସୂର୍ପଣଖା ବୋଇଲା ଶ୍ରୀରାମ ବଡ଼ ଭଳି ।
ସୀତା ସୁନ୍ଦରୀକି ଜଗତେ ସମ ନାହିଁ
କେମନ୍ତ ପ୍ରକାରେ ଆଣିବି ତାକୁ ଯାଇ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଶଙ୍କା ମୋର ମନ
ତାହାର ଘରଣୀକି ଆଣିବି କେସନ ।
ବଳେ ନ ପାରିଲେ ମୁଁ କରିବି କପଟ
ଅନେକ ପ୍ରକାର ମୁଁ ଜାଣଇ ମାୟାକୂଟ ।
ଯେମନ୍ତ ପାରିବି ମୁଁ ତେମନ୍ତ ଆଣିବି
ଏମନ୍ତ ବିଚାର ରାବଣ କଲା ଭାବି ।
ଯିବାକୁ ଉଦ୍‌ବେଗ କରଇ ତାର ଚିତ୍ତ
ରତ୍ନ ପଲଙ୍କରୁ ସେ ଉଠିଲା ତ୍ୱରିତ ।
ଅବକାଶ ହୋଇଣ ଉଭା ଲଙ୍କସାଇଁ
ମନ୍ଦୋଦରୀ ରାଣୀ ଯେ ଦେଖି ଉଭାହୋଇ ।

ଦଶଗ୍ରୀବ ଯିବାବେଳେ ଆଗରେ ଓଗାଳିଲା
କରଦୁଇ ଯୋଡ଼ିଣ ବଚନ ବୋଇଲା ।
କାହିଁକି ଆଗମନ କରୁଛ ପ୍ରାଣନାଥ
ମୋହର ଆଗରେ କହ ସ୍ୱରୂପ ସିଦ୍ଧାନ୍ତ ।
ରାବଣ ବୋଇଲା ଶୁଣ ଗୋ ମନ୍ଦୋଦରୀ
ଦଣ୍ଡକା ଅରଣ୍ୟକୁ ଯିବି ମୁଁ ବେଗ କରି ।
ରାମଲକ୍ଷ୍ମଣ ଯତୀ ଅଟନ୍ତି ବେନିଭାଇ
ସୀତା ବୋଲିଣ ତାର ଘରଣୀ ଅଛଇ ।
ସୁନ୍ଦର ପଣେ ତାହାକୁ ନାହିଁ କେ ସମସରି
ମୁହିଁ ଯାଉଅଛି ଯେ ଆଣିବି ତାକୁ ଧରି ।
ତୋତେ କହିଗଲେ ତୁ କରିବୁ ରାଗରୋଷ
ତେଣୁ ସେ ସଙ୍ଗାତରେ କହିଲି ବିଶ୍ୱାସ ।
ଦିଅସି ମେଲାଣି ମୁଁ ଏହିକ୍ଷଣି ଯିବି
ରାମ ଲକ୍ଷ୍ମଣଙ୍କୁ ମାରି ସୀତାଙ୍କୁ ଆଣିବି ।
ମନ୍ଦୋଦରୀ ବୋଇଲା ଏ ନୁହେଁ ଭଲପଣ
ତିନିପୁରେ ବିଖ୍ୟାତ ତୁମ୍ଭନାମ ଜାଣ ।
ତିନିକୋଟି ପଞ୍ଚାଶ ଲକ୍ଷ ଛନ୍ତି ନାରୀ
ଚଉଦ ଭୁବନରୁ ଆଣିଛ ବାଛିକରି ।
ଏମାନଙ୍କୁ ଭୋଗ ତୁମ୍ଭେ କର ଲଙ୍କପତି
ଅପସରୀ କିନ୍ନରୀ ଖଟନ୍ତି ଯେ ନିତି ।
ରତ୍ନମୟ ପୁରେ ଯେ ଭଣ୍ଡାର ବହୁତ
ଦେବତାମାନେ ଖଟିଥାନ୍ତି ଅନୁବ୍ରତ ।
ଶ୍ରୀଖଣ୍ଡ ଚନ୍ଦନ ଯେ ପାରିଜାତକ ପୁଷ୍ପ
ତୋହର ଭୋଗ ଦେବ ଈଶ୍ୱରର ଆଶ ।
ଏତେପଣ ଛାଡ଼ିଣ ଅଧର୍ମପଥେ ଯାଉ
ପରସ୍ତିରୀ ହରଣ ନକର ବିଂଶବାହୁ ।
ଦେଶାନ୍ତର ଯୁବତୀ ବିଶେଷେ ନାରୀହୀନ
ସେ କେହ୍ନେ ଜାଣିବ ଯେ ସୁରତି ବିଧାନ ।
ବିଭୂତି ବିଲେପନ କଷାବସ୍ତ୍ର ପିନ୍ଧି
ଗଳାରେ ରୁଦ୍ରାକ୍ଷ ଯେ ଶିରରେ ଜଟାବାନ୍ଧି ।
କନ୍ଦମୂଳ ଖାଇଣ ଦୁଃଖରେ ଦିନ ନ୍ୟନ୍ତି
ସେ କେହ୍ନେ ଜାଣିବ ଯେ ସୁରତିର ଗତି ।
ତୁମ୍ଭେ ଦିଗପାଳ ସଙ୍ଗତେ ସରି ପୁଣି
ଅଧର୍ମ କଥାକୁ ନ ଯା ବିଂଶପାଣି ।
ସମାନ ଲୋକ ସଙ୍ଗରେ ତୁମ୍ଭେ ପ୍ରୀତିକର
ନୀଚଲୋକର ଯେ ଉଚ୍ଚକୁ ଥାଏ ଡର ।

ସୂର୍ପଣଖା କହିଲେ ସୀତାରୂପ ଗୁଣ
ରାମଲକ୍ଷ୍ମଣଙ୍କର ବୀର ସୁରପଣ ।
ରାଜାର ପୁତ୍ର ସେ ଯେ ବନରେ ବୁଲନ୍ତି
ଧର୍ମକୁ ଆଶ୍ରେକରି ତପସ୍ୟା କରନ୍ତି ।
ତାଙ୍କୁ ତୁମ୍ଭେ ନିରାଶ ନକର ପ୍ରାଣନାଥ
ଏତେବୋଲି ମନ୍ଦୋଦରୀ ଶିରେ ଦେଲା ହସ୍ତ ।
ରାବଣ ବୋଇଲା ଶୁଣ ଗୋ ପ୍ରାଣସହୀ
ମଦନ ଅନଳରେ ତନୁ ମୋର ଦେହୀ ।
ମନ୍ଦୋଦରୀ ବୋଇଲେ ଶୁଣ ପ୍ରାଣପତି
ବରଷେ ପରିଯନ୍ତେ ଦେବି ମୁଁ ସୁରତି ।
ଦିନେ ଦିନେ ଏକନାରୀ କରେ ରତି ରସ
କେତେ ବନ୍ଧରେ ରତି ଜାଣ ପ୍ରାଣଈଶ ।
ବଡ଼ ଭାଇଙ୍କର ଶାପ ଅଛି ତୁମ୍ଭେ ଜାଣି
ନଳ ତୁମ୍ଭ ପୁତୁରା ଅଟଇ ଯେ ପୁଣି ।
ତାହାର କାମିନୀ ଯେ ଅଟେ ରମ୍ଭାନାରୀ
ତାକୁ ବଳେ ହରଣ କିବା ବଳେ ଧରି ।
ବଧୂ ସେ ପୁଣ ଅଟଇ ସହଜେ ତୁମ୍ଭର
କହିବାରୁ ଶାପ ଦେଲେ ଭାଇ ଯେ ତୁମ୍ଭର ।
ପୁନର୍ବାର ପରସ୍ତିରୀ ହରିଲେ ମରିବୁ
ପାସୋର ଗଲା କଥାକି ମନରୁ ହେ ବାବୁ ।
ଏଥର ହରିଲେ ଯେ ମରିବ ନିଶ୍ଚେ ତୁମ୍ଭେ
ଅନାଥିନୀ ହୋଇବୁ ଯୁବତୀଗଣ ସର୍ବେ ।
ଦେବତାଗଣଙ୍କ କୂଟ ନ ଜାଣକି ପୁଣି
ବାସୁଦେବଙ୍କୁ ଜାତ କରିଛନ୍ତି ଆଣି ।
ନିଶ୍ଚୟ ଲଙ୍କାପୁର ଏଥର ନାଶଯିବ
ପୁତ୍ରନାତି ସମସ୍ତଙ୍କୁ ଆପେ ମରାଇବ ।
କର୍ମରେ ଲେଖାଅଛି ସୀତା ହରିଲେ ମରି
ମୋର କଥା ଘେନିଣ ରହ ଅପସରି ।
ହିରଣ୍ୟ ଭୟରେ ବାସୁଦେବ ଯେ ଲୁଚିଲେ
ନୃସିଂହ ରୂପଧରି ହିରଣ୍ୟ ବିଦାରିଲେ ।
ବାମନ ରୂପଧରି ବଳିର ଦର୍ପଦଳି
ଭାରିଯା ରୂପେ ବଇଲୋଚନକୁ ମାରି ।
ଶୁକର ରୂପଧରି କଶିପୁ ଦେଲେ ଚିରି
କହ୍ନାଇ ଅବତାରେ ମାମୁଁଙ୍କୁ ସେ ମାରି ।
ରାମ ଅବତାରେ ତୁମ୍ଭର ପାଇଁ ହୋଇ
ତାଙ୍କ ସଙ୍ଗେ ଲାଗିଲେ ମାରିବେ ଯେ ସେହି ।
ନିଶ୍ଚୟେ ମୃତ୍ୟୁ ଏବେ ହୋଇଲା ତୁମ୍ଭର
କହିବାର କଥା ଯେ ନକର ପ୍ରାଣେଶ୍ୱର ।
ରାବଣ ବୋଲଇ ଶୁଣ ଗୋ ପ୍ରିୟସହି
ମଦନ ଅନଳର ତାପେ ମୋର ଦେହୀ ।
ତୁ ବୋଇଲୁ ସଖି ଗୋ ଅନେକ ଛନ୍ତି ନାରୀ
ସର୍ବଦା ରମଣ ଯେ ତାଙ୍କ ସଙ୍ଗେ କରି ।
ପୁରୁଷ ଭ୍ରମର ଯେ ଅନେକ ଫୁଲଚୁମ୍ବି
ନୂଆ ନାରୀ ଦେଖିଲେ ହୃଦୟ ଯାଏ ଦ୍ରବି ।
ତୁମ୍ଭେ କାମରେ ସଖି ନ ତିଆର ମୋତେ
ସୀତାଙ୍କୁ ଆଣିବାକୁ ଶ୍ରଦ୍ଧା ମୋର ଚିତ୍ତେ ।
ଷୋଳସସ୍ର ବଳ ମୋର ତିନିଭାଇ ମଲେ
ଭଉଣୀର ନାକ, କାନ ଛେଦନ ସେ କଲେ ।
ଏକା ଜଣକରେ ସେ ନାଶକଲା ଏହା
କେମନ୍ତେ ରହିବି ମୁଁ ଥାଇ ବିଂଶବାହା ।
କୁପାଞ୍ଚ କରିଣ ଯେ ଆଣିବି ତାର ନାରୀ
କେଡ଼େ ସାମରଥ ସେ କିରୂପେ ମୋତେ ମାରି ।
ଏପରି ବଚନ ସେ ମନ୍ଦୋଦରୀକି କହି
ବାହାରେ ଅବକାଶ ହୋଇଲାକ ଯାଇ ।
ଶୁକ ସାରଣ ମନ୍ତ୍ରୀକି ବେଗେ ଡକାଇଲା
ତଗରା ଯାଇଣ ଯେ ଡାକିଣ ଆଣିଲା ।
ଦଶଗ୍ରୀବ ବୋଇଲା ଶୁଣ ମନ୍ତ୍ରୀବର
ଜମ୍ବୁ ଦ୍ୱୀପକୁ ଯିବା ରଥ ସଜକର ।
ଶୁଣିକରି ବେନି ମନ୍ତ୍ରୀ ରଥ ସଜକଲେ
ଆଠଗୋଟି ଅଶ୍ୱ ସେ ରଥରେ ଯୋଚିଲେ ।
ପାର୍ବତୀ ବୋଇଲେ ଶୁଣ ସଂକର୍ଷଣ
କେତେଦିନ ଏଥିରେ ବହିଗଲା ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ରଣ ସରିବାରୁ ଯେ ଚଳିଲା ସୂର୍ପଣଖୀ ।
ତିନିଦିନ ତିନିପଲ୍ଲୀରେ ରହିଲା
ଚାରିଦିନେ ଲଙ୍କାରେ ପ୍ରବେଶ ହୋଇଲା ।
ପାଞ୍ଚଦିନେ ରାବଣଙ୍କୁ କହିଲା ସକଳ
ଦଶଦିନ ସେଥିରେ ଭାବିଲା ଦଶଶିର ।
ମନ୍ଦୋଦରୀ କଥାକୁ ଦୂର କରିଦେଲା
ବାରଦିନେ ଲଙ୍କାଗଡ଼ୁଁ ବାହାର ହୋଇଲା ।
ଏହିରୂପେ ସତରଦିନ ଗଲା ବହି
ଶୁଣିକରି ପାର୍ବତୀ ହରଷମନ ହୋଇ ।

ବୋଇଲେ ଏତେ ଦିନ କିମ୍ପା ବହିଗଲା
ଶିବ ବୋଇଲେ ରାବଣ ସମ୍ଭାଳି କାର୍ଯ୍ୟ କଲା ।
ବିଚାରିଲା ନଗଦରେ ଗଲେ କାର୍ଯ୍ୟ ନାହିଁ
ରଣକରିଅଛି ସେ ଜାଗ୍ରତେ ଥିବ ରହି ।
ଏମନ୍ତ ବିଚାରି ଅପସରିଲାକ ଦିନ
ଯିବାପାଇଁକି ଭାବୁଥାଏ ପ୍ରତିଦିନ ।
ପାର୍ବତୀ ବୋଇଲେ ରାବଣ କଥା କହ
ରଥ ସାଜିଲା ଯେ ବିଶ୍ରବାର ପୁଅ ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ବେନି ମନ୍ତ୍ରୀ ରଥ ଯେ ସାଜିଲେ ବହନ ।
ସିଂହଦ୍ୱାରେ ରଥ ଯେ ରୁହାଇଲା ନେଇ
ଦେଖିକରି ହରଷ ହୋଇଲା ଲଙ୍କସାଇଁ ।
ରଥର ଉପରେ ଯାଇ ବିଜେ କଲା
ମନ୍ତ୍ରୀଙ୍କି ଅନାଇଣ ବହନ ଆଜ୍ଞା ଦେଲା ।
ରଥବାହା ବୋଲିଣ ବୋଇଲା ଦଶଗ୍ରୀବ
ଶୁଣିଣ ବେନି ମନ୍ତ୍ରୀ ରଥ ବାହି ବେଗ ।
ଉତ୍ତର ଅଭିମୁଖେ ବହନ ଚଳିଲେ
ଲବଣ ସମୁଦ୍ରକୁ ହେଳେଣ ତରିଲେ ।
ମହୋଦଧିର ଦକ୍ଷିଣ କୂଳେ ଯାଇ ମିଳି
ତାଡ଼କୀର ପୁତ୍ରକୁ ସେଠାରେ ଦେଖିକରି ।
ମାରିଚ ଲୁଚି ଥିଲା ଶ୍ରୀରାମ ଭୟରେ
ଯାଇଣ ଦଶଗ୍ରୀବ ଦେଖିଲା କୂଳରେ ।
ସେଠାରେ ଦଶାନନ ରଥ ରୁହାଇଲା
ମାରିଚକୁ ଡାକିଣ ପାଶକୁ ଆଣିଲା ।
ଯହୁଁ ସେ ତାଡ଼କୀସୁତ ଅଇଲା ତା ପାଶ
ଦେଖିକରି ବିଂଶପାଣି ହୋଇଲା ହରଷ ।
ବୋଇଲା କିରେ ତୁହି କି କରୁ ଏଥେ ପୁଣ
ଏକା ହୋଇଣ ବୁଲୁଛୁ ସମୁଦ୍ର କୂଳେଣ ।
ତୁ ପରା ତାଡ଼କୀ ସୁତ ଅଟୁ ମହାବୀର
ମୁହିଁ ଲଙ୍କପତି ଅଟେ ଲଙ୍କାର ଈଶ୍ୱର ।
ତ୍ରୈଲୋକ୍ୟ ସାଧିଲି ମୁଁ ନିଜ ବାହୁ ବଳେ
ଦେବଙ୍କୁ ଖଟାଇଲି ଆଣି ପାଦତଳେ ।
ସ୍ୱର୍ଗପୁରୁ ମୁହିଁ ଅପସରୀଙ୍କ ଆଣିଲି
ଲଙ୍କାଗଡ଼ରେ ରଖି ତାଙ୍କୁ ବିଳସିଲି ।
ଅଚିନ୍ତାରେ ଭୋଗ ମୁଁ କରଇ ତିନିପୁର
ବାଦି ଭଗାରୀ ମୋର ନାହାନ୍ତି ଜଗତର ।

ଏବେ ମୁଁ ଶୁଣିଲି ଯେ ଲଙ୍କାଗଡ଼େ ଥାଇ
ଅଯୋଧ୍ୟା ରାଜପୁତ୍ର ବନରେ ବୁଲଇ ।
ମାନବ ରାଜାପୁତ୍ର ବୋଲି ମୁଁ ଜାଣିଲି
ସେଥିର ସକାଶେ ମୁଁ ଏଥକୁ ଅଇଲି ।
ରାମ ଲକ୍ଷ୍ମଣ ସେ ଯେ ଦଶରଥ ସୁତ
ପିତା ସତ୍ୟ ପାଳି ସେ ଅଇଲେ ବନସ୍ତ ।
ସୂର୍ପଣଖା ଭଗ୍ନୀ ମୋର ବନକୁ ଆସିଥିଲା
ଗୋଦାବରୀ କୂଳରେ ସେ ରାମଙ୍କୁ ଭେଟିଲା ।
ରାମଙ୍କୁ ବୋଇଲା ମୋର ଗିରସ୍ତ ହୁଅ ତୁହି
ବିଚାର ନ କରି ରାମ ତାକୁ ଶାସ୍ତି ଦେଇ ।
ମୋର ଭଉଣୀର ସେ କାଟିଲା ନାକ, କାନ
ମାତୁଳ ତିନିଭାଇଙ୍କି ମାରିଲେ ସେ ପୁଣ ।
ଏହାଶୁଣି ଅଇଲି ଆରୋହିଣ ରଥ
ତୋତେ ଦେଖି ବ୍ୟଥା ଏବେ ପାଇଲି ବହୁତ ।
ଚିନ୍ତାବେଳେ ପଥରେ ଭେଟିଲି ତୋତେ ଆସି
କି କିମ୍ପା ଏକା ହୋଇ ଏଠାରେ ଅଛୁ ବସି ।
ମାରିଚ ବୋଇଲା ବହୁତ ଦୁଃଖୀ ମୁହି
ରାତ୍ର ଦିବା ସେ ଚିନ୍ତା ମନରୁ ଯାଉନାହିଁ ।
ପିତାକୁ ମୋର ସଦାଶିବ ପୁତ୍ର ମାରି
ମାତା ତାଡ଼କୀ ମୋର ବିଧବା ରୂପେ ଫେରି ।
ଅନେକ ଯତନରେ ମୋତେ ସମ୍ଭାଳିଲା
ସଙ୍ଗରେ ଘେନି ମୋତେ ବନରେ ଲୁଚିଲା ।
କାଳେ ଦଶରଥ ତନୟ ରଘୁନାଥ
ସେ ମୋର ଜନନୀ କି ପ୍ରାଣେ କଲା ହତ ।
ସେତେବେଳେ ଶ୍ରୀରାମଙ୍କୁ ଏଗାର ବରଷ
ବିଶ୍ୱାମିତ୍ର ଯାଗକୁ ରକ୍ଷା କଲେ ସେ ତ ।
ଅଗ୍ନିଶରେ ସୁବାହୁକୁ ପ୍ରାଣେ କଲ ହତ
ମୋତେ ମାରିବାକୁ ରାମ ହୁଅନ୍ତେ ଉଦ୍ୟତ ।
ଭୟରେ ପଳାଇଲି ଗୋରୁ ରୂପଧରି
ସେ ରାମପଦକୁ ଶୁଣି ମନେ ଭୟ କରି ।
ତେଣୁ ସେ ବାହୁଡ଼ାକାଣ୍ଡ ମୋତେ ମାରି
ଏତେ ଦୂରେ ଆସି ମୁଁ ପଡ଼ିଲି ଜ୍ଞାନ ହାରି ।
ଦଶ ବରଷ ପର୍ଯ୍ୟନ୍ତ ମୋହରେ ପଡ଼ିଲି
ପୂର୍ବର ଭାଗ୍ୟବଳେ ସେଥିରୁ ବଞ୍ଚିଲି ।
ପୁଣି ମୁଁ ଶଙ୍ଖାସୁର ନନ୍ଦନ ସଙ୍ଗେ ଗଲି
ସେହୁ ମରିବାରୁ ମୁଁ ସେଠାରୁ ପଳାଇ ଆସିଲି ।

ଏ ସ୍ଥାନରେ ଲୁଚିଣ ରହିଅଛି ଜାଣ
ସେ ରାମ ଲକ୍ଷ୍ମଣଙ୍କୁ ଭୟ ମୋର ମନ ।
ତେଣୁ ଏ ସ୍ଥାନରେ ଲୁଚିଣ ମୁଁ ଅଛି
ସେ ରାମ ନାରାଚକୁ ଭୟ ମନେ ତ୍ରାସି ।
ପିତା ଜନନୀ ମାରିବାରୁ ଶଙ୍ଖାସୁର ନାତି
ସେମାନେ ବାହାର ହୋଇ ମିଳିଲେ ମୋ କତି ।
କୁଳଗୋତ୍ର ପଚାରି ମୋ ସଙ୍ଗେ ହେଲେ ପ୍ରୀତି
ତାଙ୍କର ଆଗରେ ଯେ କହିଲି ରାମକୀର୍ତ୍ତି ।
ଶୁଣିକରି ପ୍ରତିଜ୍ଞା କଲେ ବୀରମଣି
ଅରଣ୍ୟକୁ ବୁଲିବାକୁ ଗଲେ ମୋରେ ଘେନି ।
ଯାନ୍ତେଣ ଶ୍ରୀରାମଙ୍କୁ ଦେଖିଲୁଁ ସେ ବାଟେ
ଅସୁଁଅଭି ପଦ୍ମନାଭି ପର୍ବତ ନିକଟେ ।
ସଙ୍ଗରେ ଭାଇ ଭାରିଯା ଅଛଇ ଲକ୍ଷ୍ମଣ
ସଙ୍ଗ ହୋଇଣ ସେ ଆସନ୍ତି ତିନିଜଣ ।
ବଳରାମ ଦାସ ସେ ପର୍ବତେ ରହିଲା
ଗୁଳୁଚି ଡଙ୍କ ହୋଇଣ ଗଛରେ ମାଡ଼ିଲା ।
ସେଠାରେ ଶ୍ରୀରାମଙ୍କୁ କଲା ଦରଶନ
ଲତାର ମୁକତ ଯେ ହୋଇଲା ବେଗେ ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ମାରିଚ ରାବଣକୁ କହଇ ଭାରତୀ ।
ଶୁଣ ହେ ଦଶାନନ ସେ ରାମର କଥା
ପଥଚାଲି ଆସିବାରେ ପାଇଅଛି ବ୍ୟଥା ।
ମୁହିଁ ତାକୁ ଦେଖିଣ ଦୂରରୁ ଚିହ୍ନିଲି
ସେ ଦୁଇଭାଇଙ୍କର ଆଗରେ କହିଲି ।
ଏହି ଦାଶରଥି ମୋର ମାତାକୁ ବଧ କଲା
ମୋତେ ଆଣି ଦଇବ ପୁଣି ଭେଟାଇଲା ।
କି ବୁଦ୍ଧି କରିବି ମୁଁ ଯିବି ଆଉ କାହିଁ
ତୁମ୍ଭର ବୋଲରେ ଯେ ଅଇଲି ଏଥେ ଧାଇଁ ।
ଏହିକ୍ଷଣି ମୋତେ ସେ କରିବ ପ୍ରାଣେ ନାଶ
ଶୁଣିଣ କୋପ କଲେ ସେ ବେନି ରାକ୍ଷସ ।
ତୁ ହେ ମାରିଚ କିମ୍ପା ହେଉଛୁ ତରସ୍ତ
ଏତେ ବୋଲି ତିନିଜଣ ହେଲୁଁ ମୃଗ ରୂପ ।
ବାଟ ଓଗାଳିଣ ଯେ ବହୁ କୋପ କଲୁଁ
ପର୍ବତ ଉପରେ ଯାଇଣ ଚଢ଼ିଲୁଁ ।
ଚାପଧାରୀ ଆମ୍ଭଙ୍କୁ ଦେଖିକରି ଜାଣି
ତିନିକାଣ୍ଡ ଧନୁରେ ଯୋଚିଲେ ତକ୍ଷଣି ।

ବିଚାରିଲି ଯେବଣ କାଳରେ ମୁଁ ସାନ
କାକ ନିବାରଣ ଧନୁଁ ଧଇଲେ ରାମ ରାଣ ।
ନାହାଲବୋଲି କାଣ୍ଡ ସନ୍ଧିବାର ବେଳେ
ବିଶ୍ୱାମିତ୍ର ଯାଗ ସେ ରଖିଲେ ପୁଣ ହେଳେ ।
ମୋର ଜନନୀ କି ସେ ପେଶିଲେ ଯମପୁର
ଏହାର ଆଗରେ କି ସମର୍ଥ ପଣ ମୋର ।
ଆବର ଯେତେକ ସୈନ୍ୟ ବଳ ଥିଲେ
ମାନବ ବାସୁଦେବ ତାହାଙ୍କୁ ବଧ କଲେ ।
ଅସୁର ଦେଖିଲେ ସେ ସବୁଙ୍କୁ ମାରଇ
ଉପରୋଧ ନ କରଇ ଜାନକୀର ସାଇଁ ।
ଭୟରେ ମୁହିଁ ତହିଁ ଗୋରୁ ରୂପ ହେଲି
ସେଠାରୁ ହୋଇ ଯାଇଣ ରହିଲି ।
ପବନା ଶରରେ ମୋତେ ଉଡ଼ାଇଣ ଦେଲା
ଦୁଇଶତ ଯୋଜନରେ ଆଣି ପକାଇଲା ।
ବାର ବରଷ କାଳରେ ଏଡ଼େ କର୍ମ କରି
ଏବେ ଯୁବା କାଳରେ ଏଡ଼େ କର୍ମ କରି ।
ମାଧାହ୍ନ ଆଦିତ୍ୟ ପ୍ରାୟ ବିରାଜଇ ତେଜ
ନିଶ୍ଚୟ ଆମ୍ଭଙ୍କୁ ଏ କରିବ ଦହିଜ ।
ଏମନ୍ତ ବିଚାରିଣ ଭୟ ମୁହିଁ କଲି
ସଙ୍ଗର ଦୈତ୍ୟଙ୍କୁ ନ କହି ପଳାଇଲି ।
ଆରଦିନ ଆସିଣ ଦେଖିଲି ବାହୁଡ଼ି
ସେ ଦୁଇଭାଇ ଯେ ମରିଛନ୍ତି ପଡ଼ି ।
ତାହାଙ୍କୁ ଦେଖି ମୋର ଉଡ଼ିଲା ସାହସ
ସେହିଦିନୁଁ ମନରେ କଲଇଁ ମୁଁ ତ୍ରାସ ।
ତେଣୁ କରି ସମୁଦ୍ର କୂଳରେ ଲୁଚିଥାଇ
ଶ୍ରୀରାମର ଡରେ ମୁଁ ବାହାର ନ ହୁଅଇ ।
ଏମନ୍ତ ଶୁଣି ରାବଣ ବୋଇଲାକ ହସି
ମୁହିଁ କାହିଁ ପାଇଁ ଅଛଇଁ ଏବେ ଆସି ।
ଶ୍ରୀରାମ ଲକ୍ଷ୍ମଣ ବୋଲିଣ ବେନି ଯତି
ପଞ୍ଚବଟୀ ବନରେ ରହିଣ ଅଛନ୍ତି ।
ସୂର୍ପଣଖାର ସେହୁ କାଟିଲେ ନାକ କାନ
ଖର ଦୂଷଣାଦିଙ୍କି କରିଲେ ନିଧନ ।
ଆସିଛି ମୁଁ ତାହାଙ୍କୁ ସାଧିବାର ପାଇଁ
କଳେ ବଳେ କଉଶଳେ କାର୍ଯ୍ୟ ସାଧିବଇଁ ।
ସୂର୍ପଣଖା ସଙ୍ଗରେ ସଙ୍ଗାତ ତା ଆଛ
ତେଣୁ ସେ ମୋହର ଭଉଣୀ ଅଟଇ ।

ସେ ଲେଖାରେ ମୋର ତୁହି ଅଟୁ ଯେ ଭଣଜା
ତେଣୁ ତୋର କଥା ମୋତେ ହୁଏ ବୁଝା ।
ତାଡ଼କୀ ଅଟଇ ଯେ ସୁକେଶାର ସୁତା
କୁବେର ଜନନୀର ଅଟଇ ଖୁଡ଼ୁତା ।
ଭରଦ୍ୱାଜ ମୁନିଙ୍କର ଅଟଇ ସେହୁ ନାରୀ
ଯମୁନା ନଦୀକି ସେ ଗଲା ସ୍ନାନ କରି ।
ସୁକେଶାର ବଡ଼ଭାଇ ମଧୁଦୈତ୍ୟର ପ୍ରୀତି
ତାହାର ଘରଣୀ ନାମ ଅଟେ ନୀଳାବତୀ ।
ସେ ନାରୀ କାଳିନ୍ଦୀରେ ସ୍ନାନ କଲାବେଳେ
ବେନିଜନ ଭେଟ ପଡ଼ିଲେ ନଦୀକୂଳେ ।
କୁଳ ଗୋତ୍ର ପୁଚ୍ଛିଣ ପୀରତି ବଢ଼ାଇଲେ
ଫଳ ମୂଳ ଦେଇଣ ସଙ୍ଗାତ ହୋଇଲେ ।
ଏକ ପ୍ରାଣ ହୋଇଣ ଥାନ୍ତି ବେନିସଖୀ
ଭରଦ୍ୱାଜ ମୁନି ଯେ ସନ୍ତୋଷ ତାଙ୍କୁ ଦେଖି ।
ମଧୁଦୈତ୍ୟ ଆଗରେ କହିଲେ ନୀଳାବତୀ
ସୁକେଶାକୁ ରାଇଣ ବୋଇଲେ ଦକ୍ଷପତି ।
ଭରଦ୍ୱାଜ ଋଷିଙ୍କର ରମଣୀର ସଙ୍ଗେ
ପୀରତି କଲେ ସେହୁ ସ୍ୱାହାନର ରଙ୍ଗେ ।
ଏଡ଼େ ଭଲ କଥା ଯେ ହୋଇଲା ବୋଲଇ
ତୋହର କର୍ମରେ ଏବେ ସନ୍ତତି ଜାତ ନାହିଁ ।
ତୁମ୍ଭେ ଋଷିଙ୍କି ଯେ ବନ୍ଧୁରୂପେ ପାଳ
ସେ ମୁନି ଦୟାକଲେ ହେବ ତୋର ବାଳ ।
ଶୁଣିକରି ସୁକେଶା ମୁନିଙ୍କି ସେବାକଲା ।
ତାଡ଼କୀ ନାମରେ ତାର ଦୁହିତା ଜନମିଲା ।
ଭରଦ୍ୱାଜ ଋଷିଙ୍କର ଅଟେ ସେ ଝିଆରୀ
ସେହି ମୁନି ଯେ ଅଜା ଅଟନ୍ତି ମୋହରି ।
ସେ ମୋର ଜ୍ୟେଷ୍ଠଭାଇ ଅଟେ ଧନପତି
ସୁକେଶା ଋଷିଆଣୀ ଗର୍ଭରୁ ଉତପତି ।
ତେଣୁ ସେ ସାନଭ୍ରାତ ଅଟେ ଯେ ମୋହର
ଆବର ବନ୍ଧୁପଣ ଲେଖାରେ ଅପାର ।
ବୁଝିଲେ ତୋର ମୋର ଭିନ୍ନ ଦୁହେଁ ଜାଣ
ଏବେ ମୋର ସଙ୍ଗରେ ଭେଟ ତୁ ହେଲୁ ପୁଣ ।
ତୋର ପିଅର ମୟଦୈତ୍ୟର ଅଟେ ଶଳା
ମନ୍ଦୋଦରୀର ସେ ଯେ ଅଟଇ ମଉଳା ।
ସେ ଲେଖାରେ ଶାଳକ ଅଟୁ ତୁ ମୋହର
ଇନ୍ଦ୍ରଜିତ ଭଣଜା ଅଟଇ ତୋହର ।

ଗଲେ ଅଇଲେ ସିନାରେ ବନ୍ଧୁପଣ ଥାଇ
ନଗଲେ ନ ଅଇଲେ କୁଟୁମ୍ବ ଦୂର ହୋଇ ।
ତୋହର ଜନନୀକି ଶ୍ରୀରାମ ନାଶ କଲା
ମୋହର କର୍ଣ୍ଣରେ ସେ କଥା ଶୁଣିଲା ।
ବନ୍ଧୁ ବୋଲି ତୁମ୍ଭେ ଯେ ଆମ୍ଭଙ୍କୁ ନ ଚିହ୍ନି
ବାନ୍ଧବ ନ ଥିବାରୁ ଅନାଥ ତୁରେ ପୁଣି ।
ତେଣ ଏ ସମୁଦ୍ର କୂଳରେ ବସିଥାଉ
ଏହି ସଙ୍କଟ କିମ୍ବା ଲଙ୍କାକୁ ନ ଯାଉ ।
ଜନନୀ ମରଣ କହିଥାନ୍ତୁ ଯେବେ ଯାଇ
ଏତେଦିନ ଯାଏ ରାମଥାନ୍ତା କି ପ୍ରାଣେ ରହି ।
ମା ଭଗ୍ନୀର ନାସାକର୍ଣ୍ଣ କାଟିଲା ସେ ପୁଣ
ନିର୍ଭୟ ହୋଇ ସେ ଅଛି ପଞ୍ଚବଟୀ ବନ ।
ମନୁଷ୍ୟ ହୋଇକରି ଏଡ଼େକ ସାହସ
ତୁ ହୋ ମାରିଚ ଏବେ ମୋର ସଙ୍ଗେ ଆସ ।
ଶ୍ରୀମନ୍ତ ଲୋକର ଅଟେ ମୂଳଟି ସାହସ
ନକର ହେଳା ତୁ ରେ ବେଗହୋଇ ଆସ ।
ଯେବେ ରାମ ଲକ୍ଷ୍ମଣଙ୍କୁ ପାରିବି ମୁହିଁ ମାରି
ତେବେ ତୋହର ଶତ୍ରୁ କ୍ଷୟଗଲା ପରି ।
ନୋହିଲେ ତା ଘରଣୀକି ଆଣିବା ଚୋରାଇ
ଝୁରି ଝୁରି ମରିବ ସେ ଭାରିଯା ନ ପାଇ ।
ରାବଣର କଥା ଶୁଣି ମାରିଚ ଅସୁର
କ୍ଷଣେ ସେ ତୁନିହୋଇ ବୋଲଇ ଉତ୍ତର ।
ତୁ ହୋ ଦଶଗ୍ରୀବ ବୋଲୁଅଛୁ ଯାହା
ଶ୍ରୀରାମ ଅଟନ୍ତି ଯେ ତ୍ରୈଲୋକ୍ୟର ନାହା ।
ସ୍ୱୟଂ ନାରାୟଣ ସେ ଅକଳ ବଳ ତାର
ତାର ଭାରିଯା ଜାନକୀ ସଂସାରରେ ସାର ।
ତୁ ତାହାକୁ ଆଣିବାକୁ କରିଅଛୁ ବୁଦ୍ଧି
ସେ ରାମର ମହିମା ଅଟଇ ବାରାନିଧି ।
ବାର ବରଷା କାଳେ ଯାଗ ସେ ରଖିଲା
ଯାଗଶାଳେ ଅସୁର ବଳଙ୍କୁ ନାଶକଲା ।
ଇନ୍ଦ୍ର ତୋଳି ନ ପାରିଲା ଯେବଣ ସରାସନ
ହେଳେ ଆମଞ୍ଚିଲା ଦଶରଥର ନନ୍ଦନ ।
ସୀତାଙ୍କୁ ବିଭାହେଲା ସେହୁ ଶୁଭ ବେଳେ
ତାଡ଼କୀକି ବଧ ସେ ଯେ କଲାକ ବନରେ ।
ଗଉତମ ନାରୀ ଯେ ଅହଲ୍ୟା ସୁନ୍ଦରୀ
ଶାପ୍ୟରେ ଥିଲା ସେ ଯେ ଶିଳା ରୂପଧରି ।

ଶ୍ରୀରାମର ପାଦ ଲାଗନ୍ତେ ମୁକ୍ତ ହେଲା
ଚତୁ ଶତେଗୁଣ ରୂପ ସେ ପ୍ରକାଶିଲା ।
ସୁବାହୁ ସଙ୍ଗେ ଘେନି ଓଗାଳିଲେ ଯାଇ
ପବନାଶରେ ମୋତେ ଦେଲାକ ଉଡ଼ାଇ ।
ଅଜ୍ଞାନ ହୋଇଣ ମୁଁ ପଡ଼ିଲି ଏତେଦୂର
ସୁବାହୁକୁ ଦହନ କଲା ସେ ଅଗ୍ନିଶରେ ।
ବାଳୁତ କାଳରେ ତାର ଏସନକ ରୀତି
ଏବେ ଯୁବାବୟସ ହୋଇଛି ରଘୁପତି ।
ନାରାୟଣଙ୍କ ମହିଁମା ଅଟେ ତାର ଦେହୀ
ମୁଁ ତାହାର ବଳ ଯେ ଭଲେଣ ଜାଣଇଁ ।
ଶତ୍ରୁପଣରେ କେହି ସରିସମ ନାହିଁ
ତାହାର ସଙ୍ଗେ ଶତ୍ରୁତା କରିବା କିମ୍ପାଇଁ ।
ଏସବୁ କଥା ତୁମ୍ଭଙ୍କୁ କହିଲି ବୁଝାଇ
ତାର ସଙ୍ଗେ ଖଣ୍ଡଆଳି ନହୁଅ ଲଙ୍କସାଇଁ ।
ତୁ ବୋଲୁ ସମୁଦ୍ର ଭିତରେ ମୋର ଘର
କିପରି ମାରିବ ମୋତେ ମାନବ ରାଜା ଛାର ।
ପର୍ଶୁରାମକୁ ମାନବ କି ନକଲା ପୁଣି
ସପତ ପୁରକୁ ଯେ ଦଳିଲା ବୀରମଣି ।
ବିଚାରିଲେ ଶ୍ରୀରାମକୁ ଅଟୁ ତୁ କିଞ୍ଚିତ
ଲଙ୍କାକୁ ତୋର ଉପାଡ଼ି ଆଣିବ ରଘୁନାଥ ।
ବିଚାରିଲେ ସମୁଦ୍ର ଦେବ ସେ ବୁଡ଼ାଇ
ତୋହର ପ୍ରାୟ କେତେ ସେ ଅସୁର ମାରଇ ।
ଶୁଣିକରି ଲଙ୍କପତି ବଚନ କହେ ଗରୁ
ମୋର ପ୍ରତିଜ୍ଞା ମାରିଚ ଅଟେ ମହାମେରୁ ।
ମୋହର ସଙ୍ଗରେ ଆସରେ ତୁହି ପୁଣ
ମୋର ବୋଇଲେ ତୁ ସୁଖୀ ହେବୁ ଜାଣ ।
କନକ ମୃଗ ଗୋଟିଏ ତୋତେ ଦେବିକରି
ଦେଖାଦେଇ ପଳାଇବୁ ମାୟାରୂପ ଧରି ।
ସେ ତୋତେ ଗୋଡ଼ାଇଣ ଯିବ ଲୋଭକରି
ଏଣେ ମୁଁ ସୀତାକୁ ଆଣିବିଟି ଧରି ।
ସୀତାଙ୍କୁ ଆଣିଲେ ବଡ଼ପଣ ତା ସରଇ
ଝୁରି ଝୁରି ମରିବ ଭାରିଜା ନ ପାଇ ।
ନେଇ ସୀତୟାକୁ ରମିବି ମୁଁ ବଳେ
ସତ୍ୟବ୍ରତ ତାହାର ଭାଙ୍ଗିବି ମାୟାରେ ।
ସତ୍ୟବ୍ରତ ଭାଙ୍ଗିଲେ ସେ ହେବ ହୀନବଳ
ସତୀ ନ ପାଇ ମରିବ ଦଶରଥ ବାଳ ।

ବାରତା ତାହାକୁ ଯେ ନ ମିଳିବ ପୁଣି
ଶୂନ୍ୟରେ ରଥ ମୋର ଯିବ ତତକ୍ଷଣି ।
ରାଜ୍ୟକୁ ନ ଯିବ ସେ ଲଜ୍ଜା ପାଇ ଜାଣ
ବନରେ ବୁଲି ବୁଲି ହାରିବ ପରାଣ ।
ଅଳପ ଦିନରେ ସେ ନାଶ ଯିବ ପୁଣି
ଏସନକ ବଚନ ବୋଇଲା ବିଂଶପାଣି ।
ନକର ହେଳା ତୁ ରେ ମୋର ସଙ୍ଗେ ଆସ
ଶୁଣିଣ ମାରିଚ ଯେ କହଇ ସନ୍ଦେଶ ।
ଯେବଣ କାଳରେ ତାହାକୁ ଭେଟିଲି
ବନେ ଯାଉ ଯାଉ ମୁଁ ଯେ ତାକଥା ବୁଝିଲି ।
ଜାଣିଲି ମେରୁ ପର୍ବତ ସମାନେ ତାର ବଳ
ଟାଳିବାର ଛଟକ ଅଟଇ ତାର ବଳ ।
ତୁ ତାକୁ ମାରିବାକୁ ଧାରଣା ନ କର
ରାମକୁ ଚାଳିଲେ ତୁ ମରିବୁ ନିକର ।
ଅସୁରଙ୍କୁ କାଳସର୍ପ ଅଟେ ରଘୁନାଥ
ତାହାର ମୁଖେ ଅଙ୍ଗୁଳି ନ ଦିଅ ଦଶମାଥ ।
ବିଶେଷରେ ରାଜାର ତୁ ଅଟୁ ଦଶଶିରୀ
ରାଜା ହୋଇ ହରିବୁ କେହ୍ନେ ପରନାରୀ ।
ନୃପତି କୁଳରେ ଲାଜ ପାଇବୁ ତୁ ଜାଣ
ଦେବେ ନରେ ବାନରେ ହେବୁ ଅକାରଣ ।
ରାଜାମାନଙ୍କୁ ଏକଥା ଭଲ ନ ଯୋଗାଇ
ଏ କଥାକୁ ବିଚାର କର ହେ ଲଙ୍କସାଇଁ ।
ଅଜ୍ଞାନ ନୁହ ତୁମ୍ଭେ ମୋର ବୋଲକର
ତିନିପୁରେ ତୁମ୍ଭେ ଯେ ବୋଲାଅ ମହାବୀର ।
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଜିଣିଲ ଭୁଜବଳେ
ଦେବତାଙ୍କୁ ଆଣି ଖଟାଇଲ ପାଦତଳେ ।
ଏଡ଼େ ଯଶ ଲାଭକରି ବିଚାର ନ କର
ଜାନକୀଙ୍କି ହରିବାକୁ ମନରେ କିମ୍ପା ଧର ।
ସେ ମହାସତୀକି ଛୁଇଁଲେ ମରିବ
ବିଷକୁ ଖାଇ ଦେହକୁ କେମନ୍ତେ ଧରିବ ।
ଜନକ ଦୁହିତାଟି ଅଟେ ତୀକ୍ଷ୍ଣ ଭାଲ
ବୁକୁରେ ଫୁଟିଗଲେ ମରିବ ଲଙ୍କମଲ୍ଲ ।
ତୋହର କାଳ ଆସି ହୋଇଲା ପ୍ରବେଶ
ଯମ ତୋ ପାଞ୍ଜି ଦେଖିଲା ପୂରିଲା ଆୟୁଷ ।
ସୁଖଭୋଗ ତୋହର ଏହିଠାରୁ ଯିବ
ରାମ ତୋର କୁଳଗୋତ୍ର କିଛି ନ ରଖିବ ।

ଶୁଣିକରି ରାବଣ କହେ ଶିର ଝୁଣି
ଅସ୍ତୁକାର ବଚନ ବୋଲୁଛୁ ତୁହି ପୁଣି ।
ଏହିକ୍ଷଣି ତୋହର ଘେନିବି ପରାଣ
ଡରି କରି ମାରିଚ ବୋଲଇ ବଚନ ।
ଏମନ୍ତ ଭାଷା କିମ୍ପା ବୋଲୁ ଲଙ୍କ ମଲ୍ଲ
ଭଲ କହିଲେ ତୋ ବିଚାରିଛୁ ସଲ ।
ତୁ ଯେବେ ମାରିବୁ ମୁଁ ହେବି ଅକାରଣ
ଶ୍ରୀରାମ ହସ୍ତେ ମଲେ ସ୍ୱର୍ଗେ ଯିବି ଜାଣ ।
ମାତାକୁ ମାରି ରାମ ସ୍ୱର୍ଗକୁ ପଠାଇଲା
ପିତାଙ୍କ ସଙ୍ଗେ ମୋର ମାତା ଭେଟ ହେଲା ।
ମୋହର ଅଂଶଟିଏ ଏହିଠାରୁ ଶେଷ
ଅସୁର ଦେହ ଛାଡ଼ି ହେବ କି ଦେବ ଅଂଶ ।
ଜାଣଇଁ ମୁଁ ଶ୍ରୀରାମ ଅଟଇ ନାରାୟଣ
ତୋହର ହସ୍ତେ ମଲେ ହେବି ଅକାରଣ ।
ଏଥିପାଇଁ କି ତୁ କିମ୍ପା ମୋତେ କୋପ କରୁ
ରାବଣ ବୋଲେ କିମ୍ପା ବୋଲ ତୁ ନ କରୁ ।
ମାରିଚ ବୋଇଲା ଯାହା ବୋଲିବୁ ଲଙ୍କେଶ୍ୱର
ତାହା ମୁଁ କରିବି ଆଉ କୋପ ତୁ ନକର ।
ତୋହର ବୋଲି ମୋତେ ଅଟେ ଯେ ନିକର
ଶ୍ରୀରାମ ହସ୍ତେ ମଲେ ହେବି ମୁଁ ନିସ୍ତାର ।
ହୋଇବି କନକ ମୃଗ ଯିବି ରାମ ପାଶ
ଏତେ କହି ମାରିଚ ହେଲା ଦିବ୍ୟ ବେଶ ।
ଏଥୁ ଅନନ୍ତରେ ଯେ କହନ୍ତି ପାର୍ବତୀ
କଥାଏ ପଚାରିବି କହ ପ୍ରାଣପତି ।
ମନ୍ଦୋଦରୀ ରାଣୀର ଯେ ରାବଣ ବିଶ୍ୱାସ
ତାହାର ବଚନକୁ ନକଲା ଲଙ୍କଈଶ ।
କେତେ ପରକାରେ ସେ ବୁଝାଇ କହିଲା
ତାହାର ବୋଲ ଭାବ କେବେହେଁ ନ କଲା ।
ରଥ ଚଢ଼ି ତକ୍ଷଣେ ଅଇଲା ଜମ୍ବୁଦ୍ୱୀପ
ସେଠାରୁ ମନ୍ଦୋଦରୀ ମନରେ ଗରୁତାପ ।
କେଉଁ ବିଚାର ପୁଣି କଲା ମନ୍ଦୋଦରୀ
ସେ କଥା ବୁଝାଇ ମୋତେ କହ ତ୍ରିପୁରାରୀ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ରାବଣ ଅଇଲାରୁ ବିଚାରେ ତାର ସ୍ୱତୀ ।
ସବୁ ସପତଣୀଙ୍କି ଘେନିଣ ବିଚାରେ
ନାରଦ କହିଲେ ଯେ ଜନକ ଋଷି ଘରେ ।
ଜନମ ହେବେ କମଳା ମାନବୀ ରୂପରେ
ଦୈତ୍ୟ ମାରିବାକୁ ଅବତାର ସେ ସେଠାରେ ।
ସୀତାଙ୍କୁ ହରିଲେ ଲଙ୍କା ଗଡ଼ ନାଶ ଯିବ
ଏକଥା କହିଥିଲେ କଳହ ଋଷି ଆଗ ।
ସପତଣୀମାନଙ୍କ ଆଗରେ କହେ ଏହା
ସୀତା ଆଣିବାକୁ ଗଲେ ତ ବିଂଶବାହା ।
ସପତଣୀମାନେ ଶୁଣି ବୋଲନ୍ତି ବଚନ
ସେ ଋଷିଙ୍କି ସୁମରଣା କର ଗୋ ଏବେ ପୁଣ ।
ଜାଣିବା ସେ ଋଷିଠାରୁ ଶୁଣିବା ସେ ବାଣୀ
ଏମନ୍ତ ବଚନ ଶୁଣି ମନ୍ଦୋଦରୀ ରାଣୀ ।
କରରେ ଜୟମାଳା ଧରିଣ ମନ୍ଦୋଦରୀ
ଆସନକୁ ଦୃଢ଼ କରି ବସିଲା ଚତୁରୀ ।
ନାରଦ ମୁନିଙ୍କି ସେ ସୁମରଣା କଲା
ଯଶୋବନ୍ତୀ ପୁରରେ ଥିଲେ ଧାତାବଳା ।
ଆସନ କମ୍ପିବାରୁ ଜାଣିଲେ ବ୍ରହ୍ମଋଷି
ତତକ୍ଷଣେ ଲଙ୍କାଗଡ଼େ ମିଳିଲେ ସେ ଆସି ।
ରାଣୀ ପାଶେ ପ୍ରବେଶ ହେଲେ ବ୍ରହ୍ମା ବଳା
ଦେଖିକରି ମନ୍ଦୋଦରୀ ଉଠି ଉଭା ହେଲା ।
ସମସ୍ତ ସପତଣୀଙ୍କି ଘେଡ଼ି ଓଳଗିଲା
ଉଠିକରି କରଯୋଡ଼ି ବଚନ ବୋଇଲା ।
ଏ ଯେ ଦୁଷ୍ଟ ରାବଣ ଲଙ୍କାର ଈଶ୍ୱର
କହିଲାର ବୋଲକୁ ନ ମାନିଲା ମୋହର ।
ଜନକ ଋଷି ଝିଅ ସୀତା ନାମେ ନାରୀ
ଦଶରଥ ସୁତ ରାମଙ୍କୁ ସେ ବିଭା ହେଲା ବରି ।
ବିଭା ହୋଇ ରାମ ଯେ ଅଯୋଧ୍ୟା ପ୍ରବେଶ
ଏମନ୍ତ ଗଲା ତହିଁ ବେନି ଯେ ବରଷ ।
ଦଶରଥ ରାଜାଙ୍କୁ କହିଲେ ବଶିଷ୍ଠ
ରାମଙ୍କୁ ରାମା କର ସେ ଅଟେ କୁଳ ଶ୍ରେଷ୍ଠ ।
ଶୁଣିଣ ଦଶରଥ ମନରେ ଆନନ୍ଦ
ଶ୍ରୀରାମାକୁ ଅଯୋଧ୍ୟାରେ କରିବା ନରେନ୍ଦ୍ର ।
ପାତ୍ର, ମନ୍ତ୍ରୀ, ପରଜାଙ୍କୁ ଡାକି ଆଜ୍ଞା ଦେଲେ
କାଲି ପ୍ରଭାତରେ ରାମ ରାଜା ହେବ ଭଲେ ।
ଜ୍ୟେଷ୍ଠାରାଣୀ ତାଙ୍କର କୈକେୟୀ ନାମେ ନାରୀ
ବିରୋଧ କଲା ସେ ପରଜାଙ୍କୁ ସତ୍ୟକରି ।
ଶ୍ରୀରାମ ବନକୁ ଯାଇଣ ଚଉଦ ବରଷ
ମୋ ପୁତ୍ର ଭରତ ଶିରେ ଧରାଅ ଦଣ୍ଡଛତ୍ର ।

ଏମନ୍ତ ଭାବରେ ଯହୁଁ ସତ୍ୟ କରାଇଲେ
ଦଶରଥ ରାଜା ତାହା ରାମକୁ କହିଲେ ।
ତହୁଁ ରାମ ଭାଇ ଭାର୍ଯ୍ୟା ଘେନିଗଲେ ବନ
ଦଶରଥ ରାଜା ଯେ ହେଲେ ଚିନ୍ତାମଗ୍ନ ।
ପୁତ୍ର ମୁଖ ନ ଦେଖି ରାଜା ବିଚଳିତ ମନ
ବାରଦିନ ପରେ ରାଜା ଗଲେ ସ୍ୱର୍ଗସ୍ଥାନ ।
ଭରତ ରାଜା ନୋହିଲା ଅଯୋଧ୍ୟା ରାଜ୍ୟରେ
ମାତା ମୁଖୁଁ ଶୁଣି ପୁତ୍ର ବହୁତ ଧିକ୍କାରେ ।
ବୋଇଲେ ତିନିପୁରେ ହୋଇଲା ନିନ୍ଦିତ
ତୋ ଯୋଗୁଁ ମୋର ପିତା ହେଲେଟି ନିହତ ।
କ୍ରୋଧରେ ଶ୍ରୀରାମ ବନକୁ ଗମିଲେ
ଭାଇ ଭାରିଯାଙ୍କୁ ସଙ୍ଗରେ ସେ ନେଲେ ।
ଦଶବରଷ କାଳ ସେ ବନରେ ବୁଲିଲେ
ପଞ୍ଚବଟୀ ବନେ ତିନିବରଷ ରହିଲେ ।
ଫଳ ମୂଳ ଖାଇଣ ନିର୍ଝର ପାଣି ପିଇ
କାହାରି ଭଗାରି ସେ ନୁହନ୍ତି ରଘୁସାଇଁ ।
ଆଉଁ ମାସକତଳେ ସୂର୍ପଣଖା ଗଲା
ଗିରସ୍ତ କରିବ ବୋଲି ଲକ୍ଷ୍ମଣେ ସ୍ନେହକଲା ।
ସମ୍ମତ ନ କଲା ସେ ସଉମିତ୍ରୀ ତାରେ
ସୀତାକୁ ଡରାଇଲା ସେ ରାକ୍ଷସୀ ରୂପରେ ।
କ୍ରୋଧେ ଲକ୍ଷ୍ମଣ କାଟିଲେ ତାର ନାକ, କାନ
ପଳାଇ ସୂର୍ପଣଖା ଖରେ କହେ ପୁଣ ।
ଷୋଳ ସହସ୍ର ବଳଙ୍କୁ ଘେନି ସଙ୍ଗତେଣ
ଖର ଦୂଷଣ ତ୍ରିଶିରା ଚଳିଲେ କୋପେଣ ।
ଏକା ରାମ ଷଡ଼ଦିନେ ତାଙ୍କୁ କଲେ ନାଶ
ସେଠାରୁ ସୂର୍ପଣଖା ଲଙ୍କାରେ ପ୍ରବେଶ ।
ଭାଇ ଆଗରେ ସକଳ ବୃତ୍ତାନ୍ତ କହିଲା
ଶୁଣିକରି ରାବଣ ମନରେ କ୍ରୋଧ ହେଲା ।
ଯେତେ ପରକାରେ ମୁଁ କହିଲି ବୁଝାଇ
ମୋର କଥା ନ ମାନିଲା ଲଙ୍କାପୁରସାଇଁ ।
ଭଉଣୀର ବୋଲେ ସେ ଗଲା ସୀତାଙ୍କୁ ଆଣି
କହିବାର କଥାକୁ ନ କଲା ବିଂଶପାଣି ।
ମନେ ବିଚାରି ମୁଁ ଖଡ଼ିରତ୍ନ ଘରେ ଗଲି
ବିହି ଯାହା ଲଭିଛି ସେମାନ ପଢ଼ିଲି ।
ସେଥିରେ ଲେଖାଅଛି ରାମ ନାରୀ ସୀତା
ଆଣିଲେ ତାହାଙ୍କୁ ଯେ ମରିବ ଦଶମଥା ।

ତେଣୁକରି ଆପଣଙ୍କୁ ସୁମରଣା କଲି
ନିଶ୍ଚୟ କରି ଆମ୍ଭଙ୍କୁ କହିବ ମୁନି ଖୋଲି ।
ନାରଦ ବୋଲେ ଶୁଣ ଗୋ ମନ୍ଦୋଦରୀ
ଆଉ ଚଉଦ ମାସ ଦୁଇଦିନ ଜୀଇବ ଦଶଶିରୀ ।
ଏତେଦିନ ଗଲେ ତୋର ସ୍ୱାମୀର ପାଶଯିବ
ଏହି ପୁରକୁ ନିଶ୍ଚୟ ଜାନକୀ ଆସିବ ।
ପୁତ୍ର ନାତିକି ମରାଇ ମରିବ ଲଙ୍କପାଳ
ଭାଇ ବନ୍ଧୁ କୁଟୁମ୍ବାଦି ମରିବେ ସକଳ ।
କୁମ୍ଭକର୍ଣ୍ଣ ଭାଇ ତାର ଆଗହୋଇ ଯିବ
ତାର ଅନ୍ତେ ଇନ୍ଦ୍ରଜିତ ପରାଣ ତେଜିବ ।
ସମସ୍ତଙ୍କୁ ମରାଇ ପଛନ୍ତେ ରାବଣ
ଶ୍ରୀରାମଙ୍କ ହସ୍ତରେ ଲଭିବ ମରଣ ।
ପିଣ୍ଡପାଣି ଦେବାକୁ କୁଳେ ନ ରହିବ ପୁତ୍ର
ସମସ୍ତେ ନାଶଯିବେ ତୁମ୍ଭର କୁଳ ଗୋତ୍ର ।
ଏ ଗଡ଼ରେ ରାଜା ଯେ ହୋଇବ ବିଭୀଷଣ
ପାଟରାଣୀ ହେବୁ ତୁ ତାହାର ନିର୍ଣ୍ଣେ ଜାଣ ।
ତୋତେ କୋଳେ ଧରିଣ ହେବ ଯେ ଅଭିଷେକ
ଚନ୍ଦ୍ର, ସୂର୍ଯ୍ୟ ଥିବାଯାଏଁ ଥିବ ବେନିଲୋକ ।
ମନ୍ଦୋଦରୀ ବୋଇଲା କହିଲ କଥାଛନ୍ଦ
ସପତଣୀଙ୍କ କଥା ମୋତେ ଲାଗେ ମନ୍ଦ ।
ବିଭୀଷଣର ସଙ୍ଗରେ ମୁଁ ରହିବି ଜାଣ
ସପତଣୀମାନେ ମୋର କି କରିବେ ପୁଣ ।
ନାରଦ ବୋଇଲେ ତୋର ସଙ୍ଗେ ସର୍ବେଥିବେ
ଦିଅର ସଙ୍ଗରେ ଅତି ହୃଷ୍ଟେ ଦିନନେବେ ।
ସମସ୍ତଙ୍କୁ ରତିରସେ କରିବ ସେ ତୋଷ
ଏଗାର ସସ୍ରବର୍ଷ ଦିଅର ସଙ୍ଗେ ରସ ।
ରାମ ଏଗାର ସହସ୍ର ବରଷ ଯେ ରହି
ଏ ଦେହ ଛାଡ଼ିଣ ସେ ବୈକୁଣ୍ଠ ପୁର ଯାଇ ।
ସେତେବେଳେ ସପତଣୀମାନେ ତୋର ଯିବେ
ବୈକୁଣ୍ଠ ପୁରରେ ତୋର ସ୍ୱାମୀକି ଦେଖିବେ ।
ପ୍ରଳୟ ପରିଯନ୍ତେ ତୁ ରହିଥିବୁ ପୁଣ
ବିଭୀଷଣ ତୋର ସ୍ୱାମୀ ନିଶ୍ଚୟ କରି ଜାଣ ।
ବଧୂ, ନାତୁଣୀ, ଦୁହିତା ଆଦିଛନ୍ତି ଯେତେ
ସ୍ୱାମୀମାନଙ୍କ ସଙ୍ଗରେ ଯିବେ ସେ ତ୍ୱରିତେ ।
ଭାଇ ବନ୍ଧୁ କୁଟୁମ୍ବ ସମସ୍ତେ ହେବେ ହତ
ବିଭୀଷଣର ବଂଅଶ ରହିବେଟି ମାତ୍ର ।

ଯେତେ ସପତଣୀ ତୋର ରହିଛନ୍ତି ପୁଣ
ଏମାନେ ମାତ୍ର ରହିବେ ମୋହଠାରୁ ଶୁଣ ।
ଦିଅର ସଙ୍ଗେ ଯେବେ ନ ହେବ ଭାବଦୋସ୍ତି
ଅନେକ ଅବସ୍ଥା ତୁମ୍ଭଙ୍କୁ ଦେବେ ରଘୁପତି ।
ଚାଣ୍ଡାଳହୀନ ଜାତିଙ୍କୁ ନେଇ ସମର୍ପିବେ
ମଲେ ଏହା ନର୍କରେ ପଡ଼ି ଘାଣ୍ଟି ହେବେ ।
ଶ୍ରୀରାମ ବାସୁଦେବ ଜାନକୀ କମଳା
ରାବଣ କୁମ୍ଭକର୍ଣ୍ଣଙ୍କୁ ମାରିବେ ସେ ପରା ।
ସମୁଦ୍ର ମଧ୍ୟରେ ରାମ ବାନ୍ଧିବେ ସେତୁବନ୍ଧ
ବିଭୀଷଣ ଶରଣ ପଶିବ ରାମ ପାଦ ।
ବୀରବାହୁ କୁମର ପଶିବ ଶରଣ
କୁମ୍ଭକର୍ଣ୍ଣ ନନ୍ଦନ ବଞ୍ଚିବ ନମିଣ ।
ତୋହର କୁମର ଯେ ମହାନାଦ ବୀର
ନର୍ମଦା କୂଳରେ ତପ କରୁଛି ଅକ୍ରାମର ।
ପିତା ମଲେ ତାହାକୁ ଅଣାଇବୁ ତୁହି
ଶ୍ରୀ ରାମ ଚରଣେ ନିବେଶିବୁ ନେଇ ।
ତେବେ ଦୟା କରିବେ ସେ ତାକୁ ଚାପଧାରୀ
ଜ୍ୟୋତି ଲଙ୍କାରେ ତାକୁ ରଖିବେ ରାଜାକରି ।
ବୀରବାହୁ କୁମର ସୁବାହୁ ନାମ ଯାର
ମହୀରାବଣ ମରିବ ସୁଲଙ୍କା ହେବ ତାର ।
ସେହି ଗଡ଼ରେ ରାଜା ହୋଇବ ସୁବାହୁ
ମହୀରାବଣର ଶତେରାଣୀ ଖଟିବେ ତାକୁ ତହୁଁ ।
କୁମ୍ଭକର୍ଣ୍ଣର ପୁତ୍ର ଅଲଙ୍କାଗଡ଼ ଯିବ
ସେଠାରେ ରାଜା ହୋଇ ନିଶ୍ଚିନ୍ତେ ରହିବ ।
ତ୍ରିଜଟା ରାଜା ହେବ ବିଲଙ୍କା ଗଡ଼ରେ
ଏକଥାଟି ଗୁପତ ନ କହିବୁ ତୁ କାହାରେ ।
ବରଷେ ପରିଯନ୍ତେ ତୁନି ହୋଇ ରହିଥିବୁ
ସେ ଉତ୍ତାରୁ ଏମାନ ସକଳ ଦେଖିବୁ ।
ପ୍ରଥମରେ ଲଙ୍କାକୁ ଆସିବ ହନୁମନ୍ତ
ପାଞ୍ଚ ସେନାପତି ତୁଲେ ଅକ୍ଷୟ ହେବ ହତ ।
ଏ ଲଙ୍କାଗଡ଼କୁ ସେ ପୋଡ଼ିଦେଇଯିବ
ଅନେକ ସୈନ୍ୟ ଏଠାରେ ଏକା ସେ ମାରିବ
ସୀତାଙ୍କୁ ଠାବ କରିଣ ରାମଙ୍କୁ କହିବ ।
ତେବେ ସେହିଠାରୁ ରାମ ଲଙ୍କାକୁ ଆସିବ ।
ବାଳିକି ମାରି ରାମ ମାଲ୍ୟବନ୍ତ ରହିବେ
ବାଳି ଘରଣୀ ତାରାକୁ ସୁଗ୍ରୀବକୁ ଦେବେ ।
ମର୍କଟ ଭାଲୁ ଘେନି ଆସିବେ ଦାଶରଥି
ସୀତୟାଙ୍କୁ ଆହ୍ଲାଦ କରିଣ ଥିବୁ ତୁଟି ।
ସୀତାଙ୍କଠାରେ ଭକ୍ତି ରଖିଥିବୁ ତୁହି
ସତୀରେ ଗଣ୍ୟ ହେବୁ କହିଲି ବୁଝାଇ ।
ସତୀ ବୋଲିଣ ତୋତେ କହିବେ ରଘୁସୁତ
ପଞ୍ଚକନ୍ୟାରେ ତୁହି ହୋଇବୁ ଗଣିତ ।
ମୋହର କଥା ଏବେ ଶୁଣ ମନ୍ଦୋଦରୀ
କାହାରି ଆଗରେ ନ କହିବୁ ଫେଡ଼ିକରି ।
ମନ ମଧ୍ୟରେ ଏକଥା ତୋହର ରଖିବୁ
ପଛନ୍ତେ ମୋର କଥାକୁ ସତ ତୁ ମଣିବୁ ।
ହେଳା ନକରି ବେଗେ ବିଭୀଷଣଙ୍କୁ ସେବ
ରତିରଙ୍ଗ କରାଇଣ ଉପୁଜା ଅଭାବ ।
ଏତେ କହିଣ ନାରଦ ଗଲେ ସ୍ୱର୍ଗପୁରୀ
ଶୁଣିକରି ମନ୍ଦୋଦରୀ ସର୍ବ ତେଜ୍ୟାକରି ।
ପାର୍ବତୀ ଶୁଣିଣ ସନ୍ତୋଷ ହୋଇଲେ
ଶ୍ରୀରାମଙ୍କ କଥା ମୋତେ କହସି ବୋଇଲେ ।
ସଦାଶିବ ବୋଇଲେ ଶୁଣ ଗୋ ଦେବୀ ଉମା
ଶ୍ରୀରାମ, ଲକ୍ଷ୍ମଣ, ସୀତା ପଞ୍ଚବଟୀ ଠଣା ।
ଭାବ ବିନୋଦ ଶ୍ରୀରାମ ଜାନକୀଙ୍କ ଲୀଳା
ଗୋଦାବରୀ ନଦୀରେ କରନ୍ତି ଜଳଖେଳା ।
ଦିନେକ ସୀତାଙ୍କୁ ଘେନିଣ ରଘୁନାଥ
ଗେରୁଶିଳାର ପରେ ହେଲେ ଉପଗତ ।
ସେଠାରେ ଗେରୁଗୋଳି ସତୀକଲେ ଚିତା
ଶ୍ରୀରାମଙ୍କୁ କୋଳକଲେ ଜନକ ଦୁହିତା ।
ଶ୍ରୀରାମଙ୍କୁ କୋଳ କରି ଚାହିଁଲେ ବଦନ
ଗେରୁଚିତା ଲାଗିଲା ଶ୍ରୀରାମ ମସ୍ତକେଣ ।
ଚିତା ଦେଖି ଜାନକୀ ତାଳିମାରି ହସ
ଶ୍ରୀରାମ ବୋଇଲେ ଏ କେବଣ କଥାଟି ।
ଶ୍ରୀରାମଙ୍କ ବଚନେ ଜାନକୀ କହି ପୁଣ
ମୋର ଗେରୁଚିତା ତୁମ୍ଭ କପାଳେ ଲାଗିଣ ।
ସିନ୍ଦୂର ଟୋପାପ୍ରାୟେକ ଦିଶେ ଶୋଭାବନ
ତେଣୁ ସେ ହାସ୍ୟ ହୋଇଲା ଶୁଣ ରଘୁରାଣ ।
ଶୁଣିକରି ରାମ ଯେ ସନ୍ତୋଷ ହୋଇଲେ
ସେଠାରୁ ସୀତୟାଙ୍କୁ ଘେନିଣ ଚଳିଗଲେ ।
କୁଟୀର ଭିତରେ ଯାଇଣ ବିଜେ କରି
ସରସ ଜାନକୀ ହରଷେ ରାମ ହେରି ।

କଉତୁକେ ଦିବସ ରଜନୀ ସାରନ୍ତି
ଏକଦିନେ ରାମଙ୍କୁ ପୁଚ୍ଛିଲେ ସୀତା ସତୀ ।
ଖର ଦୂଷଣ ତ୍ରିଶିରା ଯେଉଁ ତିନିଜଣ
ସୂର୍ପଣଖା ବୋଲରେ ଅଇଲେ ଏ ସ୍ଥାନ ।
ସୈନ୍ୟବଳ ସଙ୍ଗରେ ଘେନିଣ ବହୁତ
ସେ ଅସୁରମାନେ କାହାର ଯେ ସୁତ ।
ଶ୍ରୀରାମ ବୋଇଲେ ସେ ନଇକେଶା ସୁତ
ଗଗନାସୁର ବୋଲିଣ ତାହାର ଯେ ତାତ ।
ଗଗନାସୁରଙ୍କୁ ପର୍ଶୁରାମ କଲେ ହତ
ସବୁଦିନେ ଏହିସ୍ଥାନେ ଥାଆନ୍ତି ଯେ ଦୈତ୍ୟ ।
ଜାନକୀ ବୋଇଲେ ସେ ସୂର୍ପଣଖା ଜାଣ ।
କେମନ୍ତ ଏହାଙ୍କର ଭଉଣୀ ଅଟେ ପୁଣ ।
ରାମ ବୋଇଲେ ସେ ମାତୁଳ ଅଂଶ ହୋଇ
ଶୁଣିକରି ଜାନକୀ ମନରେ ତୋଷ ହୋଇ ।
ପାର୍ବତୀ ପଚାରିଲେ କହ ଶୂଳପାଣି
ସେଠାରୁ ସୀତାରାମ କିସ କଲେ ପୁଣି ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଜାନକୀ ରାମଚନ୍ଦ୍ର ହରଷେ ବିହରନ୍ତି ।
ଏକଦିନେ ସୀତାରାମ ଗଲେ ବନେ ବୁଲି
ହରଷ ମନରେ ଚଳେ ଜନକ ଦୁଲାଳୀ ।
ଦୁଇଜଣ ବୁଲୁ ବୁଲୁ ଦେଖିଲେ ବାଟରେ
ମୃଗସଙ୍ଗେ ମୃଗୁଣୀ ରମଇ ରଙ୍ଗରେ ।
ଆଗରେ ଗୋଟିଏ କୂପ ଦେଖିଲେ ବେନିଜନ
କୋମଳ ତୃଣ ଦେଖି ମୃଗୀ ଲୋଭାଇଣ ।
ସ୍ୱାମୀଙ୍କି ବୋଇଲା ଶୁଣ ହେ ପ୍ରାଣନାଥ
କୂପରେ କୋମଳ ଘାସ ଦେଖି ବଳେ ଚିତ୍ତ ।
କୂପରେ ପଶିଣ ମୋତେ ତୃଣ ଆଣି ଦିଅ
ମୋହଠାରେ ଯେବେ ଅଛି ତୁମ୍ଭେ ସ୍ନେହ ।
ମୃଗୁଣୀ ବଚନ ପୁଣି ସେ ମୃଗ କହଇ
କୈକେୟୀ ରାଣୀ ପରି ବଚନ ତୋର ହୋଇ ।
ମୃଗୁଣୀ ବୋଇଲା ମୋତେ ସେ କଥାଟି କହ
କୈକେୟୀରାଣୀ ସ୍ୱାମୀରେ କିପରି ହେଲା ସ୍ନେହ ।
ସେ କଥା ଶୁଣିଲେ ମୋ ମନ ତୋଷ ହେବ
ସେଥିର କଥା ମୋତେ କହ ହେ ସ୍ୱାମୀ ଦେବ ।
ମୃଗୁଣୀ ବଚନ ଶୁଣି ମୃଗ କହେ ପୁଣ
ଶୁଣସି ପ୍ରିୟବତୀ ମୋହର ବଚନ ।

ଅଯୋଧ୍ୟା ଦେଶରେ ଦଶରଥ ରାଜା
ସାତଶ ପଞ୍ଚାଶ ରାଣୀ ତାହାର ଯେ ଖଞ୍ଜା ।
ଏତେରାଣୀ ଉପରେ ତିନି ରାଣୀ ସାର
କୈକେୟୀ, କଉଶଲ୍ୟା, ସୁମିତ୍ରା ନାମ ତାଙ୍କର ।
ତିନିରାଣୀଙ୍କଠାରୁ ଚାରିପୁତ୍ର ଜାତ
ଦେଖିଣ ଦଶରଥ ମନରେ ଉଛତ ।
ଜ୍ୟେଷ୍ଠ ହେଲେ ଶ୍ରୀରାମ କନିଷ୍ଠ ଶତ୍ରୁଘନ
ଭରତ, ଲକ୍ଷ୍ମଣ ମଧ୍ୟମଟି ଜାଣ ।
କୌଶଲ୍ୟାର ସୁତ ଅଟନ୍ତି ଶ୍ରୀରାମ
କୈକେୟୀର ନନ୍ଦନ ଭରତ ଅଟେ ଜାଣ ।
ସୁମିତ୍ରାର ଲକ୍ଷ୍ମଣ ଶତ୍ରୁଘନ ଦୁଇ
ଏହିରୂପେ ଚାରିପୁତ୍ର ସେ ରାଜାର ହୋଇ ।
ରାମ ଲକ୍ଷ୍ମଣ ଯେ ଅଟନ୍ତି ପାରିବାର
ବିଶ୍ୱାମିତ୍ରଙ୍କର ଯାଗ ରଖିଲେ ବନର ।
ଅହଲ୍ୟାଙ୍କୁ ମୋକ୍ଷକରି ମିଥିଳାକୁ ଗଲେ
ଶିବଧନୁ ଭାଙ୍ଗିଣ ସୀତାଙ୍କୁ ବିଭାହେଲେ ।
ବାଟରେ ପର୍ଶୁରାମ ଦର୍ପକୁ ଦଳିଲେ
ଯେଉଁ ପର୍ଶୁରାମ ସପ୍ତପୁର ସାଧ୍ୟକଲେ ।
ଯେଉଁ ପର୍ଶୁରାମ ଯେ ମେଦିନୀ ସମ୍ଭାଳିଲା
ଯେଉଁ ପର୍ଶୁରାମ ଦେବଙ୍କୁ ତୋଷକଲା ।
ଯେଉଁ ପର୍ଶୁରାମ ସନ୍ଥମାନଙ୍କୁ ରକ୍ଷା କରି
ଯେଉଁ ପର୍ଶୁରାମ ଦୁଷ୍ଟମାନଙ୍କୁ ସଂହାରି ।
ଯେଉଁ ପର୍ଶୁରାମ ରାମଙ୍କର ଦର୍ପକୁ ଦଳିଣ
ଅଯୋଧ୍ୟାରେ ଯାଇ ମିଳିଲେ ଶୁଭେଣ ।
ବେନି ବରଷ ମାତା ପିତା ସଙ୍ଗେ ରହି
ଭରତ ଶତ୍ରୁଘନ ଅଜାଘର ଯାଇ ।
ଏହି ସମୟରେ ଦଶରଥ ନରରାଣ
ରାମଙ୍କୁ ରାଜ୍ୟ ଦେବାକୁ ଶ୍ରଦ୍ଧା କଲେ ମନ ।
ଚନ୍ଦ୍ର ତାରା ଶୁଦ୍ଧି କାଲି ପ୍ରଭାତରେ ଯୋଗ
ନୋହିଲେ ଚଉଦବରଷ ଅଯୋଗ ।
ଶୁଣିଣ ଦଶରଥ ହରଷ ହୋଇଲେ
ଅଯୋଧ୍ୟା ରାଜ୍ୟରେ ଉତ୍ସବ କରାଇଲେ ।
ସେହିରାତ୍ରେ କୈକେୟୀ ରାଜାପାଶେ ଗଲା
ମୋ ପୁତ୍ର ଭରତ ରାଜା ହୋଇବ ବୋଇଲା ।
ସେହି କଥାରେ ରାମ ଅଇଲେ ଯେ ବନ
ଦଶରଥ ଚିନ୍ତାକରି ତେଜିଲେ ଜୀବନ ।

ଭରତ ଆସିଣ ସେ ମାତାଙ୍କୁ ଗାଳି ଦେଲା
ଅଯୋଧ୍ୟା ରାଜ୍ୟରେ ରାଜା ସେ ନୋହିଲା ।
ମାଳାଧରି ରାମନାମ କରେ ସେ ଭଜନ
କେଉଁଆଡ଼େ ନୋହିଲା କୈକେୟୀ ରାଣୀ ଜାଣ ।
ସମୁଦ୍ର ମଧ୍ୟରେ ଯେହ୍ନେ ଭାଷେ ନାବ ଗୋଟି
କୈକେୟୀର ଅବସ୍ଥା ସେପରି ହେଲାଟି ।
ଗିରସ୍ତରେ ନୋହିଲା ପୁତ୍ରରେ ହେଲା ହୀନ
ଶ୍ରୀରାମଠାରେ ଦୋଷୀ ହୋଇଲା ସେ ଜାଣ ।
କାହାରି ସଙ୍ଗେ ନମିଳି ବସି ଏକାନ୍ତରେ
ଚିନ୍ତାକରି ନିନ୍ଦା କରୁଅଛି କରମରେ ।
ମାତା ପୁତ୍ରଙ୍କର ମନରେ ଚିନ୍ତାଭାରି
ରାମ ସାବତ ଜନନୀ ଲୀଳାବତୀ ନାରୀ ।
ସାମର୍ଥ ପଣ କରି ରାଜ୍ୟ ସମ୍ଭାଳିଲା
ପାତ୍ର ମନ୍ତ୍ରୀ ପରଜାଙ୍କୁ ସୁଖରେ ପାଳିଲା ।
ସେ ଧର୍ମରୁ ସେହି ନାରୀ ଆପେ ସ୍ୱର୍ଗ ଯିବ
ସ୍ୱାମୀର ସଙ୍ଗରେ ନିଶ୍ଚିନ୍ତେ ରହିବ ।
ସେ ରାଣୀ ପରାଏ ତୋତେ ବୁଦ୍ଧି ଜାଣ
କୂପରେ ପଶିଣ ମୁଁ ହାରିବି ପରାଣ ।
ବାଟ ନାହିଁ ଦେଖ ଗୋ ଯିବାକୁ ସେଥିକି
କେମନ୍ତ କଥା ଏବେ କହୁଅଛୁ ସଖୀ ।
ଶୁଣିକରି ମୃଗୁଣୀ ସ୍ୱାମୀଙ୍କି ଓଳଗିଲା
ନିଶ୍ଚୟ ମୁକତି ମୁଁ ହୋଇଲି ହୋଇଲା ।
ମୋହର ବୋଲେ ଯେବେ କୂପକୁ ଡେଇଁଥାନ୍ତ
ତୁମ୍ଭଙ୍କୁ ମରାଇ ମୁହିଁ ହୋଇଥାନ୍ତି ଯେ ନାଥ ।
ପୁଣି କେଉଁ ପୁରୁଷରେ ନୁହନ୍ତି ମୁଁ ସଙ୍ଗ
କୈକେୟୀ ରାଣୀଠାରୁ ବଳନ୍ତା ମୋ ଅଙ୍ଗ ।
କେଉଁ ଦୋଷେ ଏ ଜୀବ ହୋଇ ବନେ ରହି
କେଉଁ ଭାଗ୍ୟରୁ ଏକଥା ଦେଲ ଯେ ବୁଝାଇ ।
ଏମନ୍ତ ବୋଲି ମୃଗୁଣୀ ସ୍ୱାମୀକି ସ୍ତୁତି କଲା
ଜାନକୀଙ୍କି ଘେନି ତାହା ରଘୁବଳା ।
ଚିନ୍ତାପାଣ୍ଡୁ ବୃକ୍ଷମୂଳେ ବେନିଜନେ ରହି
ମୃଗ ମୃଗୁଣୀର କଥା ଶୁଣିଲେ ସେ ତହିଁ ।
ଜାନକୀକି ରାମ କହିଲେ ସେହିଠାରେ
ମୃଗଚେତା କହଇ କିପରି ବୃତ୍ତାନ୍ତରେ ।
ଆମ୍ଭରି କଥା ଫଳ ଫଳାଇ କହିଲା
ଚିନ୍ତାରେ କୈକେୟୀର ଜୀବନ କ୍ଷୀଣ ହେଲା ।
ଭଲଯୋଗେ ଜନମିଲେ ଲୀଳାବତୀ ଜନନୀ
ଅସମ୍ଭାଳରେ ସମ୍ଭାଳ କଲା ସେ ମେଦିନୀ ।
ସେହି ମୋର ଜନନୀ ଅଟେ ବଡ଼ ସାର
ଏତେ କହି ଶ୍ରୀରାମ ହେଲେ ନମସ୍କାର ।
ବନଜୀବ ମୁଖରେ ସେ ପାଇଲା ପ୍ରଶଂସା
ଅଗସ୍ତି କହିବାର ହୋଇଲା ସତଭାଷା ।
ଜାନକୀ ଆଗେ ରାମ ଏମନ୍ତ କଥା କହି
ବଇଦେହୀ ବୋଇଲେ ନିବର୍ତ୍ତ ଭାବଗ୍ରାହୀ ।
ଆଉ କେଉଁ କଥା ଯେ ଶୁଣିବା କହନ୍ତୁ
ଆମ୍ଭେ ଦୁଇଜଣ ଯେ ଦୁଇ ପ୍ରାଣୀ ହେତୁ ।
ଚିନ୍ତାପାଣ୍ଡୁ ବୃକ୍ଷମୂଳେ ରାମଚନ୍ଦ୍ର ରହି
କୃଷ୍ଣାଜିନ ମୃଗବାଣୀ ସେଠାରେ ସମ୍ଭାଇ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ମୃଗକୁ ମୃଗୁଣୀ ଯେ ପଚାରିଲା ସେଥି ।
ଏ କଥାମାନ ତୁମ୍ଭଙ୍କୁ କେମନ୍ତେ ଜଣାଗଲା
ସେ କଥାରେ ସନ୍ଦେହ ହେଉଛି ଜାଣଭଲା ।
ମୃଗୁଣୀ ବାଣୀ ଶୁଣି ମୃଗ କହେ ପୁଣି
ସାବଧାନେ ଶୁଣ ଗୋ ମୋହର ଘରଣୀ ।
ନୂତନୁ ଅପସରୀର ଅଟେ ମୁଁ କୁମର
ଇନ୍ଦ୍ରଙ୍କର ବୀର୍ଯ୍ୟରୁ ଉତ୍ପନ୍ନ ମୋ ଶରୀର ।
ସତ୍ୟଯୁଗରେ ମୁଁ ଯେ ଅଲ୍ୟକରେ ଥିଲି
କେତେଦିନ ଅନ୍ତରେ ମୁଁ ମର୍ତ୍ତ୍ୟପୁର ଗଲି ।
ପ୍ରୟାଗତୀର୍ଥେ ଗଙ୍ଗାକୂଳେ ଶ୍ୟାମଳ ବଟମୂଳେ
କୃତିକା ମହାଋଷି ତପସ୍ୟା କରୁଥିଲେ ।
ସ୍ନାନ କରିବାକୁ ମୁଁ ଗଙ୍ଗାରେ ପଶିଲି
ହାବୁକା ମାରି ସେଠାରେ ସ୍ନାହାନ ମୁଁ କଲି ।
ହାବୁକା ଜଳ ଯାଇ ପଡ଼ିଲା ଋଷିପରେ
କୋପାନଳେ ଋଷି ଶାପ୍ୟ ଦେଲେ ମୋରେ ।
ବୋଇଲେ ଆମ୍ଭେ ଶାପ୍ୟ ଶୁଣରେ ବିଦ୍ୟାଧର
କଳି କରିବାକୁ ତୁ ଅଇଲୁ ମୋ ସଙ୍ଗର ।
ତର୍ପଣ କରିବାବେଳେ ହାବୁକା ଜଳମାରୁ
ସ୍ୱର୍ଗର ବିଦ୍ୟାଧର ଗରବ ଆସି କରୁ ।
ଆମ୍ଭର ଶାପ୍ୟରେ ହୁଅ ତୁ ବନେ ମୃଗ
ହେମ ହରିଣ ଆସି ହେବ ତୋର ଅଙ୍ଗ ।
ତ୍ରେତୟା ଯୁଗରେ ପ୍ରଭୁ ଦଶରଥ ଘରେ
ଦୈତ୍ୟ ବଧିବାକୁ ଜନ୍ମିବେ ଶ୍ରୀରାମ ରୂପରେ ।

ପିତାସତ୍ୟ ପାଳି ରାମ ବନବାସ ଯିବେ
ତୁମ୍ଭ ଦୁଇଜଣଙ୍କୁ ବାଟରେ ଭେଟିବେ ।
ଚିନ୍ତାପାଣ୍ଡୁ ବୃକ୍ଷମୂଳେ ବସି ବେନିଜନ
ତୁମ୍ଭେ କଥା ହୁଅନ୍ତେ ଶୁଣିବେ ସେ କର୍ଣ୍ଣ ।
ପିତା ମାତା ପୂର୍ବକଥା ଶୁଣି ଦୟାନିଧି
ତୋରଠାରେ କରୁଣା କରିବେ ସୁବୁଦ୍ଧି ।
ତେବେ ତୁମ୍ଭେ ସ୍ୱର୍ଗପୁରେ ଆସିବ ବିଦ୍ୟାଧର
ଶାପ୍ୟରୁ ପାର ହୋଇ ରହିବ ସ୍ୱପୁର ।
ଜାନକୀ ଶ୍ରୀରାମ ଯେ ଅଟନ୍ତି ଏହି ଜାଣ
ଆମ୍ଭର କଥାମାନ କରୁଛନ୍ତି ଶ୍ରବଣ ।
ଏହିକ୍ଷଣି ଆମ୍ଭେ ଯେ ଯିବା ସ୍ୱର୍ଗପୁର
ଶ୍ରୀରାମଙ୍କୁ ଦେଖା ଯେ ହୋଇଲା ଆମ୍ଭର ।
ହେମ ହରିଣୀ ବୋଇଲା କହ ପ୍ରାଣନାଥ
ପୂର୍ବେ କେଉଁ ରୂପରେ ମୁଁ ହୋଇଥିଲା ଜାତ ।
ତୁମ୍ଭର ସଙ୍ଗେ ପୁଣି କେଉଁରୂପେ ଭେଟି
ସେହି କଥା ମୋତେ ବୁଝାଇ କହଟି ।
ମୃଗ ବୋଇଲା ସଖୀ ଶୁଣ ପୂର୍ବ କଥା
ସ୍ୱର୍ଗର ବିଦ୍ୟାଧର ଅଟେ ସାମରଥା ।
ତାହାର ଦୁହିତା ଅଟୁ ହାଦେ ତୁହି
ନବଯୁବା ଦେଖି ପିତା ମୋତେ ଯେ ବରଇ ।
ତୋତେ ବିଭା ହୋଇ ମୁଁ ବରଷ ତିନିଭୋଗ
ସେତେବେଳେ ମୋତେ ଯେ ପଡ଼ିଲା ଦୁର୍ଯୋଗ ।
ବରଷେ ପରିଯନ୍ତେ ନ ଦେଖିଲୁ ମୋତେ
ତେଣୁ ଚିନ୍ତା କରୁ ଯେ ତୋର ଅନ୍ତର୍ଗତେ ।
ତେଣୁ ସେ ଶଶୀଧର ଋଷି ଆସି ପୁଣ
ତୋର ଆଗେ କହିଲା ମୋର ଅବିଗୁଣ ।
ତେଣୁ ତୁ ଯାଇଣ ଜଳରେ ଝାସଦେଲୁ
ଏ ଜୀବନ ରଖି କିସ କରିବି ବୋଇଲୁ ।
ତହୁଁ ମର୍ତ୍ତ୍ୟପୁରେ ହୋଇଲୁ ଆସି ଜାତ
ମଡ଼ଛି ମୃଗୁଣୀ ଅଟେ ତୋର ମାତ ।
କିଛିଦିନ ଅନ୍ତରେ ମୋତେ ତୁ ଭେଟିଲୁ
ମୋହର ଘରଣୀ ହୋଇ ମୋ ସଙ୍ଗେ ରହିଲୁ ।
ଶୁଣିଣ ମୃଗୁଣୀ ଯେ ସନ୍ତୋଷ ହୋଇଲା
ପୂର୍ବ ଜନ୍ମର କଥା ଶୁଣିଲି ବୋଇଲା ।
ଚିନ୍ତାପାଣ୍ଡୁ ବୃକ୍ଷମୂଳେ ଶ୍ରୀରାମ ଯେ ଥିଲେ
ହେମ ହରିଣୀ କୃଷ୍ଣାଜିନର କଥା ସେ ଶୁଣିଲେ ।

ତାଙ୍କର ଭାଷାରେ ଯେ ଡାକିଲେ ଦାଶରଥି
ଆଉ ଚିନ୍ତା କରନା ଶୁଣ ମୋ ଭାରତୀ ।
ଯାଅଯା ସ୍ୱର୍ଗପୁର ନିଶ୍ଚିନ୍ତେ ଏବେ ରହ
ପୂର୍ବଜନ୍ମ କଥା ଚେତା ଥିଲା ତୋର ଦେହ ।
ଏଥୁ ଅନନ୍ତରେ ଯେ ଶୁଣ ଗୋ ପାର୍ବତୀ
ସ୍ୱର୍ଗରୁ ବିମାନ ଯେ ଅଇଲା ଝଟତି ।
ମୃଗର ସ୍ୱରୂପ ଛାଡ଼ିଲେ ବେନି ଜଣ
ବିଦ୍ୟାଧର ବିଦ୍ୟାଧରୀ ହେଲେ ତତକ୍ଷଣ ।
ଶ୍ରୀରାମ ସୀତାଙ୍କ ପାଦେ କଲେ ନମସ୍କାର
ରଥରେ ବସିଣ ସେ ଗଲେ ସ୍ୱର୍ଗପୁର ।
ତାଙ୍କର ଯିବା ଦେଖି ସୀତା ରଘୁବୀର
ସେ ସ୍ଥାନରୁ ବେନି ଯେ ଚଳିଲେ ସତ୍ୱର ।
ଗୋଦାବରୀ କୂଳରେ କେତକୀ ନାଗେଶ୍ୱର
ଫୁଲ ଫୁଟିଅଛି ଯେ ଅତି ମନୋହର ।
ଫୁଲ ତୋଳି ରାମ ଯେ ସୀତାଙ୍କୁ ମାରି ମୁଠି
ସୀତା ଯେ ରାମଙ୍କୁ ମାରିଲେ ଜଳୁଁ ଉଠି ।
ଦୁହିଁଙ୍କର ଦେହ ଯେ ବସନ୍ତ ବର୍ଣ୍ଣ ଦିଶି
ଜାନକୀଙ୍କି ଚାହିଁଣ ରାମଚନ୍ଦ୍ର ହସି ।
ଜଳକ୍ରୀଡ଼ା ସାରିଣ ସେଠାରୁ ଚଳିଗଲେ
ପର୍ଣ୍ଣକୁଟୀରେ ଯାଇ ପରବେଶ ହେଲେ ।
ଓଦାବସ୍ତ୍ର ପାଲଟି ପିନ୍ଧି ଦିବ୍ୟ ଶାଢ଼ୀ
ପାକଶାଳେ ପଶିଣ ରାନ୍ଧଣା ସଜାଡ଼ି ।
ଶ୍ରୀରାମ ଲକ୍ଷ୍ମଣ ଯେ ଭୋଜନ ସାରିଲେ
କୃଷ୍ଣାଜିତ ଛାଲ ଉପରେ ବିଜେକଲେ ।
ଶୁଣିଲଟିକି ହେମବନ୍ତର ଦୁହିତା
ପାର୍ବତୀ ବୋଇଲେ ଶୁଣ ହେ ପଞ୍ଚମଥା ।
ରାବଣ ଆସିବାରୁ ମନ୍ଦୋଦରୀ ପୁଣ
ନାରଦ ଋଷିଙ୍କି କଲା ସୁମରଣ ।
ଜାଣିକରି ନାରଦ ସେ ସ୍ଥାନେ ଆସି ମିଳି
ମର୍ମକଥା କହିଣ ସେଠାରୁ ଗଲେ ଚଳି ।
ସେ ଯିବାରୁ ମନ୍ଦୋଦରୀ କିସ କଲା ପୁଣ
ସେକଥା ମୋର ଆଗେ କହ ସଙ୍କର୍ଷଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ନାରଦ ବୁଝାଇଣ କହି ଗଲେ ଧାତି ।
ତାଙ୍କଠାରୁ ଶୁଣିଣ ରାବଣ ପାଟରାଣୀ
ମନରେ ବିଚାରିଲା ମୟର ଦୁଲଣୀ ।

ନାରଦ କହିବା କଥା ଅଟଇ ଯେ ସତ
ଆଗରୁ ମୁହିଁ ଏବେ କରିବି ଉପାୟ ତ ।
ତେବେ ମୋର କାର୍ଯ୍ୟଟି ହୋଇବ ସଫଳ
ସାନୁଜ ଦିଅର ମୋର ଗୃହସ୍ଥଟି ଜାଣ ।
ସ୍ନେହକଲେ ତାଙ୍କଠାରେ ରହିବି ନିଶ୍ଚୟ
ପ୍ରଥମରେ ଜଣାଯିବ ଲଗାଇଲେ ପ୍ରିୟ ।
କହିଲାର କଥା ଯେବେ କରିବ ସାନୁଜ
ପ୍ରୀତି ମୁଁ ଉପୁଜାଇ ରମଣ ଦେବି ଆଜ ।
ତିନିପୁରେ ସତୀରେ ମୁଁ ହୋଇବି ଗଣିତା
ନର ବାନର ଦୈତ୍ୟ ନ କରିବେ ଅହନ୍ତା ।
ଏମନ୍ତ ବିଚାରି ସେ ଦାସୀକି ଡାକିଲା
ସାନୁଜଙ୍କୁ ମୋ ପାଶେ ଆଣ ଯା ବୋଇଲା ।
ବୈଦୂର୍ଯ୍ୟ ମଣ୍ଡପରେ ବସିଛି ବିଭୀଷଣ
ତାର ପାଶେ ବସିଛନ୍ତି ପରୀକ୍ଷା ଯେ ଜାଣ ।
ଏ ସମୟେ ଦାସୀମାନେ ବେଗେହୋଇ ଗଲେ
କରପତ୍ର ଯୋଡ଼ିଣ ଆଗେ ଜଣାଇଲେ ।
ବୋଇଲେ ପାଟରାଣୀ କହିଲେ ତୁମ୍ଭେ ଯିବ
ଚଞ୍ଚଳ ଆସ କଥା ହୋଇଣ ଆସିବ ।
ଶୁଣିକରି ବିଭୀଷଣ ପରୀକ୍ଷାକୁ କହି
ନିଜପୁରେ ଯାଅନା ନରହ ଏଥି କେହି ।
ଏତେ କହି ବିଭୀଷଣ ଉଠିଲା ବହନ
ଭଣ୍ଡାର ଘରମାନଙ୍କୁ ମୁଦ କଲା ପୁଣ ।
ଦାସୀଙ୍କର ସଙ୍ଗତରେ ଅଇଲା ବେଗ ବେଗ
ଅନ୍ତଃପୁରେ ପଶିଲା ହୋଇଣ ସରାଗ ।
ସମସ୍ତ ରାଣୀହଂସ ହୋଇ ଏକମେଳି
ବସିଛନ୍ତି ସବୁଙ୍କୁ ଦେଖିଲା ନିରୋଳି ।
ବିଭୀଷଣକୁ ଦେଖିଣ ସକଳ ରାଣୀ ଉଠି
ମନ୍ଦୋଦରୀ ବସିଲା ଠାବରୁ ଉଠିଲାଟି ।
ପଞ୍ଚରତ୍ନ ପଲଙ୍କ ଅଣାଇ ରାଣୀ ପୁଣ
ବିଭୀଷଣକୁ ବୋଇଲା ବସ ହେ ଯାଇଣ ।
ଶୁଣିକରି ବିଭୀଷଣ ପଲଙ୍କରେ ବସି
ଭାବିଲା ବିପରୀତ ହୋଇଲା ତ ଆସି ।
ଲଙ୍କାଗଡ଼ ଠାକୁରାଣୀ ମୋଠାରେ ଅନୁଗତ
ଅନର୍ଥ କଥା ଏଥିର ମୂଳେ ତ ବହୁତ ।
ନୋହିଲେ ଶୁଭକଥା ଏଥି ହେବ ପରା
ଏମନ୍ତ ବିଚାର ମନେ ବିଭୀଷଣ କଲା ।

ଏଥୁ ଅନନ୍ତରେ ହୈମବନ୍ତୀ ଶୁଣ
ମନ୍ଦୋଦରୀକି ସରାଗେ କହଇ ବିଭୀଷଣ ।
ବୋଇଲା ବଡ଼ ତୁମ୍ଭେ କିମ୍ପା ତଳେ ଉଭା
ମୁହିଁ ବସିବାର ଏଥି ନ ପାଏତ ଶୋଭା ।
ମନ୍ଦୋଦରୀ ବୋଇଲା କଥାଏ ମୋର ଅଛି
ସତ୍ୟକଲେ କହିବି ନଉକେଶା ବସି ।
ବିଭୀଷଣ ବୋଇଲା କିକଥା ମୋତେ କହ
ସତ୍ୟକଲି କଥା ପାଳିବିଟି ସ୍ନେହ ।
ମାୟାକଲେ ମୋର ଶରୀର ଭସ୍ମ ଯିବ
ତୁହି ମାୟାକଲେ ଯେ ନ ରହିବ ଭାବ ।
ଏମନ୍ତ ବଚନ ଯହୁଁ କହିଲା ବିଭୀଷଣ
ହରଷରେ ମନ୍ଦୋଦରୀ ବସିଲା ସଙ୍ଗେଣ ।
ବୋଇଲା ମୋର ବାଣୀ ଶୁଣ ହେ ସାନୁଜ
ସୂର୍ପଣଖା ଭଗ୍ନୀ କଥା ଯାହା ହେଲା ଆଜ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଜମ୍ବୁଦ୍ୱୀପେ ଦେଖି
ଗିରସ୍ତ କରିବ ବୋଲି କହିଲା କଥାପାଞ୍ଚି ।
ଲକ୍ଷ୍ମଣ ନାସ୍ତିବାଣୀ ଶୁଣିଣ ପ୍ରବଳ
ଦେଖିକରି ନାକ, କାନ କାଟିଲା ତାହାର ।
ତହୁଁ ସୂର୍ପଣଖା ଯେ ପଳାଇ ଅଇଲା
ଦଶଗ୍ରୀବ ଆଗରେ କାନ୍ଦିଣ କହିଲା ।
ଶୁଣିଲେ ତୁମ୍ଭ ଭାଇ ତାହାର ବଚନ
ସୀତାକୁ ଆଣିବାକୁ ଚଳିଲେ ବହନ ।
ଯେତେ ପ୍ରକାରେ ମୁଁ ଯେ ବୁଝାଇ କହିଲି
ସୀତାକୁ ଆଣିଲେ ତୁମ୍ଭେ ମରିବ ବୋଇଲି ।
ଚିତ୍ରଲିଖନକୁ ମୁଁ ନେଇଣ ଦେଖାଇଲି
ଚରଣ ତଳେ ଶୋଇ ବିନୟୀ ହୋଇଲି ।
କୌଣସି କଥା ସେ ନ ଘେନିଲା ମୋର
ବୋଇଲା ମଲେ ମରିବି ମୁଁ ରାମର ହସ୍ତର ।
ଏହା କହି ଦଶାନନ ଜମ୍ବୁଦ୍ୱୀପେ ଗଲା
ସେଠାରୁ ମୋର ମନ ବିକଳ ହୋଇଲା ।
ନାରଦଙ୍କୁ ସୁମରଣେ କଲି ମୁହିଁ ପୁଣି
ନାରଦ ଆସି ମୋତେ କହିଲେ ଏ ବାଣୀ ।
ବୋଇଲେ ଚଉଦ ମାସ ଦୁଇଦିନେ ସତ
ନିଶ୍ଚୟ ରାବଣ ମରିବ ରାମ ହସ୍ତ ।
ପୁତ୍ର, ବନ୍ଧୁ, ଭାଇ ସମସ୍ତେ ନାଶ ଯିବେ
ସୁବର୍ଣ୍ଣ ଲଙ୍କାପୁରକୁ ଅଙ୍ଗାର କରିବେ ।

ଶ୍ରୀରାମ ଅଟନ୍ତି ଯେ ବାସୁଦେବ ଜାଣ
ରାବଣକୁ ମାରିବାକୁ ହୋଇଛନ୍ତି ଜନ୍ମ ।
ବାନର ଭାଲୁ ଘେନି ଲଙ୍କାକୁ ଦଳିଦେବେ
ଚାରି ରାବଣଙ୍କୁ ମାରି ଲଙ୍କାରୁ ବାହୁଡ଼ିବେ ।
ରାବଣର ଏକ ପୁତ୍ର ରହିବ ବଞ୍ଚିଣ
ବୀରବାହୁର ପୁତ୍ର ସୁବାହୁ ନାମେ ଜାଣ ।
କୁମ୍ଭକର୍ଣ୍ଣର ପୁତ୍ର ସୁବାହୁ ବଞ୍ଚିବ
ଦିଅର ବିଭୀଷଣ ତୋହର ରହିବ ।
ସତୀ ଯେବେ ହେବୁ ତୁ ଭଜ ବିଭୀଷଣ
ଚନ୍ଦ୍ର, ସୂର୍ଯ୍ୟ ଥିବାଯାଏଁ ରହିଥିବୁ ଜାଣ ।
ନଗଦରେ ବିଭୀଷଣ ସଙ୍ଗେ ହେବୁ ମେଳ
ନୋହିଲେ ପାଷ୍ଟାତେ ତୁ ହୋଇବୁ ନିର୍ମୂଳ ।
ରାମଙ୍କ ଘରଣୀକି ଆଣିବ ତୋର ସ୍ୱାମୀ
ଘରଣୀକି ନଦେଖି କ୍ରୋଧମନରେ ଅନ୍ତର୍ଯ୍ୟାମୀ ।
ନିଶ୍ଚୟ ତୁମ୍ଭମାନଙ୍କୁ ନୀଚଲୋକକୁ ଦେବେ
ସେତେବେଳେ ରକ୍ଷାକରି ନପାରିବେ ଦେବେ ।
ଏତେକହି ନାରଦ ସ୍ୱର୍ଗପୁରେ ଗଲେ
ତାଙ୍କଠାରୁ ଶୁଣି ଚିନ୍ତା ଲଭିଲି ମନରେ ।
ଏହି ସକାଶେ ତୁମ୍ଭଙ୍କୁ ଜଣାଇଲି ମୁହିଁ
ତେଣୁକରି ତୁମ୍ଭଙ୍କୁ ସତ୍ୟ ଯେ କରାଇ ।
ବିଭୀଷଣ ବୋଇଲା ହୋଇଲା ମନ୍ଦକଥା
ଜାଣୁ ଜାଣୁ ବୁଦ୍ଧି ହରାଇଲା ଦଶମଥା ।
ନିଶ୍ଚୟ ନାଶ ଯିବ ସୀତାଙ୍କୁ ଆଣିଲେ
ତିନିପୁରେ ତାଙ୍କୁ କେ ନ ରଖିବ ଭଲେ ।
ତୁମ୍ଭ ମନରେ ଯାହା ଭାବ ଗୋ ଠାକୁରାଣୀ
ନିଶ୍ଚୟେ ଶ୍ରୀରାମ ଯେ ମାରିବେ ଲଙ୍କମଣି ।
ନାରଦଙ୍କ କଥାତ ନୁହଇ କେବେ ମିଛ
ଦେବକୁଟେ ଜାତ ହୋଇଛନ୍ତି ରଘୁବଛ ।
ମନ୍ଦୋଦରୀ ବୋଇଲା ଆଜିଠାରୁ ପୁଣ
ତୁମ୍ଭେ ମୋହର ସ୍ୱାମୀ ମୁଁ ତୁମ୍ଭ ନାରୀ ଜାଣ ।
ଏତେକହି ବିଭୀଷଣ କରଧରି ରାଣୀ
ନିର୍ଜନ ଅନ୍ତଃପୁରେ ମିଳିଲା ସେ ପୁଣି ।
ନାନାରଙ୍ଗେ ରତିରସ କରାଇଲା ତହିଁ
ବିଭୀଷଣ ସଙ୍ଗେ ସେ ପୀରତି ବଢ଼ାଇ ।
ଜ୍ୟେଷ୍ଠ ରାଣୀମାନେ ଯହୁଁ ଦିଅର ସଙ୍ଗେମେଳ
ଭାଗିଲା ସତୀବ୍ରତ ରାବଣର ପୁରେ କାଳ ।
ରାବଣର ଯେତେକ ରାଣୀହଂସ ଥିଲେ
ସମସ୍ତେ ବିଭୀଷଣ ସଙ୍ଗରେ ପ୍ରୀତିକଲେ ।
ହାସରସ ପରିହାସ ନାନା ରଙ୍ଗେ ରତି
ସମସ୍ତଙ୍କ ମନ ମୋହିଲା ପୌଲସ୍ତିର ନାତି ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ଦଶଗ୍ରୀବ ଗଲା ଯେ ସୀତାକୁ ଆଣି ପୁଣ ।
ମାରୀଚ ସଙ୍ଗରେ ଅନେକ ପ୍ରୀତି କଲା
କନକ ମୃଗ ହୁଅ ତାହାକୁ କହିଲା ।
ଭୟରେ ତାଡ଼କୀ ସୁତ କଲାକ ସମ୍ମତ
ସେହିକଥା ମୋତେ କହ ହେ ଶୂଳହସ୍ତ ।
ଈଶ୍ୱର ବୋଇଲେ ଶୁଣ ଗୋ ପ୍ରାଣସହୀ
ରାବଣ ବୋଲେ ମାରୀଚ ଦିବ୍ୟବେଶ ହୋଇ ।
ସୁବର୍ଣ୍ଣ ଦେହଗୋଟିରୁ ପାର ସିଙ୍ଗ ଦୁଟି
ମର୍କତ ମାଣିକ୍ୟ ପ୍ରାୟ ଖୁରା ଚାରିଗୋଟି ।
ଦନ୍ତ ମୁକୁତା ପରାୟ ସ୍ଫଟିକର ଜିଭ
ନୟନ ଯୁଗଳ ଯେ ହୀରାର ଜ୍ୟୋତି ଦର୍ପ ।
ବୈଦୁର୍ଯ୍ୟ ପରାୟ ଯେ ଶ୍ରବଣ ବେନି ତାର
ଲାଞ୍ଜଗୋଟି ଅଟଇ ଯେ ଚାମର ଆକାର ।
ଏମନ୍ତ ବେଶ ହୋଇ ତାଡ଼କୀର ସୁତ
ରାବଣର ରଥପରେ ବସିଲା ତ୍ୱରିତ ।
ଗଗନ ମାର୍ଗରେ ଲଙ୍କପତି ରଥ ଯାଏ
ଶୁକ ସାରଣ ପୁଷ୍ପକ ରଥ ବାହି ନିଏ ।
ପଞ୍ଚବଟୀ ବନର ନିକଟେ ମିଳିଲେ
ସଙ୍କୁନ୍ୟରେ ବିଚାର କଥା ସେ ହୋଇଲେ ।
ରାବଣ ବୋଇଲେ ଯେ ମାରୀଚ ମୁଖ ଚାହିଁ
ଶ୍ରୀରାମ ମଢ଼ିଆ ଦ୍ୱାରେ ଚରୁଥାଅ ରହି ।
ଲୋଭରେ ରଘୁନାଥ ଗୋଡ଼ାଇବେ ମାରି
ଅରଣ୍ୟେ ପଶିବୁ ତୁ ମୃଗ ରୂପ ଧରି ।
ଦୂର ହୋଇଗଲେ ତୁ ଲକ୍ଷ୍ମଣ ସୁମରିବୁ
ବେନି ଭାଇଙ୍କୁ ତୁ କପଟେ ଘେନିଯିବୁ ।
ସମୟ ଜାଣି ମୁଁ ଯେ ତପସ୍ୱୀ ରୂପ ଧରି
ଭିକ୍ଷା ମାଗିବି ଯାଇ ସୀତା ଆଣିବି ହରି ।
ମାରୀଚ ବୋଇଲା ଯେ ତୋହର ବିଚାର
ସେ ମୋତେ ଆରିଷ୍ଟିତ ଅଟେ ଦଶଶିର ।
ରାମ ଆଗକରି ଭଣ୍ଡିବି ମୁଁ ଯାଇ
ଆଗେ ମରିବି ମୁହିଁ ପଛେ ମରିବୁ ତୁହି ।

ଆଜଦିନଠାରୁ ତୋତେ ଶିରୀ ଛାଡ଼ିଗଲା
ନିଶ୍ଚୟ ଲଙ୍କାଗଡ଼ ନାଶ ହେବ ଭଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ପର୍ଣ୍ଣକୁଟୀ ଭିତରେ ବିଜେ ଚାପଧାରୀ ।
ଜାନକୀ ଦେବୀ ଶ୍ରୀରାମ କୋଳେ ଛନ୍ତିବସି
ବେଳ ପାଞ୍ଚଘଡ଼ି ଯେ ହୋଇଲାକ ଆସି ।
ତକ୍ଷଣେ ସୀତୟା ଉଠି ଶ୍ରୀରାମଙ୍କୁ କହି
ମୋ ଦେହ ରଜସ୍ୱଳା ହୋଇଲା ଗୋସାଇଁ ।·
ଏତେକହି ଜାନକୀ ମଢ଼ିଆ ଦ୍ୱାରେ ବସି
ପର୍ଣ୍ଣକୁଟୀ ମଧରେ ବିଜେ ରଘୁଶିକ୍ଷି ।
ଏମନ୍ତ ସମୟରେ ତାଡ଼କୀର ସୁତ
ରଥ ଉପରୁ ଡେଇଁ ପଡ଼ିଲା ତ୍ୱରିତ ।
ମନରେ ଭୟକରିଣ ଧୀରେ ଧୀରେ ଗଲା
ପଞ୍ଚବଟୀ ବନରେ ପ୍ରବେଶ ହୋଇଲା ।
ଗହନ ବନରେ ଯାଇ ଲୁଚିଲା ଦଶଗିରି
ପଞ୍ଚବଟୀ ନିକଟରେ ରଥ ଗୁପ୍ତକରି ।
ମାରୀଚ ଛାଡ଼ିଦେଇ ନିର୍ଜନେ ଲୁଚିଲା
ମାୟାମୃଗ ମଢ଼ିଆ ନିକଟେ ମିଳିଲା ।
ଲୁଚି ଲୁଚି ମୃଗ ଯେ ଆସେ ବନେ ଫେରି
ନବରତ୍ନେ ଜଡ଼ିତ ଶରୀର ତାହାରି ।
ଦେଖିକରି ଜାନକୀ ଶ୍ରୀରାମଙ୍କୁ କହି
ଅପୂର୍ବ ମୃଗଗୋଟି ଦେଖ ରଘୁସାଇଁ ।
ଶୁଦ୍ଧ ସୁବର୍ଣ୍ଣର ଦେହ ଦିଶେ ଦାଉ ଦାଉ
ଅପୂର୍ବ ମୃଗ ଏ ଯେ ଅଟେ ମହାବାହୁ ।
ତୁମ୍ଭ ସଙ୍ଗରେ ତେର ବରଷ ବୁଲିଲି
ଏମନ୍ତ ମୃଗ ମୁଁ ଯେ କାହିଁ ନ ଦେଖିଲି ।
ମୋହର ଶ୍ରଦ୍ଧା ଏବେ ବଳିଛି ରଘୁପତି
ଏ ମୃଗକୁ ମାରି ଆଣିଦିଅ ହେବି ତୃପ୍ତି ।
ଏ ମୃଗକୁ ମାରି ବେଳେ ଆଣ ପ୍ରାଣନାଥ
ଏହାର ଛାଲଗୋଟି ଦିଅ ମୋର ହସ୍ତ ।
ମୁଁ ତାକୁ ଦଳନ କରିଣ ଶୁଖାଇବି
ସେହି ଛାଲରେ ବସିଲେ ମୁଁ ସୁଖୀ ହୋଇବି ।
ହସିକରି ରାମ ଯେ ସୀତାଙ୍କୁ କହନ୍ତି
ଏହାର ମାଂସ ଛୁଇଁବ ଅଲଗା ହୋଇଛଟି ।
ସୀତା ବୋଇଲେ ଲକ୍ଷ୍ମଣ ମାଂସ ରାନ୍ଧିଦେବ
ଏ ମୃଗ ଛାଲରେ ମୋର ଅଟେ ପ୍ରିୟଭାବ ।

ଶ୍ରୀରାମ ବୋଇଲେ ଯେବେ ଶ୍ରଦ୍ଧା ହେଲାତୋର
ନିଶ୍ଚୟ ମୃଗକୁ ମାରି ଆଣିବି ସତ୍ୱର ।
ଏହି ମୃଗକୁ ଆଣି ଦେବି ତୋର କତି
ସଧୀରକରି ରାମ ସୀତାଙ୍କୁ କହନ୍ତି ।
ତ୍ରଇଲୋକ୍ୟ ସମ୍ପଦ ଯେହୁ ପାରେ ଦେଇ
କନକମୃଗ ତାକୁ କି ଅପୂର୍ବ ଅଟଇ ।
ତୁ ମାଗିଲେ ସଖୀରେ ଦେଇପାରେ ପ୍ରାଣ
ଯାହା ତୁ ମାଗିବୁ ମୁଁ ତାହା ଦେବି ପୁଣ ।
ଏତେବୋଲି ଧନୁରେ ନାରାଚ ବସାଇ
ମଢ଼ିଆର ଭିତରୁ ବାହାର ରଘୁସାଇଁ ।
ଶ୍ରୀରାମଚନ୍ଦ୍ରଙ୍କୁ ଯହୁଁ ଦେଖିଲା ସେ ମୃଗ
ଛନ୍ନ ଛନ୍ନ ହୋଇଣ ପଳାଇଲା ବେଗ ।
ଏମନ୍ତ ଦେଖି ସୀତାଙ୍କୁ କହିଲେ ରଘୁମଣି
ମଢ଼ିଆ ଭିତରେ ବସିଥାଅ ଗୋ ମିତଣୀ ।
ମୋହର ଆସିବାଯାଏଁ ବାହାର ନୋହିବୁ
ପର୍ଣ୍ଣକୁଟୀ ଭିତରେ ନିଶ୍ଚିନ୍ତେ ବସିଥିବୁ ।
ମାୟାମୃଗ ପରାଏ ହେଉଛି ମୋତେ ପ୍ରତେ
ପଳାଇଣ ମୃଗ ଯେ ପଶୁଛି ବନସ୍ତେ ।
ଏମନ୍ତଶୁଣି ଜାନକୀ ପତ୍ର କୁଟୀରେ ପଶି
ରାମ ବୋଲେ ନିଶ୍ଚିନ୍ତେ ରହ ମୃଗଦୃଶୀ ।
ପତ୍ରକୁଟୀ ଦୁଆରେ ବ୍ରହ୍ମଶର ଘେନି
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କାଟିଲେ ଗାର ତିନି ।
ତିନିଗାର କାଟି ରାମ କହିଲେ ବଚନ
ଏ ଗାର ନ ଡେଇଁବୁ କହିଲି ନିଦାନ ।
ବନରୁ ଆସିଲେ ମୁଁ ହୋଇବି ବାହାର
ଏ ବନରେ ଅସୁର କରନ୍ତି ବିହାର ।
ଅସୁର କୁଟବୁଦ୍ଧି ଜାଣନ୍ତି ଅଗୋଚର
ମନ୍ଦକଥା କହି ସେ କରନ୍ତି ବଳାତ୍କାର ।
ଦେଖିଲ ସୂର୍ପଣଖା ପ୍ରୀତିକଥା କହି
କେତେକ ଅନର୍ଥ ଦେଲା ସେ ଲଗାଇ ।
ବାଟରେ ଆସିଲା ବେଳେ ଦେଖିଛ ଚତୁରୀ
ଅସୁରମାନେ ଆଗେ ମୃଗରୂପଙ୍କୁ ଧରି ।
ବନଗିରି ପ୍ରାୟହୋଇ ଆଗରେ ବଢ଼ିଲା
ମୋହର ଶରେ ପୁଣି ସେହି ନାଶଗଲା ।
ଏବେ ସଖୀ ତୋତେ କହୁଅଛି ପୁଣ
ଏ ଗାରକୁ ନ ଡେଇଁବୁ ଏ ଅଟେ ପ୍ରମାଣ ।

ମୋର ବଚନ ନ ମାନି ଏଗାରକୁ ଡେଇଁଲେ
ତେବେ ତୁ ବଡ଼ ଦୁଃଖ ପାଇବୁ ଗୋ ଭଲେ ।
ଜାନକୀ ବୋଇଲେ ମୁଁ ଏ କଥା ପାଳିବି
ତୁମ୍ଭଙ୍କୁ ଦେଖିଲେ ମୁଁ ବାହାରକୁ ଯିବି ।
ମୁହିଁ ତ ରଜସ୍ୱଳା ହୋଇଅଛି ପୁଣ
ବାହାରେ ମୋର କାମ ନାହିଁ ରଘୁରାଣ ।
ତୁମ୍ଭ ଗାର ତୁମ୍ଭ ରାଣ ମୋହର ନିୟତ
ତୁମ୍ଭ କଥା ହେଳିବାକୁ ମୋର କି ସାମର୍ଥ୍ୟ ।
ଏମନ୍ତ ଶୁଣି ରାମ ଲକ୍ଷ୍ମଣଙ୍କୁ କହି
ପର୍ଣ୍ଣକୁଟୀ ଛାଡ଼ିଣ ନ ଯିବୁ କେବେ ତୁହି ।
ଗଲେ ଜାନକୀକୁ ନ ପାଇବୁ ଆଉ
ଜାଣିଛୁ ତ ଏ ବନରେ ଅସୁରଙ୍କ ଦାଉ ।
ଏମନ୍ତ ବଚନ ରାମ ଲକ୍ଷ୍ମଣଙ୍କୁ କହି
ଶୁଣି ଲକ୍ଷ୍ମଣ ବୋଲନ୍ତି ଶୁଣ ରଘୁସାଇଁ ।
ଆଜି ତ ବିପରୀତ କଥା ମୋତେ କହ
କେଉଁ କାର୍ଯ୍ୟେ ଯିବ ଯେ କିମ୍ପାଇଁ ନ କହ ।
ଶ୍ରୀରାମ ବୋଇଲେ ଆଜି କନକ ମୃଗ ଦେଖି
ମାରିଣ ଆଣିବାକୁ କହିଲା ଜାନକୀ ।
ମୋର ସଙ୍ଗେ ଯେଉଁଦିନୁଁ ଆସିଲା ସେ ନାରୀ
ଅନେକ ବନ ତାକୁ ଦେଖାଇ ଫେଇକରି ।
କିଛି ନ କହଇ ସେ ଆପଣା ସୁଖେ ଥାଇ
ଆଜି ଏ ମୃଗ ଦେଖି ମାଗିଲା ପ୍ରିୟସହି ।
କନକ ମୃଗଟିଏ ଏ ବନରେ ଚରି
ସେ ମୃଗ ଦେଖି ଶ୍ରଦ୍ଧାକଲା ସେ ସୁନ୍ଦରୀ ।
ବୋଇଲା ଏ ମୃଗକୁ ମାରି ଦିଅ ମୋତେ
ଏତେକାଳେ ଭୋ ଦେବ ମାଗିଲି ମୁଁ ଏତେ ।
ଏ ଛାଲ ଗୋଟିକ ମୁଁ ଯତନେ ରଖିବି
ଏହାକୁ ଯତ୍ନ କରି ଶାସନ କରିବି ।
ଏ ମୃଗମାଂସ ଲକ୍ଷ୍ମଣ ଦେବ ରାନ୍ଧିକରି
ଖାଇଲେ ମନ ତୃପତି ହୋଇବ ମୋହରି ।
ସେ କଥାରେ ମନ ଯେ ଶ୍ରଦ୍ଧା କଲା ମୋତେ
ସେ କାର୍ଯ୍ୟ କରିବାର ମୋହର ଉଚିତେ ।
ଲକ୍ଷ୍ମଣ ବୋଇଲେ ଦେବ ମୁହିଁ ଯେବେ ଯିବି
କନକ ମୃଗକୁ ତ ମାରିଣ ଆଣିବି ।
ଶ୍ରୀରାମ ବୋଇଲେ ମାଗିଅଛି ମୋତେ
ତୁହି କାହିଁ ପାଇଁ ଯିବୁ ରହିଥାଏ ରଥେ ।
ଜାନକୀକି ଜଗିଣ ବସିଥାଅ ତୁହି
ଛାଡ଼ିଗଲେ ସୀତାକୁ ନ ପାଇବା ଭାଇ ।
ନିୟମ କରାଇଣ ଗଲି ଗାରଦେଇ କାଟି
ତୋତେ ଜଗାଇ ଯାଉଛି ତୁ ଜଗିଥିବୁଟି ।
ଏତେ କହି ଶ୍ରୀରାମ ଯେ ହୋଇଲେ ବାହାର
ବଇଷ୍ଣବୀ ଧନୁରେ ଯୋଚିଲେ ନେଇ ଶର ।
ଶ୍ରୀରାମ ଗଲାରୁ ଯେ ଲକ୍ଷ୍ମଣ ବିଚାରଇ
କୋଦଣ୍ଡ ଧରିଣ ଗୁଣେ ଶରକୁ ବସାଇ ।
ମଢ଼ିଆର ଦୁଆରେ ବସିଲେକ ଯାଇଁ
ପର୍ଣ୍ଣକୁଟୀ ଭିତରେ ରହିଲେ ବଇଦେହୀ ।
ସେ କନକ ମୃଗ ଯେ ଅଦୃଶ୍ୟ ହୋଇଥିଲା
ଶ୍ରୀରାମଙ୍କ ଆଗରେ ଆସିଣ ଦେଖା ଦେଲା ।
ପୁଣିହିଁ ଅଦୃଶ୍ୟ ସେ ହୋଇଲା ଥୋକେ ଦୂରେ
ନ ଦେଖିଣ ଶ୍ରୀରାମ ଯେ ଧାଇଁଲେ କୋପରେ ।
ପୁଣି କେତେକ ଦୂର ଯାଇଣ ମୃଗ ବସିଲା
ଦୃଶ୍ୟ ହୋଇ ପୁଣି ସେ ଅଦୃଶ୍ୟ ହୋଇଲା ।
କୋଶକ ଅନ୍ତରେ ଯାଇ ମୃଗକୁ ନ ଦେଖି
ଅଦୃଶ୍ୟ ନାରାଚ ଯେ ବିନ୍ଧିଲେ ରଘୁବଂଶି ।
ସେ ଶର ନିର୍ଘାତ ଶବଦ କରି ଗଲା
ମାରୀଚର ବେକକୁ ତକ୍ଷଣେ ଛେଦିଲା ।
କନ୍ଧ ଛିଡ଼ିଣ ଯହୁଁ ପଡ଼ିଲା ମାୟାମୃଗ
ନିଜରୂପ ଧରିଣ ମାରୀଚ ଗଲା ସ୍ୱର୍ଗ ।
ତ୍ରାହି ଲକ୍ଷ୍ମଣ ବୋଲି ଉଚ୍ଚେ ସେ ଡାକିଲା
ସେ ଡାକ ଶୁଣି ବିସ୍ମୟ ହେଲେ ରଘୁବଳା ।
ଏତେ ବଡ଼ ଆଶ୍ଚର୍ଯ୍ୟ କେବେ ଶୁଣା ନାହିଁ
ଲକ୍ଷ୍ମଣ ରଖ ବୋଲି ଡାକିଲା କାହିଁପାଇଁ ।
ଅବଶ୍ୟ ବିପରୀତ ଘଟିବ ଆଜି ଯୋଗ
ନ ପୁଣ ଲକ୍ଷ୍ମଣ ଯେ ଆସଇ ଏହି ମାର୍ଗ ।
ଲକ୍ଷ୍ମଣ ଆସିଲେ କଥା ହେବ ବିପରୀତ
ଜଣାଯାଏ ଆଜି କିଛି ଘଟିବ ବିପ୍ରାତ ।
ଏମନ୍ତ ବିଚାରନ୍ତି ମନରେ ରାମରାଣ
ଏଥୁ ଅନନ୍ତରେ ପାର୍ବତୀ ଦେବୀ ଶୁଣ ।
ତେଣେ ସୀତାଙ୍କ ଶ୍ରବଣେ ଶୁଣିଲେ ସେହିବାଣୀ
ଲକ୍ଷ୍ମଣ ସେ କଥାକୁ ତଥ୍ୟକରି ଜାଣି ।
ମନରେ ବିଚାରିଲେ ହେଲା ପରମାଦ
ଏମନ୍ତ ବିଚାରିଲେ ସେ ମନରେ ବିଷାଦ ।

ଲକ୍ଷ୍ମଣଙ୍କୁ ଚାହିଁଣ ବୋଇଲେ ବଇଦେହୀ
ଶ୍ରୀରାମ ପାଶକୁ ତୁମ୍ଭେ ଯାଅ ବେଗହୋଇ ।
ବଡ଼ ପ୍ରମାଦ ପଡ଼ିଲା ପ୍ରାୟେ ମୁଁ ମଣଇ
ତ୍ରାହି ଲକ୍ଷ୍ମଣ ବୋଲି ଶବଦ ଶୁଭଇ ।
ତୁମ୍ଭେ ବେଗେ ଯାଅ ବାବୁ ଧନୁଶର ଧରି
ଶ୍ରୀରାମଙ୍କୁ ସମ୍ଭାଳି ଆଣ ବେଗକରି ।
ମୁଁ ରାଢ଼େଣୀ କାହିଁକି ରାମଙ୍କୁ କହିଲି
କଥାର ଛଟକରେ ସ୍ୱାମୀଙ୍କୁ ହରାଇଲି ।
ଯାଅଯା ସଉମିତ୍ରୀ ସ୍ୱାମୀଙ୍କି ମୋର ଆଣ
ତେବେ ସେ ଦେହେ ମୋର ପଶିବ ପରାଣ ।
ଯାଅ ମୁଁ ରଜସ୍ୱଳା ହୋଇଛି ଲକ୍ଷ୍ମଣ
ସେକଥା ମୋର ମନେ ନୋହିଲା ସ୍ମରଣ ।
ଘରେଯେବେ ପାକାସ୍ପର୍ଶ ହୋଇଥିବ ନାରୀ
ସେ ଚାରିଦିନେ ପୁରୁଷ ଅନୁକୂଳ ନ କରି ।
ନଜାଣି ବଳିଗଲେ କଥା ହୁଏ ଖଳ
ସ୍ତିରୀ ପାକସ୍ପର୍ଶଟି ପୁରୁଷକୁ ମଳ ।
ଏଣୁ ପ୍ରଥମ ଦିନ ମୋର ରଜସ୍ୱଳା
ଶ୍ରୀରାମଙ୍କୁ ଆଜଦିନ ବିରୋଧ ଅଟେ ପରା ।
ଏତେ ବୋଲି ଜାନକୀ ହୋଇଲେ ବିକଳ
ଲକ୍ଷ୍ମଣଙ୍କୁ ବୋଇଲେ ତୁ ଚଳିଯା ଚଞ୍ଚଳ ।
ସୀତାଙ୍କର ବଚନ ଶୁଣି କହେ ସଉମିତ୍ରୀ
କିମ୍ପାଇଁ ବିକଳ ହୁଏ ଜନକ ଦୁହିତୀ ।
ତିନିପୁରେ ଶ୍ରୀରାମଙ୍କୁ ଜିଣନ୍ତା କେହି ନାହିଁ
ଏ କଥାକୁ ମନେ ଚିନ୍ତା ନ କର ବଇଦେହୀ ।
ଲକ୍ଷ୍ମଣ ବଚନ ଶୁଣି ସୀତୟା କ୍ରୋଧକରି
କେମନ୍ତ ବଚନ ମୋତେ କହୁଛ ନ ବିଚାରି ।
ଲକ୍ଷ୍ମଣ ବୋଇଲେ ଦେବୀ ନୁହ କ୍ରୋଧମନ
ଏହିକ୍ଷଣି ଶ୍ରୀରାମ ଯେ ଆସିବେଟି ଜାଣ ।
ମୋହର ବଚନ ତୁମ୍ଭେ ଶୁଣ ଦୃଢ଼କରି
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ରାମଙ୍କୁ ନୁହେଁ ସରି ।
ସାଗର ସମାନରେ ଅଟଇ ରାମ ବଳ
ସେ ସାଗରକୁ କିଏ କରିବ ଥଳକୂଳ ।
ଶୁଣି ନାହିଁକି ମାତା ମୁନିଙ୍କ ମୁଖରେ
ମୁନିମାନେ କହିଛନ୍ତି ତୁମ୍ଭରି ଆଗରେ ।
ଶ୍ରୀରାମ ନାରାୟଣ ବୋଲିଣ ବୋଲନ୍ତି
ତାହାଙ୍କୁ ବଳାଇବାକୁ କିଏ ଅଛି ପୃଥ୍ୱୀ ।

ଏମନ୍ତ ବଚନ ଯହୁଁ ଜାନକୀ ଶୁଣିଲେ
ଲକ୍ଷ୍ମଣଙ୍କ ପ୍ରତି ସେ ବହୁତ କ୍ରୋଧହେଲେ ।
ପାର୍ବତୀ ବୋଇଲେ କିମ୍ପା କଥାରେ କର ଛନ୍ଦ
ଲକ୍ଷ୍ମଣଙ୍କୁ ଜାନକୀ କହିଲେ କିମ୍ପା ମନ୍ଦ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଦେବତା ଏ କୂଟ ଭାବ ଭିଆଇ ଅଛନ୍ତି ।
ଲକ୍ଷ୍ମଣ ନ ଯିବାରୁ ଜାନକୀଙ୍କ ବୋଲେ
ଖଳ ଦୁର୍ବଳ ବେନିଙ୍କି ଦେବେ ପେଶିଦେଲେ ।
ଦୁର୍ବଳ ଯାଇ ଜାନକୀ ଶରୀରେ ପଶିଲା
ତେଣୁ ବଇଦେହୀର ବଳ ଦୁର୍ବଳ ହେଲା ।
ନିର୍ବଳରୁ ବଇଦେହୀ ତୁକାର ବାଣୀ କହି
ବୁଦ୍ଧିବଳେ ଜାନକୀ ନ ପାରିଲେ ସହି ।
ଲକ୍ଷ୍ମଣଙ୍କୁ ଅନେକ ଧିକ୍‌କାର କରି କହି
ନୀଚଲୋକ ପରାଏ ଲକ୍ଷ୍ମଣଙ୍କୁ ମଣଇ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଖଳ ପୁରୁଷଙ୍କୁ ଯେ ଦେବତା କହନ୍ତି ।
ଦେବ ଲୋକଙ୍କର ବୋଲରେ ଖଳଗଲା
ଲକ୍ଷ୍ମଣଙ୍କ ହୃଦୟରେ ପ୍ରବେଶ ହୋଇଲା ।
ସୌମିତ୍ରୀ ଦେହେ ଖଳ ପ୍ରବେଶ ହେବାରୁ
ରିପୁଜାତ ହେଲା ତାଙ୍କର ଜାନକୀ କଥାରୁ ।
ପୁଣି ବଇଦେହୀ ଯେ କହନ୍ତି ବଚନ
ହେଳା କରନା ବେଗେ ଯାଅ ହେ ଲକ୍ଷ୍ମଣ ।
ଜାଣୁଛି ଆନ କଥାମାନ ତୋ ମନରେ
କପଟ କରିଣ ଥୋଇଛୁ ହୃଦୟରେ ।
ଶୁଣିକରି ଲକ୍ଷ୍ମଣ କୋମଳ କଥା କହି
କିମ୍ପାଇଁ କ୍ରୋଧକଥା କହୁଛ ବଇଦେହୀ ।
ଶ୍ରୀରାମଙ୍କ ମହିମା ନ ଜାଣୁକି ତୁହି
ଶିବଧନୁ ଭାଙ୍ଗି ପର୍ଶୁରାମଙ୍କୁ ଜିଣଇ ।
ବନେ କେତେ ଅସୁର ତାଙ୍କ ହସ୍ତେ ମଲେ
ପାଷାଣ ଦେବତା ତାଙ୍କୁ କଥା ଯେ କହିଲେ ।
ଗୁପତେ ଦେବାଦେବୀ କହନ୍ତି ବଚନ
ଜାଣି ଅଛଇ ତୁମ୍ଭେ ସେହି କଥାମାନ ।
ଖର ଦୂଷଣ ତ୍ରିଶିରା ତିନିଙ୍କି ବଦ୍ଧ କଲେ
ଷୋଳ ସହସ୍ର ବଳ ନିଶୋଧନ କଲେ ।
ଲକ୍ଷ୍ମଣଙ୍କ ବାଣୀ ଶୁଣି ସୀତା କ୍ରୋଧକରି
କପାଳ ପିଟି ବୋଲନ୍ତି ଜନକ କୁମାରୀ ।

ମୁଁ ତୋର ମନକୁ ଏବେ ଜାଣିଲି ଲକ୍ଷ୍ମଣ
ଯେବଣ କାରଣେ ତୁ ଆସିଛୁ ସଙ୍ଗେଣ ।
ଭରତ ତୋହର ଯେ ଅଟେ ଏକ ଆତ୍ମା
ଶ୍ରୀରାମଙ୍କୁ ପାଞ୍ଚିବା ଅଟେ ତୋର କଥା ।
କପଟରେ ଆସିଛୁ ଭାଇର ବିଚାରେ
କୈକେୟୀ ରାଣୀ ତୋର ପେଶିଛି ସଙ୍ଗରେ ।
ଶ୍ରୀରାମଙ୍କୁ ମରାଇ ତୁ ମୋତେ ଘେନିଯିବୁ
ସିଂହ ଘରଣୀକି ନେଇ ଶୃଗାଳକୁ ଦେବୁ ।
ଏମନ୍ତ ବିଚାର କରି ଆସିଅଛୁ ତୁହି
କପଟ ଭାବରେ ସଙ୍ଗରେ ଗୋ ଭାଇ ।
ଏସନକ ପାପ ମନେ ଧରି ସଉମିତ୍ରୀ
ଏକଥା ତୋତେ କେହ୍ନେ ଧରିବ ଧରିତ୍ରୀ ।
ରାମଙ୍କୁ ନ ଦେଖିଲେ ମୁଁ ନ ଧରଇ ପ୍ରାଣ
ଦୋଚାରୀ ପ୍ରାୟେ ମୋତେ ବୁଝିଛୁ ଲକ୍ଷ୍ମଣ ।
ମୋତେ ଘେନି ଭ୍ରତ ପରା କରିବ ଘର
ଏମନ୍ତ ଭାବନା ଯେ ଭରିଛି ତୋହର ।
ମୋହର ମନରେ ଯେ ବିଚାରଟି ଏହା
ରାମଙ୍କୁ ଏତେବେଳେ ନ ହେଉଛୁ ସାହା ।
ଲକ୍ଷ୍ମଣ ବୋଇଲେ ମୁଁ ଗୋଡ଼ାଇ ଅଇଲି
ଏତେଦୁଃଖ କେବଣ କାରଣେ ସହିଲି ।
ଏବେ ତୁମ୍ଭର ମାୟା ଜଣାଗଲା ସତୀ
ଏତେ ଛଳକଥା ଯେ ତୁମ୍ଭଠାରେ ଅଛି ।
ଶୁଣିକରି ଜାନକୀ କହନ୍ତି ବଚନ
ତିନିଭାଇ ତୁମ୍ଭର ଅଟେ ଏକା ଗୁଣ ।
ଏକ ବାପଠାରୁ ଜନମ ଚାରିଭାଇ
ଋଷ୍ୟଶୃଙ୍ଗଙ୍କ ଚରୁରୁ ଅଛ ଜାତ ହୋଇ ।
ମାତାଗୁଣ ବହିଣ ଅହନ୍ତା ତୁମ୍ଭେ କର
ଜ୍ୟେଷ୍ଠ ଭାଇଙ୍କି ତୁମ୍ଭେ ମନ୍ଦ ଯେ ବିଚାର ।
ପ୍ରତ୍ୟକ୍ଷେ ଶୁଣିଲୁ ରାମ ଉଚ୍ଚେ ଡାକ ଦେଲେ
ବିକଳ ହୋଇଣ ସ୍ୱାମୀ ତୋତେ ସୁମରିଲେ ।
ତାହା ଶୁଣି ତୋତେ ମୁହିଁ ବୁଝାଇ କହିଲି
ଏତେବାଗେ କହିବାରୁ କହୁତୁରେ ପେଲି ।
ପାପ କଥାମାନ ମନେ ତ ଅଛି ପୁଣ
ତୁ ସେ ବନେ ଗଲୁନାହିଁ କାହିଁ ଦେଖିବୁ ରାମ ।
ଚନ୍ଦ୍ରୁକଳଙ୍କ ଯେହ୍ନେ ପୋଛିଲେ ନ ଯାଇ
ଅଙ୍ଗର ଛାଇଯେହ୍ନେ ଅଙ୍ଗ ନ ଛାଡ଼ଇ ।

ସାଗରକୁ କେହି ଯେ ପାରିବ ଉଝାଳି
ରାମଙ୍କୁ ଛାଡ଼ି ଜୀଇବକି ମଇଥିଳୀ ।
ପଶ୍ଚିମ ଦିଗେ ଯେବେ ଉଇଁବେ ଆଦିତ୍ୟ
ତଥାପି ଆନେ ମୋର ନ ବଳିବ ଚିତ୍ତ ।
ତୁ ଏବେ ବିଚାର ଯେ କର ହାଦେ ଏହା
ଆଜି ଦିନକମାତ୍ର ମୋତେ ହୁଅ ସାହା ।
ଶ୍ରୀରାମଟି ମୋହର ଅଟନ୍ତି ପଞ୍ଚପ୍ରାଣ
ତାହାଙ୍କୁ ମୋତେ ଏବେ ଦିଅ ହେ ଲକ୍ଷ୍ମଣ ।
ତିନିଭାଇ ତୁମ୍ଭେ ଅଯୋଧ୍ୟାରେ ରାଜା ହୁଅ
ଆମ୍ଭେ ଦୁଇ ପ୍ରାଣୀ ଯେ ନୋହିବୁଁ ତୁମ୍ଭ ପ୍ରିୟ ।
ଏ ବନରେ ପଛରେ ଆମ୍ଭ ଦିନ ଯାଉ
ଅଯୋଧ୍ୟା ରାଜ୍ୟରେ ତୁମ୍ଭେ ରାଜା ହୁଅ ବାବୁ ।
ଏମନ୍ତ ବଚନ ସୀତାଙ୍କର ମୁଖୁ ଶୁଣି
ଲକ୍ଷ୍ମଣବୀର ମନେ ମନେ ହେଲେ ଗୁଣି ।
ସୀତାଙ୍କ ବାଣୀ ଶୁଣି ବୋଲେ ସଉମିତ୍ରୀ
ଏ ପାପ କଥା କିମ୍ପା କହ ଜନକ ପୁତ୍ରୀ ।
ଶ୍ରୀରାମଙ୍କୁ ଜିଣିବାକୁ ନାହିଁ କେ ତିନିପୁରେ
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ଜଳ, ସ୍ଥଳ, ଅନଳରେ ।
ସ୍ୱୟଂ ବିଷ୍ଣୁ ଅଟନ୍ତି ପ୍ରତ୍ୟକ୍ଷେ ଶ୍ରୀରାମ
ତୁମ୍ଭେ ମନରେ କିମ୍ପା କରୁଛ ଗୋ ଭ୍ରମ ।
ଶ୍ରୀରାମ ଆଜ୍ଞା କେହ୍ନେ ଲଙ୍ଘିଣ ମୁଁ ଯିବି
ତୁ ମୋତେ ନାନା କଥା କହୁ କିମ୍ପା ଯିବି ।
ତୁ ମୋତେ କିମ୍ପାଇଁ ଡାକିବେନି ସତେ
ତ୍ରୈଲୋକ୍ୟ ଠାକୁର ସେ ଅଟନ୍ତି ରଘୁନାଥେ ।
ତୁମ୍ଭେ ଯେ ବୋଇଲ ମୋତେ ଅଇଲୁ ଗୋଡ଼ାଇ
ଏକଥା କହିବାର କି ଉଚିତ ଅଟଇ ।
ମୋର ଘରଣୀକି ଛାଡ଼ି ଅଇଲି ତୁମ୍ଭ ସଙ୍ଗେ
ଗୁପତେ ଆସିଛି ମୁଁ କହୁଅଛ ତୁମ୍ଭେ ।
ମୋ ଜନନୀ ବୋଇଲେ ଶ୍ରୀରାମ ସଙ୍ଗେ ଥିବୁ
ଭର୍ତ୍ସନା ଶୁଣିଲେ ତୁ ଦୁଃଖ ନ କରିବୁ ।
ଏବେ ତୁମ୍ଭ ସୁଖବେଳ ହେଉଛି ପରବେଶ
ତୁମ୍ଭେ ମୋତେ ଗାଳିଦିଅ ନାହିଁମୋର ଶେଷ ।
ମାୟା ଯେବେ ତୁମ୍ଭପ୍ରତି 'ମୋର ମନେ ଥିବ
ଆକାଶରୁ ଶର ପଡ଼ି ମୋତେ ସଂହାରିବ ।
ଦାସହେଲେ ଏକଥା ଗୋ ନ ସହେ ତୋହର
ତୁମ୍ଭର କଥା ମୋତେ ଲାଗୁଛି ଅଗ୍ନିଶର ।

ତୁମ୍ଭର ସକାଶେ ମୁଁ ନପୁଂସକ ହେଲି
ଘରଣୀ ଉର୍ମିଳା ମୋତେ କହିଲା ଗୋ ବଳି ।
ସେହି ସେ ଯେ କୁଞ୍ଚିରୀ ହୋଇଲାକ ପୁଣ
ନିୟମ କରାଇଲା ଆସିଲା ବେଳେ ଜାଣ ।
ବୋଇଲା ଏ ଜାନକୀ ତ୍ରୈଲୋକ୍ୟ ଠାକୁରାଣୀ
କିଛି ନ ବୋଲିବ ତାହାଙ୍କୁ ତୁମ୍ଭେ ପୁଣି ।
କଥା ମୁଁ ବୁଝିଣ ତୁମ୍ଭ ସଙ୍ଗରେ ଅଇଲି
ଏବେ ତୁମ୍ଭ ମୁଖରୁ ନିନ୍ଦା ଯେ ଶୁଣିଲି ।
ଶୁଣିକରି ଜାନକୀ କହିଲେ କୋପକରି
ତୁ ମୋତେ ହରିବୁ ବୋଲି ଆସିଛୁ ବିଚାରି ।
ଯେତେକଥା କହିଲ ସକଳ ଅଟେ ମିଛ
ମାୟାରେ ମୋହର ସଙ୍ଗରେ ଆସିଅଛ ।
ତୁହି ଚଣ୍ଡାଳରେ କୁଟିଳ ଜନ ଅଟୁ
ହୃଦରେ ପାପ ବହି ଶ୍ରୀରାମ ପାଦେ ଖଟୁ ।
ମୁହିଁ ଯେ ପତିବ୍ରତା ସ୍ୱାମୀର ହିତକାରୀ
ସ୍ୱାମୀ ଅଭାବେ ଦେହ ନ ପାରିବି ଧରି ।
ବିଭା ବେଳରେ ଅଗ୍ନି ଛୁଇଁଣ ବ୍ରତକଲି
ସ୍ୱାମୀ ଅଭାବେ ଦେହ ନ ଧରିବି ବୋଇଲି ।
ଅଗ୍ନିରେ ପଶିବି ମୁଁ ରାମଙ୍କ ବିହୁନେ
ଆନ ପୁରୁଷ ସଙ୍ଗେ ନ ରହିବି କ୍ଷଣେ ।
ସ୍ୱାମୀଙ୍କି ମୋର ଏବେ ବିପତ୍ତି ପଡ଼ିଲା
ତ୍ରାହି ଲକ୍ଷ୍ମଣ ବୋଲି ଶବଦ ଶୁଭିଲା ।
କର୍ଣ୍ଣରେ ଶୁଣିଲୁ ତୁ ତୋର ଦୟା ନାହିଁ
ଏମନ୍ତ ଦୁରାତ୍ମାର ଅଇଲୁ କିସପାଇଁ ।
ଅନେକ ଝିଙ୍ଗାସି କହିଲେ ଯହୁଁ ସତୀ
ସେଠାରୁ ଲକ୍ଷ୍ମଣ ଯେ ହେଲେ କୋପମୂର୍ତ୍ତି ।
ତୁମ୍ଭେ ସ୍ତିରୀମାନେ ସ୍ୱଭାବେ ଚଞ୍ଚଳ
ବିଚାର ବେଭାର ନାହିଁଟି ତୁମ୍ଭର ।
ଅରଣ୍ୟ ଭିତରେ ପର୍ବତ ତରୁ ଲତା
କେମନ୍ତେ ତୁମ୍ଭଙ୍କୁ ମୁଁ ଛାଡ଼ିଯିବି ସୀତା ।
ଅସୁରଙ୍କର ଭୟ ଏଠାରେ ପୁଣିଅଛି
ତୋତେ ଛାଡ଼ି ଯିବାକୁ ମୋ ମନ ନୋହୁଛି ।
ଶ୍ରୀରାମ ଦେଖିଲେ ମୋତେ ଅନେକ ଗାଳିଦେବେ
ସେଥିର ସକାଶେ ମୁଁ ନଯାଇ ଦେବୀ ଏବେ ।
ତୁମ୍ଭର ଭସନା ଯେ ଶ୍ରୀରାମ ନ ଜାଣିବେ
ମଧ୍ୟରେ ଭାସିଲା ପ୍ରାୟ ହୋଇଲି ମୁଁ ଏବେ ।
ଏବେ ତୁମ୍ଭେ ଗାଳି ଦେଉଛ ନ ଯିବାରୁ
ଗଲେ ଗାଳି ପରାଭବ ପାଇବି ସ୍ୱାମୀଠାରୁ ।
ବିଧାତା ଆଣିଣ ମୋତେ ଏ ଦୁଃଖ ଦେଲା
ସେବା କରିବାର ମୋର ବିଫଳ ହୋଇଲା ।
ଏତେ କହି ଲକ୍ଷ୍ମଣ ବହୁତ ଦୁଃଖମନ
ଏଠାରେ ପାଞ୍ଚିଲା ମୋତେ ଦଇବ କଷଣ ।
ଏମନ୍ତ ବିଚାର କରି ଶାନ୍ତ ହେଲେ ସେହି
ବୋଇଲେ ମୋତେ ଯାହା କରିବେ ଭାବଗ୍ରାହୀ ।
ତୁ ଗୋ ମହାସତୀ ଅପ୍ରାଧୀ କିମ୍ପା ହେଉ
ଝିଙ୍ଗାସ ବଚନ ବହୁତ ମୋତେ କହୁ ।
ଏତେ କହି ଲକ୍ଷ୍ମଣ ଧର୍ମକୁ ଅନାଇଁ
ଦେବଗଣମାନେ ତୁମ୍ଭେ ସ୍ୱର୍ଗରେ ଅଛରହି ।
ଚାରି ଦିଗରେ ତୁମ୍ଭେ ଦଶଦିଗପାଳ
ଗଗନ, ଅନଳ ଯେ ମେଦିନୀ ସ୍ଥଳ କୂଳ ।
ଅମର ଦେବତାଏ ଥାଅ ସ୍ୱର୍ଗେ ଶୁଣି
ମୋତେ ଗାଳିଦେଲେ ଜନକ ଦୁଲଣୀ ।
ମୃଗ ମାରିବା ପାଇଁ ଗଲେ ରାମରାଣ
ଏ ଜାନକୀ ମୃଗକୁ ଶ୍ରଦ୍ଧା କଲେ ଜାଣ ।
ସୀତୟା କହିବାରୁ ରାମ ଗଲେ ବନ
କଟୁ ବଚନ ମୋତେ କହୁଛନ୍ତି ପୁଣ ।
ଗଲାବେଳେ ରାମ ମୋତେ କହିକରି ଗଲେ
ପର୍ଣ୍ଣକୁଟୀ ଛାଡ଼ିକରି ନ ଯିବୁ ବୋଇଲେ ।
ଜାନକୀଙ୍କ ଯତନେ ରଖି ଜଗିବୁଟି
ତୁ ଥିଲେ ବିପତ୍ତି ନୋହିବ ମୋହରଟି ।
ବିପିନରେ ଶୁଭିଲା ଲକ୍ଷ୍ମଣ ତ୍ରାହି କର
ତେଣୁ ସୀତାଦେବୀ ମୋତେ ପେଷନ୍ତି ବନର ।
ଯଦ୍ୟପି ଶୁଣିଲି ଡାକ ମୋହର ଚିନ୍ତା ନାହିଁ
ନ ଗଲାରୁ ଜାନକୀ ଅନେକ ଗାଳି ଦେଇ ।
ନାସ୍ତି କଲାରୁ ସୀତା କହିଲେ ଅଧର୍ମ
ସାକ୍ଷୀ ରହି ଥାଅ ତୁମ୍ଭେ ଦଶପାଳ ଧର୍ମ ।
ମୁଁ ଏଥୁ ଗଲେ ଦେବୀ ପାଇବେ ମହାସୁଖ
ମୁହିଁ ସଙ୍ଗେ ରହିବାରୁ ସୀତୟା ପାଏ ଦୁଃଖ ।
ସେ ଦୋଷ ମୋତେ ନ ଲାଗୁ ଶୁଣ ଚନ୍ଦ୍ରସୂର୍ଯ୍ୟ
ଏହାଙ୍କର ବୋଲେ ମୁଁ ସୀତାଙ୍କୁ ଛାଡ଼ି ଆଜ ।
ଶ୍ରୀରାମଙ୍କ ଆଜ୍ଞାକୁ ଛାଡ଼ିଲିଟି ଜାଣ
ସେଥିରେ ଦୋଷୀହେଲେ ଜନକ ସୁତାପୁଣ ।

ଏତେ କହି ସୀତାଙ୍କ ମୁଖ ଚାହିଁ
ଜାନକୀଙ୍କୁ କହିଲେ କୋପମନ ହୋଇ ।
ବୋଇଲେ ଠାକୁରାଣୀ ତୁମ୍ଭେ ଦୁଷ୍ଟକଥା କହ
ଶ୍ରୀରାମଙ୍କୁ ମୋତେ ତୁମ୍ଭେ ଭିନ୍ନ କରିଦିଅ ।
ଆବର ଅନେକ ବୋଲୁଛ ମନ୍ଦବାଣୀ
ପରରେ ଦୂଷିତ ହୁଏ ଜନକ ଦୁଲଣୀ ।
ପକ୍ଷୀଜଟାଙ୍କୁ ଚାହିଁ ବୋଲନ୍ତି ଲକ୍ଷ୍ମଣ
ତୁହି ଶୁଣିଥାଅ ବିଦେଶୀ ଖଗ ପୁଣ ।
ରାମେ ବୁଝାଇ କହିବୁ ଦୋଷଟି ଯାହାର
ଝିଙ୍ଗାସ ବଚନ ସହି ନ ହେଲା ଜାନକୀର ।
ଶୁଣିକରି ଜଟାୟୁଷ ବୋଲଇ ବଚନ
ଏହାଙ୍କ ବଚନରେ ନ ଯାଅ ଲକ୍ଷ୍ମଣ ।
ଏହିକ୍ଷଣି ଶ୍ରୀରାମ ଆସିବେ ସର୍ବ ଶୁଭେ
ନାରାୟଣ ପୁରୁଷଙ୍କୁ ମାୟା କେ କରିବେ ।
ସ୍ତିରୀଜନ ସେ ଯେ ନ ଜାଣନ୍ତି କଥା ଭଲ
ଆଗ ପଛ ବିଚାର ନାହିଁ ଏହାଙ୍କର ।
ଏ ବନରେ ଦୁର୍ଯୋଗ ଅଛି ଯେ ବହୁତ
ଦଣ୍ଡକା ଅରଣ୍ୟ ଏ ଯେ ନୁହଇ ପଦାତ ।
କେତେ ଦୂରେ ଶ୍ରୀରାମ ଅଛନ୍ତି ନ ଜାଣି
ଗଲା ଅଇଲା ଯେ ଉଛୁର ହେବ ପୁଣି ।
ଦଣ୍ଡକା ଅରଣ୍ୟରେ ଦଣ୍ଡକେ ଭିନ୍ନ ଗତି
ନ ଯାଅ ହେ ଲକ୍ଷ୍ମଣ ଗାଳିଦେଉ ସତୀ ।
ଶୁଣିକରି ଜାନକୀ ଜଟାୟୁଷଙ୍କୁ କହି
ଖଗ ହୋଇ ତୁମ୍ଭର ବିଚାର କିଛି ନାହିଁ ।
କେଉଁ କଥାରେ ତୁମ୍ଭେ ସାର ଅଟ ପୁଣ
ସ୍ୱାମୀଙ୍କଠାକୁ ଯିବାକୁ କରୁଛ ବାରଣ ।
ଯାଅ ହେ ଲକ୍ଷ୍ମଣ ଏଥି ନରହ ହେ କ୍ଷଣେ
ଶ୍ରୀରାମଙ୍କୁ ଆଣି ମୋତେ ଭେଟାଅ ତକ୍ଷଣେ ।
ଏମନ୍ତ ବଚନ ଜାନକୀ ଯହୁଁ କହି
ଶୁଣିଣ ମନ ଦୁଃଖରେ ଲକ୍ଷ୍ମଣ ବାହାରଇ ।
ଧନୁ ଶରଟିକି ସେ ଧରିଲେ ହସ୍ତର
ରାମରାଣ ବୋଲିଣ ଦୁଆରେ କାଟିଗାର ।
ଏ ଗାରକୁ ସୀତା ତୁମ୍ଭେ ଡେଇଁଣ ନ ଯିବ
ପର୍ଣ୍ଣକୁଟୀ ଭିତରୁ ବାହାର ନୋହିବ ।
ଏତେ କହି ବୀର ବହନ ହୋଇଗଲା
ଶ୍ରୀରାମ ଗଲା ପଥରେ ବନରେ ପଶିଲା ।

ଯହୁଁ ସେ ଲକ୍ଷ୍ମଣ ଗଲେ ପିଠିଦେଇ
ବନସ୍ତରେ ଲୁଚି ଦେଖୁଥିଲା ଲଙ୍କସାଇଁ ।
ମନରେ ବିଚାରିଲା କରିବି କିସ ବୁଦ୍ଧି
ଏକାହୋଇ ରହିଲେ ଯୁବତୀ ରତ୍ନ ନିଧି ।
ମାରୀଚ ଉପାୟ କରି ଦୁହିଁଙ୍କି ଘେନିଗଲା
ତାଡ଼କୀ ପୁତ୍ର ମୋତେ ବହୁତ ଗୁଣକଲା ।
ଏହି ସମୟରେ ମୁଁ ନେଇପାରେ ସୀତା
ଏ ମହୀମଣ୍ଡଳରେ ରହିବ ମୋର କଥା ।
ଯେଉଁଦିନ ହେଲେ ମରିବି ତ ମୁହିଁ
ସୀତାଙ୍କୁ ହରିଲେ ମରଣ ଯୋଗହୋଇ ।
ଦେବତାମାନେ ମୋ ପାଇଁ କରିଲେଣି କୂଟ
ମୋହର ସକାଶେ ଦେବେ ପାଇଲେ ବଡ଼କଷ୍ଟ ।
କୁଶପାଣି ବରଦେଲା ବେଳରେ କହିଛି
ଜାନକୀଙ୍କି ହରିଲେ ତୁ ମରିବୁ କହିଛି ।
ମନ୍ଦୋଦରୀ ଆଗରେ କହିଲେ ନାରଦ
ସୀତାଙ୍କୁ ହରି ଆଣିବ ନିଶ୍ଚେ ଦଶକନ୍ଧ ।
ନିଶ୍ଚୟ ଅଳ୍ପଦିନେ ମରିବ ବିଂଶପାଣି
ସେ ମନ୍ଦୋଦରୀ ରାଣୀ କର୍ଣ୍ଣରେ ଅଛି ଶୁଣି ।
ଅନେକ ପ୍ରକାରେ ମୋତେ ସେ ଆକଟ କଲା
ଦଇବ ବଳେ ମୋତେ ସେକଥା ନ ରୁଚିଲା ।
ସୀତାଙ୍କୁ ନେଲେ ମୁଁ ଯେ ହୋଇବି ନିର୍ବଳ
ରାମର ପ୍ରତିଜ୍ଞା ନ ମାନେ ଦେବବଳ ।
ଦଇବ ନ ମାନିବ ନମାନେ ପଞ୍ଚାନନ
ରାମଙ୍କୁ ଘେନି ସର୍ବେ କରିବେ ମେଳପୁଣ ।
କୂଟକରିଣ ମୋତେ ମାରିବେ ଅବଶ୍ୟ
ସେତେବେଳେ ମୋର ଯେ କିଛିନାହିଁ ଯଶ ।
ଏତେବେଳେ ଯେବେ ମୁଁ ସୀତାଙ୍କୁ ହରିନେବି
ତିନିପୁରେ କଥା କାଳ କାଳକୁ ରଖିବି ।
ଦେବତାଙ୍କର ବଳ ବପୁ ଯେ ନୋହିବ
ଶ୍ରୀରାମ ଅଯୋଧ୍ୟାକୁ ଫେରି ଚଳିଯିବ ।
ବନରେ ବୁଲି ମରିବ ଦଶରଥ ପୁଅ
ଦରିଆକୁ ତରିବାକୁ ନାହିଁ ସଙ୍ଗ ସ୍ନେହ ।
ସୀତାଙ୍କୁ ଘେନିଣ ଗଲେ ବଳହେବ କ୍ଷୀଣ
ଉପାୟ କୁପାଞ୍ଚ ତାର ସବୁ ଯିବ ପୁଣ ।
ତେଣେ ସୀତୟାଙ୍କୁ ନେଇ କରିବି ମୁଁ ଭୋଗ
ସାଧବୀପଣ ତାହାର ଭାଙ୍ଗିବି ମୁଁ ଆଗ ।

ଏମନ୍ତ ବିଚାର କରେ ବିଶର୍ବାର ସୁତ
ମନ୍ତ୍ରୀକି ବୋଇଲା ରଥ ଘେନିଆସ ଗୁପ୍ତ ।
ଶ୍ରୀରାମ ଅଇଲେ ନୁହେଁ ସୀତା ନେଇ
ଏସନକ ସମୟରେ ଯେ ଖୋଜିଲେ ନ ପାଇ ।
ଏହିରୂପରେ ଗଲେ ଜାନକୀର ପାଶ
ନୟନେ ଏ ରୂପ ଦେଖି କୋପିବ ବିଶେଷ ।
ସାକ୍ଷାତେ କମଳା ସେ ଜନକ କୁମାରୀ
ଅସୁର ତନୁ ଦେଖିଣ ପୁଣ କ୍ରୋଧକରି ।
ଏତେ ବିଚାରିଣ ସେ ରଥରୁ ଓହ୍ଲାଇଲା
ରାକ୍ଷସ ବେଶକୁ ଗୁପ୍ତ କରିଦେଲା ।
ସର୍ବାଙ୍ଗରେ ବିଭୂତି ହୋଇଲା ଭୂଷଣ
ଦଣ୍ଡ କମଣ୍ଡଳ ସେ ଧଇଲା ହସ୍ତେ ପୁଣ ।
ଦଶମୁଣ୍ଡ ଲୁଚାଇ ଏକମୁଣ୍ଡ ରଖି
ରୁଦ୍ରାକ୍ଷମାଳକୁ ସେ ଗଳାରେ ଦେଲା ଯୋଖି ।
ଅସୁର ରୂପକୁ ତେଜ୍ୟାକଲା ପୁଣ
ବ୍ରହ୍ମଚାରୀ ରୂପ ସେ ଧଇଲା ତକ୍ଷଣ ।
ତମ୍ୱାର ବାହୁଟି ଭୂଜମୂଳେ ବାନ୍ଧି
ତହିଁପରେ ବାଜୁ ବନ୍ଧ ଲଗାଇଲା ଛନ୍ଦି ।
କଷାବାସେ ପିନ୍ଧିଣ କାଖରେ ମୃଗଛାଲ
ଗୋମୟ ବିଭୂତି ଯେ ଅଙ୍ଗରେ ଶୋଭା ତାର ।
ବେଦ କରାଣ୍ଡି ପୋଥି କାଖରେ ଜାକିଲା
ବାମକରେ କୁଶବିଡ଼ି ଦେଇଣ ଧଇଲା ।
ଅଙ୍ଗୁଷ୍ଠିରେ ତମ୍ୱାମୁଦି ଲଗାଇ ଛନ୍ଦରେ
କୁଶବଟୁ ଲଗାଇଲା ତାହାର ସଙ୍ଗରେ ।
ଧୀର ଧୀର ହୋଇ ସେ କରଇ ଗମନ
ମଢ଼ିଆ ଦ୍ୱାରେ ଯାଇ ମିଳିଲା ଦଶାନନ ।
ଚାରି ବେଦ ଅଧ୍ୟୟନ କଲା ଧ୍ୱନି କରି
ଓଁକାର ଧ୍ୱନି କରି ଗାୟତ୍ରୀ ସୁମରି ।
ସୀତା ବିଚାରିଲେ କାହୁଁ ଅଇଲେ ଏ ମୁନି
ଚାରିବେଦ ଅଧ୍ୟୟନ କରୁଛନ୍ତି ପୁଣି ।
ରାମ ଲକ୍ଷ୍ମଣ ନାହାନ୍ତି କେ କରିବ ପୂଜା
ଏମନ୍ତ ବିଚାରି ମନେ ଜନକ ଆତ୍ମଜା ।
ସମସ୍ୟା ନ ଦେଇଣ ଭିତରେ ଛନ୍ତି ସତୀ
ଦୁଆରେ ରାବଣ ଯେ ଓଁକାର ବେଦଉକ୍ତି ।
ଋଷିଙ୍କି ଦେଖିବାରୁ ଜାନକୀ ମାନ୍ୟକଲେ
ମଢ଼ିଆରେ ଥାଇଣ ସମସ୍ୟା ନଦେଲେ ।
ଦୋହରା ଅଗ୍ନି ପାଖରେ ଯାଇଣ ସତୀ ବସି
ମଢ଼ିଆର ଭିତରେ ରାବଣେଶ୍ୱର ପଶି ।
ତିନିଗାର ଡେଇଁବାରୁ ପଡ଼ିଲା ମୋହ ହୋଇ
କେତେବେଳ ଉତ୍ତାରେ ଚେତନା ସେ ପାଇ ।
ବୋଇଲା ଏ ଘରେ ତ ମନୁଷ୍ୟ କେହିନାହିଁ
ଏତେବୋଲି ସେହିଦ୍ୱାରେ ବସିଲେକ ଯାଇ ।
ରାବଣକୁ ଦେଖିଣ ଉଠିଲେ ମହାସତୀ
ହେଠମୁଖ ହୋଇ ଉଭା ଜନକ ଦୁହିତୀ ।
ବୋଇଲେ ବ୍ରତଚାରୀ ବାହାରେ ଯେ ବସ
ଶ୍ରୀରାମ ଏଥି ନାହାନ୍ତି ଭିତରେ କିମ୍ପା ପଶ ।
ଫଳ ମୂଳ ଭିକ୍ଷା ଯେ ନ ଦେବି ମୁହିଁ ଜାଣ
ଜଳ ଦେଲେ ଚରଣ ଧୁଅନ୍ତି ଆପଣ ।
ମୃଗଛାଲ ଦେଇଥିଲେ ନିଶ୍ଚିନ୍ତେ ବସନ୍ତ
ଅଶଉଚ ମୋର ଦେହ ହୋଇଛି ତପୋବନ୍ତ ।
କୌଣସି ଦ୍ରବ୍ୟ ମୁଁ ଛୁଇଁବାକୁ ନାହିଁ
ଅଶଉଚେ ଛୁଇଁଲେ ଅଶୁଭ ସବୁ ହୋଇ ।
ତେଣୁକରି କୌଣସି ଦ୍ରବ୍ୟ ନ ଛୁଇଁବି
ଏ କଥାକୁ ବିବେକ କର ତୁମ୍ଭେ ଯୋଗୀ ।
ଦଣ୍ଡେ ରହ ଏବେ ରାମ ଆସିବେ ବନରୁ
ଦେଖିଲେ ପୂଜା ସେ କରିବେ ମହାମେରୁ ।
ଦଶଗ୍ରୀବ ବୋଇଲା ଶୁଣ ଆଗୋ ନାରୀ
ରୂପରେ ସମ ତୋତେ ନାହିଁ କେ ବସୁନ୍ଧରୀ ।
ଶରଦ ଚନ୍ଦ୍ରକୁ ଜିଣି ଅଟେ ତୋର ମୁଖ
କିମ୍ପାଇଁ ବନରେ ତୁ ପାଉଅଛୁ ଦୁଃଖ ।
କାହାର ଦୁହିତା ତୁ କାହାର ରମଣୀ
କି କାରଣେ ଏଥକୁ ଅଇଲୁ ତରୁଣୀ ।
ବିଷ୍ଣୁର ଘରଣୀ କି କମଳା ଅଟୁ ତୁହି
ମର୍ତ୍ତ୍ୟପୁରେ ଭ୍ରମଣ କରୁ କି ଗୋ ରହି ।
ନୋହିଲେ ଈଶ୍ୱରର ଅଟୁ କି ଘରଣୀ
ପାର୍ବତୀ ପ୍ରାୟେ ରୂପ ଝଟକେ ତୋର ପୁଣି ।
ଈଶ୍ୱରଙ୍କୁ ତେଜ୍ୟାକରି ବନରେ ଯେ ବୁଲୁ
ବିପରୀତ ଭାବୁଛି ମୁଁ ଦେଖିଲାର ବେଳୁ ।
କି ଅବା ଅହଲ୍ୟା ତୁ ଗଉତମ ନାରୀ
ତପ ସ୍ଥାନକୁ ଏବେ ଗଲେ କି ତପଚାରୀ ।
କି ଅବା ଇନ୍ଦ୍ରନାରୀ ଆସୁଛୁ ମର୍ତ୍ତ୍ୟପୁର
ସେମାନଙ୍କ ପ୍ରାୟ ରୂପ ଦିଶୁଛି ତୋହର ।

କେବଣ ଦେଶେ ତାତ କେବଣ ଦେଶେ ଘର
କେତେ ବୟସ ତୋତେ ଅଟୁ ଯେ ସୁନ୍ଦର ।
କିମ୍ପାଇଁ ଅରଣ୍ୟରେ କରିଅଛୁ ବସା
ସିଂହ, ଶାର୍ଦ୍ଦୁଳମାନଙ୍କୁ ମନେ ନାହିଁ ଶଙ୍କା ।
ବ୍ୟାଘ୍ର, ଭାଲୁ, ହସ୍ତୀ, ଶୁକର ଏ ବନେ ବହୁତ
ଏମାନଙ୍କୁ ଭୟନାହିଁ କି ତୋର ଚିତ୍ତ ।
ମନୁଷ୍ୟକୁ ଅଗମ୍ୟ ଅଟେ ଏ ବନସ୍ତ
ଦେବଶୂର ମୁନି ଯେ ନରହନ୍ତି ଏଥ ।
ଅସୁରଙ୍କ ଭୂମି ଏ ଜନ ମନୁଷ୍ୟ ନାହିଁ
କେମନ୍ତେ ଅଛୁ ଏଥିରେ ଦିବ୍ୟ ତନୁ ବହି ।
ମୋ ଦିହକରେ ମୁହିଁ ଦେଖିଛି ଯେତେ ନାରୀ
ଅପସରା କିନ୍ନରୀ ଯକ୍ଷ ବିଦ୍ୟାଧରୀ ।
ତିନିପୁରେ ସରିସମ ତୋତେ କେହି ନାହିଁ
ଶୁଦ୍ଧ ସୁବର୍ଣ୍ଣ ଜିଣି ଦିଶଇ ତୋର ଦେହୀ ।
ଜାନୁ ଯଉବନ ତୋର ଦିଶଇ ବର୍ତ୍ତୁଳ
ପାଦପଦ୍ମ ଅଙ୍ଗୁଳି ଚମ୍ପା କଢ଼ୀ ପ୍ରକାର ।
ଏମନ୍ତ ଶୁଣି କରି କହନ୍ତି ଦେବୀ ସୀତା
ଯାଗଶାଳୁ ପାଇବାରୁ ଜନକ ମୋର ପିତା ।
ଅଯୋଧ୍ୟାରେ ନୃପତି ଯେ ଦଶରଥ ରାୟ
ଶ୍ରୀରାମଚନ୍ଦ୍ର ଅଟନ୍ତି ତାଙ୍କର ଜ୍ୟେଷ୍ଠ ପୁଅ ।
ଭରତ, ଲକ୍ଷ୍ମଣ, ଶତ୍ରୁଘନ ସାନ
ଋଷ୍ୟଶୃଙ୍ଗଙ୍କ ଚରୁରୁ ସେ ହେଲେ ଉତପନ୍ନ ।
ରାମ, ଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ର ମାଗିନେଲେ
ବାରବରଷ କାଳେ ତାଡ଼କୀ ନାଶିଲେ ।
ଅସୁରଙ୍କୁ ବିନାଶି ରଖିଲେ ରାମ ଯୋଗେ
ଦେବତାଏ ସୁଖେ ଭୁଞ୍ଜିଲେ ହବିର୍ଭାଗ ।
ବିପିନରେ ଥିଲେ ଅହଲ୍ୟା ନାମ ନାରୀ
ଗଉତମ ଶାପରେ ପାଷାଣ ରୂପ ଧରି ।
ରାମଙ୍କ ପାଦ ଲାଗି ନିଜ ତନୁ ପାଇ
ସେଠାରୁ ରଘୁନାଥ ମିଥିଳାପୁରକୁ ଯାଇ ।
ସଦାଶିବ ଧନୁ ମୋର ପିତା ରଖିଥିଲେ
ସେ ଧନୁ ଧରିବାକୁ ସକ୍ଷ କେ ନୋହିଲେ ।
ଦେବତା ଏବେ ଦେଖିଣ ଡରେ ପଳାଇଲେ
ବେଦବର ସଦାଶିବ ସେଠାକୁ ନ ଗଲେ ।
ସେ ଧନୁକୁ ଦେଖିଣ ଅସୁରେ ଗଲେ ଫେରି
ଚାରି ରାବଣ ଆସିଣ ନ ପାରିଲେ ଧରି ।
ବାଳି ବଜ୍ର ଲାଭ ଯେ ସହସ୍ରାର୍ଜ୍ଜୁନ
ପର୍ଶୁରାମ ସହିତେ ଫେରିଲେ ଦେଖିଣ ।
ମର୍ତ୍ତ୍ୟପୁରୁ ଲକ୍ଷେ ରାଜା ସେଠାକୁ ଆସିଥିଲେ
ଧନୁକୁ ଦେଖିଣ ସର୍ବେ ନମସ୍କାର କଲେ ।
ହେଲେ ଦାଶରଥି ସେ ଧନୁକୁ ଆମର୍ଷିଲେ
ବିଷ୍ଣୁ ବୋଲି ମୋର ପିତା ସେଠାରୁ ଜାଣିଲେ ।
ତେଣୁ ସେ ରଘୁନାଥଙ୍କୁ ମୋତେ ବିଭା କଲେ
ମୋତେ ବିଭାହୋଇ ରାମ ଅଯୋଧ୍ୟା ଫେରିଲେ ।
ବାଟରେ ପର୍ଶୁରାମଙ୍କ ଦର୍ପହତ କଲେ
ସେଠାରୁ ଦାଶରଥି ଅଯୋଧ୍ୟାକୁ ଗଲେ ।
ଦଶରଥଙ୍କ ଘରେ ମୁଁ ଅନ୍ତପୁରେ ରହି
ଏଥିରେ ଦୁଇ ବରଷ ଗଲା ଗତ ହୋଇ ।
ଦଶରଥ ରାଜା ମନରେ ବିଚାରିଲେ
ଶ୍ରୀରାମଙ୍କୁ ରାଜ୍ୟେ ରାଜା କରିବି ବୋଇଲେ ।
ରାତ୍ର ପାହିଲେ ରାଜା ହୋଇଥାନ୍ତେ ନାହା
କୈକେୟୀ ଜାନକୀ ଜାଣିଲେକ ତାହା ।
ସେ ରାଣୀ ରାଜାଙ୍କର ଜ୍ୟେଷ୍ଠା ଅଟେ ଜାଣ
ରାଜାଙ୍କୁ ଡକାଇଲେ ଭେଦି ଦାସୀଗଣ ।
ରାତ୍ରରେ ରାଜାଙ୍କୁ ସେ ସତ୍ୟ କରାଇଲେ
ମୋର ପୁତ୍ର ନୃପତି ହୋଇବ ବୋଇଲେ ।
ଚଉଦ ବରଷ ମୋ ଭ୍ରତ ରାଜା ହେବ
ଶ୍ରୀରାମଚନ୍ଦ୍ର ସେ ବନକୁ ଏବେ ଯିବ ।
ଚଉଦ ବରଷ ଯେ ପୂରିଲେ ଆସିବ
ଅଯୋଧ୍ୟା କଟକରେ ନିଶ୍ଚିନ୍ତେ ବିଳସିବ ।
ଶୁଣିଣ ଦଶରଥ ସନମତ କଲେ
ସତ୍ୟ ଶୁଣି ଦାଶରଥି ବନକୁ ଅଇଲେ ।
ସଙ୍ଗତରେ ସାନୁଜ ଲକ୍ଷ୍ମଣ ଅଇଲେ
ମୋତେ ଘେନିଣ ରାମ ବନବାସ କଲେ ।
ଆସିଲାବେଳେ ରାମଙ୍କୁ ଚଉଦ ବରଷ
ଆଜକୁ ବୟସ ହେଲା ଶତାଇଶ ।
ଦଶବରଷ ବନ କାନନ ବୁଲିଲୁ
ବରଷେ ଅଗସ୍ତିଙ୍କ ମଠରେ ରହିଲୁ ।
ଦୁଇବରଷ ଦୁଇମାସ ଏଥିରେ ଗଲା ଦିନ
ଚଉଦ ବର୍ଷ ପୂର୍ଣ୍ଣ ହେବ ଦଶମାସେ ଜାଣ ।
ଆମ୍ଭେ ଆସିବାରୁ ଏଣେ ଶ୍ୱଶୁର ତେଣେ ମଲେ
ବାରଦିନ ସଂପୂର୍ଣ୍ଣରେ ରାଜା ସ୍ୱର୍ଗ ଗଲେ ।

ଭରତ, ଶତୃଘନ ଅଜା ଘରେ ଥିଲେ
ବାରତା ପାଇବାରୁ ଦେଶକୁ ଅଇଲେ ।
ପିତା ନାଶ ଭାଇ ବନବାସ ଯିବା ଶୁଣି
ବାହୁଡ଼ାଇ ନେବାକୁ ଅଇଲେ ସେ ପୁଣି ।
ଚିତ୍ରକୂଟ ପର୍ବତରେ ଭେଟିଲେ ସେ ଆସି
ଅନେକ ନିଉନରେ କହିଲେ ବିଶେଷି ।
କେବେହେଁ ଶ୍ରୀରାମ ଯେ ବାହୁଡ଼ି ନଗଲେ
ଭରତର ହସ୍ତରେ ପାଦୁକା ଦୁଇଦେଲେ ।
ପାଦୁକାକୁ ରଜାକରି ଭରତ ହେଲେ ତପି
ପାତ୍ର, ମନ୍ତ୍ରୀ, ବଶିଷ୍ଟ ଯେ ପରଜା ପାଳନ୍ତି ।
ଏମନ୍ତ ପ୍ରକାରେ ଯେ ଆମ୍ଭର ଆସିବାର
ପିତାସତ୍ୟ ପାଳି ଆମ୍ଭେ ବନେ କଲୁଁ ଘର ।
ଜାନକୀଙ୍କ ବଚନ ଶୁଣି ଲଙ୍କପତି
ପଚାରିଲା ଶୁଣ ଏବେ ଜନକ ଦୁହିତୀ ।
ତୋହର ସ୍ୱାମୀ ଏବେ କେଣିକି ଯାଇଛନ୍ତି
ରାବଣଠାରୁ ଶୁଣି ସୀତୟା କହନ୍ତି ।
ଅଭୁତ କନକ ମୃଗେକ ଅଇଲା
ସେ ମୃଗକୁ ଦେଖଇ ମୋର ଶରଧା ବଳିଲା ।
ତେଣୁକରି ଚାପଧାରୀ ଗଲେ ମୃଗ ମାରି
ବିପରୀତ ବାଣୀ ଆସି ଅଦଭୁତ ସ୍ଫୁରି ।
ସେ ବାଣୀ ଶୁଣି ଏଥୁଁ ଲକ୍ଷ୍ମଣ ଗଲେ ଖରେ
ମୁହିଁ ଦେଖ ମଢ଼ିଆରେ ଅଛଇଁ ଏକାରେ ।
ଅଶଉଚ ସକାଶେ ମୁଁ ନଗଲି ସଙ୍ଗରେ
ବନଗିରିକୁ କହିଲେ ଦୋଷ ହେବ ମୋରେ ।
ଯେତେବେଳେ ଦେହ ମୋର ଶଉଚହୋଇବ
ସେତେବେଳେ ବନରେ ବୁଲିବେ ଶ୍ରଦ୍ଧାଭାବ ।
ଶ୍ରୀରାମ ନ ଥିବାବେଳେ ତୁମ୍ଭେ ଉପଗତ
କ୍ଷଣେକ ରହ ତୁମ୍ଭେ ଆସନ୍ତୁ ରଘୁନାଥ ।
ଶ୍ରୀରାମ ଅଇଲେ କରିବେ ପାଦ ପୂଜା
ଦଣ୍ଡେକ ରହ ମୁନି ବାହୁଡ଼ ତୁମ୍ଭେ ନ ଯା ।
ଲକ୍ଷ୍ମଣ ସହିତେ ଆସିବେ ବେନିଭାଇ
ଆଦର କରିବେ ତୋତେ ପରମ ସୁଖଦେଇ ।
ଯାହା ଯାହା କଥା କହିଲେ ଦେବୀ ସତୀ
ସେ କଥା ମନ ସବୁ ଶୁଣିଲା ଲଙ୍କପତି ।
କେମନ୍ତେ ନେବି ଯାକୁ ବିଚାରଇ ମନ
ନ ପୁଣ ଏତେବେଳେ ଆସଇ ଶ୍ରୀରାମ ।

ଛନ ଛନ ମନ ଯେ ସୀତୟା ତାକୁ ଦେଖି
ତାହାକୁ ପଚାରଇ ଶରତ ଚନ୍ଦ୍ରମୁଖୀ ।
ଭୋ ମୁନି ତୁମ୍ଭେ ମୋତେ ପଚାର କୁଳଗୋତ୍ର
ସୂର୍ଯ୍ୟବଂଶର ବଧୂ ମୁଁ କହିଲି ଏବେ ସତ ।
କେବଣ କାରଣେ ତୁମ୍ଭେ ଆସିଅଛ ଯତି
ସେ କଥା ଫେଡ଼ିଣ କହ ହେ ମହାମତୀ ।
କେଉଁ ଦେଶରେ ଘର କିସ ତୁମ୍ଭ ଜାତି
କେବଣ କାରଣେ ଆସିଅଛ ଏଥି ।
ସୀତାଙ୍କ ବଚନ ଶୁଣି ମାୟା ଋଷି ଭାଷି
ମୋହ ବଚନ ଶୁଣ ଗୋ ଶୁଭ୍ରକେଶୀ ।
ବିଶର୍ବା ଋଷିବର ଯେ ଅଟନ୍ତି ମୋ ପିତା
ନଉକେଶୀ ଦଇତୁଣୀ ଅଟଇ ମୋ ମାତା ।
ବ୍ରହ୍ମକୁଳେ ଜାତ ମୁଁ ମୋ ନାମ ରାବଣ
ତିନିପୁରେ ବିଖ୍ୟାତ ଅଟେ ମୋର ନାମ ।
କୁବେର ମୋହର ଅଟନ୍ତି ଜ୍ୟେଷ୍ଠ ଭାଇ
କୁମ୍ଭକର୍ଣ୍ଣ ବିଭୀଷଣ ମୋର ତଳି ଭାଇ ।
ଛପନ ଗଣ୍ଡା ଯୁଗକୁ ବିଧାତା ଦେଲା ବର
ଚଉଦ ଗଣ୍ଡା ଯୁଗ ଆଜକୁ ଭୋଗ ମୋର ।
ଆଜକୁ ଆୟୁଷ ମୋର ଶୁଣ ମହାସତୀ
ଷାଠିଏ କୋଟି ଅଠତିରିଶ ଅଇବ୍ରତୀ ।
ଏତେକ ଆୟୁଷ ମୋର ଅଛଇଁ ସେ ପୁଣି
ଭୁଜବଳେ ସାଧିଲି ମୁଁ ତ୍ରିପୁର ମେଦିନୀ ।
ମୋର ସଙ୍ଗେ ସରି ସମ କେହି ନାହିଁ ଆଉ
ସୁନ୍ଦରୀରେ ମୁହିଁ ତ ଅଟେ ବିଂଶବାହୁ ।
ମୋହର ସଙ୍ଗତରୁ ଯେତେ ଜଣ ଗଲେ
ଶୁଣ ତୁ ସୁନ୍ଦରୀ କହେ ତୋ ଆଗରେ ।
ବୟାଅଣି ଅବତାର ହେଲେ ଦେବହରି
ମୁନିଅଂଶେ ଜାତ ହୋଇ ସଂସାରକୁ ପାଳି ।
ସତ୍ୟ, ତ୍ରେତୟା ଯେ ଦ୍ୱାପର, କଳି ଚାରି
ଋରି ଯୁଗେ ଦେବ ହରି ଅଛନ୍ତି ରୂପ ଧରି ।
ନାରାୟଣଙ୍କୁ ସାହାଯ୍ୟ ଲୋଡ଼ି ଦେବଗଣ
ବାସୁଦେବ ହୋଇଲେ ଅବତାର ପୁଣ ।
ସତ୍ୟ ଯୁଗରେ ଶଙ୍ଖାସୁରକୁ କଲେ ହତ
ସମୁଦ୍ର ମନ୍ଥନରେ ହେଲେ କୂର୍ମ ରୂପ ।
ଶୁକର ରୂପେ ପୁଣି ଶିପୁ ଦୈତ୍ୟ ମାରି
ନୃସିଂହ ଅବତାରେ ହିରଣ୍ୟେ ବିଦାରି ।

ହିରଣ୍ୟ କୁମରକୁ ସ୍ୱର୍ଗେ ଇନ୍ଦ୍ର କଲେ
ପ୍ରହଲ୍ଲାଦ କୁମର ବୈଲୋଚନ ବୀରେ ।
ଭାରିଯାରୂପେ ତାକୁ ମାରିଲେ ବାସୁଦେବ
ବାମନ ରୂପେ ବଳିକି ପାତାଳେ ଦେଲଠାବ ।
ପର୍ଶୁରାମ ଅବତାରେ ସହସ୍ରାର୍ଜ୍ଜୁନ ମାରି
ଦୁଷ୍ଟଜନଙ୍କୁ ମାରି ସନ୍ଥଜନଙ୍କୁ ପାଳି ।
ଏତେ ଅବତାର ମୁଁ ଦେଖିଅଛି ନେତ୍ରେ
ସେହି ନାରାୟଣ ଏବେ ଜନମିଲେ ମର୍ତ୍ତ୍ୟେ ।
ତିନିକୋଟି ପଚାଶ ସହସ୍ର ମୋର ବାଣୀ
ବାଛିକରି ଆଣିଛି ତ୍ରିପୁରରୁ ପୁଣି ।
ଏ ସ୍ଥାନେ ତୁମ୍ଭେ ଥିବାର ପାଇଲି ବାରତା
ତୋତେ ଦେଖିବାକୁ ଆସିଅଛି ସୀତା ।
ଜଗତେ ବୁଲଇ ମୁଁ ଯେ ଖୋଜଇ ସୁନ୍ଦରୀ
ତୋର ରୂପ ଦେଖିବାକୁ ଅଇଲି ଶୁଣକରି ।
ତୁ ମୋହର ଘରଣୀ ହେବୁ ଗୋ ବଇଦେହୀ
ମୋତେ ଘେନି ଭୋଗକର ତୁ ପ୍ରିୟସହି ।
ତୋହର କୁଚ ଯୁଗଳେ ମୋରକର ଲାଗୁ
ତୋହର ପରସନେ ବିରହ ମୋର ଭାଗୁ ।
ଶ୍ରୀରାମ କି ପତିପଣେ ଯୋଗାଏ କି ତୋତେ
ଅଳପ ଆୟୁଷ ତାର ଅଟଇ ଯୁକତେ ।
ମୁହିଁ ଯେ ତ୍ରୈଲୋକ୍ୟର ନୃପତି ଅଟଇ
ତୋହର ରୂପକୁ ଅନୁ ରୂପରେ ଖଟଇ ।
ଶୁଣିକରି ସୀତାଙ୍କର କମ୍ପିଲା ଶରୀର
କି ଜାଣି ବଜ୍ର ପଡ଼ିଲା ଆସିଣ ଅଙ୍ଗର ।
କପାଳ କିମ୍ପାଇ ଦେବୀ କରଇ ବିଚାର
ଅନୀତି କଥା କିମ୍ପା କହୁଛୁ ଦଶଶିର ।
ଶ୍ରୀରାମଙ୍କୁ ମୁଁ ଯେ ବୁଝେ ସିଂହପ୍ରାୟ
କେତେ ଭର୍ତ୍ସନା କଥା କହୁ ଲଙ୍କରାୟ ।
ସିଂହର ଘରଣୀକି ଶୃଗାଳ ନେବ ହରି
ଏକଥା କେହ୍ନେ ବିଚାର କରୁଛ ଦଶଗିରି ।
ତୁ ଯେ ମହାକ୍ଷତ୍ରୀ ଗରିଷ୍ଟ ଯେ ଅଟୁ
ସମସ୍ତଙ୍କୁ କଷ୍ଟୁ ତୁ ଶ୍ରୀରାମେ ନ ଅଷ୍ଟୁ ।
ତୋହର ପ୍ରତିଜ୍ଞା ଯେ ଅଟଇ ଅପାର
ଶଚୀକି ହରିପାରୁ କି ଦେଖିଲେ ବଜ୍ରଧର ।
ପ୍ରାଣ ଘେନି ତୋର ପଳାଅ ବେଗକରି
ପୂର୍ବର ଶାପ ତୋତେ ଅଛିରେ ଦଶଗିରି ।

ଦେବଦାନବ ଯେ ଯକ୍ଷ ବିଦ୍ୟାଧର
ଆବର ଅଟନ୍ତି ଯେ ରାକ୍ଷସ କିନ୍ନର ।
ସମସ୍ତଙ୍କର ସଙ୍ଗରେ ସମର କଲେ ଜିଣି
ତେଣୁ ମାନବ ରୂପେ ଜାତ ରଘୁମଣି ।
ଶ୍ରୀରାମ ଯେବେ ତୋତେ ଦେଖନ୍ତି ଲଙ୍କସାଇଁ
ଏତେବେଳଯାଏ କି ବର୍ତ୍ତିଥାନ୍ତୁ ତୁହି ।
ତୁ ଦୈତ୍ୟ ଚଣ୍ଡାଳରେ କିମ୍ପାଇଁ ଅଇଲୁ
ପୁରୁଷ ନ ଥିବାଘରେ ପ୍ରବେଶ ହୋଇଲୁ ।
ଅସ୍ତୁକାର ବାଣୀ ପୁଣି ବୋଇଲୁ ତୁ ଯାହା
ବନରେ ତପସ୍ୱୀ ବେଶଧରି ଲୋଡ଼ ଏହା ।
ଶ୍ରୀରାମ ମତସିଂହ ତୁହି ଅଟୁ ଶ୍ୱାନ
ନାରାଚର ମୁନେ ତୁରେ ହରାଇବୁ ପ୍ରାଣ ।
ଖର, ଦୂଷଣ, ତ୍ରିଶିରା ଏଥକୁ ଅଇଲେ
ଚଉଦ ସହସ୍ର ବଳ ଶ୍ରୀରାମ ହସ୍ତେ ମଲେ ।
ଲକ୍ଷ୍ମଣ ବୋଲିଣ ଯେ ଶ୍ରୀରାମ ସାନ ଭ୍ରାତ
ସୂର୍ପଣଖାର ନାକ କାନ କାଟିଦେଲା ସେ ତ ।
ଏଡ଼େ ଚେତାପୁରୁଷ ତୁ ନ ଜାଣୁ ନିୟତ
ଭରସା କରିଅଛୁ କେବଣ ହିଁ ମତ ।
ଯାଅ ତୁ ଚଣ୍ଡାଳରେ ତୋ ମୁଖ ନ ଚାହିଁ
ଅନେକ ଭର୍ତ୍ସନା ତାକୁ ବୋଇଲେ ବୈଦେହୀ ।
ରାବଣ ଆଗରୁ ସୀତା ବେଗେ ଲେଉଟିଲେ
ଦୋହରା ଅଗ୍ନି ପାଶେ ପ୍ରବେଶ ହୋଇଲେ ।
ବୋଇଲେ ବୈଶ୍ୱାନର ସମ୍ଭାଳରେ ତୁହି
ଅସମ୍ଭାଳ ବିପତ୍ତି ପଡ଼ିଲା ମୋର ଦେହୀ ।
ବୈଶ୍ୱାନର ବୋଇଲେ ଶୁଣ ଗୋ କମଳିନୀ
ରାବଣକୁ ମାରିବାକୁ ଜନମ ତୁ ପୁଣି ।
ସ୍ୱାମୀଙ୍କୁ ଘେନିଣ ସଙ୍ଗେ ହେଲୁ ଅବତାର
ଦେବଙ୍କ କଷ୍ଟ ଦେଖି ଅଇଲୁ ବନଘୋର ।
ତୁ ଯେବେ ଲଙ୍କାକୁ ନ ଯିବୁ ବୈଦେହୀ
ଚାରିରାବଣ କିପରି ମରିବେ କହ ତୁହି ।
ନଉସାଗର ଦୈତ୍ୟ ଚାରିଲଙ୍କାରେ ରହି
ତୁ ନଗଲେ କେମନ୍ତେ ଅସୁର ବଧହୋଇ ।
ଶ୍ରୀରାମ ଲକ୍ଷ୍ମଣ ଯେ ଭରତ, ଶତୃଘନ
ଏହାଙ୍କର ହସ୍ତରେ ମରିବେ ଦୈତ୍ୟଗଣ ।
ତେବେ ଯେ ପୃଥ୍ୱୀଭାର ଉଶ୍ୱାସ ହୋଇବ
ଦେବତାଏ ସ୍ୱର୍ଗରେ ରହିବେ ସଦଭାବ ।

ଯାଅ ଯା ଲଙ୍କାଗଡ଼ ନକର ଶୋଚନା
ଅସୁରଙ୍କୁ ମାରିଣ ଅଯୋଧ୍ୟା ଆସକିନା ।
ଦେବତାର କୂଟ ଯେ ହୋଇଛି ତୋହଠାରେ
ବେନିଭାଇ ଗଲେ ଯେ ମୃଗୟା ବିନୋଦରେ ।
ଏହି ସମୟରେ ତହିଁ ଲଙ୍କାର ରାବଣ
ତୋରସଙ୍ଗେ ଘଞ୍ଚାଳ କରୁଛି ଅକାରଣ ।
ଲକ୍ଷ୍ମଣର କିବା କଥାକୁ ନ ବୁଝିଲୁ
ନିର୍ଦ୍ଦୋଷୀ ଲୋକକୁ ବହୁତ ଗାଳିଦେଲୁ ।
ଏବେ ତୋତେ ରଖିବାକୁ ନାହିଁ ବୁଦ୍ଧି ପୁଣ
ଲକ୍ଷ୍ମଣର ଶାପ୍ୟ ତୋତେ ପଡ଼ିଲାଟି ଜାଣ ।
ମୋହର ହୃଦୟରେ ଯେବେ ସମ୍ଭାଇବୁ ତୁହି
ତେବେତ ଅସୁରେ ନିଶ୍ଚିନ୍ତେ ଥିବେ ରହି ।
ଶୁଣିକରି ଜାନକୀ ବିରସ ହୋଇଲେ
ନିଶ୍ଚୟ ମୁଁ ନାଶଯିବି ବୋଲିଣ ବୋଇଲେ ।
ଦଶାନନ ବଚନକୁ ନକର ମନେ ଚିନ୍ତା
ଚଉଦମାସ କଷ୍ଟ ବିହିଲେ ବିଧାତା ।
ପନ୍ଦର ମାସରେ ତୁ ଅଯୋଧ୍ୟା ରାଣୀ ହେବୁ
ନର, ବାନର, ଦେବଙ୍କୁ ପାଦେ ଖଟାଇବୁ ।
ଜାନକୀ ବୋଇଲେ ମୋତେ ଏମନ୍ତ ଅଛିଯୋଗ
ତେଣୁସିନା ଆସିଣ ଘଟିଲା ଦୁର୍ଯ୍ୟୋଗ ।
ରାବଣ ଯେବେ ମୋତେ ଧରି ଘେନିଯିବ
ଆଲିଙ୍ଗନ କରିଣ କୋଳେ ବସାଇବ ।
ତେବେ ସତୀପଣରୁ କପଟୀ ହେବି ଜାଣ
କେମନ୍ତେ ମୁଁ ବଞ୍ଚିବି ଶରୀର ଧରିଣ ।
ବୈଶ୍ୱାନର ବୋଇଲେ ମୋର ବୋଲକର
ଲଙ୍କାଗଡ଼ଯାଏ ମୋତେ ତୋ ଅଙ୍ଗରେ ଧର ।
କେବଳ ରଥପରେ ବସାଇବ ନେଇ
ହସ୍ତଧରି ନେବ ତୋତେ ମନ୍ଦୋଦରୀ ସାଇଁ ।
କୋଳରେ ବସାଇବାକୁ ନୋହିବ ଆୟତ
ଦାବାନଳ ତାପରେ ଶରୀର ହେବ ହତ ।
ହସ୍ତଧରି ନେବାବେଳେ ଦେହ ତାତିଯିବ
ଉପରେ ରଖି ତୋତେ ତଳେ ସେ ବସିବ ।
ଯେତେବେଳେ ତୋରହସ୍ତ ଧରିବ ରାବଣ
ତାହାକୁ ଶାପ୍ୟଦେବୁ ହୋଇ କୋପମନ ।
ବୋଲିବୁ ଭାଇ, ବନ୍ଧୁ, କୁଟୁମ୍ବ, ପୁତ୍ର, ନାତି
ସମସ୍ତଙ୍କୁ ଘେନି ସଙ୍ଗେ ମରିବୁ ଲଙ୍କପତି ।
ଏମନ୍ତ ବଚନ ବୋଲି ଦେବୁ ତାକୁ ଶାପ୍ୟ
ଆଜିଠାରୁ ତୋର ଦୂତପଣେ ହେଲି ଗୋପ୍ୟ ।
ଏବେ ପବନକୁ ତୁ ସୁମରଣା କର
ସେ ତୋତେ ବଳହୋଇ ରହିବେ ସଙ୍ଗର ।
ଏତେବୋଲି ବୈଶ୍ୱାନର ସୀତା ଅଙ୍ଗେ ମିଳି
ଜଳିଲା ଜାନକୀ ଅଙ୍ଗ ଅଗ୍ନି ତେଜପରି ।
ନିର୍ଦ୍ଧୂମ ଅଗ୍ନିପ୍ରାୟ ଦିଶେ ସୀତା ଅଙ୍ଗ
ଦେଖିକରି ଜାନକୀ ହୋଇଲେ ଆନନ୍ଦ ।
ଅଗ୍ନିଙ୍କର ବୋଲେ ଦେବୀ ପବନକୁ ସରି
ମରୁତ ଦେବତା ଆସି ବେଗେ ବିଜେକରି ।
ମରୁତ ଦେଖିଣ ନିବର୍ତ୍ତ କଲେ ମନ
କରଯୋଡ଼ି ପବନକୁ ବୋଇଲେ ବଚନ ।
ମୃଗମାରି ଗଲେ ମୋର ସ୍ୱାମୀ ଦିଅରଟି
ଏକାହୋଇଣ ମୁହିଁ ରହିଅଛି ଏଠି ।
ଏକାଦେଖି ରାବଣ ମୋତେ ଯେ ଘୋଟିଲା
ମଢ଼ିଆରେ ମୋତେ ଦେଖି କଟାଳ ସେ କଲା ।
ସେଥିର ସକାଶେ ମୁଁ ସୁମରଣା କଲି
ସମ୍ଭାଳ ମୋତେ ଏବେ ମୁଁ ନିଃସହାୟ ହେଲି ।
ପବନ ବୋଇଲେ ତୁ ଲଙ୍କାଗଡ଼ ଯିବୁ
ନଗଲେ ଯେ ଅସୁରେ ନମରନ୍ତି ସବୁ ।
ଜାନକୀ ବୋଇଲେ ମୋ ଅଙ୍ଗରେ ତୁ ଥିବୁ
ଯେମନ୍ତେ ସମ୍ଭାଳି ହେବୁ ସେ ବୁଦ୍ଧି କରିବୁ ।
କେବଳ ଧରିନେଇ ରଥରେ ବସାଇବ
ଛୁଇଁବାକୁ ଆନବଳେ ଭରସା ନୋହିବ ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ପବନଦେବତା ଯେ ଅଙ୍ଗରେ ରହିଲେ ।
ଦୁଇଦେବ ଯାଇ ଜାନକୀ ଅଙ୍ଗେ ରହି
ତଳରେ ପବନ ରହି ଶୀତଳ କରଇ ।
ଉପରେ ଅନଳରହି ତେଜେ ପ୍ରଜ୍ୱଳିତ
ଦାବାନଳ ଅଗ୍ନିପ୍ରାୟେ ଦିଶିଲେ ସୀତା ତ ।
ଦୁଇଜଣଙ୍କ ସାହାରେ ବଳବନ୍ତୀ ସୀତେ
ବିଚାରିଲେ ଲକ୍ଷ୍ମଣ ସକାଶେ ଦୁଃଖ ଏତେ ।
ଯେତେ ତାକୁ ଭର୍ତ୍ସନାକରି ନ ଥାନ୍ତି ମୁହିଁ
ସତେ ରାବଣ ଆସିଲେ କି କରନ୍ତେ ସେହି ।
ମୋହର ଦୋଷ ଏବେ ମୋତେ ଯେ ବାଧିଲା
ଅକାଳ ଦଣ୍ଡ ଆସି ମୋତେ ନାଶ କଲା ।

ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦୁଆରମାଡ଼ି ବସିଥିଲା ଲଙ୍କପତି ।
ଜାନକୀ ଯିବାର ଦେଖି ଉଠିଲା ଦଶଶିର
ମନରେ ବିଚାରଇ ବିଶର୍ବା କୁମର ।
ବେଳୁବେଳ ଉଛୁର ହେଉଅଛି ମୋତେ
ପୁଣି ରାମ ଆସିଣ ମିଳନ୍ତି ଯେ ଏଥେ ।
କୌଣସି କଥାରେ ମୁଁ ନୋହିବି କାରଣ
ମନ୍ଦୋଦରୀ ଆଗରେ କି କହିବି ପୁଣ ।
ଆଗ ପଛ ମରିବାର ଅଟଇ ଯେ ସତ
ସୀତୟାକୁ ଘେନିଗଲେ ରହିବ କଥାତ ।
ଶ୍ରୀରାମ ସଙ୍ଗରେ ଯେ ଯୁଦ୍ଧକଲେ ପୁଣ
ରାମାୟଣ ଯୁଦ୍ଧକଥା ରହିବ ପୁରାଣ ।
ଏମନ୍ତ ବିଚାରିଲା ରାବଣ ମନର
ଜାନକୀଙ୍କୁ ଧରିବାକୁ ବଢ଼ାଇଲା କର ।
ସୀତୟା ବୋଇଲେ ତୁ ନ ଛୁଅଁ ଦଶଗିରି
ଛୁଇଁଲେ ନାଶଯିବ ତୋର ସକଳ ଶିରୀ ।
ରଜସ୍ୱଳା ସ୍ତିରୀ ମୁଁ ଯେ ନୁହଇ ଶଉଚ
ପୁରୁଷ ଛୁଇଁଲେ ନ ରହଇ ତ କୁଳ ଗୋତ୍ର ।
ଭାଇ, ବନ୍ଧୁ, କୁଟୁମ୍ବ, ପୁତ୍ର, ନାତି ନିଧି
ଏମାନଙ୍କୁ ଘେନି ନାଶ ହୁଏ ସେ କୁବୁଦ୍ଧି ।
ତୁହି ମୋତେ ଯେବେରେ ଛୁଇଁବୁଟି ଆଜ
ସକଳ ନାଶଯିବ ନୋହିବ କିଛି କାର୍ଯ୍ୟ ।
ସ୍ୱଗୋତ୍ର ବଂଶ ତୋର ଏଠାରୁ ସରିବ
ବିଶର୍ବା ଋଷିଙ୍କର କୁଳଟି ବୁଡ଼ିବ ।
ମଲାବେଳେ ଗୋଟିଏ ନ ରହିବ କେହି
ତୋର ଘରଣୀ କି ଯେ ଅନ୍ୟକୁ ଦେବ ବିହି ।
ଜାଣିନାହୁଁ କିରେ ଅସୁର ପାମର
ତୋତେ ମାରିବାକୁ ଯେ ଜନମ ରଘୁବୀର ।
ମୋତେ ଯେବେ ନେବୁରେ ମୁଁ ହୋଇବିଶଙ୍କୁନୀ
ସବୁ ଦୈତ୍ୟ ମଲେ ମୁଁ ଲଙ୍କାରୁ ଆସେ ପୁଣି ।
ତୋହର କର୍ମକୁ ଏବେ ନାହାନ୍ତି ଲକ୍ଷ୍ମଣ
ଆଜକି ଏଠାରୁ ବଳି ଯାଆନ୍ତୁ ରାବଣ ।
ଶୁଣିକରି ରାବଣ ହେଲା କ୍ରୋଧ ମୂର୍ତ୍ତି
ଲକ୍ଷ୍ମଣଙ୍କ ଗାରକୁ ଡେଇଁଲା ତଡ଼ତି ।
ଲକ୍ଷ୍ମଣଙ୍କ ଗାରକୁ ଡେଇଁଲା ବେଳରେ
ଅଚେତା ହୋଇ ରାବଣ ପଡ଼ିଲା ଭୂମିରେ ।
ପୁଣି ଚେତା ପାଇଣ ଉଠିଲା ଦଶଗିରି
ବୋଇଲା ରାମ ଏବେ ରଖୁ ଆସିକରି ।
ଡାହାଣ ହସ୍ତ ସୀତାର ଧଇଲା ବାମକର
ମର୍ମକଥା ଶୁଣିବାକୁ କୋପ ଗୁରୁତର ।
ସୀତାଙ୍କ ଭୁଜଧରନ୍ତେ ତାତିଲା ତାର ହସ୍ତ
ତାତିଯିବା ଜାଣିଣ ରାବଣ ବିଚଳିତ ।
ଶୁକ ସାରଣକୁ ଡାକ ଦେଲା ଉଚ୍ଚକରି
ବୋଇଲା ରଥ ଘେନି ଆସ ବେଗକରି ।
ଶୁଣିକରି ବେନି ମନ୍ତ୍ରୀ ବେଗେ ରଥ ଆଣି
ଦଶଗ୍ରୀବ ଆଗରେ ଉଭାକଲେ ପୁଣି ।
ଦେଖିକରି ରାବଣ ହରଷ ହୋଇଲା
ଶୁକ, ସାରଣ ବେନିଙ୍କି ଚାହିଁଣ ବୋଇଲା ।
ଏ ଜନକ ଦୁହିତା ଅଟେ ଅତି ତେଜ
ଏହାର ହସ୍ତ ଧରନ୍ତେ ତାତେ ମୋର ଭୁଜ ।
ଏ ଜାନକୀ କହୁଛି ମୁଁ ହୋଇଛି ରଜସ୍ୱଳା
ସେଥିର ସକାଶେ ଏ ତେଜ ଅନର୍ଗଳା ।
ଏମନ୍ତ କହନ୍ତେ ହସ୍ତ ସମ୍ଭାଳି ନୋହିଲା
ଜାନକୀଙ୍କ ଭୁଜକୁ ରାବଣ ଛାଡ଼ିଦେଲା ।
ଶୁକ ସାରଣ ବୋଇଲେ ଜାନକୀ ତୋର କାଳ
ତୋହର ବଂଶ ଏବେ କରିବ ନିର୍ମୂଳ ।
ରଜସ୍ୱଳା ସ୍ତିରୀକି ତୁ କିମ୍ପାଇଁ ଛୁଇଁଲୁ
ଜାଣୁ ଜାଣୁ ତୁହି କିବା ଗରଳ ଖାଇଲୁ ।
ଶୁଣିକରି ରାବଣ ବୋଇଲା ବଚନ
ରଜସ୍ୱଳା ବେଳେ ଦେହ ତାପ ବଢ଼େ ଜାଣ ।
ଶୁଦ୍ଧସ୍ନାନ କଲେ ଏ ଶୀତଳ ହୋଇବ
ଅଶଉଚ ଦୋଷଯାକ ଯାର ଅଙ୍ଗୁଯିବ ।
ଶୁକ, ସାରଣ, ବୋଇଲେ ଏହାକୁ ଯେବେନେବୁ
ଶାପଦେବ ସତୀଟି ସେ କଥା ଜାଣ ବାବୁ ।
ରାବଣ ବୋଇଲା ଏ ଆଗହୁଁ ଶାପ ଦେଲା
ସୈନ୍ୟବଳ, ପୁତ୍ର, ନାତି ମରିବେ ବୋଇଲା ।
ଭାଇ, ବନ୍ଧୁ, କୁଟୁମ୍ବ ସମସ୍ତେ ଯିବେ ନାଶ
ମଲାବେଳେ ତୋର କୁଳେ ନ ରହିବ ଅଂଶ ।
ପିଣ୍ଡପାଣି ଦେବାକୁ ଗୋଟିଏ କେବଳ
ରହିବ ତୋର ବଂଶରୁ ଗୋଟିଏ ଯେ ବାଳ ।
ଏ ବଚନ କହିଣ ସତୀ ଶାପ ଦେଲା
ଏହାର ଶାପ ମୋତେ ପ୍ରାପତ ହେବ ପରା ।

କିରୂପେ ଏହାକୁ ମୁଁ ନେବି ଲଙ୍କାପୁର
ତେବେ ସିନା ଯଶଟି ରହିବ ମୋହର ।
ଶୁକ ସାରଣ ବୋଇଲେ ଶୁଣ ଗୋ ରାମନାରୀ
ମୋହର କହିବା କଥା ଶୁଣ ଶ୍ରୁତି ଡେରି ।
ଏହି ରଥ ଉପରେ ବସ ବେଗକରି
ତୁମ୍ଭଙ୍କୁ ନ ଛୁଇଁବ ଏହୁ ଦଶଶିରୀ ।
ମୋହର କହିବା କଥା ଘେନ ଗୋ ବିଚାରି
ଆଜହୁଁ ସରିଲା ମାଗେ ରାବଣର ଶିରୀ ।
ଶୁଣିକରି ଜାନକୀ ରଥପରେ ବସି
ଦେଖିକରି ରାବଣ ମନରେ ହେଲା ଖୁସି ।
ସୀତୟା ବସିଲେ ଉପର ପୀଢ଼ରେ
ରାବଣ ବସିଲା ଯେ ତହିଁର ତଳରେ ।
ତଳ ପୀଢ଼ରେ ରାବଣ ହରଷ ହୋଇ ବସି
ଶୁକ ସାରଣ ବସିଲେ ହୋଇଣ ସାରଥି ।
ଶୁକ ସାରଣ ଯହିଁ ବାହିଲେ ବିମାନ
ବିଚଳିତ ହୋଇ ସତୀ କଲେକ କ୍ରନ୍ଦନ ।
ଆହା ଶ୍ରୀରାମ ବୋଲି ରୋଦନ କରନ୍ତି
ରଥପରେ ରହିଣ ଜନକ ଦୁହିତୀ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଏରୂପେ ରାବଣ ସୀତାଙ୍କୁ ନେଲା ହରି ।
ତପସ୍ୱୀ ରୂପ ଛାଡ଼ି ନିଜରୂପ ଧରି
ମନ ଆନନ୍ଦରେ ରଥ ବାହେ ଦଶଶିରୀ ।
ରାମ ଲକ୍ଷ୍ମଣଙ୍କୁ ଭୟ କରଇ ଲଙ୍କେଶ୍ୱର
ଗଗନ ମାର୍ଗେ ଯହୁଁ ଉଠିଲା ରହୁବର ।
ପକ୍ଷୀଜଟା ବସିଥିଲା ବୃକ୍ଷର ଉପରେ
ରହୁବର ଦେଖିଣ ସେ ଭାବିଲା ମନରେ ।
ଜନକ ସୁତା ଦେଖି ଗରୁଡ଼ ସୁତେ କହି
ତୁହି ଥାଉ ଥାଉ ମୋତେ ରାବଣ ଘେନିଯାଇ ।
ଶୁଣିକରି ଜଟାୟୁଷ ରଥପରେ ବସି
ଭାଙ୍ଗି ପକାଇଲା ସେ ପୁଷ୍ପକ ଯାନଟି ।
ଷୋଳଗୋଟି ଚକ ଯେ ରଥରେ ତାର ଥିଲା
ଭାଙ୍ଗିକରି ଖଣ୍ଡ ଖଣ୍ଡ କରି ପକାଇଲା ।
ରଥର ଅଖକୁ ସେ ଭାଙ୍ଗିଦେଲା ହେଳେ
ଖଣ୍ଡ ଖଣ୍ଡ ହୋଇଣ ପଡ଼ିଲା ସେ ତଳେ ।
ରଥ ଭାଙ୍ଗିଯିବାରୁ ସମସ୍ତ ପଡ଼ି ତଳ
ଜାନକୀଙ୍କୁ ବୋଇଲା ଗରୁଡ଼ର ବାଳ ।

ପଳା ତୁ ବନକୁ ନ ରହ ଏଠାରେ
ଆସିବେ ଏଥର ରାମ ଦେଖ ଗୋ ବନରେ ।
ବନରେ ଦଣ୍ଡେ ଲୁଚିଥାଅ ଗୋ ଶୁଭ୍ରକେଶୀ
ଶୁଣିକରି ବଇଦେହୀ ବନ ମଧ୍ୟରେ ପଶି ।
ରଥ ଭାଜି ଯିବାରୁ ରାବଣ ତଳେ ଥିଲା
ପକ୍ଷୀଜଟା ସଙ୍ଗରେ ସମର ସେ କଲା ।
କ୍ରୋଧରେ ପକ୍ଷୀଜଟା ଧରି ତା ଚରଣ
ଫୋପାଡ଼ି ଦେବାରୁ ପଡ଼ିଲା ବନେଣ ।
ଦୁଇଯୂଣ ଛଡ଼ାରେ ପଡ଼ିଲା ରାବଣ
ଉଠିକରି ଧାଇଁଲା କରି କ୍ରୋଧମନ ।
ଜଟାୟୁଷ ସଙ୍ଗରେ ହେଲା ଯାଇ ଭେଟ
ଧରାଧରି ହୋଇଣ କଲେ ସେ ଅନର୍ଥ ।
ପକ୍ଷରେ ପିଟିଲା ଜଟାୟୁଷ ଜାଣ
ତାହାର ପକ୍ଷମାଡ଼ରେ ଅଚେତା ରାବଣ ।
ଚେତା ପାଇ ରାବଣ ଧରି ଧନୁଶର
କ୍ରୋଧରେ ବହୁଶର କଲା ଯେ ପ୍ରହାର ।
ତାହା ଦେଖି ପକ୍ଷୀଜଟା ବିସ୍ତାରିଲା ତୁଣ୍ଡ
ସବୁ ଶରଯାକ ପକ୍ଷୀ ଗର୍ଭରେ କଲା ଗୁଣ୍ଡ ।
ଦେଖିକରି ରାବଣ ଧନୁଶର ଛାଡ଼ି
କ୍ରୋଧରେ ବିଂଶପାଣି ଦନ୍ତକୁ ରଗଡ଼ି ।
ବିଜେ କର୍ଣ୍ଣକଟାରୀକି ବେଗେ ସେ ଧଇଲା
ଜଟାୟୁଷର ଦୁଇ ଡେଣାକୁ କାଟି ପକାଇଲା ।
ଡେଣା କାଟିବାରୁ ସେ ଗରୁଡ଼ ନନ୍ଦନ
ତଳରେ ପଡ଼ିଣ ରହିଲା ସେ ଜାଣ ।
ଶରୀର ଗୋଟି ତାର ପର୍ବତ ସମାନ
ରୋଦନ କରଇ ପଡ଼ି ଗରୁଡ଼ ନନ୍ଦନ ।
ମୋ ଡେଣା କାଟିଦେଲା କରିବି ମୁଁ କିସ
ରାବଣ ସମକ୍ଷରେ ରହିଣ ଜଟାୟୁଷ ।
ବୋଇଲା ରାବଣରେ ତୋର କର୍ମ ମନ୍ଦ
ଚଉଦ ମାସରେ ମରିବୁ ଦଶକନ୍ଧ ।
ପୁତ୍ର, ନାତି, ବନ୍ଧୁ ଯେ କୁଟୁମ୍ବ ସକଳ
ସମସ୍ତ ମରିବେଟି ନ ରହିବ କୁଳ ।
ମୋହର ଶାପ ପଡୁ ବିଶର୍ବାର ବାଳ
ରାମ ଲକ୍ଷ୍ମଣ ତୋର ହୋଇଲେଟି କାଳ ।
ଏହିପରି ଶାପଦେଲା ଗରୁଡ଼ର ସୁତ
ପରର ଉପକାରୀକି କେମନ୍ତେ କଲୁ ହତ ।

ତୋହର ଭାରିଯାକୁ ରଖିବ ତୋର ଭାଇ
ତୋତେ ନାଶକରୁ ରଘୁକୁଳ ସାଇଁ ।
ଷୋଳ ଯୁଗ ପର୍ଯ୍ୟନ୍ତେ ନର୍କରେ ପାଅ ବାସ
ଜନ୍ତୁପତି ଦଣ୍ଡୁ ତୋତେ ପାଅ ବହୁ କ୍ଳେଶ ।
ଗୃଧ୍ର, କାକ ଶୃଗାଳ ମାଏଁସ ତୋର ଖାଇ
ଯାତନା ପୁରେ ଧ୍ୱଂସି ହୁଅ ଲଙ୍କସାଇଁ ।
ଏପରି କହିଣ ଜଟାୟୁ ଶାପ ଦେଲା
ପୁଣି ସେ ରାବଣକୁ ଚାହିଁଣ ବୋଇଲା ।
ଆଜିଠାରୁ ଜାଣରେ ଅନୁକୂଳ ହେଲା
ରାମାୟଣ ଯୁଦ୍ଧ ଯେ ଅନୁକୂଳ ହେଲା ।
ଶୁଣିଣ ରାବଣ ସେ କଥା ନ ଭାବିଲା
ମରିବ ବୋଲି ନିଷ୍ଟେ ବିଚାର ସେ କଲା ।
ଜାନକୀ କହିବା କଥା ଜଟାୟୁଷ ବାଣୀ
ଦୁଇକଥା ଏକତ୍ୱ ଏବେ ହେଲା ପୁଣି ।
ରାମାୟଣ ଯୁଦ୍ଧ ଯେ ହୋଇବ ଜାଣ
ଏକଥା କହିବ ଯେ ଯୁଗ ଯୁଗ ପୁଣ ।
ନିଉନ ହେଲେ ତ ମରିବି କିଛିକାଳେ
ଅମର ହୋଇ ମୁଁ ତ ନ ରହିବି ବେଳେ ।
ଏମନ୍ତ ବିଚାର ଯେ ଦଶଗ୍ରୀବ କଲା
ପୁଷ୍ପକ ବିମାନକୁ ସୁମରଣା କଲା ।
ତକ୍ଷଣେ ଯାନ ଯେ ଶୂନ୍ୟରୁ ପଡ଼େ ଆସି
ଦେଖିଣ ରାବଣ ବନସ୍ତରେ ପଶି ।
ଖୋଜି ଖୋଜି ତିନିକୋଶ ବଣରେ ବୁଲିଲା
ପର୍ଣ୍ଣକୁଟୀର ଭିତରେ ସୀତାଙ୍କୁ ଠାବକଲା ।
ରୋଦନ କରୁଅଛି ବସି ବଇଦେହୀ
ମନେ ବିଚାରଇ ମନ୍ଦକର୍ମ କଲି ମୁହିଁ ।
ନାନାପ୍ରକାର ମୁଁ ଲକ୍ଷ୍ମଣଙ୍କୁ ଗାଳିଦେଲି
ତାହାର ପ୍ରତିଫଳ ତକ୍ଷଣେ ପାଇଲି ।
ଶ୍ରୀରାମଙ୍କ ସଙ୍ଗ ମୋର ଆଜିଠାରୁ ଗଲା
କେତେକାଳେ ଭେଟହେବେ ଦଶରଥ ବଳା ।
ଏତେବେଳେ ଯେବେ ସେ ଆସିଣ ମିଳନ୍ତେ
ରାବଣର ପ୍ରାଣ ନିଶ୍ଚୟେ ନିଅନ୍ତେ ।
ଏତେ କହି ରୋଦନ କରନ୍ତି ମହାସତୀ
ବସି ବିଧାତାଙ୍କୁ ସୁମରଣା ସେ କରନ୍ତି ।
ଏମନ୍ତ ସମୟରେ ଦଶରଥ ମିଳି
ତେଜ ଦେଖି ତାଙ୍କର ଦୂରରୁ ବିଚାରି ।

ବୋଇଲା ଜାନକୀ ଗୋ ଆଗରେ ମୋର ଚାଲ
ଏତେ ବୋଲି କଟାରୀ ଧରି ଲଙ୍କାମଲ୍ଲ ।
ନୋହିଲେ ତୋ ବେକରେ ମାରିବି କଟାରୀ
ଏମନ୍ତ ଶୁଣି ଜାନକୀ ରୋଦନ ଯେ କରି ।
ରାବଣ ଆଗରେ ସେ ମିଳିଲେ ସତ୍ୱର
ତଳକୁ ମୁଖ ପାତି ଚାଲନ୍ତି ଧୀର ଧୀର ।
ଦଶମୁଖ ଆଗରେ ଆସି ଚାନ୍ଦମୁହାଁ
ପଛରେ ରାବଣ ଯେ ଆଗରେ ସୀତା ଯାଇ ।
ରଥର ଉପରେ ବସିଲେ ଋଷି ଦମ୍ପତୀ
କ୍ରୋଧରେ ଦାବାନଳ ଉପରେ ଜଳୁଛି ।
ପୁଷ୍ପକ ବିମାନ ଯେ ଦେଖିଣ ଭୟକଲା
ଭକ୍ତିଭରେ ବିମାନ ଅନେକ ସ୍ତୁତିକଲା ।
ଜୟ ଜୟ କମଳା ମୋ ସାଗର ଦୁଲଣୀ
ଜୟ ଜୟ କମଳା ଗୋ ଶ୍ରୀହରି ଘରଣୀ ।
ଜୟ ଜୟ କମଳା ଗୋ ବାସୁଦେବ ନାରୀ
ଦୁଷ୍ଟମାରିବାକୁ ଜନମିଲ ମର୍ତ୍ତ୍ୟପୁରୀ ।
ଅନେକ କାଳରେ ମୋତେ ସୁଦୟାକୁ କରି
ମୋ ଉପରେ ବିଜୟକଲ ରାମନାରୀ ।
ତୁହି ମୋର ଉପରେ କରନ୍ତେ ବିଶ୍ରାମ
ଜାଣିଲି ପାପ ମୋର ଦୂରହେବ ପୁଣ ।
ଚଉଦ ମାସ ମୋର ଅଛି ଆଉ କାଳ
ସେଠାରୁ ମୋ ଉପରେ ବସିବେ ଆଦିମୂଳ ।
ଏଗାରସସ୍ର ବରଷ ପାଦ ସେବା ମୋର
ତେବେ ମୁଁ ପାପରୁ ହୋଇବି ନିସ୍ତାର ।
ସେଠାରୁ ଧନପତି ପାଦରେ ବିଳସିବି
ଲୀଳା ସ୍ଥାନେ ଯାଇଣ ନିଶ୍ଚିନ୍ତେ ରହିବି ।
ତୋହର କ୍ରୋଧକୁ କି ମୋହର ସାମରଥ
ରାବଣ ମରିବାଯାଏ ହୁଅ ତୁମ୍ଭେ ଶାନ୍ତ ।
ତୁ ଯେତେ ତେଜସ୍କର ହେବୁ ଠାକୁରାଣୀ
ନିଶ୍ଚୟ ଭସ୍ମ ହେବି ମରିବି ଏକ୍ଷଣି ।
ତୋହର ଦାସ ଅନାଥ ହେବ ଯେ ଏକ୍ଷଣି
ଜନ୍ମ କଲା ମାତାକି ପୁତ୍ରକୁ ମାରେ ଜାଣି ।
ଦେବତା ଦେବୀ ଯାନ ବାହନ ଜାତକଲୁ
ଅମର ଲୋକମାନଙ୍କୁ ବାଣ୍ଟିଣ ତୁ ଦେଲୁ ।
ତେଣୁ ସିନା ଅମରେ ଚଢ଼ିଣ ଯାଆନ୍ତି
ମହା ମହା ଯୁଦ୍ଧମାନ ନିର୍ଭୟେ କରନ୍ତି ।

ଏମନ୍ତ ସ୍ତୁତିକରି ନମସ୍କାର କଲା
ବିନୟ ଶୁଣି ସୀତା ତାପ ଊଣା କଲା ।
ରଥର ଉପରେ ହୋଇଲେ ଶାନ୍ତଶୀଳ
ତେବେ ସେ ବିମାନକୁ ଲାଗିଲା ଶୀତଳ ।
ପୁଷ୍ପକ ବିମାନର ଉପରେ ସୀତା ବସି
ତଳ ପୀଢ଼େ ବସିଲା ବିଶର୍ବାର ଶିଷି ।
ଶୁକ ସାରଣ ବୋଇଲେ ଏତେବେଳେ ପୁଣ
ଜାନକୀକି କେବେ ଦେଖା ନଦିଅ ରାବଣ ।
କ୍ରୋଧରେ ଗରୁଡ଼ର ଜନକ ଦୁଲାଳୀ ।
ଦାବାନଳ ପରାଏ ଶରୀର ତାର ଜଳି ।
ଚାହିଁଲେ ଭସ୍ମ ହୋଇ ଯିବ ଦଶାନନ
ଲଙ୍କାକୁ ଗଲେ କରିବ ତାହାର ବିଚାରଣ ।
ଶୁଣିକରି ରାବଣ କିଛିହିଁ ନକହିଲା
କଥାତ ପ୍ରବଳ ହେଲା ବୋଲି ବିଚାରିଲା ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରଥର ଦ୍ୱିତୀୟ ପୀଢ଼େ ବସି ଦଶଶିରୀ ।
ପ୍ରଥମ ପୀଢ଼ରେ ଶୁକ ସାରଣ ରହିଲେ
ତିନିପୀଢ଼ ଉପରେ ଜାନକୀ ଅଛି ଭଲେ ।
ରାମକୁ ରାବଣ ମନରେ ଭୟକଲା
ମନ୍ତ୍ରୀଙ୍କି ଚାହିଁଣ ସେ ବଚନ ବୋଇଲା ।
ଗଗନ ମାର୍ଗରେ ବାହାର ମୋର ରଥ
ଶୁଣିଣ ଶୁକ ସାରଣ ବାହିଲେ ତ୍ୱରିତ ।
କଳା ମେଘରେ ଯେହ୍ନେ ଦିଶଇ ବିଜୁଳି
ପୁଷ୍ପକ ଯାନ ଯେହ୍ନେ ଦିଶଇ ମହୀଆଳି ।
ଏକାହୋଇ ଉପରେ ବସିଅଛି ସ୍ୱତୀ
କ୍ରୋଧରେ ଜାନକୀ ଯେ ରୋଦନ କରୁଛନ୍ତି ।
ରୋଦନ ଶୁଣି ଭୟ କଲା ଲଙ୍କସାଇଁ
ଗଗନ ମାର୍ଗରେ ରଥ ବେଗେ ଚଳିଯାଇ ।
ଯହୁଁ ସେ ରାବଣେଶ୍ୱର ହରିନେଲା ସୀତା
ସ୍ୱର୍ଗରେ କୃତ୍ୟ କୃତ୍ୟ ହୋଇଲେ ଦେବତା ।
ଅପସରି ବିଦ୍ୟାଧରୀ କିନ୍ନରୀ ଉଷତ
ଗନ୍ଧର୍ବ, ଯକ୍ଷ, ରକ୍ଷ ସର୍ବେ ହରଷିତ ।
କେ ବୋଲନ୍ତି ଛାୟା ଏ କେ ବୋଲନ୍ତି ମାୟା
କେ ବୋଲନ୍ତି ଗଲେଟି ନିଶ୍ଚୟେ ସୀତୟା ।
ତେତ୍ରିଶା କୋଟି ଦେବତା ହୋଇ ଏକମେଳ
ବ୍ରହ୍ମାଙ୍କୁ ଘେନିଣ ସର୍ବେ କରନ୍ତି ବିଚାର ।

ଶ୍ରୀରାମ ମଢ଼ିଆକୁ ବେଗେ ଜଣେ ଯାଉ
ନିଶ୍ଚୟରେ ଦେଖିଣ ଏଥି ଆସି କହୁ ।
ଦେବତାଏ କହନ୍ତେ ବ୍ରହ୍ମା ବିଚାରିଲେ
ନାରଦ ଋଷିଙ୍କି ତହିଁ ଡକାଇ କହିଲେ ।
ଦଣ୍ଡକାରଣ୍ୟକୁ ବେଗହୋଇ ଯିବ
ଶ୍ରୀରାମ ନଆସୁ ତାଙ୍କ ମଢ଼ିଆ ଦେଖିବ ।
ଜାନକୀ ଗଲା କି ସେ ରାବଣ ସଙ୍ଗେଣ
ଦୋହରା ଅଗ୍ନିକି ପଚାର ଯାଇଣ ।
ଦେବଙ୍କର ମାତା ସେ ଜଗତର ଠାକୁରାଣୀ
ସପତ ପୁରୁଷ ଅଟଇ କାରେଣୀ ।
ଅସୁରଙ୍କ ଭୟେ ଆମ୍ଭେ ନପାରୁ ସ୍ୱର୍ଗେ ରହି
ତେଣୁ ସେ ନାରାୟଣ ଜନମ ଆମ୍ଭପାଇଁ ।
ସେହି ସେ କମଳିନୀ ଜନକ ଦୁଲଣୀ
କରିବା ଉପାୟ ଯେ ମରିବ ବିଂଶପାଣି ।
ଦେବବରଙ୍କ ଆଜ୍ଞାରେ ନାରଦ ମହାଋଷି
ପଞ୍ଚବଟୀବନରେ ପ୍ରବେଶ ହେଲେ ଆସି ।
ପତ୍ରକୁଟୀର ଭିତରେ ଯାଇଣ ପଶିଲେ
ଦୋହରା ଅଗ୍ନିକି ସେ ସେଠାରେ ନ ଦେଖିଲେ ।
ବୈଶ୍ୱାନରକୁ ନ ଦେଖି ନାରଦ ମନ ଦୁଃଖୀ
ଭସ୍ମ ହୋଇ ଅଛି ଯେ ନାରଦ ନାହିଁ ସେଥି ।
କେବଳ ସେହିଠାରେ ବାଡ଼ରେ ଲେଖା ଦେଖି
ବଇଦେହୀ ବସି ତହିଁ ଭାଷା ଅଛି ଲେଖି ।
ଜନକ ଦୁହିତା ରାମ ପାଦରେ ଶରଣ
ମୁଁ ତୁମ୍ଭର ଜନ୍ମେ ଜନ୍ମେ ଦାସୀ ଅଟେ ଜାଣ ।
ମୃଗମାରି ଗଲ ତୁମ୍ଭେ କପଟ ଏଥି ହେଲା
ଲଙ୍କାର ରାବଣ ଆସି ମୋତେ ଘେନିଗଲା ।
ଦୋହରା ଅଗ୍ନି ପବନ ମୋର ସଙ୍ଗେ ଗଲେ
ଦେବେ ବୋଇଲେ ରାବଣ ମରିବ ମୁଁ ଗଲେ ।
ତୁମ୍ଭେ ଏବେ ଏଥେ ଆସି ରଖିବ ଯଶ ଗୁଣ
ରାବଣକୁ ମାଇଲେ ହେବେ ସୁଖୀ ଜାଣ ।
ବରଷକେ ଯେବେ ନଦେବ ତୁମ୍ଭେ ଦେଖା
ଅସୁରଙ୍କୁ ମାରିଣ ମୁଁ ବୈକୁଣ୍ଠ ଯିବି ଏକା ।
ଏମନ୍ତ ଲେଖା ଗୋଟି ନାରଦଋଷି ପଢ଼ି
ସ୍ୱର୍ଗକୁ ଚଳିଗଲେ ଆଉସିଣ ଦାଢ଼ି ।
ବେଦ ବ୍ରହ୍ମାଙ୍କ ଆଗରେ ଯାଇଣ କହିଲେ
ଶୁଣିକରି ଦେବତାଏ ହରଷ ମନ ହେଲେ ।

ଏଥୁ ଅନନ୍ତରେ ଶୁଣ ଗୋ ଶୁଭ୍ରକେଶୀ
ସ୍ୱର୍ଗରେ ଦେବତାଏ ମେଳ ହୋଇ ବସି ।
ଏଥର ମରିବ ନିଶ୍ଚେ ବିଶର୍ବାର ବାଳ
ଏମନ୍ତ ଭାବିଲେ ବସି ଦେବତା ସକଳ ।
ଚଉଦ ମାସ ସୀତା ଲଙ୍କାରେ ରହିବ
ଆହାର ନଖାଇ ତା ଶରୀର କ୍ଷୀଣ ହେବ ।
ରାମଙ୍କୁ ଦେଖିବା ବେଳେ କରିବ ଭୋଜନ
ପବନ ଆହାର କରି ଶୋକରେ ଯିବଦିନ ।
ହନୁମନ୍ତ ଯେତେବେଳେ ବାରତା ନେଇଦେବ
ସେତେବେଳେ ଜାନକୀର ମନସ୍ଥିର ହେବ ।
ପବନ ଅଗ୍ନି ଦେବତା ଉପକାର କଲେ
ସତୀ ସଙ୍ଗେ ରାବଣକୁ ଛୁଆଁଇ ନ ଦେଲେ ।
ଏମନ୍ତ ବିଚାର ଯେବେ ଦେବତାମାନେ କରି
ନିଶ୍ଚୟ ଅସୁରଙ୍କୁ ମାରିବେ ଚାପଧାରୀ ।
ଦେବତାମାନେ ସର୍ବେ ମନରେ ଦମ୍ଭ ଦେଲେ
ରାମନାମ ସୁମରି ଯେ ଯାହାପୁରେ ଗଲେ ।
ଏଥୁ ଅନନ୍ତରେ ଗଉରୀ ଗୋ ଶୁଣ
ହରଷରେ ସୀତାଙ୍କୁ ନେଲା ଯେ ରାବଣ ।
ଦେବତାଏ ଯାଇଣ ସ୍ୱର୍ଗରେ ସଭା କଲେ
ଅନେକ ପ୍ରକାରେ ନୃତ୍ୟଗୀତ କଲେ ।
ବୃହସ୍ପତି କହିଲେ ଜ୍ୟୋତିଷ ପଞ୍ଜି ନାହିଁ
ଆଜକୁ ଚଉଦମାସେ ମରିବ ଲଙ୍କସାଇଁ ।
ଚାରିରାବଣ ଚଉଦମାସ ପନ୍ଦରଦିନେ ମରିବେ
ନଉସାଗର ଦୈତ୍ୟଙ୍କୁ ରାମ ସଂହାରିବେ ।
ପନ୍ଦରମାସେ ରାମ ଅଭିଷେକ ହେବେ
ନରବାନର ଅସୁର ଦେବତାସଙ୍ଗେ ଥିବେ ।
ପୁଣି ତଳପୁର ଯାକ ଅସୁରଙ୍କୁ ମାରି
ସ୍ୱର୍ଗକୁ ଆସିବେ ସେ ଦେବଙ୍କୁ ବୋଧକରି ।
ଏଗାର ସହସ୍ରବର୍ଷେ ରହି ମର୍ତ୍ତ୍ୟପୁର
ତେବେ ସେ ବୈକୁଣ୍ଠକୁ ଆସିବେ ଚକ୍ରଧର ।
ମିଥୁନମାସ ଅମାବାସ୍ୟା ଅଟେ ଆଜଦିନ
ଚାରିଶ ବାଇଶି ଦିନରେ ମରିବ ରାବଣ ।
କୁମ୍ଭକର୍ଣ୍ଣ, ଇନ୍ଦ୍ରଜିତ ସମସ୍ତେ ଯିବେ ନାଶ
ପଚାଶକୋଟି ସେନାପତି ସର୍ବେ ହେବେ ଭସ୍ମ ।
ତିନିଭାଗେ ଅସୁର ଚାରି ଲଙ୍କାରୁ ମରିବେ
ବାକିଏକ ଭାଗବାଣ୍ଟି ହୋଇଣ ରହିବେ ।

ଲଙ୍କାଗଡ଼ରେ ରାଜା ହେବେ ବିଭୀଷଣ
ତ୍ରିଜଟା ତ ଲଙ୍କାରେ ରାଜା ହେବେ ଜାଣ ।
ଅଲଙ୍କାରେ ରାଜାହେବେ କୁମ୍ଭକର୍ଣ୍ଣ ସୁତ
ବୀରବାହୁ କୁମର ହେବ ସୁଲଙ୍କା ନରନାଥ ।
ଜ୍ୟୋତି ଲଙ୍କାରେ ରାବଣ କୁମର ରାଜା ହେବ
ଏ ସମସ୍ତେ ବିଭୀଷଣ ସଙ୍ଗରେ ହେବେ ଭାବ ।
ଦଶଗ୍ରୀବ ଭାରିଜା ମନ୍ଦୋଦରୀ ରାଣୀ
ବିଭୀଷଣର ସଦା ହୋଇବ ପାଟରାଣୀ ।
ବିଭୀଷଣର ଯେ ରହିବେ ଦଶପୁତ୍ର
ପାଞ୍ଚଲଙ୍କାରେ ଏମାନେ ହୋଇବେ ମନ୍ତ୍ରୀପାତ୍ର ।
ଶୁଣିଣ ଦେବତାଏ ପରମତୋଷ ହେଲେ
ବର୍ଷେ ତିନିମାସେ କଷ୍ଟ ସହିବ ଭାବିଲେ ।
ଦୁଷ୍ଟ ଅସୁରମାନେ ଯେ ଅଛନ୍ତି ମର୍ତ୍ତ୍ୟପୁର
ସେମାନଙ୍କୁ ରଘୁନାଥ କରିବେ ସଂହାର ।
ଅନ୍ୟାୟ ଉପଦ୍ରବ କଲା ଯେ ରାବଣ
ଅସୁରଙ୍କୁ ଡରିଣ ରହିଲେ ଦେବଗଣ ।
କେ ଆନ କରିବଟି ନନ୍ଦୀକେଶ୍ୱର ଶାପ
ରମ୍ଭା ଅପସରୀର ପ୍ରଜ୍ୱଳିତ କୋପ ।
ଧନପତିର ଶାପ ନୁହଇ କେବେ ଆନ
ସମସ୍ତଙ୍କ ଶାପକୁ ସୀତାର ଶାପ ଟାଣ ।
ଜଟାୟୁଷ ଶାପ ଯେ ମେଣ୍ଟଣ ନୋହିବ
ଜାନକୀ ଗଲା ଲଙ୍କାକୁ ସମସ୍ତଙ୍କୁ ଖାଇବ ।
ରାକ୍ଷସଙ୍କର ସୀତା ଅଟେ ଯେ ଶଙ୍କୁନୀ
ତିନିପୁର ଦୈତ୍ୟଙ୍କୁ ମାରିବେ ରଘୁମଣି ।
ପୂର୍ବରେ ବେଦପତି ଯାହା ସେ ବୋଇଲା
ସେ କଥା ଆସି ଘଟଣା ଏତେକାଳେ ହେଲା ।
ଶୁଣିକରି ଦେବରାଜା ହରଷିତ ମନ
କରେ ବଜ୍ର ଘେନିଣ ଚମକାଏ ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସୀତାଙ୍କୁ ଘେନିଣ ଶୂନ୍ୟେ ଚଳେ ଲଙ୍କପତି ।
ରଥପରେ ନିକାଞ୍ଚନେ ବସିଲେ ଜାନକୀ
ବିକଳେ ରୋଦନ କରେ ହୋଇ ଅତି ଦୁଃଖୀ ।
ବିଧାତା ମୋତେ ଯେବେ ଅକାଳ ବାମହେଲା
ଲକ୍ଷ୍ମଣର ଶାପ ଯେ ମୋଠାରେ ପଡ଼ିଲା ।
ଏମନ୍ତ ବିଚାରି ରାବକଲେ ରାମାମଣି
ବସନ୍ତ କାଳରେ ଯେହ୍ନେ କୋକିଳରୁ ବାଣୀ ।

ବନଗିରି ଲତାଙ୍କୁ ଚାହିଁଣ ଚନ୍ଦ୍ରମୁଖୀ
ବହୁତ ରୋଦନ କରି ବୋଲନ୍ତି ହୋଇ ଦୁଃଖୀ ।
ବୋଇଲେ ଲଙ୍କା ରାବଣ ମନ୍ଦବୁଦ୍ଧି କଲା
ଶ୍ରୀରାମ ନ ଥିଲେ ମୋତେ ଚୋରାଇ ଆଣିଲା ।
ମୁହିଁଟି ସୀତୟା ଅଟେ ଜନକ ଦୁଲଣୀ
ଅଯୋଧ୍ୟା ରାଜା ଶ୍ରୀରାମଚନ୍ଦ୍ରଙ୍କ ଘରଣୀ ।
ସ୍ୱାମୀ ଦିଅର ମୋର ଗଲେ ମୃଗମାରି
ଏକାଦେଖି ରାବଣ ଆଣିଲା ଚୋରି କରି ।
ରଜସ୍ୱଳା ସ୍ତିରୀ ମୁଁ ନ ଛୁଏଁ ମୋର ଅଙ୍ଗ
କରବାଳ ଧରେ ମୋତେ ମାରିବାକୁ ରାଗ ।
ସେଥିରେ ଭୟରେ ମୁଁ ରଥପରେ ବସି
ତଳ ପୀଢ଼େ ରାବଣ ମୋତେ ଜଗିଅଛି ।
ନୟନୁ ଅଶ୍ରୁଜଳ ବହେ ଘନ ଘନ
ଏତେ ବୋଲି ଜାନକୀ କରନ୍ତି କ୍ରନ୍ଦନ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ବନର ଜୀବଙ୍କୁ ଦେଖି ଜନକ ଦୁହିତୀ ।
ଶୂନ୍ୟରେ ଡାକଦ୍ୟନ୍ତି ଜୀବଜନ୍ତୁ ଶୁଣ
ମୋହର ସ୍ୱାମୀ ଯେ ଅଟନ୍ତି ରାମରାଣ ।
ତ୍ରୈଲୋକ୍ୟର ନାଥ ସେ ସ୍ୱୟଂ ନାରାୟଣ
ଅସୁର ମାରିବାକୁ ହୋଇଛନ୍ତି ଜନ୍ମ ।
ଦଶରଥଙ୍କ ନନ୍ଦନ ଅଯୋଧ୍ୟା ରାଜନ
ପିତା ସତ୍ୟ ପାଳିବାକୁ ଆସିଥିଲେ ବନ ।
ଶ୍ରୀରାମ ନ ଥିବାରୁ ରାବଣ ମୋତେ ଆଣି
ଲଙ୍କା ଗଡ଼କୁ ଯାଉଅଛି ମୋତେ ଘେନି ।
ତୁମ୍ଭେମାନେ ଶ୍ରୀରାମଙ୍କୁ ଦେଖିଲେ କହିବ
ନ କହିଲେ ଦାଶରଥିଠାରେ ଦୋଷୀ ହେବ ।
ଭୂମିକି ଅନାଇଁଣ କହେ ବଇଦେହୀ
ସବୁ ଜୀବ ଖଗମାନେ ଥାଅ ତଳେ ରହି ।
ମୋହର ସ୍ୱାମୀଙ୍କି କହିବ ବାରତା
ବଳେ ମୋତେ ଘେନିଗଲା ଦୈତ୍ୟଦଶମଥା ।
ବିକଳେ ଜାନକୀ ରଥପରେ ରହି
ଢଳି ପଡିଲେ ଦେଖି ରାବଣ ହସଇ ।
ବଳରାମ ଦାସ ଯେ ଖଗରୂପେ ଥିଲା
ଜାନକୀଙ୍କ ଭାଷାଶୁଣି ଶରଣ ପଶିଲା ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ସୀତାଙ୍କୁ ରଥେ ବସାଇ ନେଲା ଦଶାନନ ।
ବିକଳରେ ଜାନକୀ କରନ୍ତି ରୋଦନ
ଖଗ ମୃଗ ବନଗିରି ଲତାଙ୍କୁ ଚାହିଁଣ ।
ବୋଇଲେ ତୁମ୍ଭେମାନେ ସାକ୍ଷୀ ହେଲ ମୋର
ଶ୍ରୀରାମ ନ ଥିବାରୁ ନେଉଛି ଦଶଶିର ।
ତୁମ୍ଭେମାନେ ଶ୍ରୀରାମଙ୍କୁ କହିବ ଅଇଲେ
ରାବଣ ନେଲା ସୀତାଙ୍କୁ ଲଙ୍କାଗଡ଼େ ଭଲେ ।
ଏତେ କହି ସ୍ୱତୀ ରଥପରେ କାନ୍ଦି କାନ୍ଦି
ଅଗ୍ନିତେଜ ତାଠାରେ ପ୍ରବଳରେ ବୃଦ୍ଧି ।
ସେଠାରେ କିସ ହେଲା କହ ପଞ୍ଚାନନ
ସେ କଥା ଶୁଣିବାକୁ ଶ୍ରଦ୍ଧା ମୋର ମନ ।
ଈଶ୍ୱର ବୋଇଲେ ଶୁଣ ଗୋ ପାର୍ବତୀ
ରଥର ଉପରେ ସୀତା ବସିଛନ୍ତି ।
ଏକେତ ଅଗ୍ନିତେଜ ସୀତା କ୍ରୋଧପୁଣ
ଏଣେ ସେ ରଜସ୍ୱଳା ହୋଇଛନ୍ତି ଜାଣ ।
ସେ ତେଜ ଦେଖି ରାବଣ ନ ଛାଡ଼େ ତାହାଙ୍କୁ
ଦେବକୂଟ କାଳ ଘୋଟିଅଛି ରାବଣକୁ ।
ରାମ ଲକ୍ଷ୍ମଣଙ୍କୁ ସେ କରିଣ ମହାଭୟେ
ସୀତାଙ୍କ ତେଜ ଦେଖି ତଳ ପୀଢ଼େରହେ ।
ଶୁକ ସାରଣ ତାକୁ ସୁମାର୍ଗ ବତାଇଲେ
ଜାନକୀ ଆଗେ ନ ରହବୋଲିଣ ବୋଇଲେ ।
ତେଣୁ ସେ ରାବଣ ନ ରହେ ସୀତା ସଙ୍ଗେ
ଏକାଥିବାରୁ ସ୍ୱତୀ ବନଲତାଙ୍କୁ କହେ ରାଗେ ।
ସେ କଥା ଶୁଣିଲି କହିଲେ ଗଉରୀ
ଛୁଇଁବାକୁ ସାମରଥ ଅଟେ କି ଦଶଶିରୀ ।
ବୈଶ୍ୱାନର କହିବାରୁ ଦେବୀ ଯାଏ ଲଙ୍କା
ସବୁଦେବେ ରାବଣକୁ କରିଛନ୍ତି ଅହଙ୍କା ।
ଅସୁରଙ୍କୁ ମାରିବା ଦେବତାଙ୍କ କୂଟ
ଯେଣୁ ସେ ଅସୁର ବଳ ହୋଇଲେ ଦର୍ପିଷ୍ଠ ।
ତାଙ୍କୁ ମାରିବାକୁ ଜନ୍ମ ଦଶରଥ ସୁତ
ତେଣୁ ସେ ନାନାକଥା ହେଲା ଉତପାତ ।
ଗରୁଡ଼ର ସୁତ ରଥପରେ ବସିଥିଲା
ଜାନକୀ କହିବାରୁ ଦୈତ୍ୟକୁ ରୁନ୍ଧିଲା ।
ଡେଣା କାଟିଦେଲା ଯେ ରାବଣ ତାହାର
ଅଚଳ ହୋଇଲା ସିନା ଗରୁଡ଼ କୁମର ।
ପୁଣି କିସ କଲା ସେ କଥା କହ ମୋତେ
ଶୁଣିବାନ୍ତୁ ଶ୍ରଦ୍ଧା ଜାତହୁଏ ମୋର ଚିତ୍ତେ ।

ଈଶ୍ୱର ବୋଇଲେ ଶୁଣ ଗୋ ପ୍ରାଣସହୀ
ଗରୁଡ଼ର କୁମର ତଳେ ଥିଲା ଶୋଇ ।
ଶ୍ରୀରାମଙ୍କ ନାମକୁ ମନରେ ସୁମରିଲା
ତକ୍ଷଣେ ତାହାର ଡେଣା କଅଁଳିଲା ।
ବେନି ଖଗ ହେବାରୁ ଉଠିଣ ବସିଲା
ଜାନକୀ କେଣେ ଗଲା ବୋଲିଣ ଅନାଇଲା ।
ପାର୍ବତୀ ପଚାରିଲେ କହ ପ୍ରାଣନାଥ
ଜଟାୟୁଷ କି ଲାଗି ଭୋଗିଲା ଏମନ୍ତ ।
ଈଶ୍ୱର ବୋଇଲେ ଶୁଣ ପ୍ରାଣସହୀ
ପୂର୍ବର କଥା ତୋତେ କହୁଛି ବୁଝାଇ ।
ପୂର୍ବେ ଜନନୀ ତାକୁ ଜନ୍ମକଲା ବେଳେ
ସନ୍ତୋଷରେ ପୁତ୍ରକୁ ବର ଦେଇଥିଲେ ।
ବୋଇଲେ କୁମରରେ ଶୁଣ ମୋ ବଚନ
ଅମର ହୋଇଣ ତୁ ରହିବୁ ବହୁଦିନ ।
ଯେତେବେଳେ ବାସୁଦେବ ହେବେ ଅବତାର
ଅସୁର ମାରିବାକୁ ଜନ୍ମିବେ ମର୍ତ୍ତ୍ୟପୁର ।
ଘରଣୀକି ସଙ୍ଗେ ଘେନି ବନରେ ବିହରିବେ
ପଞ୍ଚବନରେ ଯାଇଣ ରହିବେ ।
ସେତେବେଳେ କୁମରରେ ରାମଙ୍କୁ ହେବଭେଟ
ସେଠାରେ ଶ୍ରୀରାମଙ୍କୁ ପଡ଼ିବ ସଙ୍କଟ ।
ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ଯିବେ ମୃଗମାରି
ଲଙ୍କାର ରାବଣ ସୀତାଙ୍କୁ ନେବ ଧରି ।
ସେ ସ୍ୱତୀ ଦେଖି ତୋତେ କହିବରେ ବଳା
ରାବଣ ସଙ୍ଗେ ଗୋଳ କରିବୁ ତୁହି ପରା ।
ଦଶଗ୍ରୀବ ତୋହର କାଟିବ ବେନି ପକ୍ଷୀ
ଅଚେତା ହୋଇଣ ତୁ ସେଠି ପଡ଼ିବୁଟି ।
ସେତେବେଳେ ରାମ ନାମ କରିବୁ ସ୍ମରଣ
ତେବେ ତୋର ବେନି ଖଗ କଅଁଳିବ ପୁଣ ।
ଅନେକ ସାମର୍ଥପଣ ଦେଖି ବିଂଶବାହୁ
ବେନିଗୋଡ଼ ବେନିଡ଼େଣା କାଟିବରେ ସେହୁ ।
ସେତେବେଳେ ଆଉ ତୋର ଡେଣା ନକଅଁଳି
ରାମ ଆସିବା ଯାଏ ସେଠାରେ ଥିବୁ ପଡ଼ି ।
ଶ୍ରୀରାମଙ୍କୁ ଦେଖିଲେ ବାରତା କହିବୁ
ତେବେ ପାର୍ଥିବ ଦେହ ଛାଡ଼ିଣ ତୁ ଯିବୁ ।
ପିତାର ନିକଟରେ ନିଶ୍ଚିନ୍ତେ ରହିବୁ
ରାମ ରାମ ପଦ ତୁ ତୁଣ୍ଡରେ ଘୋଷିବୁ ।

ଏକଥା ଜାନକୀ ତାକୁ ଥିଲା କହି
ସେ କଥାକୁ ଜଟାୟୁ ମନରେ ଚିତୋଇ ।
ବଳପାଇ ଜଟାୟୁଷ ବେଗେ ଚଳିଗଲା
ରାବଣର ଯିବାର ପଥକୁ ଓଗାଳିଲା ।
ବୋଇଲା ରାବଣରେ ହୀନବୁଦ୍ଧି କଲୁ
ଶ୍ରୀରାମ ଘରଣୀକୁ ଚୋରାଇ ଆଣିଲୁ ।
ମୋହର ସଙ୍ଗତରେ କଲୁ ତୁହି ରଣ
ଖଗ ମୋର କାଟିବାରୁ ନିର୍ମଳ ହେଲି ଜାଣ ।
ଏବେ ଦଶଶିରକୁରେ ମୋଡ଼ିକି ତୋହର
ଜାନକୀକୁ ନ ନିଅ ପ୍ରାଣକୁ ଯେବେ ଡର ।
ବିଷଖାଇ ମରିବାକୁ କଲୁରେ ସାହସ
ଆଜି ତୋତେ ମୁହିଁ ଯେ କରିବି ପ୍ରାଣେ ନାଶ ।
ଏତେକହି ଶାଳବୃକ୍ଷ ଦନ୍ତରେ ଉପାଡ଼ିଲା
ରାବଣର ରହୁବର ଉପରେ କଚାଡ଼ିଲା ।
ରଥର ଧ୍ୱଜ ଭାଙ୍ଗି ପଡ଼ିଲା ଭୂମିତଳ
ଦେଖିଣ ଧନୁଶର ଧରିଲା ଲଙ୍କପାଳ ।
ତୀକ୍ଷଣ ନାରାଚ ବସାଇ ବିନ୍ଧିଲାକ ଟାଣି
ଘାଆପାଇ ମୋହ ହୋଇଲା ପକ୍ଷୀମଣି ।
ତହୁଁ ରାବଣେଶ୍ୱର ରଥ ବାହିନେଲା
କ୍ଷଣକେ ପକ୍ଷୀଜଟା ଚେତନା ପାଇଲା ।
ରଥକୁ ଅନାଇଁ ସେ ଧାଇଁଲା ଅତିବେଗେ
ଯାଇଣ ମିଳିଲା ସେ ରାବଣର ଆଗେ ।
ଆକାଶେ ଏକ ପାଟି ମର୍ତ୍ତ୍ୟରେ ଏକ ପାଟି
ଦୁଇ ଡେଣାରେ ରଥ ନିରୋଧିଲା ସେଟି ।
ଅଣ୍ଟରେ ରହୁ ବରକୁ  ଭାଙ୍ଗି ପକାଇଲା
କଳଶର ଚିରାଳକୁ ଛିନ୍ନଛିନ୍ନ କଲା ।
ନଖରେ ବିଦାରିଲା ରାବଣ ଶରୀର
ରୁଧିର ଖଳ ଖଳ ବହେ ଧାର ଧାର ।
ପୁଣି ଜଟାୟୁଷ ଚରଣ ନେଇ ମାରି
ପୁଷ୍ପକ ଯାନକୁ ସେ ଖଣ୍ଡ ଖଣ୍ଡ କରି ।
ଦେଖିକରି ରଥରୁ ଓହ୍ଲାଇ ଦଶାନନ
ଜନକ ନନ୍ଦିନୀ ଥିଲେ ଉପରେଣ ।
ରଥ ଭଗ୍ନ ହେବାରୁ ଜାନକୀ ଓହ୍ଲାଇଲେ
ବନର ଭିତରେ ପଶିଣ ଲୁଚିଲେ ।
ଖଗରେ ପକ୍ଷୀଜଟା ରାବଣକୁ ମାରି
ଅଣ୍ଟରେ ଦଶ ମୁଣ୍ଡକୁ କାମୁଡ଼ି ତାହାରି ।

ଦଶମୁକୁଟରୁ ସେ ଅଷ୍ଟରେ ଭିଡ଼ି ଦେଲା
ରାବଣକୁ ପକ୍ଷୀଜଟା ଅସମ୍ଭାଳ କଲା ।
ଦେଖିକରି ଦଶାନନ ଖଡ଼ଗ ବେଗେ ଧରି
ଜଟାୟୁଷକୁ ସେ କୋପରେ ପ୍ରହାରି ।
ବେନି ଗୋଡ଼ ବେନି ଡେଣା କାଟିଲା ତାହାର
ପଡ଼ିଲା ଜଟାୟୁଷ ଭୂମିର ଉପର ।
ଯେବଣ ରାବଣକୁ ଦେବେ ନୁହନ୍ତି ସରି
ଗରୁଡ଼ର ସୁତ କି ତାହାକୁ ବଳେ ପାରି ।
ତେଣୁ ଜଟାୟୁଷର ବଳ ହେଲା କ୍ଷୀଣ
ଖଗଚରଣ ଯିବାରୁ ପଡ଼ିଲା ଭୂମିରେଣ ।
ଦେଖିକରି ରାବଣ ତୀକ୍ଷ୍ଣ ଶର ପେଶି
ପକ୍ଷୀଜଟାର ଉପରେ ବାଣ ସେ ବରଷି ।
ସେହିଠାରେ ରକତ ଉଦ୍‌ଗାରି ଜଟାୟୁଷ
ଚକ୍ଷୁ ଦୁଇ ବୁଲାଇ ଚକ୍ରର ସଦୃଶ ।
ସେହିଠାରେ ଜଟାୟୁଷ ପଡ଼ିଲା ମୁହଁ ମାଡ଼ି
ଆଗଭର ହୋଇଣ ଗରୁଡ଼ ସୁତ ପଡ଼ି ।
ସେହିଠାରୁ ଜଟାୟୁଷ ବଳ ବୁଦ୍ଧି ହାରି
ମଳାଜୀବ ହୋଇଣ ରହିଲା ଓହରି ।
ରାବଣ ଜଟାୟୁଷ ସଙ୍ଗରେ ଯୁଦ୍ଧକଲା
ସେହିଠାରେ ଘଡ଼ିଏ ଦିନ ବହିଗଲା ।
ରଣଗୋଳ ବେଳରେ ଜାନକୀ ବନେ ପଶି
ରୋଦନ କରଇ ଶରଦ ଚନ୍ଦ୍ରହାସୀ ।
ଯେଉଁଆଡ଼େ ଶ୍ରୀରାମ ଗଲେ ମୃଗ ମାରି
ସେହି ପଥରେ ଯାଏ ଜନକ କୁମାରୀ ।
ରୋଦନ କରି ଦେବୀ ପଳାଏ ସତ୍ୱର
ସେ ଶବଦ ଶୁଣିକରି ଧାଏଁ ଲଙ୍କେଶ୍ୱର ।
ପାଦଚିହ୍ନ ଦେଖିଣ ସୀତାଙ୍କୁ ଗୋଡ଼ାଇଲା
ବନର ଭିତରେ ଯାଇଣ ଦେଖିଲା ।
କଟାରୀକି କାଢ଼ିଣ ବୋଇଲା ରାବଣ
ନିଶ୍ଚୟ ଆଜି ତୋର ଘେନିବି ପରାଣ ।
ଭଲଗତି ଥିଲେ ରଥରେ ଯାଇ ବସ
ଆଉ କି ଶ୍ରୀରାମରେ ଅଛି ତୋର ଆଶ ।
ଦେଖିକରି ଜାନକୀ ବିଧାତା ସୁମରି
ସେଠାରୁ ଲେଉଟିଣ ଆସେ ସେ ସୁକୁମାରୀ ।
ଭଙ୍ଗା ରଥ ପାଶରେ ହେଲେ ପରବେଶ
ପୁଷ୍ପକ ଯାନକୁ ସୁମରେ ଦଶଈଶ ।

ରାବଣ ସୁମରନ୍ତେ ଭଗ୍ନରଥ ହତ
ନୂତନ ରଥ ଆସି ମିଳିଲା ତ୍ୱରିତ ।
ସେ ରଥ ଉପରେ ବସିଲେ ବଇଦେହୀ
କ୍ରୋଧରେ ଦାବାନଳ ଜ୍ୟୋତି ପ୍ରକାଶଇ ।
ଉପରେ ଜାନକୀ ତଳ ପୀଢ଼ରେ ରାବଣ
ଶୁକ, ସାରଣ ଦୁହେଁ ବସିଲେ ତଳେଣ ।
ଗଗନରେ ରଥକୁ ବାହିଲେ ସେ ଖରେ
ବଇଦେହୀ ରୋଦନ କରନ୍ତି ରଥ ପରେ ।
ଯାହାର ଶରୀରକୁ ନ ଲାଗେ ରବି ତେଜ
ବନର ପବନ ଯାକୁ କରଇ ଆବେଗ ।
ସେ ଜାନକୀ ଆପଣା ଦୋଷରୁ ଦୁଃଖ ପାଇ
ତ୍ରୈଲୋକ୍ୟ ଠାକୁରାଣୀ ଜଗତଜନ ଥାଇ ।
କର୍ମର ଅବଳେ ତାକୁ ଦଇବ ଗଞ୍ଜଇ
ଅକାରଣେ ଦେବୀ ଯେ ଲକ୍ଷ୍ମଣେ ଗାଳିଦେଇ ।
ସେଥିର ପ୍ରଭାବ ଏବେ ପାଉଅଛି ସ୍ୱତୀ
ନିର୍ଦ୍ଦୋଷୀ ଲୋକ ଯେ ଅଟଇ ସଉମିତ୍ରୀ ।
ଅସମ୍ଭବ କଥା ଯହୁଁ କହିଲା ସୀତା ତୁଣ୍ଡେ
ଶୋକ ଭରେ ଲକ୍ଷ୍ମଣେ ଗଲେ ବନ ଦାଣ୍ଡେ ।
ଲେଉଟି ଜାନକୀ ସେ କଥା ଭୋଗ କଲା
ତ୍ରୈଲୋକ୍ୟ ଠାକୁରାଣୀ ଗଞ୍ଜଣା ପାଇଲା ।
କଞ୍ଚାମାଟିକି ଯେସନେ ମନ୍ଥର କୁରାଳ
ସୀତାଙ୍କୁ ମନ୍ତେ ତେସନେ ବିଶର୍ବାର ବାଳ ।
ଦୋଷ କଲେ ସୀତା ଯେ ଅସୁର ନେଲା ଧରି
ମନରେ ଜାନକୀ ସେ କଥା ବିଚାରି ।
ପୁଷ୍ପକ ବିମାନରେ ବସିଛନ୍ତି ସ୍ୱତୀ
ତକ୍ଷଣେ ରାବଣ ରଥ ଚଳେ ଶୂନ୍ୟ ଗତି ।
ଉପର ପୀଢ଼ରେ ବସିଛନ୍ତି ବଇଦେହୀ
ଗଗନ ମାର୍ଗରେ ରଥ ଶୀଘ୍ର ଚଳିଯାଇ ।
ସ୍ୱର୍ଗରେ ଦେବତାଏ ହରଷ ଦେଖିଣ
ସୀତାଙ୍କୁ ଯହୁଁ ହରିନେଲା ସେ ରାବଣ ।
ଗଗନ ମାର୍ଗରେ ଚଳିଯାଏ ରଥ
ଘନ ଘନ ଯାନ ବାହଇ ଦଶ ମାଥ ।
ସୀତା ଶୋକ କରନ୍ତି ରଥ ଉପରେ ଥାଇ
ରତ୍ନ ଅଳଙ୍କାର ସବୁ ଶରୀରୁ କାଢ଼ଇ ।
ବିକଳେ ଜନକ ଦୁହିତା ଚନ୍ଦ୍ରମୁଖୀ
ଶ୍ରୀରାମଙ୍କ ବିହୁନେ ସକଳ ଉପେକ୍ଷି ।

ହାର ପଦକ ଯେ ଗଳାର ଚାପ ସରି
ବିଦମୁଦି ବାହୁଟି ବାଜୁବନ୍ଧ କାଢ଼ି ।
ଏମାନଙ୍କୁ କାଢ଼ିଣ ଥୋଇଲେ ସଜାଡ଼ି
ଆବର ଅଳଙ୍କାରମାନ ସବୁ କାଢ଼ି ।
ପାହୁଡ଼ ଝୁଣ୍ଟିଆ ନୂପୁର ରତ୍ନମୁଦି
ଅଣ୍ଟାସୂତା ସଙ୍ଗରେ ସମସ୍ତଙ୍କୁ ବାନ୍ଧି ।
ଅଳଙ୍କାର ଝୁମ୍ପି ସଙ୍ଗେ ସଭିଙ୍କି ଏକ କଲେ
ଉପରାଣ ଖଣ୍ଡୁ କାଢ଼ିଣ ବାନ୍ଧିଲେ ।
କେବଳ ମଥାରେ ରଖିଲେ ମଥାମଣି
ବେନି ହସ୍ତରେ ବେନି କଙ୍କଣ ରଖି ଜାଣି ।
ଯେଉଁ ଅମଳାଣ ଶାଢ଼ୀ ଦେବୀ ପିନ୍ଧିଥିଲେ
ଏତିକି ଦ୍ରବ୍ୟ କେବଳ ଅଙ୍ଗରେ ରଖିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ
ଋଷ୍ୟମୁକ ପର୍ବତ ଉପରେ ରଥମିଳି ।
ରଥରେ ଥାଇ ସୀତା ତଳକୁ ଦେଲେ ଦୃଷ୍ଟି
ଦେଖିଲେ ସେ ପର୍ବତେ ବାନର ଆଠଗୋଟି ।
ସୁଗ୍ରୀବର ସଙ୍ଗରେ ଅଛନ୍ତି ଅଷ୍ଟଜଣ
ବସିଣ ଅଛନ୍ତି ବୃକ୍ଷର ମୂଳେଣ ।
ଦେଖିକରି ଜାନକୀ ମନରେ ସୁଖୀ ହେଲେ
ଅଳଂକାର ଉପରାଣ ସେଠାରେ ପକାଇଲେ ।
ଶୂନ୍ୟରୁ ପଡ଼ନ୍ତେ ସୁଗ୍ରୀବର ଚାହିଁ
ରଥର ଉପରେ ଅଛନ୍ତି ବଇଦେହୀ ।
ଭୂମିରେ ଆସିଣ ପଡ଼ିଲା ଆୟୋମାନ
କି ଜାଣି ଭୂମିରେ ପଡ଼ିଲେ ତାରାମାନ ।
ପାହୁଡ଼ ନୂପୁର ଝୁଣ୍ଟିଆ ଚରଣରୁ
ପଡ଼ନ୍ତେ ସୃଷ୍ଟି ଆନନ୍ଦ ହୋଇଲା ସେଠାରୁ ।
ଆକାଶରୁ ଯେହ୍ନେ ବୃଷ୍ଟି ହୁଏ ଜଳଧାରା
ସୀତାଙ୍କ ଆୟମାନ ଦିଶେ ସେହି ପରା ।
ସେ ପର୍ବତ ଉପରେ ପକାଇ ମହାସ୍ୱତୀ
ବିରସ ମନ ହେଲେ ଜନକ ଦୁହିତୀ ।
ଶ୍ରୀରାମ ଲକ୍ଷ୍ମଣ ବୋଲି କରନ୍ତି ରୋଦନ
ଅଳଙ୍କାର ପଡ଼ନ୍ତେ ଚାହିଁଲେ ସର୍ବେ ପୁଣ ।
ତଳେ ଥାଇ ଏ ମାନ ନ ଜାଣେ ଲଙ୍କପତି
ଋଷ୍ୟମୁକ ପର୍ବତକୁ ଚାହିଁଲା ଝଟତି ।
ବାଳୀର ଭାଇ ସୁଗ୍ରୀବ ବସିଛି ସେଠାରେ
ଦେଖିକରି ଦଶାନନ ବିଚାରେ ମନରେ ।
ନପୁଣ ମୋର ପାଶେ ଆସେ ସୁଗ୍ରୀବର
ସେ ଯେବେ ଜାଣିବ କଥା ହୋଇବ ପ୍ରଚାର ।
ମୋତେ ନିନ୍ଦା କରିବ ବାଳିବୀର ଭାଇ
ନପୁଣ କଳି ସେ ମୋ ସଙ୍ଗେ କରାଇ ।
କଳି କଲେ ଦ୍ୱନ୍ଦ୍ୱ ଯେ ହୋଇବ ପୁଣ ଜାତ
ସୁଗ୍ରୀବରକୁ ମୁହିଁ ଯେ ହେବି ନିର୍ବଳତ ।
ଏମନ୍ତ ବିଚାର କରି ଲଙ୍କା ଅଧିପତି
ସାରଥିକି ବୋଲେ ରଥ ବାହାରେ ତଡ଼ତି ।
ଶୁଣିକରି ବେନି ମନ୍ତ୍ରୀ ବେଗେ ରଥ ବାହି
ଏଥୁ ଅନନ୍ତରେ ଶୁଣ ଗୋ ପ୍ରାଣସହୀ ।
ସୀତା ଶୋକ କରନ୍ତି ଉପର ପୀଢ଼େ ରହି
ରାମ ରାମ ପଦକୁ ରୋଦଇ ବଇଦେହୀ ।
ଏମନ୍ତ ସମୟରେ ରଥବାହି ନେଲେ
ସହେ ଯୁଣ ସମୁଦ୍ରକୁ କ୍ଷଣକେ ତରିଲେ ।
ଲଙ୍କାର ଉତ୍ତର ଦ୍ୱାରେ ହେଲେ ପରବେଶ
ସୁବର୍ଣ୍ଣପୁର ଜାନକୀ ଦେଖିଲେ ବିଶେଷ ।
ଉତ୍ତରଦ୍ୱାର ବାଟେ ଲଙ୍କାରେ ପଶିଲେ
ଲଙ୍କାଗଡ଼ ବଡ଼ଦାଣ୍ଡର ଭିତରେ ସେ ଗଲେ ।
ଅସୁର ଅସୁରୀ ଦେଖି ହୋଇଲେ ଚକିତ
କେଉଁଠାରୁ ଆଣିଲା ସୁନ୍ଦରସ୍ତିରୀ ତ ।
ଏକକୁ ଆରେକ କହନ୍ତି ବେଗେ ଯାଇ
ଅପୂର୍ବସ୍ତିରୀ ଗୋଟି ଆଣିଛି ଲଙ୍କସାଇଁ ।
ସୀତା ଦେହ ସେମାନଙ୍କୁ ଦିଶେ ହୁତାଶନ
ଯେସନେ ପ୍ରଜ୍ୱଳିତ ଅଗ୍ନି ଜଳେ ପୁଣ ।
ଅସୁର ଅସୁରୀଙ୍କି ଅଗ୍ନିତ୍ରାସ ଲାଗେ
ଅସୁରୀମାନେ ବୋଲନ୍ତି ଜଳିଯିବା କି ଏବେ ।
ସୀତାଙ୍କ ପାଶୁଁ ଅସୁର ଅସୁରୁଣୀଗଣ
ଅଲଗରେ ରହିଲେ ନ ଗଲେ ପାଶେଣ ।
ଅସୁର ଅସୁରୀଙ୍କି ଦେଖିଣ ସୀତାସତୀ
କ୍ରୋଧରେ ଜରଜର ହେଉଛନ୍ତି ଅତି ।
ସେଠାରେ ବୈଶ୍ୱାନର ହେଲେ ପରବେଶ
ଚାହିଁବାକୁ ଭୟ ତାଙ୍କୁ କରିଲେ ରାକ୍ଷସ ।
ଏମନ୍ତେ ଲଙ୍କାଗଡ଼େ ପଡ଼ିଲା ଚହଳ
ଅସୁର ଅସୁରୀ କୁହାକୁହି ଯେ ସକଳ ।
ଶୁଣିକରି ଲଙ୍କା ଲୋକେ ଦେଖିଣ ଆସନ୍ତି
ଚଉଷଠି ଦାଣ୍ଡେ ଲୋକ ପୂରିଣ ଦେଖନ୍ତି ।

କନ୍ଦି ବିକନ୍ଦିରେ ଯେତେ ପ୍ରୁଣ ଥିଲେ
ସୀତାଙ୍କୁ ଦେଖିବାକୁ ସମସ୍ତେ ଅଇଲେ ।
ଦେଖିଲେ ରଥରେ ବସିଛନ୍ତି ଶୁଭ୍ରକେଶୀ
ଅଗ୍ନିର ପ୍ରାୟ ତାଙ୍କ ତେଜ ଯେ ପ୍ରକାଶୀ ।
ସିଂହର ଘରଣୀକି ଶୃଗାଳ ଧରି ନେଇ
ତେସନପ୍ରାୟ ରାବଣ ସୀତାଙ୍କୁ ଆଣଇଁ ।
ଦେଖଣାହାରୀ ଲୋକେ ଦେଖୁଛନ୍ତି ଘେରି
ଅସୁର ଅସୁରୁଣୀ ସେଥିରେ ବିଚାରି ।
ସକଳ ସୁନ୍ଦର ଯାକ ଏକଠାବ କଲା
ସଂସାରର ଚିନ୍ତାଛାଡ଼ି ଏହାକୁ ଗଢ଼ିଲା ।
କେବଣ ରାଜାର ଏ ଅଟଇ ନନ୍ଦିନୀ
ଏହାକୁ ରାବଣ କାହୁଁ ଅଇଲା ଘେନି ।
ମନ୍ଦୋଦରୀ ସହିତେ ଯେତେକ ରାଣୀହଂସ
ଏହାର ପାଦକୁ ସରି ନୋହିବେ କେହିତ ।
ଜାଣିଲାର ଲୋକେ ଯେ ବୋଲନ୍ତି ମନ୍ଦକଲା
କାହାର ଯୁବତୀକି ଏ ଚୋରାଇ ଆଣିଲା ।
କେ ବୋଇଲା ଅଧର୍ମ କଲା ଦଶଶିର
ନିଶ୍ଚୟ ପରମାଦ ପଡ଼ିବ ଏ ପୁର ।
କେ ବୋଲଇ ଆଣିଲା ସିନା କି କରିବ ଏହି
ହୁତାଶନ ପରାଏ ଜଳୁଛି ତାର ଦେହୀ ।
ଦେଖିଲେ ଦେବତାଏ ଡରିବେ ଅବଶ୍ୟ
ଅସୁରର କୃତ୍ୟରେ କରିବ ତାକୁ କିସ ।
ବିଧାତା ଦୁର୍ବଳ ବେଳେ ମଣ୍ଡୁକୀ କରେ ନୃତ୍ୟ
କେ ବୋଲେ ବିହିବାମ ହେଲାଣି ଏହାକୁ ତ ।
କେ ବୋଲଇ କୁମ୍ଭକର୍ଣ୍ଣ ନଜାଣଇ କିଛି
ନିଶ୍ଚିନ୍ତ ହୋଇଣ ସେହିତ ଶୋଇଅଛି ।
କେ ବୋଲଇ ତୁମ୍ଭେ କିଛି ଯେ ନ ଜାଣ
ମୁଁ ଯାହା କହୁଛି ତାହା ସ୍ଥିର ମନେ ଶୁଣ ।
ସୂର୍ଯ୍ୟବଂଶରେ ଜାତ ରାଜା ଦଶରଥ
ତାହାର କୁଳେ ଜାତ ହୋଇଲେ ରଘୁନାଥ ।
ବିଶ୍ୱାମିତ୍ରଙ୍କ ଯାଗ ବନରେ ରଖିଲେ
ତାଡ଼କୀ ଅସୁରୀକି ସେଠାରେ ନାଶକଲେ ।
ମିଥିଳାପୁରରେ ଭାଙ୍ଗିଲେ ଶିବଧନୁ
ଜାନକୀ ବିଭା ହୋଇ ଆସିଲେ ସେ ତେଣୁ ।
ବାଟରେ ପର୍ଶରାମର ଦର୍ପକୁ ଗଞ୍ଜିଲେ
ଯେଉଁ ପର୍ଶୁରାମ ସପ୍ତପୁରକୁ ସାଧିଲେ ।
ସେଠାରୁ ଅଯୋଧ୍ୟାରେ ହେଲେ ପରବେଶ
ପୁତ୍ରର ପ୍ରବଳ ଦେଖି ଦଶରଥ ତୋଷ ।
ଶ୍ରୀରାମକୁ ରାଜା କରିବାକୁ କଲେମନ
କୈକେୟୀ ନାମରେ ତାଙ୍କ ଜ୍ୟେଷ୍ଠରାଣୀଜାଣ ।
ସେ ବୋଇଲା ରାମଚନ୍ଦ୍ର ଏବେ ବନ ଯାଉ
ଭାଇ ଭାରିଜାକୁ ସେ ସଙ୍ଗତରେ ନେଉ ।
ଚଉଦ ବରଷ ଗଲେ ରାଜାହେଉ ଆସି
ସେ ରାଣୀ ରାଜାଙ୍କୁ ସତ୍ୟ କରାଇଟି ।
ତେଣୁ ସେ ରାମ ଲକ୍ଷ୍ମଣ ସୀତା ତିନିଜଣ
ପିତାଙ୍କ ସତ୍ୟପାଳି ଅଇଲେ ବନେଣ ।
ତେରବରଷ ଯେ ବନରେ ବହିଗଲା
ତା ରାଜ୍ୟକୁ ଯିବାକୁ ବରଷେ ପୁଣି ଥଲା ।
ପଞ୍ଚବଟୀ ବନରେ ସେ ବସାକରିଥିଲେ
ସେ ବନରେ ସୁଖରେ କାଳ କାଟୁଥିଲେ ।
ଭାଇ ଭାରିଜାଙ୍କୁ ଘେନିଣ ରଘୁନାଥ
ସେ ବନରେ ରହିଥିଲେ ହୋଇଣ ନିଶ୍ଚିତ ।
ସୂର୍ପଣଖା ସେ ବନରେ ପ୍ରବେଶ ହୋଇଲା
ଖାଇ୍ବ ବୋଲି ତାଙ୍କୁ ମନରେ ପାଞ୍ଚିଲା ।
ଜାଣିଲେ ଶ୍ରୀରାମ ଲକ୍ଷ୍ମଣ ବେନିଭାଇ
ସୂର୍ପଣଖା ନାସା ଶ୍ରବଣ କାଟିଦେଲେ ତହିଁ ।
ନାକ, କାନ କାଟନ୍ତେ ସୂର୍ପଣଖା ଆସି
ଖର, ଦୂଷଣ ଆଗରେ କଥାମାନ ଭାଷି ।
ତ୍ରିଶିରା, ଖର, ଦୂଷଣ ହୋଇଲେ ବାହାର
ଚଉଦା ସହସ୍ର ବଳ ନେଲେ ସେ ସଙ୍ଗର ।
ଶ୍ରୀରାମଙ୍କ ନାରାଚେ-ସମସ୍ତେ ଗଲେ ନାଶ
ସେଠାରୁ ସୂର୍ପଣଖା ଲଙ୍କାରେ ପ୍ରବେଶ ।
ଭାଇ ରାବଣ ଆଗରେ ସମସ୍ତ କହିଲା
ନାକ, କାନ ଦେଖାଇ ରୋଦନ ସେ କଲା ।
ଏମନ୍ତ ଜାଣିଣ କୋପ କଲା ଦଶମାଥ
କ୍ରୋଧେ ରାବଣେଶ୍ୱର ହେଲା ମଏମତା ।
ଜମ୍ବୁଦୀପ ପଞ୍ଚବଟୀ ବନକୁ ସେ ଗଲା
ସେଠାରୁ ଏ ନାରୀକି ଚୋରାଇ ଆଣିଲା ।
ଶ୍ରୀରାମ ଲକ୍ଷ୍ମଣ ଯେ ନ ଥିଲେ ସେଠାରେ
ମୃଗମାରି ଯାଇଥିଲେ ବନର ଭିତରେ ।
ତେଣୁ ସେ ରାବଣ ଆଣିଲା ତାଙ୍କୁ ହରି
ଅଗ୍ନିଠାରୁ ବଳିଣ ଶରୀର ଏହାରି ।

ଛୁଇଁଥିଲେ ଭସ୍ମ ହୋଇଥାନ୍ତା ଦଶାନନ
ଭୟ ଦେଖାଇ ତାଙ୍କୁ ବସାଇଲା ଯାନ ।
ଉପରେ ଏ ନାରୀ ମଧ ପୀଢ଼େ ଦଶଗ୍ରୀବ
ତଳେ ପୀଢ଼େ ବେନି ମନ୍ତ୍ରୀ କରି ସେ ଠାବ ।
ଯାହାର ପ୍ରତାପରେ ନରହେ କେହି ପାଶେ
ତେଜଶୀଳା ପରାୟେ ଏ ରମଣୀଟି ଦିଶେ ।
ପୂର୍ବରେ ଶୁଣିଅଛି ଏସନକ ବାଣୀ
ସୀତାଙ୍କୁ ହରିଲେ ଯେ ମରିବ ବିଂଶପାଣି ।
ବିଧାତା କହିବା କଥା ଘଟୁଅଛି ଏବେ
ଯେଉଁକଥା ଭିଆଣ କରିଛି ଦଇବେ ।
ଅସୁରେ ଏପରି କୁହାକୁହି ହୋନ୍ତି
ପୂର୍ବରୁ ସେ କଥାମାନ ଶୁଣିଣ ଅଛନ୍ତି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଧୀରେ ଧୀରେ ରଥକୁ ବାହେ ଲଙ୍କପତି ।
ଶୁକ, ସାରଣଙ୍କୁ ଚାହିଁଣ ପଚାରି
ଏ ନାରୀକି ନବରେ ନେବା ଶୀଘ୍ରକରି ।
ଏଥିର ବିଚାର କହ ମୋତେ ମନ୍ତ୍ରୀ
ଏ ନାରୀ ତେଜରେ ଶୂନ୍ୟେ ଲୁଚେ ରବି ।
ଶୁକ, ସାରଣ ବେନି କହନ୍ତି ବଚନ
ଏ ନାରୀକି ନବରେ ନେବାର ନୁହେ ଜାଣ ।
ରଜସ୍ୱଳା ହୋଇଛି ଏ ଅଶଉଚ ନାରୀ
ଏହାକୁ ରାଜନ ହେ ଆଣିଛ ଚୋରିକରି
ଏ ନାରୀକି ନବରେ ନ ନିଅ ରାଜନ
ନେଲେ ନିକଟେ ନାଶ ଯିବଟି ଆପଣ ।
ଦାବାନଳ ପରାଏ ଯେ ଶରୀର ତେଜପୁଣ
ଏତେବେଳେ କ୍ରୋଧ ଯେ ହୋଇଛି ଦେବୀ ଜାଣ ।
ଏହାକୁ ନେଇ ତୁମ୍ଭେ ଅଲଗା ସ୍ଥାନେ ରଖ
ଶୁଦ୍ଧସ୍ନାନ କରି ଏ ମନରେ ହେଉ ସୁଖ ।
ଶଉଚ ବିଧି ସାରିଲେ ସଙ୍ଗରେ ଘେନିଯିବ
ତେବେ ସେ ଲଙ୍କା ଗଡ଼ରେ ସୁଖରେ ବିଳସିବ ।
ଜଣାନାହିଁ ଏ ନାରୀ କିପରି ଅଟଇ
ମନ୍ଦ କଥାମାନ ଏ ଆଗରୁ ଅଛି କହି ।
ସବୁବେଳେ ପ୍ରବଳ ହୋଇଲ ରାଜନ
ଧରମ ତାର ଅଙ୍ଗୁ ଛାଡ଼ିଯାଏ ଜାଣ ।
ତିନିପୁରେ ଜଣାଥାନ୍ତି ରାମ ନାରାୟଣ
ତାହାର ଘରଣୀ ଏ କମଳାଟି ଜାଣ ।

ଦେଖୁଛ ଏହାର ତେଜ ଅଗ୍ନିଠାରୁ ବଳେ
ଯାହାର ଆଗରେ କେହି ନ ରହେ ଶୀତଳେ ।
ସେ ନାରୀକି କେମନ୍ତେ ଅଶଉଚେ ନେବ
ଆଜିକାଲି ଭିତରେ କି ଯମପୁର ଯିବ ।
ଶୁଣିକରି ରାବଣ କହଇ ବଚନ
ଏହାକୁ ରଖିବା କହ କେଉଁ ସ୍ଥାନ ।
ମଧୁବନେ ନେବା ଯାକୁ ଅଶୋକବନେ ଦେଖି
ଶୁକସାରଣ ବୋଇଲେ ସେ ସ୍ଥାନେ ହେବ ସୁଖି ।
ଦଶଗ୍ରୀବ ବୋଇଲା ସେ ସ୍ଥାନ ଅଟେ ଭଲ
ସେ ବନର ନଦୀ ଯେ ଅଟେ ନିରିମଳ ।
ସେଠାରେ ଅଛଇ ଜଗତି ଅଟାଳି ରତ୍ନପୁର
ଶୁଣି ଶୁକ ସାରଣ ବୋଇଲେ ସେଠିଚାଲ ।
ଏତେ କହି ବେନି ମନ୍ତ୍ରୀ ନେଲେ ରଥ ବାହି
ଅଶୋକ ବନରେ ମିଳିଲେ ସେ ଯାଇ ।
ସେଥି ମଧ୍ୟେ ଅଛି ଅଷ୍ଟରତ୍ନ ଜଗତିତ
ଚାରିପାଶେ ସୁବର୍ଣ୍ଣ ମଧରେ ପଞ୍ଚରତ୍ନ ।
ହୀରା, ମାଣିକ୍ୟ ଜ୍ୟୋତି ଦିଶଇ ନିର୍ମଳ
ଅତି ମନୋହର ସେ ସ୍ଥାନଟି ସ୍ୱସ୍ଥଳ ।
ସେହି ସ୍ଥାନରେ ରଥ ପ୍ରବେଶ ହୋଇଲା
ରଥରୁ ରାବଣ ବେଗେ ଓହ୍ଲାଇଲା ।
ଜଗତି ଅଟାଳୀ ଯେ ଦେଖେ ଯାଇ ସର୍ବ
ଦେଖିକରି ଆନନ୍ଦ ହୁଏ ଦଶଗ୍ରୀବ ।
ବିଚାରିଲ ଏ ସ୍ଥାନରେ ଜନକ ସୁତା ରହୁ
ନଗରକୁ ଯିବାଇଁ ଶୁଭ ମୋର ନୋହୁ ।
ସବୁଦିନେ ଏଠାରେ ରାମନାରୀ ଥାଉ
ମନ ତାର ହୋଇଲେ ନବରକୁ ଯାଉ ।
ରବିପୂଜା କରିବାକୁ ଏ ସ୍ଥାନ ମୋତେ ଭଲ
ଏମନ୍ତ ବିଚାର କରେ ବିଶ୍ରବାର ବାଳ ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ଅଶୋକବନ ଦେଖି ପାଞ୍ଚିଲେକ ସତୀ ।
ବିଚାରିଲେ ଦଇବ ଭଲ ଘଟାଇଲା
ପଞ୍ଚବଟୀ ବନକୁ ଅଶୋକବନ ହେଲା ।
ଏମନ୍ତ ବିଚାର କଲେ ଯେ ରାମ ନାରୀ
ଚଉଦମାସ ଏ ସ୍ଥାନେ ରହିବି ଦେହ ଧରି ।
ତେତେବେଳେ ଯେବେ ରାମଙ୍କୁ ନ ଦେଖିବି
ତେବେ ମୁଁ ନିଜହସ୍ତେ ଦୈତ୍ୟଙ୍କୁ ନାଶିବି ।

ଅସୁରଙ୍କୁ ମାରି ମୁଁ ଯିବି ନିଜପୁର
ଅଗ୍ନିଙ୍କ ବଚନରେ ଅଇଲି ଅତିଦୂର ।
ଏମନ୍ତ ବିଚାର ଜାନକୀ ମନେ କଲେ
ଭିତରେ ହରଷ ବାହାରେ ଶୋକକଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ରଥର ଉପରେ ଅଛନ୍ତି ରାମନାରୀ ।
କ୍ରୋଧରେ ଅନଳ ଜଳେ ତାଙ୍କ ଦେହୀ
ବୈଶ୍ୱାନର ତାଙ୍କ ଶରୀରେ ଅଛଇଁ ।
ଶୁକ, ସାରଣଙ୍କୁ ରାବଣ କହେ ବାଣୀ
ତ୍ରିଜଟାର ସଙ୍ଗରେ ସହସ୍ରେ ଅସୁରୁଣୀ ।
ଯାଅ ତାଙ୍କୁ ଘେନି ଆସ ତୁମ୍ଭେ ବେଗକରି
ମୋହର ଆଜ୍ଞାରେ ଆସନ୍ତୁ ସେହି ନାରୀ ।
ଶୁଣିକରି ବେନି ମନ୍ତ୍ରୀ ବେଗେ ଚଳିଗଲେ
ତ୍ରିଜଟା ଆଗରେ ଆଜ୍ଞା ଜଣାଇଁଲେ ।
ଶୁଣିକରି ତ୍ରିଜଟା ହରଷ ହୋଇଲା
ସହସ୍ରେ ଅସୁରୀ ସଙ୍ଗେ ଘେନିଣ ଅଇଲା ।
ଅଶୋକ ବନରେ ହେଲେ ପରବେଶ
ରାବଣଙ୍କୁ ଦେଖିକରି ସମସ୍ତେ ହରଷ ।
ରାବଣ ଚରଣରେ ଓଳଗ ମେଲାଇଲେ
କିମ୍ପା ଡକାଇଲେ ବୋଲି ବଚନ ବୋଇଲେ ।
ରାବଣ ବୋଇଲା ତ୍ରିଜଟା ଏବେ ଶୁଣ
ସହସ୍ରେ ଅସୁରୀ ଘେନି ରହ ଏ ବନେଣ ।
ଏ ଜାନକୀ ଅଟଇ ଶ୍ରୀରାମର ନାରୀ
ଏହାଙ୍କୁ ତୁମ୍ଭେମାନେ କହିବ ତିଆରି ।
ଆତ୍ମଘାତକୀ ହୋଇ ନ ମରେ ଯେମନ୍ତେ
ସେ କଥାକୁ ବିବେକ କରିବ ନିଅତେ ।
ସ୍ୱଧର୍ମ କଥା କହି ରକ୍ଷା କରିଥିବ
ଯେମନ୍ତେ ମୋତେ ମଣଇଁ ସେମନ୍ତେ ତିଆରିବ ।
ତ୍ରିଜଟାକୁ ଡାକିଣ କହିଲା ରାବଣ
ବଡ଼ମାତା ଏ ତୁମ୍ଭର ନିଅ ଗୋ ଏବେ ପୁଣ ।
ଶୁଣିକରି ତ୍ରିଜଟା ରଥପରେ ଉଠି
ଜାନକୀଙ୍କ ଚରଣ ତଳେ ଯାଇ ଲୋଟି ।
ସୀତାଙ୍କୁ ବୋଇଲେ ମାତା ରଥରୁ ବେଗେଆସ
ଏହି ରତ୍ନ ମଣ୍ଡପେ ଜଗତୀ ପରେ ବସ ।
ଶୁଣିକରି ଜନକ ଦୁହିତା ବେଗେ ଉଠି
ଧୀରେ ଧୀରେ ଦେବୀ ଯେ ଜଗତୀପରେ ଉଠି ।

ଅଷ୍ଟରତ୍ନ ସିଂହାସନ ଉପରେ ବସିଲେ
ମୁଖପୋତି କପାଳରେ ନେଇ ହସ୍ତଦେଲେ ।
କପାଳରେ କରମାରି କାନ୍ଦନ୍ତି ସୁନ୍ଦରୀ
ଆହା ଲକ୍ଷ୍ମଣବୀର ଆହା ଚାପଧାରୀ ।
ଏହି ସମୟରେ ପବନ କର୍ଣ୍ଣେ କହି
ସମ୍ଭାଳି ରହ ଅସମ୍ଭାଳ ହୁଅନାହିଁ ।
ଶ୍ରୀରାମଚନ୍ଦ୍ର ଆସିଲେ ରାବଣ ଯିବନାଶ
ତୋତେ ଦୁଃଖ ଅଛି ଗୋ ବରଷେ ଦୁଇମାସ ।
ଦେବଙ୍କର କଷ୍ଟକୁ ସାରିବେ ଚାପଧାରୀ
ତୋହର କଷ୍ଟରେ ମରିବ ଦଶଗିରି ।
ବୈଶ୍ୱାନର ମୁଁ ପବନ ରହିଲୁଁ ତୋର ପାଶ
ଅନ୍ୟ କଥାମାନଙ୍କୁ ନକର ତୁ ଆଶ ।
ଏହା କହି ପବନ ଦେବୀଙ୍କି ତୋଷ କଲା
କିଛି ତୁ ନ ବିଚାର ମନରେ କହିଲା ।
ଶୁଣିକରି ଜାନକୀ ହୋଇଲେ ସନ୍ତୋଷ
ବୋଇଲେ ଏ କଥାଟି ଅଟଇଟିକି ସତ ।
ବୈଶ୍ୱାନର ବୋଲରେ ମୁଁ ଏଠାକୁ ଅଇଲି
ଅଗ୍ନିଙ୍କର ପ୍ରତିଜ୍ଞା ପ୍ରତ୍ୟକ୍ଷେ ବୁଝିଲି ।
ରାବଣର କ୍ଷମତା ନୋହିଲା ମୋତେ ଛୁଇଁ
ଅନଳର ତେଜ ମୋ ଦେହରେ ଦେଖିସେହି ।
ଏବେ ତୁମ୍ଭ କଥା ମୋର ମନରେ ରହିଲା
ରାବଣଙ୍କୁ ନିଶ୍ଚେ ମାରିବେ ଦଶରଥ ବଳା ।
ଏମନ୍ତ କୁହାକୁହି ଜାନକୀ ପବନ
ସେହି କଥାକୁ କେହି ନ ଜାଣିଲେ ଆନ ।
ଏଥୁ ଅନନ୍ତରେ ପାର୍ବତୀ ଗୋ ଶୁଣ
ଶାନ୍ତଶୀଳ ହୋଇ ରାମଙ୍କ ନାରୀ ଜାଣ ।
କ୍ରୋଧରେ ଜାନକୀ ରାବଣଙ୍କୁ କହି
ଢୋଲର ଭିତରେ ମୂଷା ପୁରାଇଲୁ ତୁହି ।
ଆରେ ରାବଣ ରାମଙ୍କୁ ଥାଅ ସାବଧାନ
ନିଶ୍ଚେ ତୋ ବଂଶ ନାଶିବେ ଶ୍ରୀରାମ ଲକ୍ଷ୍ମଣ ।
ସପତ ପୁରେ ପଶିଲେ ଖୋଜିଣ ମାରିବେ
ତୁହି ବଞ୍ଚିବାର କଥା ତେଜ୍ୟାକର ଏବେ ।
ପୁତ୍ର, ନାତି, ବନ୍ଧୁଙ୍କୁ ଯେତେ ତୋର
ଆଶ୍ରା ବିଶ୍ରାମରେ ଖୋଜିଣ ଠୁଳକର ।
ସରଦାର ସୈନ୍ୟବଳ ସେନାପତି ଯେତେ
ଏହାଙ୍କୁ ରଖିଥିବୁ ତୋହର ଆୟତେ ।

ହସ୍ତୀ, ଘୋଡ଼ା, ସାରେଣୀ, ପଦାତି, ପଯେକାର
ଏମାନଙ୍କୁ ପୋଷିଣ ତୁ ରଖରେ ଅସୁର ।
ଯେତେକ ରାଣୀହଂସ ଅଛନ୍ତି ତୋହର
ଏମାନଙ୍କୁ ଅନ୍ୟ ନେବେ ହେବ ଅତ୍ୟାଚାର ।
ନିଶ୍ଚୟ ମରିବୁ ତୁ ନ ରଖିବେ କେହି
ସତ୍ୟ ସତ୍ୟ ଏ କଥାଟି କେବେହେଁ ଆନନୋହି ।
ଏପରି ବଚନ କହି ଜାନକୀ ତୁନି ହେଲେ
ଶ୍ରୀରାମ ନାମକୁ ତୁଣ୍ଡରେ ଉଚ୍ଚାରିଲେ ।
ସେ କଥାମାନ ରାବଣ କର୍ଣ୍ଣରେ ଶୁଣିଣ
ଜାନକୀଙ୍କି କହିଲା ମୋ ବଚନ ଶୁଣ ।
ଶ୍ରୀରାମ ତୋହର ସିନା ତୋତେ ଅଟେ ବଡ଼
ଆମ୍ଭର ଆହାର ନର ଯେ ମାଙ୍କଡ଼ ।
ମୋର ନାମ ରାବଣ ମୁଁ ସମସ୍ତଙ୍କୁ ଜିଣଇ
ସମୁଦ୍ର ମଧ୍ୟରେ ଘର କରିଅଛି ପୁଣି ।
ଅଜୟଗଡ଼ ଲଙ୍କା ଅଟଇ ସୁବର୍ଣ୍ଣ
ମୋତେ ଜିଣିବାକୁ ଅଛି କେ ଭାର୍ଜନ ।
ଦେବତାଏ ମୋ ସଙ୍ଗେ ବହୁତ ରଣ କଲେ
ତେର ଯୁଗ ପରିଯନ୍ତେ ମୋ ସଙ୍ଗେ ଲଢ଼ିଲେ ।
ଜିଣି ନ ପାରି ମୋଠାରେ ପଶିଲେ ଶରଣ
ସେଦିନୁଁ ତାଙ୍କର ମୁଁ ହେଲି ନାରାୟଣ ।
ତ୍ରିଦଶ ଦେବତାଙ୍କୁ ପାଦରେ ଖଟାଇଲି
ସେବାକାରୀ ପଣରେ ତାହାଙ୍କୁ ରଖିଲି ।
ବେଦବର ସଦାଶିବ ଅଟନ୍ତି ଜୀବଜାଣ
ଏ କଥାକୁ ନେତ୍ରରେ ଦେଖିବୁ ତୁହି ପୁଣ ।
ନାରାୟଣ ମଲାଜୀବ ଶୋଇଛି ସବୁକାଳେ
ସେଥିର ସକାଶେ ମୁଁ ନଗଲି ତାର ଆଳେ ।
ଶୋଇବା ଲୋକର କି ଅଛଇ ଆଉ ବଳ
ନିଦ୍ରାଗଲା ବେଳରୁ ଘୋଟିଛି ତାକୁ କାଳ ।
ଯେତେକ ଅସୁର ଏ ତିନିପୁରେ ଛନ୍ତି
ସମସ୍ତଙ୍କୁ ଜିଣିଣ ମୁଁ ହୋଇଛି ଚକ୍ରବର୍ତ୍ତୀ ।
ଯେତେକ ରାଜନ ଅଛନ୍ତି ମର୍ତ୍ତ୍ୟପୁର
ଏମାନଙ୍କର ରାଜା ବାଳୀ ସୁଗ୍ରୀବର ।
ସମସ୍ତଙ୍କୁ ଜିଣିଲି ଦିଗବିଜେ ବେଳେ
ଯେତେ ବାନର, ଭାଲୁ ଅଛନ୍ତି ମର୍ତ୍ତ୍ୟରେ ।
ସମସ୍ତଙ୍କୁ ହେଲେ ଯୁଦ୍ଧରେ ଜିଣିଲି
ପାତାଳକୁ ଯାଇ ନାଗରାଜାକୁ ଜୟକଲି ।
ସେ ନାଗରାଜା ମୋତେ ଡରିଅଛି ଜାଣ
ମାସକେ ଲକ୍ଷେଭାର ଦିଏ ସେ ସୁବର୍ଣ୍ଣ ।
ତୁ ବୋଇଲୁ ରାମଚନ୍ଦ୍ର ମୋତେ ସେ ମାରିବ
ରାମ ପରା ମନୁଷ୍ୟ ମୋତେ କି କରିବ ।
ନର, ବାନର, ଦେବତା, ଅସୁର, ନାଗବଳ
ଏମାନେ ମୋତେ ଡରିଥାନ୍ତି ସବୁକାଳ ।
ରାମ ଲକ୍ଷ୍ମଣ ଦି'ଜଣ କି କରିବେ ମୋତେ
ଅଗାଧ ସିନ୍ଧୁ ଜଳ ଡେଇଁବେ କେମନ୍ତେ ।
ବାଇପ୍ରାୟ ହୋଇଣ ତୁ କହୁଅଛୁ କଥା
ରାମ ଲକ୍ଷ୍ମଣଙ୍କୁ କେବେ ନ ଦେଖିବୁ ସୀତା ।
ଅଗାଧ ସାଗର ଯେ ଏଥିରେ ବାଟ ନାହିଁ
ମୋର ପଦେ ଖଟ ତୁ ତେଜ ଦୁଇଭାଇ ।
ଯେବେ ଆସିଣ ଦେହ ନ ଦେବୁ ଗୋ ମୋତେ
ଦିନାକେତେ ରହିଣ ଯିବୁ ଯମପଥେ ।
ଏକଥା ଶୁଣି ଜାନକୀ କ୍ରୋଧେ ଜର ଜର
ବଡ଼ବା ଅନଳ ପ୍ରାୟେ ତେଜହେଲା ଘୋର ।
ତିନିପୁର ଦହିବ କି ଜାନକୀ କ୍ରୋଧ ଅଗ୍ନି
ଅଗ୍ନିଶିଖା ଯେସନେ ଆକାଶକୁ ଲାଗି ।
ସୀତୟା ବୋଇଲେ ଆରେ ଚୋର ତୋ ବଡ଼ଟାଣ
ତୋତେ ମୁଁ ଭସ୍ମୀଭୂତ କରିବି ଏହିକ୍ଷଣ ।
ବାରେ ବା ସମ୍ଭାଳିଲି ପୁରୁଷ ହତ୍ୟା ବୋଲି
ଆଉବେଳେ ଯେବେରେ ବଳାତ୍କାର କରି ।
ସେତେବେଳେ ଏ ଲଙ୍କାକୁ କରିଦେବି ଭସ୍ମ
ପୁତ୍ର ନାତି ସହିତେ ସକଳେ ଯିବେ ନାଶ ।
ଏତେବୋଲି ଜାନକୀ କ୍ରୋଧେ ବିଶ୍ୱମୂର୍ତ୍ତି
ପ୍ରଳୟ ଅଗ୍ନିପ୍ରାୟେ ବିରାଜଇ ଜ୍ୟୋତି ।
ଦେଖିକରି ରାବଣ ମନେ ଭୟ କଲା
ଦେବୀଙ୍କ ଶାପ ଯହୁଁ ରାବଣ ଶୁଣିଲା ।
ତ୍ରିଜଟାକୁ ପାଶକୁ ଡାକିଲା ରାବଣ
ବୋଇଲା ଦୁହିତା ଲୋ ମୋଠାରୁ ଏବେ ଶୁଣ ।
ଶ୍ରୀରାମ ନାରୀକୁ ଶାନ୍ତ କର ତୁ ରହିଣ
ଯେମନ୍ତେ କ୍ରୋଧ ନୁହେଁ ବଇଦେହୀ ପୁଣ ।
ଏତେକହି ଦଶାନନ ନିଜପୁରେ ଗଲା
ଆପଣାର ସିଂହଦ୍ୱାରେ ପ୍ରବେଶ ହୋଇଲା ।
ରଥରୁ ଓହ୍ଲାଇ ସେ ଭିତରେ ପଶିଲା
ପାତ୍ର, ମନ୍ତ୍ରୀ, ସାମନ୍ତ ସବୁକୁ ଡକାଇଲା ।

ବାହାର ଜଗତୀରେ ଯାଇ ବିଜେକରି
ପାତ୍ର, ମନ୍ତ୍ରୀ, ସାମନ୍ତ ଅଇଲେ ଶୁଣିକରି ।
ଆସିଣ ମାନ୍ୟ ଗଉରବ ସେ କରିଲେ
ଦେଖିକରି ରାବଣେଶ୍ୱର ତାଙ୍କୁ ବୋଲେ ।
ସେନାପତିମାନଙ୍କୁ ଅଣାଅ ଯେ ଯାଇ
ଶୁଣିକରି ପାତ୍ରମନ୍ତ୍ରୀ ଚାରଭେଦି ଦେଇ ।
ଚାରମାନେ ଯାଇଣ ସେନାପତିଙ୍କୁ କହି
ସେନାପତିମାନେ ଯେ ଆସିଲେ ବେଗ ହୋଇ ।
ରାବଣର ଛାମୁରେ ମିଳିଲେ ସମସ୍ତେ
ଓଳଗ ମେଲାଇଣ କହିଲେ ଯୋଡ଼ହସ୍ତେ ।
ବୋଇଲେ କି କାର୍ଯ୍ୟରେ ଡାକିଲା ରାଜନ
ରାବଣ ବୋଇଲା ଶୁଣ ମୋ ବଚନ ।
ପଦାତିମାନଙ୍କୁ ଯେ ଯାହାର ସଜକର
ମାଲ ବିନ୍ଧାଣ ବିଦ୍ୟା ସାଧନ୍ତୁ ଅପାର ।
କେତେକାଳୁଁ ମୋହର ଯୁଦ୍ଧ ନାହିଁପୁଣ
ଦେବ ଅସୁର ମୋର ବାଦୀ ବୋଲିଜାଣ ।
ନିଶ୍ଚିନ୍ତ ରହିବାର କିଛି ନୁହେଁ ଭଲ
ଆଖଡ଼ା ସାଧନ କର ହେ ସକଳ ।
ଯୁଦ୍ଧ ହେବା ବେଳକୁ ନ ଥିବ ଆଉ ଦକା
ଯେ ଯାହାର ବିଦ୍ୟା ଶିଖି ହୁଅ ଯେ ନିଃଶଙ୍କା ।
ଶୁଣିକରି ସେନାପତିମାନେ ଚଳିଗଲେ
ଯେ ଯାହାର ପଦାତିଙ୍କି ସଙ୍ଗରେ ଘେନିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ପୁତ୍ର, ନାତିଙ୍କୁ ରାବଣ ଡାକଇ ତଡ଼ତି ।
ବୋଇଲା ତୁମ୍ଭେମାନେ କ୍ଷତ୍ରୀ ବୃତ୍ତିସାଧ
ହେଳା ନ କର ନିଶ୍ଚେ ହୋଇବଟି ଯୁଦ୍ଧ ।
ରାଜାମାନେ ମୋ ସଙ୍ଗେ କରିବେ ରଣଗୋଳ
ଫେରାଇ କହିଲା ବିଶର୍ବାର ବାଳ ।
ଶୁଣିକରି ବନ୍ଧୁଭାଇ କୁଟୁମ୍ବ ଚଳିଗଲେ
ଚାରିକୋଟି ସେନାପତି ଘେନିଣ ସଙ୍ଗରେ ।
ଚାରିଦ୍ୱାର ରଥୀ ଅଇଲେ ମନ୍ତ୍ରୀ ବେନି
ରାବଣ ଦେଖିଣ କହିଲା ତାଙ୍କୁ ପୁଣି ।
ବେଗେ ଘୋଷଣା ଦିଅ ଲଙ୍କା କଟକରେ
ସମସ୍ତେ ଚେତା ଥାଆନ୍ତୁ ଦିବାରଜନୀରେ ।
ଶୁଣିବେନି ମନ୍ତ୍ରୀଦେଶାଉର ଭେଦି
ଧେଣ୍ଡୁରା ଦିଆଇଲେ ନଗର ଗ୍ରାମ କନ୍ଦି ।
ଦେଶାଉର ଡାକ ଦେଲା ସର୍ବଜନେ ଶୁଣ
ଅଚିନ୍ତା ହେତୁ ଛାଡ଼ି ଚିଆଇଁ ରହ ପୁଣ ।
ଆୟ ଦାୟ ପଦାର୍ଥମାନଙ୍କୁ ସମ୍ଭାଳ
ରାତ୍ର ଦିବସରେ ଚେତା ରହିବ ସକଳ ।
ଏମନ୍ତ ବୋଲିଣ ଦେଶାଉର ଦେଲା ଡାକ
ତାଟକା ହୋଇଲେ ଶୁଣି ସର୍ବ ଲୋକ ।
ସମସ୍ତେ ବିଚାରିଲେ ହୋଇବ ଅନର୍ଥ
ସୀତାଙ୍କୁ ଆଣିଣ ଏବେ ଡରିଲା ଦଶମାଥ ।
ସୈନ୍ୟବଳ, ଭାଇବନ୍ଧୁ, ପୁତ୍ରନାତି ଯେତେ
ଚାରିଦ୍ୱାରେ କଟକ ନବର ସହିତେ ।
ସମସ୍ତଙ୍କୁ ଆକଟ କରାଇ ରାବଣ
ନିଶ୍ଚୟ ଲଙ୍କା ଗଡ଼େ ପ୍ରମାଦ ହେବ ଜାଣ ।
ଏହିପରି ବିଚାର ସମସ୍ତେ କରିଲେ
ଆୟ ଦାୟ ରତ୍ନମାନ ଯୋ ଯହା ସମ୍ଭାଳିଲେ ।
ଫେରିକରି ଦେଶାଉର ରାବଣ ଆଗେ କହି
ସମସ୍ତଙ୍କୁ ଚେତାକରି ଅଇଲି ଗୋସାଇଁ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଭାଇ ବିଭୀଷଣକୁ ଡକାଏ ଦଶଗିରି ।
ଦାସୀମାନେ ଯାଇଣ ବିଭୀଷଣକୁ କହି
ରାବଣ ଭାଇ ତୁମ୍ଭର ଡାକନ୍ତି କିମ୍ପାଇଁ ।
ଶୁଣିକରି ବିଭୀଷଣ ବେଗେ ଚଳିଗଲା
ଦଶଗ୍ରୀବ ଆଗରେ ପ୍ରବେଶ ହୋଇଲା ।
ବିଭୀଷଣକୁ ଚାହିଁ ଦଶଗ୍ରୀବ କହି
ସକଳ ଭଣ୍ଡାର ତୁମ୍ଭେ ଆକଟ କର ଯାଇ ।
ଧନରତ୍ନ ଆୟଦାୟ ଯେତେ ମୋର ବିତ୍ତ
କାଣ୍ଡ ଖଣ୍ଡା ଛୁରୀ ଆଦି ଯେତେକ ଯେ ଶସ୍ତ୍ର ।
ହୀରାନୀଳା, ମୋତି, ମାଣିକ୍ୟ, ବଇଦୁର୍ଯ୍ୟ
ସମସ୍ତ ଭଣ୍ଡାର ମାନ ରଖ ହରି ଉଜ ।
ଶୁଣିକରି ବିଭୀଷଣ ବେଗେ ଚଳିଗଲା
ଅଷ୍ଟରତ୍ନ ଭଣ୍ଡାର ମାନ ସାଇତିଲା ।
କୋଲପରେ କଞ୍ଚି ମୋଡ଼ି କଲା ଜଉମୁଦ
ଦଶ ଦଶ ଦାସୀ ଯେ ଜଗାଇ ସଜାଗ ।
ତମ୍ବା, ଖପର, ସିସା, ଲୁହା, ସୁନା, ରୂପା
ପିତ୍ତଳ କଂସା ବାସନ ରଖିଲେ ଅଲଗା ।
ଛୁରୀ, ଖଣ୍ଡା, ଶାବେଳୀ, ଶକ୍ତି ଯେ ଶକତି
ନାନାରୂପେ ଶରମାନ ସାଇତିଲେ ତଥି ।

ଦାଗୁ ଖାନାଦୁଆରିକି କହିଲେ ବିଶେଷି
ଦୁଆର ଜଗିଥିବୁ ହେଳା ନ କରିଟି ।
ସକଳ ଭଣ୍ଡାର ଘର ଦାସୀଙ୍କି ଜଗାଇ
ନିଜପୁରେ ପ୍ରବେଶ ବିଭୀଷଣ ଯାଇ ।
ଏଥୁ ଅନନ୍ତରେ ଶୁଣ ଗୋ ହେଙ୍ଗୁଳା
ସକଳ ତେଜ୍ୟା କରି ବିଶର୍ବାର ବଳା ।
ପାତ୍ର, ମନ୍ତ୍ରୀ, ସାମନ୍ତ ଯେତେକ ସେଥି ଥିଲେ
ସମସ୍ତଙ୍କୁ ନୃପତି ଆଜ୍ଞା ଦେଲା ଭଲେ ।
ବୋଇଲା ତୁମ୍ଭେମାନେ ନିଜପୁରେ ଯାଅ
ଯେ ଯାହା ଶୁଣିବ ଖବର ମୋତେ କହ ।
ଶୁଣିଣ ସମସ୍ତେ ଯେ ଯାହା ପୁରେ ଗଲେ
ଭାଗିଲା ଚହଳ ସକଳେ ଚଳିଲେ ।
ବାହାର ଜଗତିରୁ ଉଠିଲା ରାବଣ
ଭିତର ପୁରକୁ ଚଳିଲା ତକ୍ଷଣ
ଦାସୀମାନେ ଆସିଣ ମଣାଇଁ ଘେନିଗଲେ ।
ଭିତର ଜଗତିରେ ରାବଣ ଯାଇ ମିଳେ ।
ସିଂହାସନ ଉପରେ ବସିଲା ଦଶାନନ
କରଯୋଡ଼ି ଆଗେ ଉଭାହେଲେ ଦାସୀଗଣ ।
ଶୁଣ ଗୋ ଭଗବତୀ ଏମନ୍ତ ସମୟରେ
ରାଣୀ ହଂସମାନେ ଆସି ମିଳିଣ ସେଠାରେ ।
ମନ୍ଦୋଦରୀ ସହିତରେ ସକଳ ସପତଣୀ
ରାବଣକୁ ମାନ୍ୟ ଧର୍ମକଲେ ଆସି ପୁଣି ।
ଦେଖିକରି ଦଶଗ୍ରୀବ ମନ୍ଦେ ମନ୍ଦେ ହସି
ମନ୍ଦୋଦରୀକି ଚାହିଁଣ ବଚନ ପ୍ରକାଶି ।
ଗଲାବେଳେ ମୋତେ ମନା କରୁଥିଲୁ ତୁହି
ବୋଇଲୁ ରାମଙ୍କୁ ଜିଣନ୍ତା କେହି ନାହିଁ ।
ଏବେ ଦେଖ ଶ୍ରୀରାମର ନାରୀକି ଆଣିଲି
ଖର ଦୂଷଣ ତ୍ରିଶିରାର ବୈରୀକି ସାଧିଲି ।
କେବଳ ଭୋଗକରି ନାହିଁ ଯେ ତାହାକୁ
ଭୋଗକଲେ ନାରାୟଣ ଶରୀର ମୋର ବପୁ ।
ଯେତେ ତାକୁ ରତିରଙ୍ଗ କରିବି ମୁହିଁ ଜାଣ
ନିଶ୍ଚୟ ସ୍ୱତୀବ୍ରତ ଭାଙ୍ଗିବ ତାର ପୁଣ ।
ତେବେ ସେ ଶ୍ରୀରାମ ମରିବ ମୋରହସ୍ତେ
ଜମ୍ବୁଦ୍ୱୀପକୁ ଯାଇ ମାରିବେ ତ୍ୱରିତେ ।
ଶୁଣିକରି ମନ୍ଦୋଦରୀ କହଇ ବଚନ
ନିଜ ପୁରେ ତାକୁ କିମ୍ପା ନ ଆଣ ରାଜନ ।

କେଉଁଠାରେ ରଖିଲ ସେ ନାରୀକି ନେଇ
ମିଛ କହୁଅଛ ହେ ମୋ ଆଗେ ଗୋସାଇଁ ।
ଶୁଣିକରି ରାବଣ କହଇ ବଚନ
ତାହାକୁ ରଖିଅଛି ଅଶୋକ ବିପିନ ।
ସେ ବନରେ ସେ ନାରୀ ଥାଉ ଦିନାକେତେ
କ୍ରୋଧ ଶୋକଶାନ୍ତି ହେଲେ ଆଣିବି ନିଶ୍ଚିନ୍ତେ ।
ମନ୍ଦୋଦରୀ ବୋଇଲା ଏ ନୁହଇ ଉଚିତ
ଆଣିଲା ପଦାର୍ଥ କିମ୍ପା ଦେଲ ପରହସ୍ତ ।
ନିଜପୁର ଛାଡ଼ି କିମ୍ପା ବନରେ ତାକୁ ରଖ
ଏକଥା ବିପରୀତ ଲାଗିଲା ଲଙ୍କନାଥ ।
ଦଶଗ୍ରୀବ ବୋଇଲା କଥାଏ ଅଛି ପୁଣ
ସେ ସ୍ତିରୀ ରଜସ୍ୱଳା ହୋଇଛି ଏବେ ଜାଣ ।
ସେଥିର ସକାଶେ ମୁଁ ନବରେ ନ ଆଣିଲି
ବାହାର ସ୍ଥାନରେ ତାହାକୁ ରଖିଲି ।
ପାଞ୍ଚଦିନେ ତାହାକୁ ଶୁଦ୍ଧସ୍ନାନ ହେବ
ଶୁଚିବନ୍ତ ହେଲେ ତା ଦେହ ଶୁଦ୍ଧ ହେବ ।
ସେହିଦିନ ତାକୁ ମୁଁ ନବରେ ଆଣିବି
ହରଷମନେ ତାକୁ ଘେନି ବିହରିବି ।
ସେହି ନାରୀକି ତୁମ୍ଭେ କେହିନୁହ ସରି
ଦେଖିଲେ ମୋହିତ ହେବ ତୁମ୍ଭେ ଗୋ ସୁନ୍ଦରୀ ।
ତାହାର ଅଙ୍ଗକୁ ଯେଉଁ ପୁରୁଷ ଛୁଇଁବ
ଶତେ ଜନ୍ମର ପାତକ ତାର ଅଙ୍ଗୁଯିବ ।
ମନ୍ଦୋଦରୀ ବୋଇଲା ଏକଥା ଅଟେ ସତ
ସାତ ଯୁଗରେ ବିଧାତା କରିଲା ସମ୍ଭୂତ ।
ସକଳ ଚିନ୍ତା ଛାଡ଼ି ସେ ନାରୀକି ଗଢ଼ି
ତେବେ ସେ ପଦ୍ମିନୀ ସୁନ୍ଦର ରୂପଧରି ।
ତୁମ୍ଭର କୃତ୍ୟ ନୁହେଁ ଏ ଦେବତାଙ୍କ କୂଟ
ଏ ଲଙ୍କା ନାଶିବାକୁ ଅଇଲା ସୀତା ତ ।
ମନରେ ହରଷ କି ହୋଇଲା ଲଙ୍କସାଇଁ
କୁଳ ଧର୍ମ ନାଶ ଗଲା ନ ଜାଣିବେ କେହି ।
ଯେଉଁ ବେଦବର ତୁମ୍ଭଙ୍କୁ ବରଦେଲେ
ସେହି ବେଦବର ଏବେ ମାଗିବେ ମନେକଲେ ।
ଆଗେ କୃଷିକାରୀ କୃଷିକି କରେ ଇଚ୍ଛା
ପାଚିଲା ବେଳେ କାଟଇ କରି ମନଇଚ୍ଛା ।
କୃଷିକାରୀ ସଙ୍ଗତରେ ପୁତ୍ରନାତି ନେଇ
ଅସ୍ଥି ରଖି ଫଳକୁ ଝାଡ଼ି ଘେନିଯାଇ ।

ସେହିପରି ବିଧାତା ପାଞ୍ଚିଲା ଏବେ ତୋତେ
କରତ ନେଇ ରଖିଣ ଶ୍ରୀରାମଙ୍କ ହାତେ ।
ତୁମ୍ଭେ ଯେ ତାହାର କୃଷି ହୋଇଥିଲ
ପାଚିଲଣି ଏବେ ସେ କାଟିବେ ହୋଇଗେଲ ।
ପୁତ୍ର, ନାତି, ଭାଇ, ବନ୍ଧୁ, କୁଟୁମ୍ବ ସକଳ
ସମସ୍ତେ ଅଟନ୍ତି ଯେ ଧାତାର କୃଷି ଫଳ ।
ପାଚିଲାର ବେଳକୁ ବିଧାତା ବିଚାରିଲା
ହସ୍ତରେ ନକାଟି ପରହସ୍ତେ କଟାଇଲା ।
ମନ୍ଦୋଦରୀ ବଚନ ଶୁଣି ଦଶାନନ
ଦଶମୁଖେ ହସିଲା କରି ହାସ୍ୟମାନ ।
ଯେତେଯେତେ କଥା ତୁହି କହୁ ମନ୍ଦୋଦରୀ
ସବୁ କଥାମାନ ମୋତେ ଲାଗେ ହତଶିରୀ ।
ଭଲ କଥା ମନକୁ ମୁଁ କରଇ ଯେ ଇଚ୍ଛା
ସେ କଥାମାନକୁ ତୁହି ଭାଙ୍ଗୁ କରି କକ୍ଷା ।
ଶୁଣିକରି ମନ୍ଦୋଦରୀ ମଉନ ହୋଇଲା
ରାବଣକୁ ଆଉ ସେ ସମସ୍ୟା ନ ଦେଲା ।
ଏଥୁ ଅନନ୍ତରେ ଶୁଣ ଗୋ ଦେବୀ ଉମା
ବିଶର୍ବାର ତନୁଜ ହୁଅଇ ମାଜଣା ।
ସୁବାସିତ ଜଳରେ ସ୍ନାହାନ ସେ କଲା
ଅମଳାଣ ପିନ୍ଧିଣ ତିଳକ ସେ କଲା ।
ନିତ୍ୟକର୍ମ ସାରିଣ ଭୁଞ୍ଜିଣ ଲଙ୍କସାଇଁ
ଆଞ୍ଚୋବନ ସାରିଣ ବିଡ଼ିଆ ଲାଗି ହୋଇ ।
ସୁପାତି ପଲଙ୍କରେ ଶୟନ ସେ କଲା
ଶୋଇବାରୁ ମନ୍ଦୋଦରୀ ସେଠାରୁ ଚଳିଗଲା ।
ବିଭୀଷଣ ପାଶରେ ସେ ହେଲା ପରବେଶ
ଦେଖିକରି ବିଭୀଷଣ ହେଲା ହସ ହସ ।
ବୋଇଲା ପାଟରାଣୀ କେଣେ ବିଜେକଲ
ମନତ ମଳିନ ହୋଇଛି ତୁମ୍ଭର ।
ମନ୍ଦୋଦରୀ ବୋଇଲା ଶୁଣ ମୋର ବାଣୀ
ଜାନକୀକି ଆଣିଲା ଯାଇଣ ବିଂଶପାଣି ।
ନବରକୁ ନ ଆଣି ଅଶୋକବନେ ରଖି
ସେ କଥା ମୋର ଆଗେ କହେ ପରଶଂସି ।
ମୁଁ ତାକୁ କହିବାରୁ ହୋଇଲା ବିକୋତି
ସୁଖମଣି ଅଛଇ ସେ ପଉଲସ୍ତି ନାତି ।
ବିଭୀଷଣ ବୋଇଲା ଶୁଣ ମହାଦେଈ
ବରଷକ ପରିଯନ୍ତେ କିଛି ନ କହ ତୁହି ।
ବରଷେ ପୂରିଲେ ଦେଖିବୁ ନେତ୍ରରେ
ଯାହା ହେବ ପଶ୍ଚାତେ କହିବୁ ମୋ ଆଗରେ ।
ଶୁଣିକରି ମନ୍ଦୋଦରୀ କହଇ ବଚନ
ଜନକ ଦୁହିତା କମଳା ଅଟେ ଜାଣ ।
ସେ ନାରୀକି ଲଙ୍କପତି ଝିଙ୍ଗାସ କରିବ
ସେକଥା କେମନ୍ତେ ସମ୍ଭାଳ ହୋଇବ ।
ବିଭୀଷଣ ବୋଇଲେ କରିବା ବିଚାର
କାହାକୁ ଜଗାଇଛି ଲଙ୍କାର ଈଶ୍ୱର ।
ମନ୍ଦୋଦରୀ ବୋଇଲା ସହସ୍ରେ ଅସୁରୀ
ଜଗାଇ ରାବଣ ମନ୍ଦିରେ ଆସେ ଫେରି ।
ତୁମ୍ଭର ଦୁହିତା ତ୍ରିଜଟା ସରଦାର
ଶୁଣିକରି ହରଷ ବିଭୀଷଣ ବୀର ।
ବୋଇଲା ତୁମ୍ଭେ ଯାଇ ନିଶ୍ଚିନ୍ତରେ ରହ
ମୁହିଁ ଶାନ୍ତ କରିବି ନାହିଁଟି ସଂଶୟ ।
ଶୁଣିକରି ମନ୍ଦୋଦରୀ ନିଜ ପୁରେ ଗଲା
ମାଜଣା ସ୍ନାନ ସାରି ନିଶ୍ଚିନ୍ତେ ରହିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସେଠାରୁ ବିଭୀଷଣ ବିଚାରିଲା ମତି ।
ଦାସୀ ଦୁଇଜଣ ପାଶକୁ ଡକାଇଲା
ବିଭୀଷଣ ଗୁପ୍ତକରି ତାହାକୁ କହିଲା ।
ବୋଇଲା ଅଶୋକବନକୁ ତୁମ୍ଭେ ଯିବ
ତ୍ରିଜଟା ଡାକି ମୋ ପାଶକୁ ଆଣିବ ।
ଶୁଣିଣ ବେନି ଦାସୀ ବେଗେ ଚଳିଗଲେ
ଅଶୋକ ବନରେ ସେ ପ୍ରବେଶ ହୋଇଲେ ।
ତ୍ରିଜଟାକୁ ବୋଇଲେ ଶୁଣ ଗୋ ଜେମାଦେଇ
ତୋର ପିତା କହିଛନ୍ତି ଯିବୁ ବେଗ ହୋଇ ।
ଶୁଣିକରି ତ୍ରିଜଟା ହରଷ ହୋଇଲା
ଅସୁରୀମାନଙ୍କୁ ସେ ଡାକିଣ କହିଲା ।
ବୋଇଲା ଏ ନାରୀକି ନ କହିବ କିଛି
କିମ୍ପା ମୋତେ ପିତା ଡାକୁଛନ୍ତି ମୁଁ ଯାଉଛି ।
ଏତେ କହି ତ୍ରିଜଟା ବେଗେ ଚଳିଗଲା
ପିତାର ଛାମୁରେ ଯାଇ ପ୍ରବେଶ ହୋଇଲା ।
ଓଳଗି ମେଲାଇଣ ଯୋଡ଼ି ବେନିକର
କି କାର୍ଯ୍ୟରେ ମୋର ପାଶେ ପେଶିଥିଲ ତାର ।
ବିଭୀଷଣ କହିଲା ତୁ ମୋ କଥା କରିବୁ
ଶ୍ରୀରାମଙ୍କ ନାରୀକୁ ସମ୍ଭାଳି ରଖିଥିବୁ ।

ଚାଟୁଭାଷା କହିଣ କରିବୁ ଶାନ୍ତ ପୁଣ
ଯେ ମନେ ଶୋକ ନ କରେ ଶ୍ରୀରାମ ନାରୀଜାଣ ।
ରାବଣ ଯେବେ ତାକୁ କହିବ ବଳ କରି
ପ୍ରବୋଧ କରିବୁ କହିଣ ଦଶଶିରୀ ।
ଶ୍ରୀରାମଙ୍କ ନାରୀ ଅଟେ ପ୍ରତ୍ୟକ୍ଷେ କମଳା
ବାସୁଦେବ ମୂରତି ଶ୍ରୀରାମଟି ପରା ।
ରାବଣ ମରିବାର କାଳ ଆସି ହେଲା
ତେଣୁକରି ସୀତାଙ୍କୁ ସେ ଚୋରାଇ ଆଣିଲା ।
ସେ ସତୀଙ୍କି ସମ୍ଭାଳିଲେ ବହୁତ କାର୍ଯ୍ୟହୋଇ
ବିଲଙ୍କାରେ ରାଜା ତୋତେ କରିବେଟି ସେହି ।
ବ୍ରହ୍ମ ମୁନିବର ତୋତେ ଦେବେ ବିଭାକରି
ମୋ ଆଗେ କହିଛନ୍ତି ନାରଦ ତପଚାରୀ ।
ଏ ଲଙ୍କାଗଡ଼ରେ ମୁହିଁ ହେବି ରାଜା
ଏ କଥା ମାନ ସତ୍ୟ ଅଟେ ଗୋ ତନୁଜା ।
ଶୁଣିଣ ତ୍ରିଜଟା ଓଳଗି ମେଲାଇଲା
ପିତାଙ୍କୁ କହିଣ ବେଗେ ସେ ଚଳିଗଲା ।
ଅଶୋକ ବନରେ ହୋଇଲା ପରବେଶ
ସୀତାଙ୍କୁ ଦେଖିଣ ସେ ହୋଇଲା ହରଷ ।
ଚରଣ ତଳେ ଓଳଗି ହୋଇଲା ତ୍ରିଜଟା
ବୋଇଲା ଜନନୀ ଗୋ କିମ୍ପାଇଁ କର ଚିନ୍ତା ।
କୌଣସି କଥା ତୁମ୍ଭେ ନବିଚାର ଆନ
ଅଳପ ଦିନରେ ତୁମ୍ଭ କଷ୍ଟ ଯିବ ଜାଣ ।
ଦେଖିବ ଶ୍ରୀରାମଙ୍କୁ ମନେ ନ କରି ଧୋକା
ମାରିବେ ରାବଣକୁ ହୋଇଣ ନିଶଙ୍କା ।
କେବଳ ବରଷେ ଅଛି ତୋତେ କଷ୍ଟ
ମୋହର ଥାନ୍ତେ ତୋତେ କି କରିବ ଦଶମାଥ ।
ଶୁଣିଣ ଜାନକୀ ଯେ ମନରେ ତୋଷହେଲେ
ରାମନାମ ପଦକୁ ତୁଣ୍ଡରେ ଉଚ୍ଚାରିଲେ ।
ପାର୍ବତୀ ପଚାରିଲେ କହ କାଶୀବାସୀ
ଜାନକୀ ରଥର ଉପରେ ଗଲାବସି ।
ଅଗ୍ନିର ପ୍ରତାପରେ ଜାନକୀ ଦେହ ଦ୍ୱରା
ତେଣୁକରି ନ ଛୁଇଁଲା ବିଶର୍ବାର ବଳା ।
ଉପରେ ଜାନକୀ ତଳେ ରହିଲା ରାବଣ
ଶାଢ଼ୀରେ ଅଳଙ୍କାର ବାନ୍ଧିଲା ସତୀ ପୁଣ ।
ରଥପରେ ଜାନକୀ ବସିଥିଲେ ଏକା
ଋଷ୍ୟମୁକପର୍ବତେ ସୁଗ୍ରୀବ ହେଲା ଦେଖା ।
ତାଙ୍କୁ ଦେଖି ଜାନକୀ ଗହଣା ପକାଇଲା
ସୁଗ୍ରୀବର ଆଗରେ ଯାଇ ସେ ପଡ଼ିଲା ।
ଦେଖିକରି ସୁଗ୍ରୀବର ଉପରକୁ ଚାହିଁ
ଦେଖିଲା ରଥପରେ ନାରୀଏ ବସିଛଇଁ ।
ରୋଦନ କରୁଛି ସେ ରାମନାମ ଧରି
ବିଚାରିଲେ ଏ ନାରୀକି ନିଏ କିଏ ଧରି ।
ଏ ସ୍ଥାନୁଁ ଯିବା ଉଚିତ ନୁହଇ ମୋହରି
ଏ କିସ ପଦାର୍ଥକୁ ଛାଡ଼ିବି କିପରି ।
ଏମନ୍ତ ବିଚାରି ସେ ଶାଢ଼ୀକି ଫିଟାଇଲା
ଆୟଅଳଙ୍କାର ମାନ ସେଥିରେ ଦେଖିଲା ।
ବାନ୍ଧିଣ କ୍ରୋଟ ଭିତରେ ରଖିଲା ଯତ୍ନକରି
ବୋଇଲା ଦଶା ଆମ୍ଭଙ୍କୁ ଏଠାରେ କିସକରି ।
ଏମନ୍ତେ କେତେବେଳ ସେଠାରେ ବହିଗଲା
ଶୂନ୍ୟରୁ ଶବଦ ତାହାଙ୍କୁ ଶୁଭିଲା ।
ନାରାୟଣ ବନିତାର ଅଟେ ଏ ଅଳଙ୍କାର
ଯତନରେ ରଖ ତୁରେ ବୀର ସୁଗ୍ରୀବର ।
ସେ ଅଳଙ୍କାର ସକାଶେ ତୋତେ ହେବ ଶୁଭ
ଅଳପ ଦିନେ ତୋତେ କିଷ୍କିନ୍ଧ୍ୟା ଭୋଗହେବ ।
ବାଳିର ମରଣ ଆସି ନିକଟ ହୋଇଲା
ଆଜିଠାରୁ ଅଳ୍ପଦିନେ ମରିବ ବାଳିପରା ।
ତାକୁ ଯେ ମାରିବ ତୋତେ ଦେବ ଏବେଦେଖା
ଏମନ୍ତ ବଚନ ଶୂନ୍ୟରୁ ଶୁଭେ ଏକା ।
ଶୁଣିକରି ସୁଗ୍ରୀବର ହରଷ ହୋଇଲା
ପ୍ରାଣରୁ ଅଧିକ କରି ସେ ଦ୍ରବ୍ୟ ସାଇତିଲା ।
ପାର୍ବତୀ ବୋଇଲେ ଶୁଣ ହେ ପଞ୍ଚାନନ
ଅଶୋକବନରେ ସୀତାଙ୍କୁ ରଖିଲା ଦଶାନନ ।
ରଜସ୍ୱଳା ସ୍ତିରୀ ବୋଲି ନବରେ ନ ନେଲା
ଅଶୋକ ବନରେ ରଖି ନିଜପୁରେ ଗଲା ।
ସେହିଠାରୁ ଜାନକୀ କିସ କଲେ କହ
ସେ କଥା ଶୁଣିବାକୁ ବଳିଛି ମୋର ସ୍ନେହ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଅଶୋକବନରେ ରହିଲେ ସୀତା ସତୀ ।
ସେଠାରୁ ଚାରିଦିନ ପୁଣ ଗଲା ବହି
ମନରେ ବିଚାର କଲେ ବଇଦେହୀ ।
ଦୁଷ୍ଟଦାନବ ଏତ ରାବଣେଶ୍ୱର ପୁଣି
ଦୁଷ୍ଟପଣ ନ କଲେ ନିବର୍ତ୍ତ ନୁହେ ଜାଣି ।

ଏମନ୍ତ ବିଚାରି ମନେ ତ୍ରିଜଟାକୁ କହି
ରାବଣର ପୁରକୁ ବେଗେ ଯାଅ ତୁହି ।
ଦଶଗ୍ରୀବ ଆଗରେ ଯାଇଣ କହିବୁ
ରାମନାରୀ କହିଛନ୍ତି ବୋଲିଣ ବୋଲିବୁ
ବୋଲିବୁ ଜାନକୀଙ୍କୁ ଆଣିଲୁ ତୁ ଏଥ
ରଜସ୍ୱଳା ସ୍ତିରୀ ସେ ଶୁଣିଛୁ କର୍ଣ୍ଣପଥ ।
ଏବେ ତାର କାଲି ଯେ ସୁଦ୍ଧସ୍ନାନା ପାଳି
ସେ ଆସିବ ତୁ ଗଲେ କିହିଛି ମହୀଆଳି ।
ତୋର ରାଣୀହଂସଙ୍କୁ ସକଳ ସଙ୍ଗେ ନେବୁ
ସେ ନାରୀକି ଘେନି ତୋର ପୁରକୁ ଆସିବୁ ।
ତୁହିଗଲେ ସ୍ନାହାନ ସେହି କରିବଟି
ତୋରଠାରେ ସନ୍ତୋଷ ହୁଏ ତା ଚିତ୍ତଟି ।
ବୋଇଲା କେଉଁ କାର୍ଯ୍ୟ ରାମରେ ମୋରଅଛି
ମୋତେ ସେ ସତେ ନେବ କି ଲଙ୍କାପୁରଆସି
ଯେବେ ବିଂଶ ପାଣି ଆଣିଲା ଲୋଭକରି
କରୁ ସେ ଭୋଗ ମୋତେ ହେଉ ସ୍ୱାମୀପରି ।
ଜାନକୀଠାରୁ ତ୍ରିଜଟା ଶୁଣିଣ ବଚନ
ହରଷ ମନେ ଗମନ କଲା ସେ ବହନ ।
ରାବଣର ପୁରରେ ପ୍ରବେଶ ହୋଇଲା
ଦଶଗ୍ରୀବ ଆଗରେ ଓଳଗି ମେଲାଇଲା ।
ରାବଣ ବୋଇଲା ଏ ରଜନୀର କାଳେ
ଜାନକୀଙ୍କି ଛାଡ଼ି କିମ୍ପା ଅଇଲୁ ଏତେବେଳେ
ତ୍ରିଜଟା ବୋଇଲା ହେ ଜନକ ଶୁଣ
ବଇଦେହୀ କଥାଏ କହିଲା ମୋତେ ପୁଣ ।
ବୋଇଲା ରଜସ୍ୱଳା ହୋଇଅଛି ମୁହିଁ
ଶୁଦ୍ଧସ୍ନାନ ପାଳି ମୋର କାଲିତ ଅଟଇ ।
ସ୍ନାହାନ ଶୌଚ ହୋଇ ମୁଁ ତା ପୁରକୁଯିବି
ଅଲଗ ହୋଇ କିମ୍ପା ଏ ବନରେ ଥିବି ।
ରାଣୀଗଣଙ୍କୁ ଘେନି ସେ ମେ ପାଶକୁ ଆସୁ
ରାଣୀ ହଂସ ସଙ୍ଗେ ଥିଲେ କଥା ସେ ନ ବାଛୁ
ଏମନ୍ତ ମୋତେ ସେ କହିଲା ବଚନ
ମୋତେ ସେ ପଠାଇବାରୁ ଆସିଲି ମୁଁ ଜାଣ
ଶୁଣିକରି ଦଶଗ୍ରୀବ ହରଷ ହୋଇଲା
ଏଡ଼େ ଦୁଷ୍ଟ ନାରୀ ସେ କିରୂପେ ଶାନ୍ତହେଲା ।
କହିବୁ ପ୍ରଭାତରୁ ରାଣୀ ହଂସ ଘେନି
ମୁହିଁ ନିଶ୍ଚେ ଯିବି ତୁ ବେଗେ ଯାଅ ପୁଣି ।

ଶୁଣିକରି ତ୍ରିଜଟା ବେଗେ ଫେରିଗଲା
ଅଶୋକ ବନରେ ସେ ପ୍ରବେଶ ହୋଇଲା ।
ସୀତୟାଙ୍କ ଚରଣେ ଓଳଗିଲା ଯାଇ
ଦେଖିକରି ଜାନକୀ ହରଷେ ତାଙ୍କୁ କହି ।
ତୁ ଯାଇ କହିବାରୁ କିସ କହିଲା ପିତା
ତ୍ରିଜଟା ବୋଇଲା କାଲି ଆସିବ ଦଶମଥା ।
ଶୁଣିକରି ସୀତୟା ହରଷ ହୋଇଲେ
ଶ୍ରୀରାମ ନାମ ପଦ ମୁଖେ ଉଚ୍ଚାରିଲେ ।
ଅନିଦ୍ରାରେ ରାମ ନାରୀ ବଞ୍ଚିଲେ ଶର୍ବରୀ
ରଜନୀ ଶେଷହେଲା କୋକିଳ ରାବକରି ।
ପ୍ରଭାତେ ଜାନକୀ ତ୍ରିଜଟାଙ୍କୁ କହି
ଶୁଖିଲା କାଠ ଗୁଡ଼ିଏ ବେଗେ ଆଣ ତୁହିଁ ।
ତ୍ରିଜଟା ବିଚାରିଲା ଏକି ଅନରଥ
ଅନଳରେ ପଶିବକି ରାମନାରୀ ଏଥ ।
ତ୍ରିଜଟା ବିଚାରିଲା କହ ଗୋ ଠାକୁରାଣୀ
ଶୁଖିଲା କାଠ କିସ କରିବ ଗୋ ପୁଣି ।
ରାମଙ୍କୁ ନ ଦେଖି ତୁ ଛାଡ଼ିବୁ କି ଦେହୀ
ଦେବଙ୍କର କାର୍ଯ୍ୟ ତ କିଛି ହେବ ନାହିଁ ।
ଯେବେ ତୁ ନିଶ୍ଚୟେ ହୋଇଥିବୁ ବଡ଼
ମୋର ବୋଲ କର ଗୋ ପଥକୁ ନ ହୁଡ଼ ।
ଜାନକୀ ବୋଇଲେ ଯେବେ ମୁଁ ମରି ଥାଆନ୍ତି
ଏତେ ଦୂର ଲଙ୍କାକୁ କିମ୍ପାଇ ଆସିଥାନ୍ତି ।
ପିତାର କଥାକୁ ମନରେ ହେଜ ଏବେ
ସେ କଥାକୁ ପାଶୋର ନକର ତୁ ଲବେ ।
ଶୁଣିକରି ତ୍ରିଜଟା ସନ୍ତୋଷ ହୋଇଲା
ତୋଟଳିଆଙ୍କୁ ରାଇ ବେଗେ ଆଜ୍ଞାଦେଲା ।
ଆଜ୍ଞାପାଇ ତୋଟଳିଆ କାଠ ବୋହି ଆଣି
ଏକସ୍ଥାନେ ଗଦାକରି ଦେଇଗଲେ ପୁଣି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ତ୍ରିଜଟାଠାରୁ ଯହୁଁ ଶୁଣିଲା ଦଶଶିରୀ ।
ହରଷରେ ସକଳ ରାଣୀଙ୍କି ଡକାଇଲା
ସମସ୍ତେ ସଜବାଜ ହୁଅ ଗୋ ବୋଇଲା ।
ବେଗେ ବେଶହୁଅ ଯିବା ଅଶୋକ ବନକୁ
ଜାନକୀ ଆସିବ ପରା ଆମ୍ଭ ନବରକୁ ।
ଶୁଦ୍ଧସ୍ନାନ ଆଜି ସେ ସାରିବ ଯେ ଜାଣ
ମୋର ସଙ୍ଗେ ଆସିବ ଯୁବତୀ ରତନ ।

ଆଜ୍ଞା ପାଇ ରାଣୀ ହଂସ ବେଗେ ବେଶହେଲେ
ଯେ ଯାହା ବସନ ଭୂଷଣ ପିନ୍ଧିଲେ ।
ହୀରା, ମାଣିକା, ଚୂଡ଼ି ସମସ୍ତଙ୍କ ହସ୍ତେ
ତାଡ଼ବିଦା, ବାଜୁବନ୍ଧ, ପାହୁଡ଼ ସହିତେ ।
ବାହୁଟି ନୂପୁର ଝୁଣ୍ଟିଆବଳୀ ପୁଣ
ବକ୍ଷସ୍ଥଳେ କାଞ୍ଚୁଲା ଦିଶେ ଶୋଭାବନ ।
ଗଳାରେ ଝପସରି ପଦକ ହାର ମାନ
ନାସାରେ ରତ୍ନଗୁଣା ଶୋଭାସିନ୍ଧୁ ଫଳ ।
କର୍ଣ୍ଣରେ ମଲ୍ଲୀକଢ଼ୀ ଝଲକ ଫାଶିଅ
ତଳକୁ ସୁନ୍ଦର ଦିଶେ ପଗଡ଼ି ବଳିଆ ।
ମସ୍ତକରେ ଅଳକା ମଥାମଣି ସାଜେ
ନୟନରେ କଜ୍ଜ୍ୱଳ ସିନ୍ଦୂର ବିରାଜ ।
ଜୂଡ଼ାମାନ ବାନ୍ଧିଲେ ନାନାପୁଷ୍ପ ଘେନି
ଅମଳାଣ ଶାଢ଼ୀ ସେ ପିନ୍ଧିଲେ ଭଳି ଭଳି ।
ଯାଇଣ ସେ ଯାହା ଯାନ ଉପରେ ବସିଲେ
ରାବଣର ଆଜ୍ଞାରେ ଅଶୋକବନେ ଗଲେ ।
ତିନିକୋଟି ପଞ୍ଚାଶ ସହସ୍ର ରାଣୀ ତାର
ଦାସୀଗଣ ଘେନି ସର୍ବେ ହୋଇଲେ ବାହାର ।
ଅଶୋକ ବନରେ ବେଗେ ପରବେଶ ହେଲେ
ଜଗତି ପରେ ସୀତା ବସିଛି ଦେଖିଲେ ।
ନିର୍ଧୂମ ଅଗ୍ନିପ୍ରାୟେ ଶରୀର ତାର ଦିଶେ
ସତୀ ତେଜରେ ଜଗତ ଦହି ପାରଇ ସେ ।
ଶୋଭାପଣେ ତ୍ରିଭୁବନେ ନାହାନ୍ତି କେ ସରି
ଦେଖିଣ ରାଣୀହଂସ ମନରେ ବିଚାରି ।
କେତେକାଳ ବସି ଧାତା ଗଢ଼ିଲା ଏ ନାରୀ
ଏ ସୁନ୍ଦର ରୂପ ଦେଖା ନଥିଲା ତା ପୁରୀ ।
ଏମନ୍ତ ବିଚାରିଣ ରାବଣ ନାରୀମାନେ
ବସିଲେ ଆବୋରି ଯୂଣକ ଆୟତନେ ।
ମଧ୍ୟରେ ଜାନକୀ ଚନ୍ଦ୍ରମାପଲ ଦିଶି
ରାବଣର ନାରୀମାନେ ତାରଗଣ ସେଥି ।
ଏଥୁଅନନ୍ତରେ କଥା ଶୁଣ ଗୋ ଗଉରୀ
ମନ୍ଦୋଦରୀକି ସଙ୍ଗେ ଘେନି ଅଇଲା ଦଶଶିରୀ
ପୁଷ୍ପକ ରଥରେ ବସି ଅଇଲେ ବେନିପ୍ରାଣୀ
ରାବଣର କୋଳେ ବସି ମନ୍ଦୋଦରୀ ରାଣୀ ।
ଅଶୋକ ବନରେ ସେ ହୋଇଲେ ଉପସ୍ଥିତ
ଦେଖିଲେ ଜଗତିପରେ ଜନକ ଦୁହିତ ।

ଦେଖିଣ ରାବଣ ଯେ ପରମ ତୋଷ ହେଲା
ଆଜି ଏ ସୁନ୍ଦରୀ ମୋତେ କରିବଟି ଭଲା ।
ମନ୍ଦୋଦରୀ ଦେଖିଣ ହେଲା ଆଚମ୍ବିତ
ମନରେ ବିଚାରିଲା ନାରଦ କଥା ସତ ।
ନିଶ୍ଚେ ଲଙ୍କାଗଡ଼କୁ ସାରିବ ସତୀ
ନିର୍ଧୂମ ଅଗ୍ନିପ୍ରାୟ ବିରାଜେ ଯାର ଜ୍ୟୋତି ।
ନାରୀ କୋପାନଳରେ ଏ ରାଜ୍ୟ ଭସ୍ମହେବ
ନିଶ୍ଚେ ପୁତ୍ରନାତିଗଣ ସଭିଙ୍କି ଖାଇବ ।
ଏମନ୍ତ ବିଚାରି ମନେ ମୟଦୈତ୍ୟ ସୁତା
ଦେଖି ସୀତାଙ୍କ ରୂପକୁ ମନେ କଲା ଚିନ୍ତା ।
ବୋଇଲା କମଳା ଏ ଶ୍ରୀହରି ଘରଣୀ
ଅସୁରକୁ ମାରିବାକୁ ଅଇଲା ଏଥେ ପୁଣି ।
ଏମନ୍ତ ବିଚାରି ମନେ ରାବଣର ପାଟରାଣୀ
କରଯୋଡ଼ି ଜାନକୀଙ୍କି ସ୍ତୁତିବାକ୍ୟ ଭଣି ।
ଜୟ ଜୟ ନାରାୟଣୀ ଜନକ ଦୁହିତା
ଜୟ ଜୟ ଶ୍ରୀରାମର ଅଟୁ ତୁ ବନିତା ।
ଜୟ ଜୟ ଜାନକୀ ଗୋ ଦଶରଥ ବୋହୂ
ଜୟ ଜୟ ଜାନକୀ ଗୋ ଦୟା ତୋର ଆଉ ।
ତୋର ସଞ୍ଚଳାର ଅଟେ ସପ୍ତପୁର
ଏବେ ଦୁଷ୍ଟ ନାଶିବାକୁ ହେଲୁ ଅବତାର ।
ତୋହର ସୁବୁଦ୍ଧି ପଣ ଅଟଇ ଯେ ଏହୁ
ମାର ଦୁଷ୍ଟ ଜନଙ୍କୁ ପ୍ରତିଜ୍ଞା ଏବେ ରହୁ ।
ଏମନ୍ତ ବୋଲି ମନରେ ବହୁ ସ୍ତୁତି କଲା
ତୋର ଦର୍ଶନ ପାଇ ପାତକ ମୋର ଗଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାବଣ ମନ୍ଦୋଦରୀ ରଥରୁ ଓହ୍ଲାନ୍ତି ।
ରାଣୀଙ୍କର ସଙ୍ଗରେ ମିଶିଲା ମନ୍ଦୋଦରୀ
ଦଶଗ୍ରୀବ ଓହ୍ଲାଇ ସେଠାରେ ବିଜେକରି ।
ଦେଖିଣ ଜାନକୀ ଯେ ସେଠାରେ ଉଠିଲେ
ଶୁଣ ତୁ ଦଶଗ୍ରୀବ ବୋଲିଣ ବୋଇଲେ ।
ତୋହର ଦୋଷୀ ଆମ୍ଭେ ନୋହୁ ବିଂଶପାଣି
ଶ୍ରୀରାମ ସଙ୍ଗରେ ତୁ ଭଗାରି ହେଲୁ ଜାଣି ।
ଚତୁର୍ଦ୍ଧା ମୂରତି ଧରି ଜନମ ବାସୁଦେବ
ନିଶ୍ଚୟ ମରିବେ ତୋତେ ଛାଡ଼ିଲା ଦଇବ ।
ମୋତେ ଏଥକୁ ଆଣିବା ନୁହେଁ ତୋର ସ୍ୱାର୍ଥ
ଏ ଲଙ୍କା ଗଡ଼କୁ ମୁହିଁ ଶଙ୍କୁନୀ ହୋଇଲି ତ ।

ଭାଇବନ୍ଧୁ, କୁଟୁମ୍ବ, ଭଣଜା, ନାତି, ଜ୍ୱାଇଁ
ପୁତ୍ରପୁତୁରା, ସୈନ୍ୟ ନ ରହିବେ କେହି ।
ତୋହର ଏ ଯେତେ ରାଣି ଆସିଛନ୍ତି ସଙ୍ଗେ
ଏମାନଙ୍କୁ ଆନ ନେବ ଶୁଣିଥାଅ ଏବେ ।
ଏତେ ବୋଲି ଜାନକୀ ଜଗତିପରୁ ଖସି
ତଳକୁ ବିଜୟ କଲେ ଶଶୀହାସୀ ।
ରାବଣ ବୋଇଲା କେଣେ ଯାଉଛୁ ବଇଦେହୀ
ସମୁଦ୍ର ମଝି ଏହି ଯିବାକୁ ବାଟ ନାହିଁ ।
ସୀତୟା ବୋଲେ ମୁଁ କରିବି ଶୁଦ୍ଧସ୍ନାନ
ତେବେ ସିନା ତୋତେ ମୁଁ ଭଜିବି ଆସିଣ ।
ସ୍ନାନ ଶଉଚ ମୋର ଦେଖ ଏବେ ରହି
ଏତେ କହିଣ ସୀତା କାଷ୍ଠପାଶକୁ ଯାଇ ।
ସେ ଶୁଷ୍କ କାଷ୍ଠରେ ଦେବୀ ଅଙ୍ଗୁଠିଲଗାଇଲେ
ଅଙ୍ଗୁଠି ଲାଗନ୍ତେ ଅଗ୍ନି ଜଳିଣ ଉଠିଲେ ।
ଦେଖୁ ଦେଖୁ ଜାନକୀ ପଶିଲେ ଅନଳେ
ହାହାକାର କଲେ ଲଙ୍କା ଅସୁରୀ ସକଳେ ।
ମନ୍ଦୋଦରୀ ବିଚାରିଲା ପ୍ରଥମେ ହେଲା ମନ୍ଦ
ରାମ ନାରୀ ଆମ୍ଭଙ୍କୁ କରିଗଲେ ଛନ୍ଦ ।
ରାବଣ ବିଚାରିଲା ରାମରେ ହେଲି ଦୋଷୀ
ଲଭି ମୁଁ ନ ପାରିଲି ଜାନାକୀ ଗଲା ଖସି ।
ଅଗ୍ନିରେ ପଶିଣ ହେଲା ଏବେ ଭସ୍ମ
ସବୁ ବୁଦ୍ଧିବଳ ଏବେ ହୋଇଲା ମୋର ଧ୍ୱଂସ
ଏମନ୍ତ ବିଚାର ମନେ ଦଶାନନ କଲା
ଆଗରୁ ଶାପ ଜନକ ଦୁହିତା ମୋତେ ଦେଲା
ସେ ଶାପତ ମୋତେ ହେବେ ପରାପତ
ନିଶ୍ଚୟ ଶ୍ରୀରାମ ଯେ ହେଲା ଭଗାରିତ ।
ଏମନ୍ତ ବିଚାର ଯେ କଲା ବିଂଶପାଣି
ଏଥିରେ ଦୁଇଘଡ଼ି ବହିଗଲା ପୁଣି ।
ଦୋହରନଲୁଁ ସୀତା ହୋଇଲେ ବାହାର
ଦାବାନଳ ଅଗ୍ନିପ୍ରାୟେ ତେଜଟି ତାଙ୍କର ।
ତେଜ ଦେଖି ରାବଣ ବୁଜିଲା ବିଂଶଆଖି
ସମସ୍ତ ରାଣୀ ହଂସ ମହୀ ତଳେ ଲୋଟି ।
ଦୋହରାକୁ ଜାନକୀ ନମସ୍କାର କଲେ
ସେଠାରୁ ଧୀରେ ଧୀରେ ମୈଥିଳୀ ଚଳିଗଲେ
ପଞ୍ଚରତ୍ନା ଜଗତି ଉପରକୁ ଉଠି
ସିଂହାସନ ଉପରେ ବସିଲେ ବିମ୍ବୋଷ୍ଠୀ ।

ଯେତେକ ଅସୁରୁଣୀ ଜଗତିପରେ ଥିଲେ
ସୀତାଙ୍କର ତେଜରେ ସେ ତଳକୁ ଖସିଲେ ।
ତ୍ରିଜଟା ହିଁ ତଳରେ ଉଭା ହେଲା ଯାଇ
ଜାନକୀର ତେଜେ କେହି ନ ପାରିଲେ ରହି
ରାବଣର ନାରୀମାନେ ମୋହରେ ପଡ଼ିଥିଲେ
ଚେତାପାଇ ସକଳେ ଉଠିଣ ବସିଲେ ।
ରାବଣ ନୟନକୁ ବୁଜିଣ ବସିଥିଲା
ବିଂଶ ନୟନ ଫେଡ଼ି ସୀତାଙ୍କୁ ଗ୍ଭହିଁଲା ।
ସୀତା ବୋଇଲେ ଏଠାରୁ ପଳାରେ ଅସୁର
ଦେଖିଲୁ ତ ଅଗ୍ନିରେ ସ୍ନାହାନ ମୋହର ।
ଏମନ୍ତ ବଚନ କହି ଜାନକୀ ହେଲେ କ୍ରୋଧ
ଦେହ ତାଙ୍କର ଦିଶିଲା ଦାବାନଳ ତେଜ ।
ମୁଖ ଶ୍ରବଣ ଶରୀର ଲୁଚିଲା ତାଙ୍କର
ଅଗ୍ନି ଜଳିଲା ପ୍ରାୟ ଦିଶିଲା ଶରୀର ।
ବାରିଣ ନୋହିଲା ଜାନକୀ ଏହି ବୋଲି
ସର୍ବେ ବିଚାରିଲେ ଦାବାନଳ ନାରୀ ।
ଯେ ଯାହା ବାହାନରେ ରାବଣ ନାରୀ ଗଲେ
ସୀତାଙ୍କ ରୂପ ଦେଖି ସେଠାରୁ ଚଳିଗଲେ ।
ମନ୍ଦୋଦରୀ ପକାଇଲା ଦେଖିଣ ଚେରଷ୍ଟା
ବିଚାରିଲେ ନାରଦ କହିଲେ ମୋତେ ନିଷ୍ଠା ।
ରାବଣ ସେଠାରେ ରହିଣ ଦେଖୁଥିଲା
ଜାନକୀ ଅଗ୍ନି ହେବାରୁ ରଥରେ ବସିଲା ।
ବିଚାରିଲେ ଏ ନାରୀ ଯେ ନୁହେମୋତେ ଯୋଗ
ତିନିପୁର ମଧରେ ମୁଁ ପାଇଲି ବଡ଼ ଲାଜ
ବଳାତ୍କାର ପଣ କଲେ ଦେବି ମୁହିଁ ଭସ୍ମ
ଏହାର ହେତୁ ମାରିବ ଦଶରଥ ଶିଷ୍ୟ ।
ଏତେ ଭାବି ରାବଣ ସେଠାରୁ ପଳାଇଲା
ଆପାଣ ମନ୍ଦିରରେ ପ୍ରବେଶ ହୋଇଲା ।
ମାଜଣା ମଣୋହିଁ କରି ବିଡ଼ିଆ ଭୁଞ୍ଜିଲା
ରତ୍ନପଲଙ୍କ ଉପରେ ଯାଇଣ ପହୁଡ଼ିଲା ।
ରାଣୀ ହଂସମାନେ ସର୍ବେ ମିଳି ଅନ୍ତଃପୁରେ
ସ୍ନାହାନ ସାରିଣ ଭୁଞ୍ଜିଲେ ସତ୍ୱରେ ।
ଜାନକୀର କଥାମାନ ହୁଅନ୍ତି କୁହା କୁହି
ସାକ୍ଷାତ ସେ ବଇଦେହୀ ଅନଳ ଅଟଇ ।
ମନ୍ଦୋଦରୀ ବିଚାରଇ ନୀରଦ କଥା ସତ
ରାମନାରୀ କି ଦେଖିଲି ସକ୍ଷାତ ଅନଳ ତ ।

ରାବଣର ଆଶା ଏବେ ମନରୁ ତୁଟିଲା
ସାନୁଜ ବିଭୀଷଣ ଆସ୍ତର ପ୍ରଭୁ ହେଲା ।
ଏଥୁ ଅନନ୍ତରେ ଭଗବତୀ ଶୁଣ
ମନରେ ବିଚ୍ଚର କଲାକ ରାବଣ ।
ଜନକୀ କି ଆଣିଲି ଚୁମ୍ବିବି ବୋଲି କରି
ବଡ଼ରୋଗ ମୋତେ ସେ ହେଲା ରାମନାରୀ ।
ଦେଖିବାକୁ ଅନଳ ଛୁଇଁବାକୁ ନାହିଁ ବଳ
ଏ ନାରୀ ମୋର ବଂଶକୁ କରିବ ନିର୍ମୂଳ ।
ଫେରିଦେଲେ ତିନିପୁରେ ମୋତେ ହେବଲଜ୍ୟା
ରଖିଣ ସେ ନାରୀ କି ମନରୁ କଲି ତେଜ୍ୟା ।
ଜାନକୀ ଜାନକୀ ନିଶ୍ଚେ ଏହି ହୀରା
ଅଗ୍ନିରେ ସ୍ନାନ କଲା ଦେଖିଲି ମୁଁ ପରା ।
ଆଉ ଏହି ବନେ ସେ ନ ଦେବି ଯେ ଫେରି
ଶ୍ରୀରାମ ଆସିଣ କେମନ୍ତେ ମୋତେ ମାରି ।
ରଣକରି ମରିଲେ ନୁହେଁ ଲୋକ ଲଜ୍ୟା
ବୋଲିବେ ରାବଣ କ୍ଷତ୍ରୀୟରେ ଅଟେ ରାଜା ।
ଏ କଥାକୁ ରାବଣ ମନରେ ବିଚ୍ଚରିଲା
କାହାକୁ ନ କହି ଏ କଥା ମନରେ ରଖିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶକମ୍ବରୀ
ମନ୍ଦୋଦରୀ ଚଳିଲା ବିଭୀଷଣ ପୁରୀ ।
ବିଭୀଷଣକୁ ସକଳ ବୁଝାଇ କହିଲା
ଜାନକୀ ଅଗ୍ନିରେ ସ୍ନାହାନ ଆଜ କଲା ।
ଶୁଣିକରି ବିଭୀଷଣ ବୋଲଇ ବଚନ
ଜାଣିଲୁ ତ ପାଟରାଣୀ ରହ ସମ୍ଭାଳିଣ ।
ମନ୍ଦୋଦରୀ ଶୁଣି କରି ହରଷ ହୋଇଲା
ବିଭୀଷଣ ସଙ୍ଗରେ ରତିରଙ୍ଗ କଲା ।
ରମଣ ଭାବ ପାଇ ମନ୍ଦୋଦରୀ ତୋଷ
ହାସ୍ୟରସ କଉତୁକ ହୋଇଲା ବିଶେଷ ।
ସେଠାରୁ ମନ୍ଦୋଦରୀ ନିଜପୁରେ ଆସି
ସପତଣୀମାନଙ୍କୁ ବୋଇଲା ଆଶ୍ୱାସି ।
ବୋଇଲା ନେତ୍ରେ ଦେଖିଲ ଜାନକୀର ରୂପ
ଦଶଗ୍ରୀବ ମରିବାର ହୋଇଲା ନିଅତ ।
ଜାନକୀ ଯେ ଲଙ୍କରେ ହୋଇଲା ଶଙ୍କୁନି
ଏ ପୁରକୁ ବଡ଼ ବ୍ୟାଧି ରାମନାରୀ ପୁଣି ।
ଯେ ଯାହାର ଇଚ୍ଛାରେ ମନ କରି ରହ
ଦିଅର ସଙ୍ଗରେ ଯାଇ ପୀରତି ବଢ଼ାଅ ।
ଏତେ ବୋଲି ମନ୍ଦୋଦରୀ ନିବର୍ତ୍ତ ହୋଇ ରହି
ଯାହା ପଚ୍ଚରିଲ ଶୁଣିଲ ତାହା ସହୀ ।
ପାର୍ବତୀ ପଚ୍ଚରିଲେ ଶୁଣ ବିଶ୍ୱନାଥ
ସେଠାରେ କଥା ପୁଣ ହୋଇଲା କେମନ୍ତ ।
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ
ଜାନକୀ କ୍ରୋଧରେ ଅଗ୍ନି ରୂପ ଧରି ।
ଅନଳ ଭିତରେ ପଶନ୍ତେ ଦେଖିଲେ
ଦଶଗ୍ରୀବ ରାଣୀହଂସ ସହିତେ ପଳାଇଲେ ।
ଅଗ୍ନିରୁ ଯାଇ ଜାନକୀ ଜଗତିପରେ ବସି
ଅସୁରୀମାନେ ପାଶରେ କେହି ନ ଭରସି ।
ସହସ୍ରେ ଅସୁରୀ ଘେନି ତ୍ରିଜଟା ତଳେ ରହି
ଏମନ୍ତେ ଦୁଇଦିନ ଗଲା ତହିଁ ବହି ।
ଲଙ୍କା ଗଡ଼ରେ ପୁଣି ପଡ଼ିଲା ଚହଳ
ଯେଉଁ ନାରୀ ଅଣିଥିଲା ଦଉକେଶାବାଳ ।
ସେ ନାରୀ ଏବେ ପୁଣି ଅଗ୍ନିରେ ସ୍ନାନକଲା
ରାବଣକୁ ଦେଖିଣ ଦାବାନଳ ହେଲା ।
ରାଣୀହଂସ ରାବଣର ଯାଇଥିଲେ ସଙ୍ଗେ
ଜାନକୀ ରୂପ ଦେଖି ଭିଡ଼ି କଲେ ସର୍ବେ ।
କେହି ସେ ରାମନାରୀ ନିକଟେ ନ ରହିଲେ
ଜଗିବା ଲୋକମାନେ ଅଲଗା ହୋଇଗଲେ ।
ଚ୍ଚଲ ଆମ୍ଭେମାନେ ଦେଖିବା ତାହାକୁ
ମନୁଷ୍ୟ ଜନ୍ମ ହୋଇ କେ ଅଗ୍ନିରେ ପଶିବାକୁ ।
ଚମତ୍କାର ଦେଖିବାକୁ ଧାଇଁଲେ ସମସ୍ତେ
ଯାନବାହନ ଚଢ଼ି ଅଶୋକ ବନସ୍ତେ ।
ଯେସନେକ ପୁରୁଷୋତ୍ତମରେ ଜଗନ୍ନାଥ
ଯେତେବେଳେ ବିଜେ କରନ୍ତି ନନ୍ଦିଘୋଷରଥ ।
ବଡ଼ଦାଣ୍ଡେ ଗୋଟିକରେ ସାଜେଣୀ ରଥପରେ
ବଳରାମ ସୁଭଦ୍ରାଙ୍କୁ ଘେନିଣ ସଙ୍ଗତରେ ।
ଲୀଳାକରିବା ନିମନ୍ତେ ଯାଆନ୍ତି ଶ୍ରୀହରି
ସେତେବେଳେ ରାଜ୍ୟଲୋକ ଦେଖନ୍ତି ଯେଉଁପରି ।
ସେହିପରି ଲଙ୍କାଲୋକେ ଅଶୋକବନେ ଯାଇ
ଜଗତି ଉପରେ ସେ ଦେଖିଲେ ବଇଦେହୀ ।
କୋଟି ସୂର୍ଯ୍ୟର ରୂପ ହୋଇଛି ରାମନାରୀ
ଦେଖିଣ ଅସୁରୁଣୀ ଅସୁର ବିଚ୍ଚରି ।
ଏ ତ ନୁହଇ ନର ଦେବତା ଅଟେ ଜାଣ
ଜୟାଦୁର୍ଗା ବିଜେ କି ଏ ଲଙ୍କା ଭୁବନ ।

ଆଗେ ଶିବ ଘରଣୀ ମଂସାକୁ ନାଶକଲା
ଏବେ ତ ଏପୁରରେ ଆସିଣ ମିଳିଲା ।
କେ ବୋଲଇ ଶିବର ଘରଣୀ ଏ ନୁହେ
ବାସୁଦେବ ଘରଣୀ କମଳା ଅଟଇ ଏ ।
କେ ବୋଲଇ ରାବଣ ମନ୍ଦକର୍ମ କଲା
ଦେଖୁ ଦେଖୁ ଏହାକୁ କେମନ୍ତେ ଆଣିଲା ।
କେ ବୋଲେ ଏ ଆସିଛି ଅସୁର ନାଶିବାକୁ ।
ଦେବତାଏ ଭେଦି ଦେଲେ ଏଲଙ୍କା ଗଡ଼କୁ ।
ଏପରି କଥା ହୁଅନ୍ତି ଅସୁର ଅସୁରୀ
ଅଶୋକବନ ଯାକ ପୂରିଲେ ଯାଇ କରି ।
ଯିବା ଲୋକ ଯାଆନ୍ତି ଆସିବା ଆସନ୍ତି
ରୂପକୁ ଦେଖି ସର୍ବେ ସନ୍ତୋଷ ହୁଅନ୍ତି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଅସୁର ଅସୁରୁଣୀ ଦେଖିଗଲେ ଫେରି ।
ଭିତରେ ସୁଶୀତଳ ପବନ କରେ ଶାନ୍ତି
ଉପରେ ବୈଶ୍ୱନର ଦେବ କାଶୁଛନ୍ତି ।
ପାର୍ବତୀ ବୋଇଲେ କଥାତ ହେଲା ଛନ୍ଦ
ସୀତାଙ୍କର ଲଙ୍କାରେ କି ଆହାର ହେଲା ବନ୍ଦ ।
ଈଶ୍ୱର ବୋଇଲେ ସେ କଥାରେ ପ୍ରଜ୍ୱଳି
ତେଣୁ ସେ ନିରାହାରେ ରହିଲେ ମଇଥିଳୀ ।
ପକ୍ଷେକ ପରିଯନ୍ତେ ରହିଲେ ଉପବାସୀ
ରାମନାମ ପଦ ଯେ ତୁଣ୍ଡରେ ସେହି ଘୋଷି ।
ଏତେଦିନ ଉତ୍ତାରୁ ପବନ ଜଣାଇଁ
ଆହାର ନ କରି କିମ୍ପା ଉପବାସେ ରହି ।
ସୀତ ବୋଇଲେ ରାମ ଲକ୍ଷ୍ମଣଙ୍କୁ ଦେଖିଲେ ।
ମୁଁ ଆହାର କରିବି କହିଲିଟି ଭଲେ ।
ପବନ ବୋଇଲା ଯେବେ ଆହାର ନ କରିବୁ
ଦେବତାଙ୍କ ଭଣ୍ଡାରୁ ଅମୃତ ଆଣି ଦେବୁ ।
ହେଉ ବୋଲି ଜାନାକୀ କହିଲେ। ପବନକୁ
ଶୁଣିକରି ପବନ ଚଳିଲେ ସ୍ୱର୍ଗକୁ ।
ଦେବଙ୍କର ଭଣ୍ଡାରୁ ଅମୃତ ଆଣିଦେଲେ
ଗୁପତରେ ଜାନକୀ ଅମୃତ ପାନ କଲେ ।
ପନ୍ଦର ଦିନରେ ହୋନ୍ତି ରଜସ୍ୱଳା
ଅଗ୍ନିରେ ସ୍ନାହାନ କରନ୍ତି ଅବଳା ।
ଏହିରୂପେ ଅଶୋକବନେ ଦେବୀ ରହି
ପ୍ରତିଦିନ ତ୍ରିଜଟା ବୋଧ କରି କହି ।

କେବେହେଁ ଆହାର ନ କଲେ ରାମନାରୀ
ଅଲଗା ଦିନରେ ନଦୀରେ ସ୍ନାନକରି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକାମ୍ବରୀ
ଇନ୍ଦ୍ରଙ୍କୁ ଗହିଁଣା ବୋଇଲେ କୁଶଧାରୀ ।
ଅଶୋକବନେ ସୀତାଙ୍କୁ ରଖିଲା ଲଙ୍କାମଣି
ଆମ୍ଭ ହେତୁରୁ ଦୁଃଖ ଭୋଗିଲେ କମଳିନୀ ।
ନପୁଣ ମହାସ୍ୱତୀ ମନରେ ପାଏ ପ୍ରାସ
ତୁମ୍ଭେ ବାସବ ଯାଇଣ ତିଆରିଣ ଆସ ।
ବାସବ ବୋଇଲେ ଦେବ ନ ଜାଣକି ତୁମ୍ଭେ
ବୈଶ୍ୱାନରଙ୍କ ବୋଲେ ଅଇଲେ ଦେବୀ ଏବେ
ବୈଶ୍ୱାନର କହିଥିଲେ ରାମନାରୀ ପୁଣ
ଅଗ୍ନିରେ ପଶିଣ ଲୁଚି ଥାନ୍ତ ଜାଣ ।
ପବନ ଦେବତା ଯେ ଯାଇଣ କହିଲେ
ତେବେ ସେ ରାମନାରୀ ଲଙ୍କାକୁ ଅଇଲେ ।
ଲଙ୍କାର ଅସୁରଙ୍କୁ ତରଳ କରାଇ
ଅଗ୍ନିରେ ସ୍ନାନ କରି ଅମୃତ ଭୁଞ୍ଜଇ ।
ପବନ ଆସିଣ ଭଣ୍ଡାରୁ ନିଏ ପୁଣ ।
ଗୁପତରେ ଭୋଜନ କରନ୍ତି ସ୍ୱତୀ ଜାଣ
ଅସୁରେ ଜାଣିବାକୁ ରହିଛି ଉପବାସ ।
ଶୁଣିକରି ବେଦବର ହୋଇଲେ ସନ୍ତୋଷ
ବିଧତା ବୋଇଲେ ଶୁଣ ହେ ବଜ୍ରଧର
ଜାନକୀଙ୍କ ପାଶକୁ ଯାଅ ହେ ସତ୍ୱର ।
ସୀତୟାଙ୍କୁ ବୁଝାଇ ବୋଧରେ କହିବ
କେହି ନ ଜାଣିବେ ତୁମ୍ଭେ ସ୍ୱର୍ଗକୁ ଆସିବା ।
ଶୁଣିକରି ସୁର ରାଜା ଆନନ୍ଦ ହୋଇଲେ
ଭଣ୍ଡାରରୁ ଅମୃତ ଘେନିଣ ଅଇଲେ ।
ବିଧାତାଙ୍କ ଆଦେଶେ ଲଙ୍କାକୁ ସେ ଗଲେ
ଅଶୋକ ବନରେ ପ୍ରବେଶ ହୋଇଲେ ।
କରଯୋଡ଼ି ସୀତାଙ୍କ ଛାମୁରେ ଉଭାହେଲେ
ନିସ୍ତରିଲି ବୋଲିଣ ଇନ୍ଦ୍ରସ୍ତୁତି କଲେ ।
ଜୟ ଜୟ କମଳା ଗୋ ସିନ୍ଧୁର ଦୁହିତା
ଜୟ ତୁ କମଳା ନାରାୟଣଙ୍କ ବନିତ ।
ଜୟ ଜୟା କମଳା ଗୋ ବିଷ୍ଣୁଙ୍କ ପାଟରାଣୀ
ତୋ ଚରଣେ ସେବନ୍ତି ସକଳ ସୁରମୁନି ।
ଶ୍ରବଣ କର ମାଗୋ ମୋହର ବିନତି
ଶ୍ରୀରାମ ଘରଣୀ ତୁମ୍ଭେ ଅଟ ସାଧ୍ୱୀ ସତୀ ।

ମୁହିଁ ସେ ଇନ୍ଦ୍ର ଦେବତା ଅଟେ ବଜ୍ରପାଣି
ମୋହର ବିନତି ଘେନ ବିଷ୍ଣୁ ପାଟରାଣୀ ।
ଅମୃତ ଆଣିଅଛି ଦେଖା ମୋର କର
ଭୋ ଦେବୀ ଅମୃତକୁ କରଗୋ ଆହାର ।
ଶୋକ, କ୍ଷୁଧା, ତୃଷା ତୋର ନପୀଡ଼ ହୃଦରେ
ବିଧାତା ପଠାଇଛନ୍ତି ମୋହର ହସ୍ତରେ ।
ଲକ୍ଷ୍ମଣ ଆସି ମାରିବେ ଦଶଗ୍ରୀବ
ତେବେ ଲଙ୍କାରୁ ତୁମ୍ଭଙ୍କୁ ନେବେ ଯେ ରାଘବ ।
ତ୍ରୈଲୋକ୍ୟ ଠାକୁରାଣୀ ଶୁଣ ମୋର ବାଣୀ
ସେ ବଚନ ଶୁଣି ମନେ ଭାବିଲେ ଠାକୁରାଣୀ ।
ବୋଇଲେ ତୁମ୍ଭେ ଯେବେ ଅଟ ବଜ୍ରଧର
ଦେଖିବି ମୁଁ ତୁମ୍ଭର ନିଜ ରୂପଧର ।
ଶୁଣିଣ ସୁନାଶିର ଅନ୍ତରୀକ୍ଷେ ଯାଇ
ନିଶ୍ଚଳ ନୟନ ତାର ପିଛଡ଼ା ନ ପଡଇ ।
ଦେଖି କରି ରାମନାରୀ ତାହାକୁ ପ୍ରତେ ଗଲେ
କିମ୍ପା ଅଇଲି ବୋଲି ତାହାଙ୍କୁ ପଗ୍ଦରିଲେ ।
ପବନ ଆଣି ମୋତେ ଦେଉଛି ଅମୃତ
ବୈଶ୍ୱାନରଙ୍କ ବୋଲରେ ଅଇଲି ମୁଁ ଏଥ ।
ଏତେବୋଲି ଜାନକୀ ଜଗତି ପରେଉଠି
ଅମୃତକୁ ଧରିଲେ ନିଜକରରେଟି ।
ରାମ ନାମ ସୁମରି ଭୁଞ୍ଜିଲେ ଦେବୀ ତାହା
କରଯୋଡ଼ି କହଇ ସୁର କୁଳ ନାହା ।
ତୁମ୍ଭେ ରାମ ନାରୀ ମନେ ବିମନ ନ ଧର
ଏକଥାମାନ ମାତ ଭିଆଣ ଆମ୍ଭର ।
ଦଶଗ୍ରୀବ ଡରେ ଆମ୍ଭେ ସ୍ୱର୍ଗରେ ନ ରହୁ
ତେଣୁକରି ମାତ ଗୋ ତୋତେ ଦୁଃଖ ଦେଉ ।
ଶ୍ରୀରାମ ନାରାୟଣ ତୁମ୍ଭେ ତ କମଳିନୀ
ଆମ୍ଭେମାନେ ଭୃତ୍ୟ ଅଟୁ ଜନକ ଦୁଲାଣୀ ।
ସର୍ବଦେ ମାତ ତୁ ଗୋ ନାମ ତୋର ସୀତା
ସ୍ୱୟଂ ତୁ କମଳିନୀ ଜନକ ଦୁହିତା ।
ଏ ସଂସାର ତୋହର ଭାରାହର ରଖ
ଦେବତା ତୋହର ବୋଲି ସହୁ କେତେଦୁଃଖ
ନ ସହିଲେ ଦୁଃଖ ପୃଥ୍ୱୀ ପଡ଼ିବ ରସାତଳେ
ଆମ୍ଭେମାନେ କେଉଁ ସ୍ଥାନେ ରହିବୁ ଦିଗପାଳେ
ପ୍ରଥମରେ ଅବତାର ହେଲେ ତୁମ୍ଭ କାନ୍ତ
କନକ ରୋହୀ ମତ୍ସ୍ୟ ହେଲେ ସେ ପ୍ରତିତ ।
ସାଗରରେ ପଶିଣ ଶଙ୍ଖାସୁର ମାରି
ସେଠାରୁ ଚରିବେଦ ଆଣିଲେ ଉଦ୍ଧାରି ।
କୂର୍ମ ରୂପେ ଦ୍ୱିତୀୟରେ ଧରିଲେ ଧରଣୀ
ତେଣୁ ରକ୍ଷା ହୋଇଲା ଏହି ଯେ ମେଦିନୀ ।
ହିରଣାକ୍ଷ ଅସୁର ପୃଥ୍ୱୀରେ ହେଲା ଜାତ
ତୃତୀୟେ ବରାହ ରୂପେ ମାଇଲେ ଅଚ୍ୟୁତ ।
ଡ଼ହାଣ କରେ ପୃଥ୍ୱୀ ଧରିଲେ ଚକ୍ରଧର
ବାମକରେ ମୁଣ୍ଡକୁ କାଟିରେ ଅସୁରର ।
ଅସୁରକୁ ମାରିଣ ଧରିଲେ ପୃଥ୍ୱୀ ଭରା
ବାରଯୁଗ ପରିଯନ୍ତେ ଧରଣୀ ଧଣି ଛିଡ଼ା ।
ତେଣୁକରି ରକ୍ଷା ହୋଇଲା ମହୀଆଳ
ତୁମ୍ଭେତ ଜାଣିଛ ମୁଁ କହିବି କେତେବଳି ।
ବାରଯୁଗ ପର୍ଯ୍ୟନ୍ତେ ବୈକୁଣ୍ଠେ ଏକା ଥିଲେ
ନାରାୟଣ ଯିବାରୁ ହରଷ ହୋଇଲେ ।
ହିରଣ୍ୟ ଦୈତ୍ୟ ଜାତ କଶ୍ୟପର କୋଳେ
ପୃଥିବୀ ତଳ ତଳ କମ୍ପିଲା ତା ଦାଉରେ ।
ଚତୁର୍ଥେ ତୁମ୍ଭ ସ୍ୱାମୀ ନୃସିଂହ ରୂପହେଲେ
ଦୈତ୍ୟର ହୃଦୟକୁ ବିଦାରି ମାଇଲେ ।
ପୁଣି ବଳି ଦୈତ୍ୟ ଦେବଙ୍କୁ ତଡ଼ିଦେଲା
ଦୈତ୍ୟବଳ ଘେନିଣ ସ୍ୱର୍ଗେ ରାଜାହେଲା ।
ପଞ୍ଚମେ ବାମନ ରୂପେ ତୁମ୍ଭର ପ୍ରାଣନାଥ
ବଳିକି ପାତାଳରେ ରଖିଲେ ନେଇ ସେତ ।
ପୁଣି ଜାତ ହୋଇଲା ସହସ୍ରା ଅର୍ଜୁନ
ଷଷ୍ଠେ ପର୍ଶୁରାମ ରୂପେ ମାରି ତାକୁ ଜାଣ ।
ପୁନଶ୍ଚ ଏବେ ଚରି ରାବଣ ଦାଉ କଲେ
ଦେବତାଙ୍କୁ ଆଣିଣ ପାଦେ ଖଟାଇଲେ ।
ସପ୍ତମେ ସେ ସକାଶେ ଚତୁର୍ଦ୍ଧା ମୂରତି
ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଅଟନ୍ତି ।
ଜାନକୀ, ଉର୍ମିଳା ଯେ ମାଳିନୀ, ସୁମାଳିନୀ
ତୋହର ଅଙ୍ଗରୁ ଜାତ ହୋଇଲେ ସେ ପୁଣି ।
ତେଣୁ ସେ ଦୁଇଜଣ ଅଟ ତୁମ୍ଭେ ମୂଳ
ତୁମ୍ଭଙ୍କୁ ଦେବତାଏ କରନ୍ତି ଜଞ୍ଜାଳ ।
ରାମ ରାବଣର ହୋଇବ ମହାଯୁଦ୍ଧ
ନାରାୟଣଙ୍କର ଯୁଦ୍ଧ ହୋଇବ ପ୍ରସିଦ୍ଧ ।
ରାବଣର ସଙ୍ଗରେ ଅନେକ ଅସୁର
ଚରି ରାବଣ ସ୍ୱଗୋତ୍ର ନାଶିବେ ରଘୁବୀର ।

ଏତେକହି ପୁରନ୍ଦର ନମସ୍କାର କଲେ
ଶୁଣିକରି ଜାନକୀ ବଚନ କହିଲେ ।
ତୁମ୍ଭେ ଦେବତାଏ ଯେ ଅଟେ ବଡ ମନ୍ଦ
ଛନ୍ଦ କୂଟ କପଟ କରୁଥାଅ ଦ୍ୱନ୍ଦ ।
ଆଗେ ବର ଦେଇଣ ପଛେ ପାଦେ ସେବ
ବିପତ୍ତି ପଡିଲେ ହରିଙ୍କୁ କହିବ ।
ଆଗେ ତୁମ୍ଭର ମର୍ଯ୍ୟାଦା ବେଭାରେ ହୀନକର
ପଛେ ସେ ନାରାୟଣଙ୍କୁ କଷଣ ଦେଇପାର ।
ଏବେ ତାଙ୍କ ଘରଣୀକି ଲଙ୍କାକୁ ଆଣିଲ
ଅସୁରର ଘରରେ ବନ୍ଦି କରାଇଲ ।
ନାନା ଭର୍ତ୍ସନା କଥା ଶୁଣାଉଛ ଏବେ
ତେଣୁ ମୋହର ଶୋକ ହେଉଛି ଦୁଃଖଭାବେ ।
ତେଣୁ ଶ୍ରୀରାମଙ୍କ ଶୋକ ସମ୍ଭାଳ ନୁହଇ
ବେନି ଜନଙ୍କ ଶୋକ କହିଲେ ନସରଇ ।
ଅନ୍ୟରୂପେ ଦୈତ୍ୟଙ୍କର ନଯାନ୍ତା କି ପ୍ରାଣ
ତ୍ରୈଲୋକ୍ୟନାଥଙ୍କୁ ଦୁଃଖ ଦେଉଛ ଏତେପୁଣ
ଏମନ୍ତ ବଚନ ଜାନକୀ କହିଣ
ଇନ୍ଦ୍ରଙ୍କୁ ବୋଇଲେ ଯାଅ ନିଜସ୍ଥାନ ।
ଶ୍ରୀରାମଙ୍କ ପାଶେ ଯାଇ ପ୍ରବୋଧନା କର
ଶୁଣିକରି ସୁରରାଜା କହନ୍ତି ଉତ୍ତର ।
ଶ୍ରୀରାମଙ୍କୁ ଅଜ୍ଞାନ ଘୋଟିଅଛି ଜାଣ
ଦେବତା କହିଲେ କୋପିବେ ସେ ପୁଣ ।
ତୁମ୍ଭର ପତି କିଷ୍କିନ୍ଧ୍ୟା ପ୍ରବେଶ ହୋଇବେ
ରାବଣର ମିତ ବାଳିବୀରକୁ ମାରିବେ ।
ସୁଗ୍ରୀବରକୁ କିଷ୍କିନ୍ଧ୍ୟାରେ ରାଜାକରି
ଭାଲୁ, ବାନର ଧରି ଆସିବେ ଲଙ୍କାପୁରୀ ।
ବରଷକେ ଏ ସ୍ଥାନରେ ହେବେ ପରବେଶ
ଦୁଇମାସ ଯୁଦ୍ଧ ଏଥି ହୋଇବ ବିଶେଷ ।
ଘରିରାବଣ ମାରିଣ ଅଯୋଧ୍ୟାପୁର ଯିବେ
ଅଯୋଧ୍ୟାରେ ରାଜା ହୋଇ ସୁଖେ ବିଳସିବେ ।
ଏମନ୍ତ ବଚନ ବୋଇଲେ ସୁରପତି
ଇନ୍ଦ୍ରଙ୍କୁ ଦେଖି ଅଗ୍ନି ପବନ ଉଭାହୋନ୍ତି ।
ବୋଇଲେ ଜାନକୀ ଗୋ କିଛି ନ ବିଚାର
ଆମ୍ଭେ ବେନିଅଛୁଁ ମାଗେ ତୋହର ସଙ୍ଗର ।
ଅଶଉଚେ ମୋତେ ଘେନି ତୁମ୍ଭ ସ୍ନାନକର
ପ୍ରତିଦିନ ତେଜ ମୁଁ ଯେ ବାହାରେ ତୋହର ।
ଦେଖିକରି ରାବଣ ଡରିଲାଣି ଏବେ
ମୋର ତେଜକୁ ଦେଖି ଅସୁର ଡରେ ଭାବେ ।
ରାବଣ ଅସୁର ଯେ ଛୁଇଁ ନ ପାରଇ
ଅଗ୍ନିରେ ସ୍ନାନ ଦେଖି ଭୟ ସେ କରଇ ।
ଅଲଗା ଦିନରେ ତୁମ୍ଭେ ଅଗ୍ନିରେ ସ୍ନାନକର
ଶଉଚ ନିରିମଳ କର ଯେ ଶରୀର ।
ଅଶଉଚ ବସ୍ତ୍ର ମୁଁ ପକ୍ଷେକ ପଖାଳିବି
ଏହି ଲଙ୍କା ଗଡ଼ରେ ଭୟ ଦେଖାଇବି ।
ପବନ ଅଗ୍ନି, ଇନ୍ଦ୍ରଙ୍କୁ କହିଲେ ସମସ୍ତ
ଶୁଣିକରି କହନ୍ତି ଜନକ ଦୁହିତ ।
ରହିଲି ଶାନ୍ତ ହୋଇ ତୁମ୍ଭର ବୋଲେଣ
ଏହା ଯେହ୍ନେ ଶୁଣିବେ ଶ୍ରୀରାମ ଲକ୍ଷ୍ମଣ ।
କ୍ରୋଧହେଲେ ରାମ ରାବଣକୁ ସଂହାରିବେ
ସେକଥାକୁ ବିଚାର କର ସୁରଦେବେ ।
ଶୁଣିକରି ସୁରଦେବ ବୋଇଲେ ବଚନ
ଶ୍ରୀରାମଙ୍କ ଆଗରେ ମୁଁ କହିବି ଯାଇଣ ।
ଅଗ୍ନି ପବନ ରହିଲେ ତୋହରି ପାଶରେ
ତୁହି ଯାହା କହିବୁ ସେ କରିବେ ନିକରେ ।
ଦୂତ ପଣରେ ଭେଦିବୁ ଯେଣିକି ତୁ ପୁଣ
ସେ ସ୍ଥାନକୁ ଏମାନେ ଯିବେ ତତକ୍ଷଣ ।
ଏମନ୍ତେ କଥା ହୁଅନ୍ତେ ଉଠିଲା ତ୍ରିଜଟା
କହିଲେ ଏ ଗଡ଼େ ରାଜା ଏବେ ତୋର ପିତା ।
ତୁହି ରାଜା ହୋଇବୁ ବିଲଙ୍କା ଦେଶର
ସ୍ୱୟଂ ମନୁଋଷି ହୋଇବେ ତୋର ବର ।
ତୋହର ବୋଲେ ଋଷି ଆଜ୍ଞାକାରୀ ହେବ
ସୀତାଙ୍କୁ ସେବା କଲେ ଏହା ହେବ ଧ୍ରୁବ ।
ତ୍ରିଜଟା ବୋଇଲେ ଯେବେ ଏକଥାଟି ସତ
ତୁମ୍ଭେ ଏବେ ମୋର ଶିରେ ବାନ୍ଧଆଣି ନେତ
ଜଗତ ଜନନୀ ସେ ଅଟେ ମୋର ମାତା
ଦେଖିଲାବେଳୁଁ ଶରଣ ତା ପାଦେ ମୋରମଥା
ପିତା ମୋର ଶ୍ରୀରାମ ଚରଣେ ଶରଣ
ପିତା ଦୁହିତାକୁ ସେ କରିବେ କାରଣ ।
ଶୁଣିକରି ଜାନକୀ ହରଷ ହୋଇଲେ
ପତନୀ ପାଟ ତ୍ରିଜଟା ଶିରରେ ବାନ୍ଧିଲେ ।
ବୋଇଲେ ଆଜିଠାରୁ ବିଲଙ୍କା ତୋହର
ସସ୍ରମୁଖା ରାବଣକୁ ମାରିବେ ନିକର ।

ଶୁଣିକରି ତ୍ରିଜଟା ହରଷ ହୋଇଲା
ଜାନକୀର ଚରଣେ ନମସ୍କାର କଲା ।
ପୁଣି ତିନି ଦେବଙ୍କ ଚରଣେ ଓଳଗିଲା
କରଯୋଡ଼ି ତ୍ରିଜଟା ଛାମୁରେ ଉଭାହେଲା ।
ଏଥୁ ଅନନ୍ତରେ ସୁନାଶିର ସ୍ବର୍ଗେଗଲେ
ସୀତାଙ୍କ ପାଶେ ଅନଳ ପବନ ରହିଲେ ।
ସେଠାରୁ ଜାନକୀ ଜଗତିପରେ ବସି
ତ୍ରିଜଟା ଯାଇଣ ଅସୁରୀ ସଙ୍ଗେ ମିଶି ।
କେତେବେଳେ ଉତ୍ତାରେ ରଜନୀ ଶେଷ ହେଲା
ଦେବଆଳେ ଶଙ୍ଖ ଶବଦ ଶୁଭିଲା ।
ସୀତାଙ୍କୁ ଚାହିଁଣ ତ୍ରିଜଟା କହଇ
ନଦୀକି ଯିବା ଚାଲ ସ୍ନାନ କରିବା ପାଇଁ ।
ଗହୀର ଦେଶ ଖୋଲି ସ୍ନାହାନ କରିବା
ନିତ୍ୟକର୍ମ ସାରିଣ ନିଶ୍ଚିନ୍ତ ହୋଇବା ।
ଶୁଣିକରି ତ୍ରିଜଟା ସଙ୍ଗରେ ସୀତା ଗଲେ
ନଦୀରେ ସ୍ନାହାନ କରି ଲେଉଟି ଅଇଲେ ।
ନିତ୍ୟକର୍ମ ସାରିଣ ଜଗତି ପରେ ବସି
ରାମ ନାମ ବୋଲିଣ ରୋଦନ କଲେ ସତୀ ।
ଚରଣେ ପଡ଼ି ତ୍ରିଜଟା କଲା ପ୍ରବୋଧନ
ତେବେ ସେ ମହାସ୍ବତୀ ହେଲେ ଶାନ୍ତିମନ ।
ସେଦିନ ଯିବାରୁ ଆନଦିନ ପୁଣି
ରଜସ୍ବଳା ହୋଇଲେ ଜନକ ଦୁଲାଣୀ ।
ପାଞ୍ଚଦିନରେ ହେଲା ଶୁଦ୍ଧସ୍ନାନ ପାଳି
ସ୍ନାହାନ କରିବାକୁ କହିଲେ ମୈଥିଳୀ ।
ତ୍ରିଜଟାକୁ ବୋଇଲେ ବେଗେ ଆଣ କାଷ୍ଠ
ଅଗ୍ନି ଲଗାଇଲେ ମୋର ମନ ହେବ ତୁଷ୍ଟ ।
ଅଗ୍ନିରେ ସ୍ନାନ କଲେ ଶଉଚ ହେବି ମୁଁ ତ
ସବୁଦିନେ ମୋହର ଏ ଅଟଇ ନିୟତ ।
ଶୁଣିଣ ତ୍ରିଜଟା ବେଗେ କାଷ୍ଠ ଅଣାଇଲା
ଅଗ୍ନି ଲଗାନ୍ତେ ସେଥିରେ ଜନାକୀ ପଶିଲା ।
ସ୍ନାହାନ କରି ଦେବୀ ହୋଇଲେ ବାହାର
ନିତ୍ୟକର୍ମ ସାରି ବସି ଜଗତି ଉପର ।
ଉଠିଣ ଅନ୍ୟ ଶାଢୀ ଆଣିଣ ପିନ୍ଧିଲେ
ଦେଖିଣ ଅସୁରୀଗଣ ଭୟରେ କମ୍ପିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସୀତାଙ୍କର ଦେହଟି ଦାବାନଳ ଜ୍ୟୋତି ।
ତେଜର ପ୍ରତାପରେ ଅସୁରୀଗଣ ସର୍ବ
ଦୁଃଖରେ ଜଗତିର ତଳରେ କଲେ ଠାବ ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ ।
ସେହିଦିନ ରାବଣ ନିତ୍ୟକର୍ମ ସାରି
ସୀତାଙ୍କ ସନ୍ନିଧକୁ ଅଇଲା ତଡ଼ିତି
ଆୟଦାୟ ଅଳଙ୍କାର ଘେନିଣ ଲଙ୍କପତି ।
ସୁବର୍ଣ୍ଣ ପଞ୍ଜରୀରେ ଶାରୀ ଏକ ଥାଇ
ଜାନକୀ ଛାମୁରେ ପ୍ରବେଶ ହେଲା ଯାଇ ।
ଦେଖିଣ ଜାନକୀ କ୍ରୋଧରେ ଜର ଜର
ତାହା ଦେଖି ରାବଣର କମ୍ପଇ ଶରୀର ।
ବଳାତ୍କାରେ ଦଶାନନ କହଇ ବଚନ
ଚନ୍ଦ୍ରବଦନୀ ମୋତେ ହୁଅ ସୁପ୍ରସନ୍ନ ।
ମୁହିଁ ତୋର ରୂପକୁ କି ଭାଜନ ଗୋ ବାଳୀ
ତୁହି ମୋତେ ସୁଦୟା କର ମହାସ୍ଥଳୀ ।
ମୁହିଁ ଲଙ୍କପତି ଯେ ତ୍ରୈଲୋକ୍ୟ ଈଶ୍ୱର
ନର, ବାନର, ଦେବତା ସର୍ବେ ମୋ କିଙ୍କର ।
ମୋର ବାମା ହୋଇଣ ତୁ ବିଭୂତି ଭୋଗକର
ଅକାରଣେ ରାମଙ୍କୁ ଝୁରିଣ ନ ମର ।
ଯେତେଦୁଃଖୀ ବନରେ ଦେଖିଅଛି ମୁହିଁ
ଦିନପରା ହରୁଥିଲୁ ପତର ପାରି ଶୋଇ ।
ବନ ଜୀବଙ୍କ ପରାୟ କନ୍ଦମୂଳ ଖାଉ
ତପସ୍ବୀ ଦୁଇଗୋଟି ସଙ୍ଗେ ବୁଲୁଥାଉ ।
ବିପୁଳ ଭୋଗ ତୋତେ ହେଲା ପରାପତ
ଦୁଖକୁ ଦେଖି ସୁଖ ଦେଲା ଦଇବତ ।
କ୍ରୋଧକୁ ଶାନ୍ତ କରିଣ ମୋର ମୁଖକୁ ଚାହଁ ।
ମୁହିଁ ଏଥର ତୋର ହେଲି ନିଜନାହା ।
ମୋହରପୁରରେ ଯେତେ ଦ୍ରବ୍ୟଅଛି ରହି
ସତେଯେଣ ଲଙ୍କାକୁ ସ୍ବର୍ଗ ସରି ନୋହି ।
ମୋତେ ସେବାକରିଣ ଅଛନ୍ତି ସ୍ବର୍ଗଲୋକ
ମୋହର ମହିମା ଯେ ତିନିପରୁ ଦେଖେ ।
ଦେଉଳ ମଣ୍ଡପ ଦେଖ ଜଗତି ଅଟାଳି
ସୁବର୍ଣ୍ଣର ଚଉରା ଚିରାଳମାନ ମିଳି ।
ନଦୀ, ସରୋବର ଦେଖ ସବୁ ଯେ ସୁବର୍ଣ୍ଣ
ସ୍ବର୍ଣ୍ଣର ପାବଚ୍ଛ ଦେଖ ବସିଛି ଯତନ ।
ତ୍ରୈଲୋକ୍ୟର ସମ୍ପଦ ଅଛି ମୋ କଟକେ
ମୋତେ ସେବା କରିଛନ୍ତି ତିନିପୁର ଲୋକେ ।

ଦେଖ ମୋର ଦ୍ୱାରପାଳ ଇନ୍ଦ୍ର ହୋଇଅଛି
ବେଦବର ନିତି ଆସି ବେଦ ପଢୁଅଛି ।
ଏତେ ବଡ଼ପଣ ଥାଉ, ତୋତେ ମୁଁ ଆଶ୍ରେକଲି
ତୋହର ସୁନ୍ଦର ରୂପ ଦେଖି ମୋହିଲେ ।
ଆବର ଶ୍ରୀରାମଙ୍କୁ ଦେଖିବୁ ତୁ କାହିଁ
ମଉନ ହୋଇ ସଖିରେ ବସିଛୁ କିମ୍ପାଇଁ ।
ଏତେ ନିର୍ଦ୍ଦୟ କିମ୍ପା ତୋହର ଶରୀର
ଆସ ଗୋ ରାମାମଣି ସୁଦୟା ମୋତେ କର ।
ଏ ବଚନ ଶୁଣିଣ ଜାନକୀ ବୋଲେ ପୁଣ
ଅକାରଣେ ମରିବୁ ପଳାଅ ତକ୍ଷଣ ।
ଏମନ୍ତ ଶୁଣି ରାବଣ ଅସୁରୀଙ୍କି ରାଇ
ଗୁପତ କରି କଥାମାନ ତିଆରଇ ।
ବୋଇଲା ସୀତା ମୋତେଯେମନ୍ତେ ବଶହୋଇ
ରାମ ଲକ୍ଷ୍ମଣଙ୍କୁ ସେ ଯେମନ୍ତେ ପାଶୋରଇ ।
ତେମନ୍ତ ଉପାୟ କର ତୁମ୍ଭେ ଏଥିପାଇଁ
ତ୍ରିଜଟା ବୋଇଲା ପିତା ଶୁଣ ମତି ଦେଇ ।
ଅଗ୍ନିରେ ସ୍ୱାହାନ କରେ ଦେବୀ ସତୀ
ଆହାର ନ ଛୁଇଁଲା କହେ ଭିନ୍ନ ଗତି ।
ବୋଇଲା ମୋର ଚଉଦ ମାସ ବ୍ରତଅଛି
ଅନ୍ନ, ମିଷ୍ଟାନ୍ନ ଦ୍ରବ୍ୟ ନ ଭୁଞ୍ଜିବି କିଛି ।
ରାମଙ୍କୁ ଦେଖିଲେ ସନ୍ତୋଷ ମୋର ମନ
ତେବେ ମୁଁ ଅନ୍ନଜଳ କରିବି ଭୋଜନ ।
ରାବଣ, ସ୍ୱବଂଶ ଲଙ୍କାର ଦୈତ୍ୟଗଣ
ଯେତେବେଳେ ନାଶ କରିବେ ରଘୁରାଣ ।
ଭାଗେ ରଖିଣ ତିନିଭାଗେ କରିବେ ହତ
ରାବଣ କୁମ୍ଭକର୍ଣ୍ଣ ହୋଇବେ ନିପାତ ।
ତେବେ ସେ ମନ ମୋର ସନ୍ତୋଷ ହେବଜାଣ
ଦାବାନଳ ମୋ ଦେହରୁ ନିବର୍ତ୍ତିବ ପୁଣ ।
ତାହାର ରାଣୀମାନଙ୍କୁ ଯେବେ ନେବ ଆନ
ଦେଖିଲେ ସନ୍ତୋଷ ହେବ ମୋର ମନ ।
ଏମନ୍ତ କହି ସତୀ କ୍ରୋଧରେ ଅଛି ରହି
ଶୁଣିକରି ଲଙ୍କପତି ଆଶ୍ଚର୍ଯ୍ୟ ମଣଇଁ ।
ବୋଇଲା ସତେକିଲୋ ଏକଥା କହିଲା
ତାଟକା ହୋଇ ରାବଣ ମନରେ ଭାଳିଲା ।
ଶୁଣିକରି ସେଠାରୁ ପଳାଇ ଲଙ୍କପତି
ଆପଣା ମନ୍ଦିରେ ସେ ମିଳିଲା ଝଟତି ।

ମନରେ ବିଚାରିଲା ନିଶ୍ଚେ ମୁଁ ଯିବିନାଶ
ଶ୍ରୀରାମର ବାଣେ ମୋର ପାପ ହେବ ଧ୍ୱଂସ ।
ରାବଣ ଯିବାରୁ ଅସୁରୀମାନେ ଗଲେ
ଅନେକ ଚାଟୁକଥା ସୀତାଙ୍କୁ କହିଲେ ।
ଶୋକରେ ଜାନକୀର କ୍ରୋଧ ବଳିଆର
ପ୍ରଳୟ ଅଗ୍ନି ପ୍ରାୟ ଦିଶଇ ଶରୀର ।
ଶରଦ ଚନ୍ଦ୍ରମା ପ୍ରାୟେ ମୁଖ ବିକାଶଇ
ଶ୍ରୀରାମ ଲକ୍ଷ୍ମଣ ପଦ ମନରୁ ନ ଛାଡ଼ଇ ।
ଈଶ୍ୱର ବୋଇଲେ ଶୁଣିଲ ଶାକମ୍ଭରୀ
ଅଶୋକ ବନର କଥା ଅଟଇ ଏହିପରି ।
ସନ୍ତୋଷ ହୋଇଲିକି ଶୁଣି ସୀତାଙ୍କ କଥା
ଶ୍ରୀରାମ ଯାହା କଲେ ଶୁଣ ଗଣ ମାତା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଶ୍ରୀରାମଙ୍କର ନାମ ଅଟଇ ସାରଟି ।
ମାୟା ମୃଗକୁ ମାରି ଗଲେ ରଘୁପତି
ଘୋରବନ ଲତାରେ ପ୍ରବେଶ ହୁଅନ୍ତି ।
ନାରାଚ ବିନ୍ଧିଣ ଛେଦିଲେ ମୃଗ ଶିର
ମଲାବେଳେ ମୃଗ ରାବହେଲା ଦୂର ଦୂର ।
ତ୍ରାହି ଲକ୍ଷ୍ମଣ ବୋଲି ସେହି ଡାକଦେଲା
ଶୁଣିକରି ଚକତି ହେଲେ ରଘୁବଳା ।
ମୃଗମାରି ବାହୁଡ଼ି ଆସନ୍ତି ରଘୁବୀର
ସେକଥା ଶୁଣି ମନରେ ଭାଳେଣି ତାଙ୍କର ।
ମନେ ମନେ ବିଚାର କରନ୍ତି ରଘୁସାଇଁ
ତ୍ରାହି ଲକ୍ଷ୍ମଣ ମୃଗ ଡ଼ାକିଲା କିମ୍ପାଇଁ ।
ଏବେ ମୁଁ ସୀତାଙ୍କୁ ହରାଇବି ଆଜ
ବେଗ ବେଗ ହୋଇଣ ଆସନ୍ତି ରଘୁରାଜ ।
ବାଟରେ ବିପରୀତ ବହୁତ ଦେଖିଲେ
ଦକ୍ଷିଣ ପାରୁଶରେ ଶୃଗାଳ ରାବଦେଲେ ।
ମସ୍ତକର ଉପରେ ଉଡ଼ିଯାଏ କୁଆ
କାଳସର୍ପ ଆସିଣ ଆଗରେ ହୁଏ ଠିଆ ।
ଧୂମ୍ର ଆକାଶରେ ଦିଶେ ଚଉପାଶ
ପବନ ନ ବହଇ ହୁଅଇ ହୁତାଶ ।
ଶ୍ରୀରାମଙ୍କର ଚିତ୍ତହେଲା ବିକଳିତ
ମନରେ ବିସ୍ମୟ ହେଲେ ଚିତ୍ତ ବିଚଳିତ ।
ଆଗରେ ଦେଖିଲେ ସେ ସୁମିତ୍ରାର ବହି
ଧନୁଶର ଧରି କରି ବୀର ଆସୁଅଛି ।

ଆଗରେ ଆସି ଉଭା ସୁମିତ୍ରାର ବାଳ
ବେନି ନେତ୍ରୁଁ ଅଶ୍ରୁଜଳ ପଡୁଅଛି ତଳ ।
କ୍ରୋଧରେ ରୋଦନ କରେ ସୁମିତ୍ରାର ସୁତ
ଲକ୍ଷ୍ମଣକୁ ଦେଖି ରାମ ହୋଇଲେ ଦୁଃଖିତ ।
ଧନୁ ଥୋଇ ଲକ୍ଷ୍ମଣ ହେଲେ ନମସ୍କାର
ମୃଗ ଭରାକୁ ଶ୍ରୀରାମ ଥୋଇଲେ ତଳର ।
କ୍ରୋଧଭରେ ଲକ୍ଷ୍ମଣଙ୍କୁ ବୋଇଲେ ରଘୁବୀର
ସୀତାଙ୍କୁ ଛାଡ଼ି କିମ୍ପା ଅଇଲୁ ବନଘୋର ।
ସୀତୟାକୁ ଛାଡ଼ିଣ ଅଇଲୁ କିମ୍ପାଇଁ
ଆଉକି ଜାନକୀକି ଦେଖିବାରେ ଭାଇ ।
ଲକ୍ଷ୍ମଣ ଜଣାଇଲେ ଯୋଡ଼ି ବେନିକର
ଭୋ ପ୍ରଭୁ ମୋହଠାରେ କୋପ କତୁ ନ କର ।
ଠାକୁରାଣୀ କହିଲେ ରାମଙ୍କ ପାଶେ ଯାଅ
ତାହାଙ୍କର ବୋଲକୁ ମୁଁ ନକଲି ଯେ ପ୍ରିୟ ।
ସେକଥା ପରଭାବ ଦେଲେ ଦେବୀ ମୋରେ
ଯେଉଁ କଥା ନ ଶୁଣିବ ଏ ବେନି କର୍ଣ୍ଣରେ ।
ସେଠାରୁ ତାର କଥା ନ ଶୁଣିଲି ମୁହିଁ
ତ୍ରାହି ଲକ୍ଷ୍ମଣ ବୋଲି ଶବଦ ଶୁଭଇ ।
ମୁହିଁ ତାହା ପ୍ରତେ ନ କଲି କଦାଚିତେ
କୋପ କରିଲେ ମୋତେ ଜନକ ଦୁହିତେ ।
ମୁଁ ବୋଇଲି ତୁମ୍ଭେ ନ ଜାଣ ଦେବୀ ସୀତା
ଶ୍ରୀରାମଙ୍କୁ ତ୍ରୈଲୋକ୍ୟ ନାହିଁ କେ ଜିଣନ୍ତା ।
ଏ ତିନି ଭୁବନରେ ବଳବନ୍ତ କେହୁ
ଧନୁଶ୍ରର ଧରି କେ ଜିଣିବ ରାମରାହୁ ।
ଶୁଣିକରି ଜାନକୀ ବହୁତ ଗାଳିଦେଲା
ମର୍ମ କହିଣ ଦର୍ପ ମୋହର ଭାଙ୍ଗିଲା ।
ବୋଇଲେ ମୋ ସ୍ୱାମୀକି ପଡ଼ିଲା ବିପତ୍ତି
ତୁହି କିମ୍ପା ବସିଅଛୁ ଏ ମୋହର କତି ।
ବୋଇଲେ ତୋର ମନ ଜାଣିଲି ଏବେ ମୁହିଁ
ଭରତ କି ତୋତେରେ ଅଛି ପଠିଆଇ ।
ଶ୍ରୀରାମଙ୍କୁ ମରାଇ ମୋତେ ଏଥୁଁ ନେବୁ
ଭରତର ଛାମୁରେ ମୋତେ ସମର୍ପିବୁ ।
ଆବର ବହୁତ ସେ ବୋଇଲେ ମନ୍ଦବାଣୀ
ଭୟକଲି ମୁହିଁ ତାଙ୍କର କଥାଶୁଣି ।
ପୁଣିହିଁ ବୋଇଲେ ମୋତେ ହରିବୁକିରେ ଆଜ
ସେକଥା ଶୁଣିଣ ମୁଁ ହୋଇଲି ଆଶ୍ଚର୍ଯ୍ୟ ।

ପୁଣି ବୋଇଲେ ଏହି କଥାରେ ଆସିଅଛୁ
ଆମ୍ଭେ ତୋତେ ଡାକିନାହୁଁ ବଳେ ଗୋଡାଇଛୁ
ଆବର ବୋଇଲେ ତୁ ଅଟୁ ବଡ଼ ଦୋଷୀ
କୈକେୟୀ ଜନନୀକୁ ଶିଖାଇଲୁ ବସି ।
ଏ ବଚନ କହି ମୋତେ ବହୁ ଧିକ୍କାରିଲେ
ଉଠିଣ ମାରିବାକୁ ମୋତେ ଗୋଡ଼ାଇଲେ ।
ସେଠାରେ ରୋଦନ ମୁଁ କଲି ଉଚ୍ଚସ୍ୱରେ
ବିଗ୍ଭରିଲା କାଳ ଆସି ଘୋଟିଲା ମୋଠାରେ ।
ତ୍ରୈଲୋକ୍ୟ ଠାକୁରାଣୀ ଅଟନ୍ତି ସୀତାଟି
ଆଜି ମୋହଠାରେ କୋପାନଳ ଯେ ସେହିଟି ।
ତେଣୁ ମୁଁ ଅଇଲି ପ୍ରଭୁ ଧନୁଶର ଧରି
ନିକଟ ବନରେ ଲୁଚିଲି ଯାଇକରି ।
ନିରେଖି ଗ୍ଭହିଁର ସେ ମୋହର ପାଶେ ଗଲେ
ତୁକାର ଭାଷା ସେଠାରେ ବହୁତ କହିଲେ ।
ଦଶ ଦିଗପାଳଙ୍କୁ ସାକ୍ଷୀ ମୁହିଁ କରି
ସେହି ସ୍ଥାନରୁ ଶୀଘ୍ର ଅଇଲି ବାହାରି ।
ଏଥିରେ ଦୋଷ ମୋର ନାହିଁ ଗ୍ଭପଧାରୀ
ବହୁ ଧିକ୍କାରି ବୋଇଲେ ଜନକ କୁମାରୀ ।
ଏକଥା ଶୁଣିଣ ରାମ ଉପରକୁ ଗ୍ଭହିଁ
ଲକ୍ଷ୍ମଣର କନ୍ଧରେ ମୃଗ ଭାର ଦେଇ ।
ବିସ୍ମୟ ଚିତ୍ତରେ ଆସନ୍ତି ବେଗହୋଇ
ପଞ୍ଚବଟୀ ବନରେ ମିଳିଲେ ସେ ଯାଇ ।
ଦୂରରୁ ଦେଖିଲେ ସେ ଦିଶେ ପର୍ଣ୍ଣକୁଟୀ
ଅଲକ୍ଷଣ ଦିଶୁଅଛି ପତ୍ରକୁଡ଼ିଆଟି ।
ମଢିଆର ଦ୍ୱାରେ ଯାଇ ମିଳିଲେ ରଘୁସାଇଁ
ସୀତା ସୀତା ବୋଲିଣ ଉଚ୍ଚରେ ଡାକଦେଇ ।
ଲକ୍ଷ୍ମଣଙ୍କୁ ବୋଇଲେ ଯାହା ମୁଁ ବୋଇଲି
ଘୋର ଅରଣ୍ୟରେ ଘରଣୀକି ହରାଇଲି ।
ଦେଖିଲେ ପର୍ଣ୍ଣକୁଟୀ ହୋଇଅଛି ତୁଚ୍ଛା
ସୀତାଙ୍କୁ ନ ଦେଖି ରାମ ପଡ଼ିଗଲେ ମୂର୍ଚ୍ଛା ।
ଲକ୍ଷ୍ମଣ ଟେକି ଧରିଲେ ପୁଣ ଯାଇ
କ୍ଷଣକରେ ଚେତନା ପାଇଲେ ରଘୁସାଇଁ ।
ଅରଣ୍ୟରେ ଖୋଜନ୍ତି ଛାଡ଼ିଣ ସାୟକ
କାନ୍ଦିକରି ଡାକନ୍ତି ବିଧାତା ମୋତେ ରଖ ।
ଆଗୋ ଜାନକୀ ଗୋ ଛାଡ଼ିଗଲୁ କାହିଁ
ଲକ୍ଷ୍ମଣର ମଢିଆ ଦେଖିଲେ ସେ ଯାଇ ।

ବୋଇଲେ ଜାନକୀ ଗୋ କେଣେ ଛାଡ଼ିଗଲୁ
ସୁଖ ନ ପାଇବାରୁ ଅନ୍ତର ହୋଇଲୁ ।
ମଧ୍ୟାହ୍ନ ବେଳେ ଆସି ହୋଇଲା ଗୋ ସଖୀ
ଭୋଜନର ଯୋଗାଡ଼ ନ କଲୁ ଶଶୀମୁଖୀ ।
ଗୋଦାବରୀ ନଦୀରୁ ଆଣୁଅଛୁ କି ପାଣି
ଯାଉଛୁ କି ଫଳମୂଳ ଆଣିବାକୁ ପୁଣି ।
ଏତେ କହିଣ ରାମ ଉଠିଣ ଉଭା ହୋନ୍ତି
ବନଗିରି, ପର୍ବତକୁ ଚାହିଁଣ ବୋଲନ୍ତି । ·
ତୁମ୍ଭେମାନେ ଦେଖିଛ କି ସୀତା କେଣେ ଗଲା
କେହୁ ମୋର ଘରଣୀ କି ଚୋରାଇଣ ନେଲା ।
କାହାକୁ ସୁମରିଣ ଗଲା ମୋର ସହି
କେଣେ ଅବା ଲୁଚିଅଛି କଉତୁକ ହୋଇ ।
ରାମଙ୍କ ରୋଦନ ଦେଖି ଲକ୍ଷ୍ମଣ ତିଆରଇ
ନୁହଁ ତୁମ୍ଭେ ବିସ୍ମୟ ରଘୁକୁଳ ସାଇଁ ।
ସକଳସ୍ଥାନ ଲୋଡ଼ିବା ମନକୁ ସ୍ଥିର କର
ରାଜପଣ ଛାଡ଼ିଲ ପଶିଲ ବନ ଘୋର ।
ଏକଥା ବୁଝ ଦେବ ଆମ୍ଭର କର୍ମ ହୀନ
ଜାନକୀ ଯିବାକୁ କି ହେଲା ମନ୍ଦ ପୁଣ ।
ଏକା ସାକ୍ଷୀ ହୋଇଥାନ୍ତୁ ବିରଞ୍ଚି ନାରାୟଣ
ତେବେ ସାତପୁର ଖୋଜି ଆଣିବା ସୀତା ପୁଣ ।
ଆରତ ହୋଇଲେ ଦେବ ନୁହେଁ କିଛି କାର୍ଯ୍ୟ
ନ ପାଇଲେ ଦେବତାଙ୍କୁ ପଚାରିବା ଆଜ ।
ଲତାଗିରି, ବନ, କନ୍ଦର ଖୋଜିବା
ମୁନିମାନଙ୍କୁ ଦେଖିଲେ ଯାଇ ପଚାରିବା ।
ବନେ ଲୁଚି ଥିବ ଅବା ଜନକ ଦୁହିତା
ତୁମ୍ଭେ ବୋଲୁଛ କେହୁ ଚୋରାଇ ନେଲା ସୀତା
ସେ କଥାକୁ ଭୋ ଦେବ ଜାଣିବା ତଥ୍ୟ କରି
ଶୁଣିକରି ପ୍ରତେ ଯିବା କୋଦଣ୍ଡ ଚାପଧାରୀ ।
ଯଦି କେହି ଚୋରିକରି ସୀତାଙ୍କୁ ନେଲା ହରି
ଦାବାନଳ ତେଜରେ କି ନ ଗଲା ସେ ଜଳି ।
ଅଗ୍ନି ଦେବତାକୁ କେ କାନିରେ ବାନ୍ଧି ନେଲା
ମନ୍ଦରକୁ ପକାଇ ମୁଣ୍ଡକେ ପୋତିଲା ।
ସେ ମହାସ୍ୱତୀରେ କେହୁ ଗଲା ସନ୍ନିଧାନ
ଦେବାସୁର ନରକେ ନୁହେ ତ ଭାଜନ ।
ଲକ୍ଷ୍ମଣ କହିବାରୁ ଶ୍ରୀରାମ ଧୈର୍ଯ୍ୟଧରି
ସଉମିତ୍ରୀକି ଚାହିଁ କହନ୍ତି ଚାପଧାରୀ ।

ତୁହିରେ ଲକ୍ଷ୍ମଣ ବୋଲୁଛୁ ସୀତା ଅଛି
ଆବର କାହିଁ ଦେଖିବ ସୀତା କମଳାକ୍ଷୀ ।
ଦ୍ୱାରେ ଦେଖ ଭାଇରେ ଚକର ଚିହ୍ନମାନ
ରଥରେ ବସାଇ କେହୁ ଘେନିଗଲା ଜାଣ ।
କେ ଚୋରାଇ ଘେନିଗଲା ମୋ ରୂପବତୀ କି
ଆମ୍ଭଙ୍କୁ ନ ଦେଖି କରୁଥିବ ସେ ଭିତିକ ।
ଏତେ ବୋଲି ଏଣେତେଣେ ବୁଲନ୍ତି ରଘୁନାନ
ଲକ୍ଷ୍ମଣଙ୍କ ଭୁଜ ଧରି କରନ୍ତି କ୍ରନ୍ଦନ ।
ସୀତା ସୀତା ବୋଲିଣ ଉଚ୍ଚେ ରାବଦ୍ୟନ୍ତି
ପର୍ଣ୍ଣକୁଟୀ ଚଉପାଶ ବୁଲିଣ ଦେଖନ୍ତି ।
ପର୍ଣ୍ଣକୁଟୀର ଭିତରେ ପଶିଲେ ସେ ଯାଇ
ଦେଖିଲେ ସେଠାରେ ଦୋହରା ଅଗ୍ନି ନାହିଁ ।
ଦେଖିକରି ଶ୍ରୀରାମ ଲକ୍ଷ୍ମଣଙ୍କୁ କହି
ଦୋହରା ବୈଶ୍ୱାନର ଅନ୍ତର ହେଲେ ଭାଇ ।
ନିଶ୍ଚୟ ଜାନକୀ କି କେହୁ ଘେନିଗଲା
ଦୋହରା ଅଗ୍ନିକି ସ୍ୱତୀ ସଙ୍ଗତରେ ନେଲା ।
ବୈଶ୍ୱାନରଙ୍କୁ ନ ଦେଖି ବାହାର ରାମ ରାଣ
ଶ୍ରୀରାମ ବୋଇଲେ ଭାଇ ଲକ୍ଷ୍ମଣରେ ଶୁଣ ।
ବନଲତା ପର୍ବତକୁ ଚାହିଁଲେ ରାମରାଣ
ବୃକ୍ଷ ପରେ ଥିଲା ଯେ ଗରୁଡ଼ ପୁତ୍ର ଜାଣ ।
ସେହି ତ ଏ ବୃକ୍ଷରେ ଦିଶୁ ନାହିଁ ଏବେ
ଜଟାୟୁଷ ଗଲା ଜାନକୀର ସଙ୍ଗେ ।
କି ଅବା ଜଟାୟୁଷ ମାୟା କରିଥିଲା
ଆମ୍ଭେ ଦୁହେଁ ଯିବାରୁ ସୀତାକୁ ସେ ନେଲା ।
ମାୟରୂପ ଯେବେ ତାର ହୋଇ ଯେ ନଥାନ୍ତା
ଜାନକୀ ଯିବାର ବାତରା ସେ ଦ୍ୟନ୍ତା ।
ସେ ଖଗକୁ ନ ଦେଖି ମନରେ ହେଲା ଚିନ୍ତା
ସେହିଟି ମାୟାଦୈତ୍ୟ ଏଠାରେ ଥିଲା ଏକା
ପକ୍ଷୀର ରୂପ ଆମ୍ଭ ଦୁହିଁଙ୍କୁ ଦେଖାଇଲା
ନିଜର ରୂପ ଧରି ସେ ସୀତାଙ୍କୁ ଘେନିଗଲା ।
ଏତେ ବିଚାରି ରାମ କରନ୍ତି ରୋଦନ
ଲକ୍ଷ୍ମଣ ପ୍ରବୋଧ କରୁଛନ୍ତି ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ପବନକୁ ବେଦବର ସୁମରଣା କରି ।
ଯାଇଣ ପବନ ଜାନକୀ କର୍ଣ୍ଣେ କହି
ପଞ୍ଚବଟୀ ବନେ ରାମ ରୋଦନ କରଇ ।

ସେଥିରେ ସକାଶରେ ବିଧାତା ମୋତେ ରାଇ
ତୋ ସ୍ୱାମୀର ପ୍ରବୋଧରେ ଯିବି ଏବେ ମୁହିଁ ।
ତୁମ୍ଭର କଥାମାନ ସକଳ କହିବି
ଶୋକ୍ତ ଶାନ୍ତି କରିଣ ତୋ ପାଶେ ଆସିବି ।
ଜାନକୀ ବୋଇଲେ ଯାଅ ବେଗେ ଚଳି
ବେନି ଭାଇଙ୍କି ଶାନ୍ତକର କହି ବୋଲି ।
ସୀତାଙ୍କଠାରୁ ଶୁଣି ପବନ ଚଳିଗଲା
ପଞ୍ଚବଟୀ ବନରେ ପ୍ରବେଶ ହୋଇଲା ।
ମାୟାରୂପ ଗୋଟିଏ ଧଇଲା ପବନ
ରାମଙ୍କ ପାଶରେ ସେ ମିଳିଲା ବହନ ।
ଦଣ୍ଡକମଣ୍ଡଳ ଧରି ମୁନିବେଶ ହୋଇ
ଯେ ସନେକ ବ୍ରହ୍ମଚାରୀ ସନ୍ୟାସୀ ଦିଶଇ ।
ଦେଖିକରି ରାମ ଯେ ମନରେ ତୋଷ ଦେଲେ
ମାନ୍ୟ କରିବାକୁ କର ଯୋଡ଼ିଣ ସେ ଭଲେ ।
ବ୍ରହ୍ମଚାରୀ ବୋଇଲେ ଶୁଣ ରାମରାଣ
ମୋତେ ନମସ୍କାର ଯେ ନୁହନ୍ତୁ ଆପଣ ।
ଏ ବନରେ ଦୁଇଭାଇ କି କାରଣେ ବୁଲ
ପତ୍ରକୁଟୀ କରିଅଛ ବନର ଭିତର ।
ଶ୍ରୀରାମ ବୋଇଲେ ଆମ୍ଭେ ଅଯୋଧ୍ୟା ରାଜାପୁଅ
ପିତାସତ୍ୟ ପାଳିବାକୁ ବନରେ ମୋର ସ୍ନେହ ।
ଭାଇ ଭାରିଜାକୁ ଘେନି ଏ ବନେ ରହିଲି
କର୍ମର ଅବଳେ ଘରଣୀକି ହରାଇଲି ।
ଦୁଇଭାଇ ମୃଗମାରି ଚଲୁଁ ଯେ ବନକୁ
ଆମ୍ଭେ ନ ଥିବାରୁ ନେଲା କେ ନାରୀରତ୍ନକୁ ।
ପବନ ବୋଇଲେ କିମ୍ପା ହେଉଛ ବିକଳ
ତୁମ୍ଭ ରମଣୀକି ନେଲା ଲଙ୍କା ମହୀପାଳ ।
ଦେବତାଙ୍କର କୁଟ ସେ ଘେନିଗଲା ଆସି
ଦେବତାଙ୍କୁ ଦୁଃଖ ଦେଲା ବିଶର୍ବାର ଶିଷି ।
ତାହାର କପାଳରେ ଜନମ ବେଳେଣ
ଦେବତା ଲେଖିଲା ନିଶ୍ଚେ ମରିବୁ ରାବଣ ।
ଜନକର ଦୁହିତା ସୀତାଙ୍କୁ ଚୋରି କଲେ
ମରିବୁ ବୋଲି କରି କପାଳେ ଲେଖିଲେ ।
ମରିବାର ବେଳେ ତାର ନିକଟ ହୋଇଲା
ଦଇବ ଲିଖନ କଥା ଆନ କେ କରେ ଭଲା ।
ତେଣୁ ସୀତାଙ୍କୁ ରାବଣ ନେଲା ଚୋରିକରି
ସୁବର୍ଣ୍ଣ ଲଙ୍କାଗଡରେ ରଖିଲା ନେଇକରି ।
ନ ଛୁଇଁଣ ରଥରେ ବସାଇ ଘେନିଗଲା
ଅଶୋକ ବନେ ରଖିଲା ପୁରକୁ ନ ନେଲା ।
ଶ୍ରୀରାମ ବୋଇଲେ ଏ କଥା କିସ ହେଲା
ନେବାର ଲୋକ କିମ୍ପା ଅଲଗା ହୋଇଲା ।
ଏକଥା ମୋ ମନକୁ ପରତେ ନ ଯାଇ
ପାଇଲାର ଧନକି ଏ ପଦାରେ ପକାଇ ।
ପବନ ବୋଇଲେ ଶୁଣ ହେ ଶ୍ରୀରାମ
ସେଥିରେ କଥା ଏବେ କହୁଛି ଉତ୍ତମ ।
ଆଗେ ତୁମ୍ଭ ପାଶକୁ ତାର ଭଗ୍ନି ଆସି
ବିଡମ୍ବନା କହିବାରୁ ରାଗିଲ ତୁମ୍ଭେଟି ।
ତାର ନାସା ଶ୍ରବଣ ଛେଦନ କଲେ ଯହୁଁ
ଖଟମିଛ ଲଗାଇ କହିଲା ସେ ତହୁଁ ।
ଏଣୁ ସୂର୍ପଣଖା ରାବଣ ଆଗେ କହି
ସେ ରାଗେ ରାବଣ ଆସି ତୋ ନାରୀ ଚୋରାଇ
ତୁମ୍ଭେ ରାମ ବୋଇଲ ନ ଛୁଇଁ ମୋର ନାରୀ
କେମନ୍ତେ ଲଙ୍କାକୁ ନେଲା ଚୋରି କରି ।
ଯେତେବେଳେ ବେନିଭାଇ ମୃଗୟାକୁ ଗଲ
ଲୁଚିଥିଲା ବନରେ ବିଶର୍ବାର ବାଳ ।
ତୁମ୍ଭେ ଯିବାରୁ ସେ ମଢ଼ିଆକୁ ଗଲା
ତୁମ୍ଭର ଘରଣୀକି ବହୁତ ବୁଝାଇଲା ।
ବୋଇଲା ତୋତେ ଆଜ ନେବି ଲଙ୍କାପୁର
ତୋତେ ଘରଣୀ କରି ରଖିବି ନିଜର ।
ସେ କଥା ଶୁଣି ଜାନକୀ କ୍ରୋଧେ ଶାପ ଦେଲା
ଲଙ୍କାକୁ ନେଲେ ବଂଶ ମରିବେ ବୋଇଲା ।
ତୁ ଜାଣି ନାହୁଁ କିରେ ରାମ ଲକ୍ଷ୍ମଣଙ୍କୁ
ତୋତେ ସେ ମାରିବାପାଇଁ ଅଇଲେ ଏଥିକୁ ।
କାଳପାଶକୁ ତୁହି ନ ଲଗାରେ ବେକେ
ମୋତେ ନେଲେ ମାରିବେ ରଘୁନାଥେ ।
ରାବଣ ବୋଇଲା ମୋର ଅଜୟଗଡ଼ ଲଙ୍କା
କେମନ୍ତେ ମାରିବ ମୋତେ ଦଶରଥ ପୁତା ।
ବଳବନ୍ତ ପଣ ତାର ଦେଖି ତୋ ଘରଣୀ
ଯାଇଣ ବୈଶ୍ୱାନରଙ୍କୁ କହିଲେ ସେ ବାଣୀ ।
ବୈଶ୍ୱାନର ବୋଇଲେ ନିଶ୍ଚୟ ଲଙ୍କାଯିବୁ
ଅସୁରଙ୍କୁ ମରାଇ ତୁ ଅଯୋଧ୍ୟା ଆସିବୁ ।
ଦେବତାଙ୍କର ଛଳରେ ମର୍ତ୍ତ୍ୟରେ ହେଲୁ ଜାତ
ସ୍ୱାମୀଙ୍କି ଘେନି ତୋର ମାର ଗୋ ଦଇତ ।

ସୀତୟା ବୋଇଲେ ଦୈତ୍ୟ ଛୁଇଁବମୋରଅଙ୍ଗ
ବୈଶ୍ୱାନର ବୋଇଲେ ମୁଁ ରହିବିତୋରଅଙ୍ଗ
ଶୁଣିକରି ଜାନକୀ ପରମ ତୋଷ ହେଲେ
ମୋର ସଙ୍ଗେ ଗଲ ଦୋହରାକୁ ସେ କହିଲେ
ପୁଣିହିଁ ଦୋହରାଅଗ୍ନି ମୋତେ ସୁମରିଲେ
ମୋତେ ଦେଖି ବୁଝାଇ ସମସ୍ତେ କହିଲେ ।
ବୋଇଲେ ସୀତାଙ୍କର ଅଙ୍ଗେ ରହ ତୁହି
ମଳୟ ଲାଗିକରି ଶୀତଳ କର ଦେହୀ ।
ଶୁଣିକରି ଜାନକୀ ଅଙ୍ଗେ ମୁଁ ରହିଲି
ମଳୟ ବହିକରି ଶୀତଳ କରାଇଲି ।
ସେଥିରେ ବୈଶ୍ୱାନର ଉପରେ ପ୍ରକାଶିଲା
ଧାବାନଳ ପ୍ରାୟ ତୋ ଘରଣୀ ଦେହହେଲା ।
ତେଜକୁ ଦେଖି ରାବଣ ନ ଛୁଏଁ ତୋ ଘରଣୀ
କରବାଳ ଧରିଣ କଟାଳ କଲା ପୁଣି ।
ସେଠାରୁ ତୋ ନାରୀ ଯାଇ ରଥରେ ବସିଲା
ଦେଖିକରି ଜଟାୟୁଷ ତା ସଙ୍ଗେ ଯୁଦ୍ଧକଲା ।
ଅନେକ ସମର ସେ ଜଟାୟୁଷ କଲା
ସ୍ୱର୍ଣ୍ଣ ରଥକୁ ତାର ଭାଙ୍ଗି ପକାଇଲା ।
ତୋହର ସତୀଙ୍କି ସେ କହିଲା ବେଗେ ଯାଅ
ସ୍ୱାମୀ ଦିଅର ଅଇଲେକି ବନକୁ ଅନାଅ ।
ତୁମ୍ଭର ସଂଗର ସେ କିଛି ନ ଦେଖିଲା
ବିକଳ ହୋଇ ବଇଦେହୀ ଶୋକକଲା ।
ଯହୁଁ ରଥକୁ ଭାଙ୍ଗିଲା ଗରୁଡ଼ ନନ୍ଦନ
କ୍ରୋଧରେ ତା ଡ଼େଣାକୁ କାଟିଲା ଦଶାନନ ।
ଖୋଜି ଖୋଜି ରାବଣ ସୀତାଙ୍କୁ ଭେଟିଲା
କ୍ରୋଧ ହୋନ୍ତେ ରାବଣ ତୋ ନାରୀ ଅଇଲା ।
ରଥରେ ବସନ୍ତେ ରଥକୁ ବୋହିନେଲା
ପକ୍ଷୀଜଟା ପଡ଼ିଣ ତୋ ନାମ ସୁମରିଲା ।
ଡ଼େଣା ତୋର କଅଁଳିଲା ତଡ଼ିଲା ଜଟାୟୁଷ
ପୁଣି ତାର ରଥକୁ କରିଦେଲା ଧ୍ୱଂସ ।
ଖଣ୍ଡ ଖଣ୍ଡ କରିଣ ଫୋପାଡ଼ି ସେ ଦେଲା
ଜାନକୀଙ୍କି ଘେନି ଏହି ସ୍ଥାନକୁ ଫେରିଲା ।
ଦେଖିକରି ରାବଣ ଧାଇଁଲାକ ବେଗେ
ଗରୁଡ଼ ନନ୍ଦନକୁ ଧଇଲା ସେ ରାଗେ ।
ଡେଣା ଗୋଡ଼କୁ ତାର କାଟି ପକାଇଲା
ତୋହର ସତୀକି ସେ ଲେଉଟାଇ ନେଲା ।

ରଥର ଉପର ପୀଢେ ବସିଲା ତୋର ନାରୀ
ରୋଦନ କରେ ସେ ତୋ ଗୁଣକୁ ସୁମରି ।
ତଳ ପୀଢରେ ରାବଣ ଯାଇଣ ବସିଲା
ବୈଶ୍ୱାନରଙ୍କ ତେଜରେ ଛୁଇଁ ନ ପାରିଲା ।
ଶୁକ, ସାରଣ ମନ୍ତ୍ରୀ ରଥକୁ ନେଲେ ବାହି
ବନ ଜୀବ ଲତାଙ୍କୁ ସୀତା ଗଲେ କହି ।
ଶ୍ରୀରାମଙ୍କୁ ଦେଖିଲେ କହିବ ମୋର କଥା
ବୋଲିବ ତୁମ୍ଭ ସୀତାଙ୍କୁ ନେଲା ଦଶମଥା ।
ରଥ ଯାଇ ଋଷ୍ୟମୁକ ପର୍ବତ ପରେ ହେଲା
ବାଳିର ଭାଇ ସୁଗ୍ରୀବ ସେ ପର୍ବତେ ଥିଲା ।
ସୁଗ୍ରୀବି ଦେଖି ଜାନକୀ ଅଳଙ୍କାର କାଢି
ବାନ୍ଧିଲେ ଯତ୍ନକରି ଅମଳାଣ ଶାଢୀ ।
ସୁଗ୍ରୀବର ବସିବା ସ୍ଥାନକୁ ଫିଙ୍ଗିଦେଲା
ଦେଖିକରି ସୁଗ୍ରୀବର ସାଇତି ରଖିଲା ।
ତହୁଁ ସେ ଜାନକୀଙ୍କି ରାବଣ ଘେନି ଗଲା
ଲଙ୍କାଗଡ଼ରେ ଯାଇ ପ୍ରବେଶ ହୋଇଲା ।
ଘରକୁ ନେବବୋଲି କଲା ସେ ବିଚାର
ଶୁକ, ସାରଣ ହିତକାରୀ ହୋଇଲେ ତୋହର ।
ବୋଇଲେ ଏ ନାରୀ ରଜସ୍ୱଳା ହୋଇଛି ତ
ନବରକୁ ନେବା ଆଜି ନୁହଇ ଉଚିତ୍ ।
ଶୁଦ୍ଧସ୍ନାନ କଲେ ତୁହି ନବରକୁ ନେବୁ
ଅନଳେ ଜଳୁଛି ନାରୀ ସମ୍ଭାଳି ନ ପାରିବୁ ।
ମନ୍ତ୍ରୀଙ୍କର ବୋଲରେ ଅଶୋକବନେ ରଖି
ଆପଣା ନବରକୁ ଗଲା ବିଂଶଆଖି ।
ପଞ୍ଚଦିନେ ଶୁଦ୍ଧସ୍ନାନ ଦେବୀ କଲାବେଳେ
ରାବଣକୁ ତୋର ନାରୀ ଡ଼କାଇ ଚଞ୍ଚଳେ ।
ତାହାର ଆଗରେ ଅଗ୍ନିରେ ସ୍ନାନକଲେ
ଦେଖିକରି ରାବଣାଦି ଭୟରେ ପଳାଇଲେ ।
ଏବେ ତୁମ୍ଭେ ଦୁଇଭାଇ ଏଠାରୁ ଚଳିଯାଅ
ଋଷ୍ୟମୁକ ପର୍ବତେ ସୁଗ୍ରୀବେ ଭେଟ ହୁଅ ।
ତାହାର ବଇରୀ ଯେ ବାଳିକି ତୁମ୍ଭେ ମୋର
ବାନର, ଭଲ୍ଲୁକ ଘେନି ଲଙ୍କାକୁ ବିଜେକର ।
ତେବେ ସେ ରାବଣ ତୋ ହସ୍ତରେ ମରିବ
ଦେବଙ୍କର କଷ୍ଟ ତୁମ୍ଭ ଯୋଗରୁ ସରିବ ।
ଆଗରେ ଦେଖିବ ପଡ଼ିଛି ଜଟାୟୁଷ
ସକଳ କଥା ତାଠାରୁ ଶୁଣିବ ରଘୁଶିଷ୍ୟ ।

ଶ୍ରୀରାମ ବୋଇଲେ ତୁମ୍ଭେ ଅଟ ଯେ କେବଣ
ସ୍ୱରୂପ ଦେଖାଅ ମୋତେ ପ୍ରତେ ଯିବି ପୁଣ ।
ପବନ ବୋଇଲେ ମୁଁ ଅଟଇ ମରୁତ
ତୋ ସତୀଙ୍କ ଅଗ୍ନି ସଙ୍ଗେ ଜଗିଛି ମୁହିଁତ ।
ଏତେବୋଲି ମୁନିବେଶ ଛାଡ଼ିଲା ମରୁତ
ନିଜ ରୂପ ଦେଖିବାରୁ ତୋଷ ରଘୁସୁତ ।
ବୋଇଲେ ପବନ ଦେବତା ଅଟୁ ତୁହି
ଓଳଗିବାକୁ ତୁ ମନା କଲୁ କାହିଁପାଇଁ ।
ପବନ ବୋଇଲେ ତୁ ଜଗତ ଠାକୁର
ସକଳ ଦେବତା ଯେ ଭିଆଣ ତୋହର ।
ତେଣୁ ତୁହି ଆମ୍ଭ ପିତା ଆମ୍ଭେ ତୋର ପୁତ୍ର
ଆମ୍ଭର ପାଇଁ ଦୁଃଖ ସହିଲ ବହୁତ ।
ଶୁଣିକରି ଶ୍ରୀରାମ ସନ୍ତୋଷ ହୋଇଲେ
ଜାନକୀଙ୍କ ସମ୍ଭାଳ ଯାଇଣ ବୋଇଲେ ।
ଆଜ୍ଞାପାଇ ପବନ ଅନ୍ତର୍ଦ୍ଧାନ ହେଲେ
ବେଦବରଙ୍କ ଛାମୁରେ ପ୍ରବେଶ ହୋଇଲେ ।
ସକଳ ବୃତ୍ତାନ୍ତ ସେ ବିଧାତାଙ୍କୁ କହି
ସେଠାରେ ପବନ ଲଙ୍କାଗଡ଼କୁ ଯାଇ ।
ଜାନକୀଙ୍କ କର୍ଣ୍ଣରେ କହିଲା ସବୁ କଥା
ଶୁଣିକରି ଜାନକୀ ଛାଡ଼ି ମନୁ ବ୍ୟଥା ।
ପାର୍ବତୀ ପଚାରିଲେ ସେଠାରୁ କିସ ହେଲା
କହିକରି ପବନ ଲଙ୍କାଗଡ଼କୁ ଗଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ପବନ ଯିବାରୁ ତାହା ଭୁଲିଲେ ରଘୁପତି ।
ମହାଅଜ୍ଞାନ ଆସି ଘୋଟିଛି ରାମଙ୍କୁ
ଜାଣିଲା କଥା ପାଶୋର ଯାଏ ସେ ମନକୁ ।
ପାର୍ବତୀ ବୋଇଲେ କେତେଦିନ ସେ ଅଜ୍ଞାନ
ଈଶ୍ୱର ବୋଇଲେ ଚଉଦ ମାସ ଜାଣ ।
ପାର୍ବତୀ ବୋଇଲେ ଯେବେ ଚଉଦ ମାସ ଯିବ
ବିଶର୍ବା ନନ୍ଦନ ଆଉ କିରୂପେ ମରିବ ।
ଈଶ୍ୱର ବୋଇଲେ ସେଥିରେ ଅଛି କଥାଛନ୍ଦ
ମାଲ୍ୟବନ୍ତ ପର୍ବତକୁ ଯିବେ ରାମଚନ୍ଦ୍ର ।
ସେଠାର ମାରକଣ୍ଡ ଅଗସ୍ତି ଋଷି ମିଳି
ସେତେବେଳକୁ ଛ'ମାସ ଯାଇଥିବ ପୁରି ।
ସେଠାରେ ବେନିଋଷି ଅଜ୍ଞାନ ହରିନେବେ
ତେବେ ସେ ରାବଣକୁ ଶ୍ରୀରାମ ମାରିବେ ।

ପାର୍ବତୀ ବୋଇଲେ ଜାଣିଲି ମୁଁ ଜାଣ
କହ ତହୁଁ କି କଲେ ଶ୍ରୀରାମ ଲକ୍ଷ୍ମଣ ।
ସଦାଶିବ ବୋଇଲେ ପାର୍ବତୀ ଗୋ ଶୁଣ
ସେଠାରୁ ଯାହା କଲେ ଶ୍ରୀରାମ ଲକ୍ଷ୍ମଣ ।
ଅଜ୍ଞାନ ଘୋଟିଅଛି ରାମଙ୍କ ଶରୀର
କ୍ଷଣକରେ କଥା ଯେ ହୁଅଇ ପାସୋର ।
ସେଠାରୁ ରାମ ଲକ୍ଷ୍ମଣ ବେଗେ ଚଳିଗଲେ ।
ଚାରିକୋଶ ଅନ୍ତରେ ଯାଇଣ ମିଳିଲେ ।
ପଡ଼ିଅଛି ଜଟାୟୁ ଦେଖି ପଚାରିଲେ
ଚେତାପାଇ ପକ୍ଷୀଜଟା ବଚନ କହିଲେ ।
କିମ୍ପାଇଁ କ୍ରୋଧ ମୋତେ ହୁଅ ରଘୁପତି
ରାବଣ ଘେନିଗଲା ତୋହର ଯୁବତୀ ।
ତାହାର ସଙ୍ଗରେ ମୁଁ ବହୁତ ଯୁଦ୍ଧକଲି
ଚରଣ ଡ଼େଣା କାଟନ୍ତେ ଏଠାରେ ପଡ଼ିଲି ।
ପୁଷ୍ପକ ବିମାନକୁ ସ୍ମରିଲା ଦଶାନନ
ଆସିକରି ତକ୍ଷଣେ ମିଳିଲା ବିମାନ ।
ମୁହିଁ ଯୁଦ୍ଧ କଲାବେଳେ ଲୁଚିଲା ତୋ ସତୀ
ଖୋଜିକରି ସୀତାକୁ ଆଣିଲା ଲଙ୍କପତି ।
ରଥରେ ବସାଇ ମୋତେ ବଚନ କହିଲା
ଶ୍ରୀରାମଙ୍କୁ ଦେଖିଲେ ତୁ କହିବୁ ବୋଇଲା ।
କହିବୁ ରାବଣ ଯେ କହିଗଲା ମୋତେ
ଏହିକୂଟେ ତିନିପୁର ଜିଣିଲି ଯୁକତେ ।
ସକଳ ଦେବତାଙ୍କୁ ପାଦରେ ଖଟାଇଲି
ତୋହର ଘରଣୀକି ଏବେ ହରିନେଲି ।
ଯେବେ ବୀର ସୁରପଣ ଅଛଇଁ ଯେ ତାର
ରାବଣକୁ ମାରି ସୀତାକୁ ଆଣିବ ତାହାର ।
ତେବେ ତିନିପୁରରେ ହୋଇବ ବଳବନ୍ତ
ନୋହିଲେ ତୋର ବଂଶ ରାବଣ କରେ ହତ ।
ଏତେକହି ଗଗନ ମାର୍ଗରେ ଚଳିଗଲା
ତୋର ଲାଗି ରଘୁନାଥ ମୋର ଜନ୍ମଗଲା ।
ଗଲା ପ୍ରାଣ ମୋର ଅଛି ପୁଣ ରହି
ଯିବାବେଳେ ସତୀ ମୋତେ କହିଯାଇଛଇଁ ।
ରାମଙ୍କୁ ଦେଖିବାଯାଏଁ ଥାଅ ଏଥି ରହି
ତୋହର ମୁଖରୁ ବାର୍ତ୍ତା ଶୁଣିବେ ରଘୁସାଇଁ ।
ତେଣୁକରି ପରାଣ ରଖିଅଛି ମୁହିଁ
ସୀତାର ଖବରଟି କହିଲି ବୁଝାଇ ।

ରାବଣକୁ ମାରିଣ ସୀତାଙ୍କୁ ଘେନିଆସ
ଲଙ୍କାପୁରକୁ ତୁମ୍ଭେ ଯାଅ ହେ ରଘୁଶିଷ୍ୟ ।
ଶ୍ରୀରାମ ପଚାରିଲେ କହ ପକ୍ଷୀବର
ରାବଣ ବୋଲିଣ ସେ କିସ ଜାତ ତାର ।
କାହାର କୁମର ସେ କେବଣ କୁଳେ ଜାତ
କହ ତୁ ଖଗ ବୀର ଶୁଣିବା ତଦନ୍ତ ।
ପକ୍ଷୀଜଟା ବୋଇଲା ସେ ବିଶର୍ବା ଋଷିସୁତ
ନୈକେଶା ରାକ୍ଷସୀଠାରୁ ହୋଇଲା ସେ ଜାତ
ବିଧାତାର ବରେ ସେ ସାଧିଲା ତିନିପୁର
ଜ୍ୟେଷ୍ଠ ଭାଇ ତାହାର ଅଟଇ କୁବେର ।
ସମୁଦ୍ରର ମଧ୍ୟରେ ଲଙ୍କାଗଡ଼ କରି
ବିପୁଳ ଭୋଗେ ସେ ଭୁଞ୍ଜଇ ଦଶଗିରି ।
ଏବେ ତୋର ଘରଣୀକି ନେଲା ସେ ଚୋରାଇ
ପାର ଯେବେ ତାହାକୁ ମାର ରଘୁନାଇଁ ।
ଦେବତାଏ ତୋତେ କୁଟ ଜାଣ କଲେ
କପଟ କରିଣ ବନବାସ କରାଇଲେ ।
ଦେବକୁଟରେ ରାବଣ ତୋ ନାରୀକି ନେଲା
ତୋରହସ୍ତେ ତାରବଂଶ ମରାଇବେ ଭଲା ।
ଦେବତାଏ ତୋହର ଘରଣୀ ପାଶେ ଆସି
ଅମୃତ ଦେଇଣ ସେ କହୁଛନ୍ତି ତୋଷି ।
ଅଗ୍ନି ପବନ ତୋର ନାରୀକି ଜଟେ ପୁଣ
କିଷ୍କିନ୍ଧ୍ୟା ଦୁଇଭାଇ ଚଳିଯା ବହନ ।
ବାଳିକି ମାରି ସୁଗ୍ରୀବ ସଙ୍ଗେ ମିତ ହେବ
ତେବେ ସେ ରାବଣର ସଗୋତ୍ର ନାଶ ଯିବ ।
ଏତେକହି ଜଟାୟୁଷ ଛାଡ଼ିଲା ପରାଣ
ଦେଖିକରି ବିକଳ ହେଲେ ରଘୁରାଣ ।
ଶ୍ରୀରାମ ବୋଇଲେ ଶୁଣ ଆରେ ଭ୍ରାତ
ସୀତାଙ୍କ ବାର୍ତ୍ତା କହିଲା ଗରୁଡ଼ର ସୁତ ।
ଆମ୍ଭର ହିତକାରୀ ରାବଣ ସଙ୍ଗେ ଯୁଝି
ଏମନ୍ତ ଲୋକକୁ କେମନ୍ତେ ପ୍ରାୟେ ବୁଝି ।
ପୁଣ୍ୟବନ୍ତ ପକ୍ଷୀ ଏ ଗରୁଡ ତନୟେ
ଦଶରଥ ରାଜାଙ୍କର ମଇତ୍ର ଏ ହୁଏ ।
ଏହାକୁ ଅଗ୍ନି ଦାନ ଦେବା ଆମ୍ଭେ ଏଥେ
ଶୁଖିଲା କାଷ୍ଠ ତୁ ଆଣ ଯା ତ୍ୱରିତେ ।
ଶୁଣିକରି ସଉମିତ୍ରୀ ରାମଙ୍କର ବାଣୀ
ହାତୀଭଙ୍ଗା କାଷ୍ଠ ସେ ସମ୍ପାଦିଲେ ଆଣି ।

ତକ୍ଷଣେ ଶ୍ରୀରାମ ଯେ ପେଶିଲେ ଅଗ୍ନିଶର
ପ୍ରଜ୍ୱଳିତ ହୋଇ ଜଳି ଉଠିଲା ବୈଶ୍ୱାନର ।
ଜଟାୟୁଷ ଶରୀରକୁ ଧରି ବେନିଭାଇ
ସଂସ୍କାର କରିଲେ ସେ ଅଗ୍ନି ଜାଳିଦେଇ ।
ଗୋଦାବରୀ ନଦୀକି ଗଲେ ନେଇ ଅସ୍ଥି
ସ୍ନାହାନ ତର୍ପଣ ସାରିଲେ ଦାଶରଥି ।
ରାମଙ୍କୁ ଦର୍ଶନ କରି ପକ୍ଷୀ ସ୍ୱର୍ଗେ ଗଲା
ଦେବତାଙ୍କ ସଙ୍ଗରେ ନିଶ୍ଚିନ୍ତେ ବସିଲା ।
ଏଥୁ ଅନନ୍ତରେ ଗୋ ଶାକମ୍ଭରୀ ଶୁଣ
ବନରୁ ଫଳମୂଳ ଆଣିଲେ ଲକ୍ଷ୍ମଣ ।
ଫଳମୂଳ ଭୁଞ୍ଜିଣ କଲେ ସେ ବିଚାର
ମନଦୁଃଖେ ଦାଶରଥି କହନ୍ତି ଉତ୍ତର ।
ମରୁତ ଠାରୁ ଶୁଣିଲି ପକ୍ଷୀଜଟାର ବାରତା
ଦଣ୍ଡକା ଅରଣ୍ୟରେ ମିଳିଲେ କରି ଚିନ୍ତା ।
ସେଠାରୁ ଶ୍ରୀରାମ ଲକ୍ଷ୍ମଣ ବେନିଭାଇ
ସୀତା ସୀତା ବୋଲି ଉଚ୍ଚେ ରୋଦନ କରିସେହି
ବେଳଅସ୍ତ ହେବାରୁ ମଢିଆକୁ ଆସି
ନିଦ୍ରାରେ ଦୁଇଭାଇ ପୁହାଇଲେ ନିଶି ।
ବିକଳରେ ଶ୍ରୀରାମ ସୀତାଙ୍କୁ ସୁମରି
କେଣେ ଗଲୁ ସଖିରେ ମୋତେ ଏକାକରି ।
କ୍ଷଣେ ମୋତେ ନ ଦେଖିଲେ ନୋହୁ ତୁ ତୃପତି
କାହା କୋଳେ ବିନୋଦ କରିବୁ ଆଜରାତି ।
ଆଉ କାହିଁ ସଖୀ ଗୋ ତୋର ମୋରମେଳ
ଏହି ଜନମଟି ମୋର ହେଉଛି ବିଫଳ ।
କେ ମନ ଜାଣିଣ ପାଳିବ ତୋତେ ଏବେ
କିସ କିସ କହି ତୋର ମନ ଯେ ରଞ୍ଜିବେ ।
କାହାକୁ ବିଶ୍ୱାସ ତୁ କହିବୁରେ ସଖୀ
କାହାକୁ ଅପୂର୍ବ ପଦାର୍ଥ ମାଗିବୁଟି ।
ନିଷ୍କଳଙ୍କ ଚନ୍ଦ୍ରମା ପ୍ରାୟେ ତୋର ମୁଖ
ଆଉ କାହିଁ ପ୍ରାପତ ହୋଇବ ମୋର ସୁଖ ।
ଆହା ମୋ ଜାନକୀ ଗୋ ଜନକ ଦୁହିତା
ମୋତେ କେହ୍ନେ ଛାଡ଼ିକରି ଗଲୁ ତୁହି ଏକା ।
ଏ ବନଲତାରେ କି ଅଛୁ ଲୁଚିଦେଇ
ଏତେକହି ରାମଚନ୍ଦ୍ର ଉଠିଲେ ବୋବାଇ ।
ମଢିଆର ଭିତରୁ ବାହାରି ଦାଶରଥି
ବନଲତା ଗହନରେ ଯାଇଣ ପଶନ୍ତି ।

ଲକ୍ଷ୍ମଣ ଗୋଡ଼ାଇ ଅଛନ୍ତି ପଛକତି
ବାତୁଳ ପ୍ରାୟେ ହୋଇ ଲୋଡ଼ନ୍ତି ରଘୁପତି ।
ଏଣେ ତେଣେ ଲୋଡ଼ିଣ ନ ପାଇ ପୁଣ କାହିଁ
ମଢ଼ିଆର ଦୁଆରେ ମିଳିଲେ ରଘୁସାଇଁ ।
ପତ୍ରକୁଟୀରକୁ ଚାହିଁଣ ବୋଲନ୍ତି ରଘୁସୁତ
କେଣେ ଗଲୁ ସୀତା ପର୍ଣ୍ଣକୁଟୀର ଛାଡ଼ିତ ।
ପଞ୍ଚବଟୀ ବନରେ ତୁ ମୋତେ ଏହା କଲୁ
କେଡ଼େ ଅଶୁଭ କଥା ଆଣି ମୋତେ ଦେଲୁ ।
ମୁନିଙ୍କର ବଚନରେ ଅଛଲି ତୋର ପାଶ
ଏବେ ତୋରଠାରେ ମୋର ହେଲା ଅସନ୍ତୋଷ
ଦେଶ ଘୋଷ ନ ଜାଣଇଁ କେଉଁ କତିଯିବି
ପ୍ରାଣର ବଲ୍ଲଭୀକି ମୁଁ କାହିଁ ଦେଖିବି ।
ଆହେ ବୃକ୍ଷମାନେ ତୁମ୍ଭେ ଏ ବନରେ ଅଛ
ନିରେଖ ହୋଇଲି ମୁଁ ଦଶରଥ ବତ୍ସ ।
ଏତେ କହି ଶ୍ରୀରାମ ଯେ କରନ୍ତି ରୋଦନ
ବଳରାମ ଦାଶ ପଶେ ଶ୍ରୀରାମେ ଶରଣ ।
ନୀଳଗିରି ନାଥ ଯେ ମୋତେ ଦେଲେ କହି
ତେଣୁ ଏ ରାମାୟଣ ଗ୍ରନ୍ଥ ମୁଁ ଲେଖଇ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ସୀତାଙ୍କୁ ନ ଦେଖିଣ ବିକଳ ରଘୁପତି ।
ତରୁଲତା ବନକୁ ଆକୁଳେ ପଚାରି
ତୁମ୍ଭ ସଙ୍ଗରେ ରହି ହରାଇଲି ନାରୀ ।
ଦେଖି ନ ପାରିଲି ମହତ ଜନ ପ୍ରାଣୀ
ଦୁଃଖ ବେଳେ ପ୍ରମାଦ ଦେଲ ମୋତେ ଆଣି ।
ଅନାଥ ହୋଇଣ ମୁଁ ବୁଲିବି ଏ ମହୀ
କେଣିକି ଯିବି ମୁହିଁ ପଶିବି ଅବା କାହିଁ ।
ଭୋ ଗିରିମାନେ ତୁମ୍ଭେ ଅଟ ହେ ମହତ
ତୁମ୍ଭଙ୍କୁ ଆଶ୍ରାକରି ହୋଇଲି ଅନାଥ ।
ଘରଣୀକି ସାଙ୍ଗେ ଘେନି ରହିଲି ତୁମ୍ଭକତି
କେ ଘେନି ଗଲା ମୋର ଜନକ ଦୁହିତୀ ।
କେଣେ ମୁଁ ଯିବି ସଖୀ କି ପାଇବି ବା କାହିଁ
କେବଣ ଦେଶରେ ମୁଁ ଦେଖିବି ବଇଦେହୀ ।
ତୁମ୍ଭେ ତ ଲତାମାନେ ଦିଶ ଅତି ଶୋଭା
କି ଜାଣି ପଟାନ୍ତର ଜାନକୀର ଆଭା ।
ତୁମ୍ଭେମାନେ ଲୁଚାଇଣ ଅଛ ମୋର ନାରୀ
କି ଜାଣି ପଟାନ୍ତର ସ୍ୱର୍ଗର ଅପସରୀ ।

ତାପରି ଘରଣୀ ମୋତେ ମିଳିବ ଆଉ କାହିଁ
ତାହାର ବିହୁନରେ ମୋତେ ଗତି ନାହିଁ ।
ଦେହକୁ ଥୋଇମୋର କେ ଜୀବନ ଘେନିଗଲା
ନିରେଖ ପ୍ରାଣୀ ମୋହର ହତ୍ୟା କେ କରିଲା ।
ବନ୍ଧୁଲି ପ୍ରାୟେ ଦିଶେ ମୋ ସହୀର ଓଷ୍ଠ
ଯୁବାକାଳେ ବିଧାତା ଦେଲା ପତ୍ନୀକଷ୍ଟ ।
ଅଣ୍ଡିରା କୋକିଳ ପ୍ରାୟେ ସଖୀର ଶୁଭେବାଣୀ
ଶୁଣି ମୁନିମାନେ ଜ୍ଞାନ ଛାଡ଼ନ୍ତି ଯେ ପୁଣି ।
ଜମ୍ବୁଦ୍ୱୀପ ସୁବର୍ଣ୍ଣ ପରାଏ ଯାର ଜ୍ୟୋତି
ଦେବ, ଅସୁର, ନର ଦେଖିଲେ ମୋହଯାନ୍ତି ।
ମତ୍ତଗଜ ଗମନା ଗଲୁ କେଉଁକତି
କେ ତୋହର ମନକୁ ରଞ୍ଜିବରେ ସ୍ୱତୀ ।
ଶ୍ରୀରାମଙ୍କ ନୟନରୁ ଅଶ୍ରୁଜଳ ଗଳି
ସେହିଠାରେ ଶ୍ରୀରାମ ଶର୍ବରି ଶେଷକରି ।
ଲକ୍ଷ୍ମଣଙ୍କ ଭୁଜଧରି ସେଠାରୁ ଚଳିଗଲେ
ପଞ୍ଚବଟୀ ବନକୁ ତ୍ୟାଗ ସେ କରିଲେ ।
ପଥୁକୀ ଜନକୁ ଦେଖିଲେ ପଚାରନ୍ତି
ଦକ୍ଷିଣ ମୁଖ ହୋଇ ସେଠାରୁ ଚଳିଯାନ୍ତି ।
ତିନିକୋଶ ପଥ ଯେ ତହୁଁ ଚାଲିଗଲେ
ଅତି ଭୟଙ୍କର କବନ୍ଧ ଦେଖିଲେ ।
ଆଗ ଆଡ଼କୁ ପିଠି ପଛ ଆଡ଼କୁ ଆଗ
ବିକଟାଳ ବଦନ ଦିଶେ ଅନୁରାଗ ।
ଗୋଡ଼ ନାହିଁ ବାହୁମାନେ ଯୋଜନେ ଯୋଜନେ
ପାଦ ନଥିବାରୁ ତାର ନ ଦିଶେ ଆଉ ଏଣେ ।
ଚଳି ନ ପାରଇ ସେ ଏକଠାବରେ ରହି
ହସ୍ତକୁ ବଢ଼ାଇ ସେ ଜୀବଜନ୍ତୁ ଖାଇ ।
ଶ୍ରୀରାମ ଲକ୍ଷ୍ମଣ ଯାଇ ସେଠାରେ ପରବେଶ
ଦେଖିକରି ଅସୁର ହୋଇଲା ହରଷ ।
ଦୁଇଭାଇଙ୍କି ବେଗେ ଧଇଲା ଅସୁର
ଆକର୍ଷଣ କଲା ନେଇ ତୁଣ୍ଡଠାରେ ତାର ।
ଦେଖିଣ ଶ୍ରୀରାମର ଶୁଖିଲା ଓଷ୍ଠ ତୁଣ୍ଡ
ବେନିଭୁଜ ଦଇତର ଦିଶେ ଗିରି ଖଣ୍ଡ ।
ଗାଢ଼େ ଭିଡ଼ିଣ ସେ ତୁଣ୍ଡେ ନେଇ ଭରି
ଦଣ୍ଡେ ବିଶ୍ରାମ କରି ମନରେ ବିଚାରି ।
ପଚାରିଲା ତୁମ୍ଭେ ଯେ କେବଣ ଦେଶୁଆଏ
କିସ ନାମ ତୁମ୍ଭର କିଏ ସେ ବାପମାଏ ।

କିମ୍ବା ବନେ ବୁଲୁଅଛୁ ଧନୁ ଶର ଧରି
ଆଜ ତୁମ୍ଭେ ମୋହର ଆହାର ହେଲା ସରି ।
ଶ୍ରୀରାମ ବୋଇଲେ ଯେ ଅଯୋଧ୍ୟା ଆମ୍ଭ ଦେଶ
ଆମ୍ଭେ ଦୁଇଭାଇ ଅଟୁ ଦଶରଥ ଶିଷ୍ୟ ।
ପିତାଙ୍କର ସତ୍ୟପାଳି ବନକୁ ଅଇଲୁ
ତିନିଜଣ ଅଇଲୁ ବନରେ ଦିନନେଲୁଁ ।
ପଞ୍ଚବଟୀ ବନରେ ରହିଲୁ ବାସକରି
ସେଠାରୁ ମୋ ନାରୀକି କେ ନେଲା ଚୋରୀକରି
ତାହାକୁ ଘୋରବନେ ଲୋଡ଼ିଲୁ ବିକଳରେ
ଏବେ ପଡ଼ିଲୁ ଆସି ତୋହର କବଳରେ ।
ମୁହିଁ ନିରେଖ ତୁ ମୋତେ ନକର ନିରାଶ
ଆରତ ଲୋକକୁ ନାଶିଲେ ବଡ଼ଦୋଷ ।
କବନ୍ଧ ବୋଇଲା କେ ଆହାର ଦିଏ ଛାଡ଼ି
ସମସ୍ତଙ୍କ ଉଦର ତ କ୍ଷୁଧା କରେ ଜଳି ।
ଶ୍ରୀରାମ ବୋଇଲେ ଏ କଥା ଅଟେ ସତ
ଜାଣିଶୁଣି ନାଶକଲେ ଅଟେ ବଡ଼ ପାପ ।
ତୋହର ମନ ଯେବେ ଥିଲା ଖାଇବାକୁ
ନଖାଇ କିମ୍ପା ରଖିଲୁ ଆମ୍ଭ ଦ୍ୱିଜଣଙ୍କୁ ।
ଯଦ୍ୟପି ଆମ୍ଭଙ୍କୁ ତୁ ନଛାଡ଼ି ବୀର
ମୋହର ସାନୁଜକୁ ବେଳେକ ରକ୍ଷାକର ।
ସାବତ ଜନନୀଙ୍କର ଅଟେ ଏହୁ ସୁତ
ନିଜପୁରେ ଯାଇ ଏ କହିବ ବାରତ ।
ଶୁଣିକରି ଅସୁର ଧଇଲା ଦୃଢ଼କରି
ଶ୍ରୀରାମଙ୍କୁ ବୁଦ୍ଧି ଯେ କେବେହେଁ ନ ସ୍ଫୁରି ।
ସଉମିତ୍ରୀ ବୋଇଲେ ଶ୍ରୀରାମ ମୁଖ ଚାହିଁ
ଏଡ଼େ ନିଉନ କିମ୍ପା ହୋଇଲେ ଗୋସାଇଁ ।
ଦିଅ ମୋତେ ଆଜ୍ଞା ପ୍ରଭୁ ନାଶିବ ଏହିକ୍ଷଣି
ଶୁଣିକରି ରଘୁନାଥ ହୃଦପଦ୍ମେ ଗୁଣି ।
ବୋଇଲେ ଭାଇରେ ପାରିବୁଟିକି ମାରି
ନପୁଣ ଏ ଦଇତ ତୁଣ୍ଡରେ ନେଇ ଭରି ।
ଶ୍ରୀରାମ କହିବାରୁ ବୀର ଯେ ଲକ୍ଷ୍ମଣ
ଖାପରୁ ଖଣ୍ଡାକୁ କାଢ଼ିଲେ ଲକ୍ଷଣ ।
ଦଇତର ଦୁଇଡ଼େଣା ପକାଇଲେ କାଟି
ଦେଖିକରି ଦେବତାଏ କଲେ ପୁଷ୍ପବୃଷ୍ଟି ।
ବେନିହସ୍ତ କବନ୍ଧର କାଟିବାରୁ ଜାଣ
କବନ୍ଧ ବିଚାରଇ ଏ ଅଟଇ ନାରାୟଣ ।

କବନ୍ଧ ବୋଇଲା ଶ୍ରୀରାମ ମୁଖ ଚାହିଁ
ତୋହର କୁଳ ଗୋତ୍ର ପଚାରିଲି ମୁହିଁ ।
ମୋର ପୂର୍ବଜନ୍ମ କଥା ଶୁଣ ରଘୁସାଇଁ
ତୁ ବୋଇଲୁ କୁଳ ଗୋତ୍ର ଏହାର ଯେ ନାହିଁ ।
ଏକଦିନେ ସୁରପତି ଭ୍ରମଣ କରିଗଲା
ମଧୁବନ ଭିତରେ ଯାଇଣ ପଶିଲା ।
ଦେଖିକରି ମୁହିଁ ତାକୁ ବଡ଼ ମାୟା କଲି
ବାନର ରୂପହୋଇ ବୃକ୍ଷରେ ବସିଲି ।
ତେଣୁ ମୁଁ ସୁରପତିକି ଭୟ ଯେ କରାଇଲି
ରୁପକୁ ବିକାଶି ମୁଁ ନୟନ ତରାଟିଲି ।
ସେହି ମୋତେ କୋପା କରିଣ ଶାପଦେଲା ।
ବିରୂପ ଅସୁର ତୁ ହୁଅରେ ବୋଇଲା ।
ସେଠାରୁ ପଳାଇଣ ଗଲି ମୁଁ ତଡ଼ିତି
ବାସବ ମୋର ପଛେ ଗୋଡ଼ାଇ ଧରିଲାଟି ।
କୋପହୋଇ ବଜ୍ରପାଣି ବିଧାଏ ମାଇଲା
ପାଦଜଙ୍ଘ ମୋହର ପେଟରେ ପଶିଗଲା ।
ଶିର ଦେଖ ଲାଗିଅଛି ପେଟର ଭିତରେ
ନିର୍ଲ୍ଲଜା ଜୀବନ ମୋର ରହିଅଛି ଶରୀରେ ।
କେତେ ପାତକ ଏଥି କଲିଣି ମୁଁ ପୁଣି
ପ୍ରତିଦିନ ଭକ୍ଷଇ ମାରି କେତେ। ପ୍ରାଣୀ ।
ଯୋଜନେ ଯୋଜନେ। ମୋର ବେନିହସ୍ତ ହେଲା
ଦେଖିଣ ବାସବ ମୋତେ ପ୍ରସନ୍ନେ କହିଲା ।
ବୋଇଲା ଶ୍ରୀରାମ ଯେ ମର୍ତ୍ତ୍ୟରେ ହେବେ ଜାତ
ଅଯୋଧ୍ୟା ନଗରେ ହେବେ ଦଶରଥ ସୁତ ।
ପିତାଙ୍କର ସତ୍ୟପାଳି ବନବାସ ଯିବେ
ଗୋଦାବରୀ କୂଳରେ ଘରଣୀ ହରାଇବେ ।
ଘରଣୀଙ୍କି ତାଙ୍କର ନେବ ଯେ ରାବଣ
ବିକଳରେ ଶ୍ରୀରାମ ବୁଲିବେ ବନେ ଜାଣ ।
ତୋହର ପାଶରେ ସେ ହେବେ ପରବେଶ
ନ ଚିହ୍ନି ତାହାଙ୍କୁ ତୁ ଧରିବୁ ରାକ୍ଷସ ।
ଦୁଇ ହସ୍ତରେ ଦୁହିଁଙ୍କ ଆଣିବୁ ତୁହି ଧରି
ରଘୁନାଥ ତୋତେ ଯେ କହିବେ ବୋଧକରି ।
ତେବେ ତୁ ତାହାଙ୍କର କଥା ନ ଘେନିବୁ
ବଳାତ୍କାର କରିଣ ଗାଢ଼େ ତୁ ଧରିବୁ ।
ଦେଖିଣ ଲକ୍ଷ୍ମଣ ଗାଢ଼େ ତୁ ଧରିବୁ
ତେବେ ତୁ କବନ୍ଧରେ ପାଇବୁ ମୋକ୍ଷ ଲାଭ ।

ତାଙ୍କଠାରୁ କଥା ଶୁଣି ଅଇଲି ମୁଁ ଏଥ
ନବଯୁଗ ହେଲା ମୁଁ ନିରେଖିଛି ପଥ ।
ବାଟଗହିଁଣ ତୋତେ ଅଛଇ ରଘୁପତି
ଭୋନାଥ ମୋକ୍ଷ ହୋଇଲି ତୋତେ ଦେଖି ଏଥି ।
ଅଗ୍ନିରେ ଭସ୍ମ ମୋତେ କର ରଘୁସୁତ
ତୋତେ ଭେଟିଲା ଉତ୍ତାରୁ ରଖିବ ଅନ୍ୟକେ ତ ।
ଏତେକହି କବନ୍ଧ ନମସ୍କାର କଲା
ଶରୀରରୁ ତାହାର ପ୍ରାଣ ଛାଡ଼ିଗଲା ।
ଶୁଣିଲେ ରଘୁନାଥ ହରଷ ମନରେ
କାଷ୍ଠଆଣ ବୋଲିଣ କହିଲେ ସୌମିତ୍ରୀରେ ।
ଶୁଣିଣ ଲକ୍ଷ୍ମଣ ଯେ ବେଗେ ଚଳିଗଲେ
ହାତୀଭଙ୍ଗା କାଠଆଣି ସେ ଠୁଳ କଲେ ।
ଦେଖିକରି ରଘୁନାଥ ହରଷ ମନ ହେଲେ
ଅଗ୍ନିଶର ବିନ୍ଧିଣ ତାହାକୁ ଜାଳିଦେଲେ ।
ଦେବତାଏ ସ୍ୱର୍ଗରେ ଦେଖି ହେଲେ ତୋଷ
ବୋଇଲେ ଅସୁରଙ୍କୁ ତ ମାରିବେ ରଘୁଶିଷ୍ୟ ।
କବନ୍ଧ ଶାପରୁ ମୁକ୍ତହୋଇ ଗଲା
ଅସୁର ତନୁ ଛାଡ଼ି ନିଜ ଦେହ ହେଲା ।
ଶ୍ରୀରାମଙ୍କୁ ସ୍ତୁତିକରେ ଅନ୍ତରୀକ୍ଷେ ଥାଇ
ତୋହରି ପ୍ରକାଶୁ ରାମ ମୁକ୍ତିହେଲି ମୁହିଁ ।
ତୁମ୍ଭେ ଦାଶରଥି ଶୁଣ ମୋର ବାଣୀ
ଋଷ୍ୟମୁକ ପର୍ବତାକୁ ଯାଅ ଏହିକ୍ଷଣି ।
ଅଷ୍ଟମନ୍ତ୍ରୀଙ୍କି ଘେନି ଅଛଇ ସୁଗ୍ରୀବର
ସେ କପିବର କାର୍ଯ୍ୟ କରିବ ତୋହର ।
ତାହାର ସଙ୍ଗେ ତୁମ୍ଭେ ମଇତ୍ର ହୋଇବ
ତାର ବୁଦ୍ଧିବଳରେ ସୀତାଙ୍କୁ ପାଇବ ।
ବିମ୍ପା ସରୋବର ଯେ ଦେଖିବ ଯାଇ ବାଟେ
ଶବରୀ ଯତି ଅଛନ୍ତି ତହିଁର ନିକଟେ ।
ସେ ଋଷିଙ୍କୁ ସେବାକଲେ ପାପ ଦୂର ହୋଇ
ପୁରାଣମାନଙ୍କରେ ତୋ କଥା ବଖାଣଇ ।
ଏତେକହି ପୁଷ୍ପକ ବିମାନେ ବସିଲା
ଶ୍ରୀରାମଙ୍କ ପ୍ରସାଦରେ ସ୍ୱର୍ଗକୁ ଚଳିଗଲା ।
କବନ୍ଧଠାରୁ ବାଣୀ ଶୁଣି ରଘୁନାଥ
ତହୁଁ ଚଳିଗଲେ ଥୋକାଏ ଦୂରପଥ ।
ବାଟରୁ ଫଳମୂଳ ନେଲେ ଯେ ଲକ୍ଷ୍ମଣ
ଶ୍ରୀରାମଙ୍କ ସଙ୍ଗରେ ଚଳିଲେ ତକ୍ଷଣ ।

ନିର୍ମଳ ସ୍ଥାନ ଦେଖି ଗଲେ ରଘୁମଣି
ଲକ୍ଷ୍ମଣଙ୍କୁ ବୋଇଲେ ଦିଅରେ ମୋତେ ପାଣି
ଶୁଣିକରି ସଉମିତ୍ରୀ ଚୌଦିଗେ ଗହିଲେ
ପାଖରେ ଜଳ କାହିଁ ନାହିଁ ସେ ଦେଖିଲେ ।
ବଜ୍ରଶର ଧରିଣ ପର୍ବତ ଦେଲେ ଚିରି
ପାତାଳ ଭେଦି ଗଙ୍ଗା ସେଠାରୁ ବାହାରି ।
ତହିଁରେ ଶ୍ରୀରାମ ଯେ ସାରିଲେ ନିତ୍ୟକର୍ମ
ଫଳ ମୂଳ ସେଠାରେ ଭୁଞ୍ଜିଲେ ବେନିଜନ ।
ଲକ୍ଷ୍ମଣା ହ୍ରଦବୋଲି ତାର ନାମ ଦେଲେ
ଯୁଣେକ ପରିଯନ୍ତେ ଦୀର୍ଘେକ ଦେଖିଲେ ।
ସେ ସ୍ଥାନରେ ରହିଣ ପୁହାଇଲେ ନିଶି
ସେ ହ୍ରଦକୁ ସଂସ୍କାର କଲେ ରଘୁଶିଷି ।
ରଜନୀ ଶେଷରେ ସେଠାରୁ ଚଳିଗଲେ
ଲତାବନ ଦେଖିଣ ଚିନ୍ତାରେ ବୁଲିଲେ ।
ତୁଙ୍ଗଭଦ୍ରା ନଦୀକୂଳେ ହେଲେ ପରବେଶ
ଦେଖିଲେ ସେ ନଦୀ ନିର୍ମଳ ସଦୃଶ୍ୟ ।
ସେ ନଦୀରେ ବେନିଭାଇ ନିତ୍ୟକର୍ମ ସାରି
ସେଠାରେ ଲିଙ୍ଗପୂଜା କଲେ ଚାପଧାରୀ ।
ବଉଳା ପାଷାଣ ଯେ ଲକ୍ଷ୍ମଣ ଆଣିଦେଲେ
ସେହି ପାଷାଣକୁ ରାମ ଜୀବନ୍ୟାସ କଲେ ।
ପୂଜା ସାରି ଶ୍ରୀରାମ ଲିଙ୍ଗଙ୍କ ନାମ ଦେଲେ
ବିରୁପାକ୍ଷ ଲିଙ୍ଗ ବୋଲି ଶ୍ରୀରାମ କହିଲେ ।
କନ୍ଦମୂଳ ଫଳ ବନୁଁ ଆଣିଲେ ଲକ୍ଷ୍ମଣ
ସେହି ବେନିଜନ କଲେକ ଭୋଜନ ।
ସେଦିନ ସେହିଠାରେ ରହିଲେ ବେନିଭାଇ
ରଜନୀ ଶେଷରେ ସେଠାରୁ ଚଳିଯାଇ ।
ଯୋଜନେ ପରିଯନ୍ତେ ଦକ୍ଷିଣ ମୁଖେ ଗଲେ
ଶବରୀ ମୁନିଙ୍କି ସେ ସେସ୍ଥାନେ ଦେଖିଲେ ।
କବନ୍ଧ ଯେଉଁପରି ପୂର୍ବେ କହିଥିଲା
ଦେଖିକରି ପ୍ରତେଗଲେ ରଘୁକୁଳ ବଳା ।
ଶବରୀ ଋଷିଙ୍କି ରାମ ପୂଜା ବିଧି କଲେ
ଆପଣାର କୁଳଗୋତ୍ର ମାନ ସେ କହିଲେ ।
ବୋଇଲେ। ଅଯୋଧ୍ୟା ନଗ୍ରରେ ଆମ୍ଭଘର
ଦଶରଥ ରାଜାଙ୍କର ଅଟୁଁ ଯେ କୁମର ।
କୌଶଲ୍ୟା ନାମରେ ମୋହର ଚିହ୍ନଅଛି
ସାବତ ଜନନୀ ମୋର ବହୁତ ଅଛନ୍ତି ।

ସାନୁଜ ଲକ୍ଷ୍ମଣ ଏ ସୁମିତ୍ରା ନନ୍ଦନ
କୈକେୟୀ ଜନନୀର ଭରତ ପୁତ୍ର ଜାଣ ।
ଶତୃଘନ ଭାଇ ଯେ ଲକ୍ଷ୍ମଣର ସାନ
ଚରିଭାଇ ଆମ୍ଭେ ତିନିମାତାରୁ ଉତ୍ପନ୍ନ ।
କୈକେୟୀ ଜନନୀ ମୋଠାରେ ମାୟା କଲା
ରାଜାଙ୍କୁ ମଣାଇଁ ସେ ସତ୍ୟ କରାଇଲା ।
ବୋଇଲା ଶ୍ରୀରାମ ଯେ ବନକୁ ଏବେ ଯାଉ
ଚଉଦ ବରଷ ସେ ବନରେ ବୁଲୁଥାଉ ।
ଚଉଦ ବରଷ ଗଲେ ଏଥିରେ ହେବ ରାଜା
ଏତେ ଭ୍ରତ ହୋଇ ରାଜା ପାଳିବ ପରଜା ।
ସେ ବଚନ ଶୁଣି ମୁଁ ବନକୁ ଅଇଲି
ଭାଇ ଭାର୍ଯ୍ୟାଙ୍କୁ ସେ ସଙ୍ଗରେ ଆଣିଲି ।
ତେରବର୍ଷ ପର୍ଯ୍ୟନ୍ତେ ବନରେ ନେଲି ଦିନ
ପଞ୍ଚବଟୀ ବନରେ ରହିଲୁଁ ଆମ୍ଭେ ଜାଣ ।
ଭାରିଯାକୁ ହରାଇଲି ଗୋଦାବରୀ କୂଳେ
ତାହାକୁ ଲୋଡ଼ଇ ଏବେ କର୍ମର ଅବଳେ ।
ଶୁଣିଣ ଶବରୀ ମନରେ ତୋଷ ହେଲା
ଶ୍ରୀରାମଙ୍କ ପାଦେ ସେ ଅନେକ ପୂଜାକଲା ।
ଆପଣା ମଢ଼ିଆରେ ସାଇଣ ମିଳିଲା
କମଣ୍ଡଳ ପାଣିରେ ଚରଣ ପଖାଳିଲା ।
କୃତାର୍ଥ ହେଲି ବୋଲି ଶିରେ କରଯୋଡ଼ି
କୃଷ୍ଣାଜିନ ଛାଲ ଦୁଇଗୋଟି ଆଣି ପାଡ଼ି ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ବସାଇ ସ୍ତିରୀମୁନି
ବସିଲେ ରଘୁନାଥ ଚରଣ ପଖାଳି ।
ମନରୁ ଶୋକ ତେଜି କୋଦଣ୍ଡ ଚାପଧାରୀ
ହରଷରେ ବସିଲେ ଲକ୍ଷ୍ମଣ ସଙ୍ଗ କରି ।
ଶବରୀ ବୋଇଲା ଶୁଣ ହେ ରଘୁନାଥ
ସଞ୍ଚିକରି ରଖିଅଛି ପାଚିଲା ଫଳ ଚ୍ୟୁତ ।
ତୁମ୍ଭେ ଆସିବାକୁ ମୁଁ ଅଛି ବାଟ ଚାହିଁ
ଇନ୍ଦ୍ରଦେବତା ମୋତେ ଏଥେ ଗଲେ କହି ।
ତେଣୁ ଦିବ୍ୟ ଫଳ ମୁଁ ସଞ୍ଚିଣ ଥୋଇଥାଇ
ନୂତନ ଫଳ ସଞ୍ଚିଲେ ସେ ଭଳି ଭୁଞ୍ଜଇ ।
ଏହିରୂପେ ସାତ ଯୁଗ ଗଲା ଯେ ମୋହର
ତୋତେ ଚାହିଁଣ ମୁଁ ରହିଛି ରଘୁବୀର ।
ଶବରୀ ବାଣୀ ଶୁଣି ଶ୍ରୀରାମ ସନ୍ତୋଷ
ଆଣ ଆଣ ସ୍ତିରୀ ମୁଁ ଭିଆଇଅଛ କିସ ।

ରଘୁନାଥଙ୍କ ଆଜ୍ଞାରେ ଶବରୀ ଯାଇଣ
କନ୍ଦମୂଳ ଆଣିକରି ବେଗେ ଦେଲା ପୁଣ ।
ଶିଆଳି ପତ୍ରରେ ଆମ୍ବଫଳ ଥିଲା ଥୋଇ
ଶ୍ରୀରାମଙ୍କ ଛାମୁରେ ଶବରୀ ଦେଲା ନେଇ ।
ସୁପକ୍ୱ ଆମ୍ବରେ ଯେ ଦନ୍ତ ମୁଦ୍ରାଅଛି
ଆମ୍ବ ଦେଖି ରଘୁନାଥ ଶବରୀକି ପୁଛି ।
ଦନ୍ତମୁଦ୍ରା ମାନ ତ ଏଥିରେ ଅଛି ଲାଗି
ଭଲାତୁ ଶବରୀ ସଞ୍ଚାଣଶ ଅଛୁ ଜାଣି ।
ଶବରୀ ବୋଇଲା ମୁଁ ସୁଆଦ ବାରି ରଖି
ତେଣୁ ସେ ଦନ୍ତ ଚିହ୍ନ ବସିଛି ରଘୁବସି ।
ଶ୍ରୀରାମ ବୋଇଲେ ଆମ୍ବ ବେଗେ ଦିଅ ଆଣି
ସନ୍ତୋଷରେ ଭୋଜନ କଲେ। ରଘୁମଣି ।
ଭୁଞ୍ଜିଣ ଆଞ୍ଚୋବନ କଲେ ରଘୁନାଥ
ପୁଣିହିଁ ସୁନ୍ଦରୀଆମ୍ବ ଅଣେ ଶବରୀ ତ ।
କରେ ଧରି ଶ୍ରୀରାମ ତଳେ ପକାଇଲେ
ଦନ୍ତଚିହ୍ନ ନାହିଁ ଏଥି ବୋଲିଣ ବୋଇଲେ ।
ଭକତ ବାନ୍ଧବ ସେ ଅଟନ୍ତି ଦାଶରଥି
ପ୍ରଭୁପଣକୁ କେହି ନୋହିଲେ ସାମଟି ।
ସେ ଆମ୍ବକୁ ଶବରୀ ଯତନେ ରଖିଲା
ଶ୍ରୀରାମ ଭୁଞ୍ଜିବେ ବୋଲି ଆଗରୁ ସଞ୍ଚିଥିଲା ।
ଦୂର ବନରେ ପଶି ସାଉଁଟଇ ଫଳ
ଦନ୍ତେ ଚାପିବାରୁ ଜାଣେ ସ୍ୱାଦ କି ଆମ୍ବିଳ ।
ଆମ୍ବିଳାକୁ ପକାଇ ସ୍ୱାଦକୁ ସାଇତଇ
ଏମନ୍ତ ଆମ୍ବକୁ ସେ ଆଣିଣ ସଞ୍ଚଇ ।
ଅଜ୍ଞାନୀ ଲୋକ ମୁଁ ଯେ ଅଟେ ଶବରଣୀ
ସ୍ୱାଦଦ୍ରବ୍ୟ ଚାଖିଣ ଠୁଳ କରେ ପୁଣି ।
ସୁନ୍ଦରୀ ଆମ୍ବରୁ ସେ ନ ଚାଖି ଆଣିଲା
ଭାବଗ୍ରାହୀ ନାଥ ତାହା ଜାଣି ନ ଖାଇଲା ।
ହୃଦରେ ଶବରୀ ବିଚାର କରେ ତାର
ସେ ଆମ୍ବକୁ ରଘୁନାଥ କଲେକ ଆହାର ।
ଏମନ୍ତ ବିଚାର ଶବରୀ ମନେ କଲା
ଶ୍ରୀରାମ ନାରାୟଣ ବୋଲିଣ ଜାଣିଲା ।
ଯେତେ ଆମ୍ବରେ ବସିଥିଲା ଦନ୍ତଘାତ
ଭାବରେ ତାହା ଭୋଜନ କଲେ ରଘୁସୁତ ।
ସୁନ୍ଦରୀ ଆମ୍ବକୁ ସେ ପଛେ ନେଇ ଦେଲା
ଅଶୁଦ୍ଧ ଦ୍ରବ୍ୟ ସେ ବୋଲି ରାମ ନ ଭୁଞ୍ଜିଲା ।

ଶବରୀ କହଇ ଯେ ବେନିକର ଯୋଡ଼ି
ଭୋନାଥ ଏ ଆମ୍ବକୁ ମୁଁ ଆଣିଛି ଦୁଃଖ ପଡ଼ି
ଏ ଆମ୍ବ ଅଟେ ଭଲ ନ ଖାଅ କାହିଁପାଇଁ
କେତେ କଷ୍ଟେ ଆଣି ରଖିଥିଲି ରଘୁସାଇଁ ।
ଭଲ ବୋଲି ଏ ଆମ୍ବକୁ କେମନ୍ତେ ଜାଣିଲୁ
ସେ ଯେବେ ଭଲ ଆମ୍ବ ମୁଦ୍ରା ତୁ ନ ଦେଲୁ ।
ଅମୁଦ୍ରା ପଦାର୍ଥକୁ ଖାଇ ନ ଯୋଗାଇ
ଭୁଞ୍ଜିଲେ ଅବଶ୍ୟତ ବିରୋଧ ତହିଁ ହୋଇ ।
ଯେତେ ଆମ୍ବରେ ତୋର ଦନ୍ତ ଚିହ୍ନ ଥିଲା
ସେ ମୋତେ ଶବରୀ ଗୋ ଭଲ ଯୋଗାଇଲା ।
ଅମୁଦ୍ରା ପଦାର୍ଥକୁ ମୁଁ ନ କରଇ ଗ୍ରାସ
ଏତେ କହି ଆସନରୁ ଉଠି ରଘୁଶିଷ୍ୟ ।
ଲକ୍ଷ୍ମଣ ଆମ୍ବଫଳ ଭୋଜନ ତହିଁ କଲେ
ଶବରୀ ପାଣିରେ ମୁଖ ପଖାଳିଲେ ।
ଶ୍ରୀରାମ ବସିଲେ ମୃଗଛାଲର ଉପରେ
ଶ୍ରୀରାମଙ୍କ ଚରଣ ଶବରୀ ଚପେ ଧୀରେ ।
ଚରଣ ମଞ୍ଜାଳନ୍ତେ ଶ୍ରୀରାମ ନିଦ୍ରା ଗଲେ
କେତେବେଳ ଉତ୍ତାରୁ ନିଦ୍ରାକୁ ତେଜିଲେ ।
ମୁଖ ଧୋଇବାକୁ ଜଳ ଦେଲା ସେ ଶବରୀ
ମୁଖ ପଖାଳି ବସିଲେ କୋଦଣ୍ଡ କାଣ୍ଡଧାରୀ ।
ମୃଗଛାଲ ଉପରେ ରାମଚନ୍ଦ୍ର ବସି
ଝୀନବସନରେ ଶବରୀ ଦେଲା ପୋଛି ।
କରଯୋଡ଼ି ଶବରୀ ଅଗରେ ଉଭାପୁଣ
ବୋଇଲା ମୋତେ ଦୟାକର ହେ ରଘୁରାଣ ।
ତୁମ୍ଭେଟି ପ୍ରଭୁ ବ୍ରହ୍ମ ଶଙ୍ଖଚକ୍ରଧାରୀ
ରାବାଣକୁ ମାରିବାକୁ ଅଛ ଅବତରୀ ।
ମୁନିମାନେ ମୋତେ ହାଦେଛନ୍ତି କହି
ତୋର ପାଦ ଧୋଇଲେ ମୁକତି ହେବି ମୁହିଁ ।
ଶ୍ରୀରାମ ବୋଇଲେ ମୁନି କେଉଁଠାରେଛନ୍ତି
ଶବରୀ କହଇ ଯେ ଶୁଣ ରଘୁପତି ।
ତପସ୍ୟାର ବଳେ ସେ ଯେ ସ୍ୱର୍ଗପୁର ଗଲେ
ଯିବାର ବେଳେ ସେ ଯେ ମୋତେ କହିଥିଲେ
ବୋଇଲେ ନାରାୟଣ ମାନବ ରୂପ ହୋଇ
ଏହି ବନେ ବୁଲିବେ ସେ ଭାରିଯା କରାଇ ।
ତାହାଙ୍କର ନାମ ଯେ ଅଟଇ ଦାଶରଥି
ତୁ ତାଙ୍କର ଚରଣରେ କରିବୁ ଭକତି ।

ଶ୍ରୀରାମ ଚରଣ ସେବି ହୋଇବୁ ତୁ ସିଦ୍ଧ
ନିଶ୍ଚେ ତୁହି ବସିବୁ ଦେବତାଙ୍କର ମଧ୍ୟ ।
ତାଙ୍କଠାରୁ ଶୁଣି ଆଶା କରିଅଛି ମୁହିଁ
ଏତେ କାଳକେ ଭେଟ ପାଇଲି ଗୋସାଇଁ ।
ଦେଖ ମୁନିମାନଙ୍କର ପର୍ବତରେ ଘର
ସ୍ୱାହା ପ୍ରୋକ୍ଷଣୀମାନ ଅଛି ହେ ରଘୁବୀର ।
ହୋମ ସ୍ରୁବ ସ୍ରୁଚ ପାତ୍ରୀ କୁଶ ପୀଢ଼ା ଅଛି
କୃଷ୍ଣା ଜିନ ଛାଲମାନ ଏଥିରେ ପଡ଼ିଛି ।
ଅତିଥି ଅଇଲେ ସେ ମାରନ୍ତି ଜୀବମାନ
ସେ ଚର୍ମ ପଡ଼ିଅଛି ଦେଖ ହେ ରଘୁନାନ ।
ମୁହିଁ ଯତ୍ନ କରି ଆମ୍ବ ରଖିଥିଲି ବାଛି
ମୋକ୍ଷ ହୋଇଲି ଆଜି ତୁମ୍ଭପାଦ ଧୋଇ ।
ଋଷ୍ୟମୂକ ପର୍ବତକୁ ଯାଅ ରଘୁମଣି
ସୁଗ୍ରୀବକୁ ଭେଟିଲେ କାର୍ଯ୍ୟ ସିଦ୍ଧି ଜାଣି ।
ଅଷ୍ଟସେନାପତି ଘେନି ଅଛି ସୁଗ୍ରୀବର
ତାଙ୍କ ସଙ୍ଗେ ପ୍ରୀତି ତୁମ୍ଭେ କର ରଘୁବୀର ।
ସୀତାଙ୍କୁ ପାଇବ ଯେ ତାଙ୍କର ପରସନ୍ନେ
ତୁମ୍ଭଙ୍କୁ ଉପକାର ଯେ କରିବେ ସେମାନେ ।
ଶ୍ରୀରାମ ବୋଇଲେ ଗୋ ଶବରୀ ଏବେ ଶୁଣ
ମେଷ ଛେଳି ଗୋଟିଏ ଅଛି ତା ପାଶେଣ ।
ଏ ଛେଳିଟିକୁ କିମ୍ପା ରଖିଛୁ ଶବରୀ
ମେଥିର ଚରିତ ମୋତେ କହ ଫେଡ଼ିକରି ।
ଶର୍ଦ୍ଦୂଳା ସିଂହୟାଙ୍କର ଭଗାରି ଅଟନ୍ତି
ସେ ଆସି କିମ୍ପାଘାତ ଏହାକୁ ନ କରନ୍ତି ।
ଅସୁରମାନଙ୍କର ଖାଇବାର ଯୋଗ୍ୟ
ବନସ୍ତରେ ଏହାଙ୍କୁ ରଖିଛୁ କେଉଁଭାବ ।
ଶବରୀ ବୋଇଲା ଶୁଣ ହେ ରଘୁପତି
ପୂର୍ବର କଥା ଏବେ କହୁଅଛି ଚେତି ।
ପୁରୁଷେ ତପା ସାଧିଲେ ତପ ତାକୁ କହି
ତୋହର କରୁଣା ହେଲେ କାମଧେନୁ ପାଇ ।
ତେଣୁ ସେ ତପସିଦ୍ଧି ହୁଅଇ ତାଙ୍କର
ବ୍ରହ୍ମମୁନି ପଦଗୋଟି ସଂସାରକୁ ସାର ।
ସ୍ତିରୀ ଯେବେ ତପରେ ପ୍ରବେଶ ହୁଅନ୍ତି
ମନାସିଲା ବ୍ରତ ସେ ହସ୍ତରେ ଧରନ୍ତି ।
ମନାସିଲା ବ୍ରତ ତାଙ୍କୁ ହୁଏ ପରାପତ
ତେବେ ସେ ଦେବତାଏ ଛେଳିଏ ଦିଅନ୍ତିତ ।

ସିଦ୍ଧଛେଳି ବୋଲିଣ ତାର ନାମ ଜାଣ
ତେବେ ସେ ସ୍ତିରୀ ବ୍ରତ ହୁଅଇ ସଂପୂର୍ଣ୍ଣ ।
ଯେବେ ସେହି ସ୍ତିରୀ ଯେ ଶ୍ରୀହରିଙ୍କି ଦେଖେ
ମର୍ତ୍ତ୍ୟପୁର ଉପେକ୍ଷି ବୈକୁଣ୍ଠ ପୁରେ ବସେ ।
ତୋତେ ଦେଖିଏ ଛେଳି ସ୍ୱର୍ଗପୁର ଯିବ
ଶୁଣିକରି ସନ୍ତୋଷ ହୋଇଲେ ରାଘବ ।
ଏତେ କହି ଶବରୀ ଛାଡ଼ିଲା ନିଜ ଅଙ୍ଗ
ଶ୍ରୀରାମଙ୍କୁ ଦେଖିଣ ସ୍ୱର୍ଗକୁ ଗଲା ବେଗ ।
ପୁଷ୍ପକ ବିମାନ ଯେ ସେଠାରେ ଆସିମିଳି
ନମସ୍କାର କରିଣ ଶବରୀ ବେଗେ ଚଳି ।
ସ୍ୱର୍ଗପୁରେ ପ୍ରବେଶ ହୋଇଲା ସେ ଯାଇ
ଅନେକ ଗଉରବ କଲେ ଶଚିସାଇଁ ।
ସେଠାରୁ ଶ୍ରୀରାମ ଯେ ମନେ ବିଚାରିଲେ
ଅଗ୍ନିଶର ପେଶି ଶବରୀକି ଦଗ୍ଧ କଲେ ।
ଶବରୀକି ମୋକ୍ଷକରି ସେ ସ୍ଥାନରୁ ଗଲେ
ଭଡ଼ାଦଣ ଯାଆନ୍ତେ ସେ ଛେଳିକି ଦେଖିଲେ ।
ଗୃହସ୍ଥର ସଙ୍ଗରେ ଚରେ ସେ ଛେଳୁଣୀ
ତୃଷାରେ ପୁରୁଷଙ୍କୁ କହେ ମୃଦୁବାଣୀ ।
ଋଷିଙ୍କର ବାମ୍ପୀକି ଯିବା ଏବେ ଚାଲ
ସେ ଜଳ ପିଇଲେ ଦେହ ହେବ ମୋ ଶୀତଳ
ଛେଳିଟି ବୋଇଲା ଗୋ ଘରଣୀ ମୋର ଶୁଣ
ମରିବାର କାଳ ଆସି ହୋଇଲା ଘଟଣ ।
ଛେଳିଆଣୀ ବୋଇଲା ମରିବ ତୁମ୍ଭେ ଯେବେ
ହେ ପ୍ରାଣନାଥ ସଙ୍ଗରେ ନିଅ ମୋତେ ତେବେ
ଛେଳି ବୋଇଲା ମୁଁ ଯେ ନୁହେଁ ରଘୁନାଥ
ତୁ ମଲେ ଘରଣୀ ମୋତେ ମିଳିବ ବହୁତ ।
ଛେଳିଅଣୀ କହିଲା କହ ସେହି କଥା
ଘରଣୀ ଲାଗି ଶ୍ରୀରାମ ପାଇଲେ କେହ୍ନେ ବ୍ୟଥା
ଛେଳି ବୋଇଲା ତୁହି ଏକମନେ ଶୁଣ
ତହିଁର ଯେ କଥା ତୋତେ କହିବି ଏବେ ପୁଣ ।
ଦଶରଥ ରାଜନ ଘରଣୀ ବୋଲ କଲା
ରାଣୀର ସ୍ନେହାବସେ ସେହୁ ସତ୍ୟ କଲା ।
ରାତ୍ର ପାହିଲେ ରାମ ହୁଅନ୍ତେ ଅଭିଷେକ
ରାଜା ସଜ ଶୁଣିଣ ସେ ହୋଇଲେ ଉତ୍ସୁକ ।
ତାହା ଶୁଣି ଶ୍ରୀରାମ ବହନ ବନେ ଗଲେ
ଭାଇ ଭାରିଯାଙ୍କୁ ସେହି ସଙ୍ଗତରେ ନେଲେ ।

ରାମଙ୍କୁ ନ ଦେଖି ରାଜା ବାରଦିନେ ହତ
ଭରତ ରାଜା ନୋହିଲା ଅଯୋଧ୍ୟା ରାଜ୍ୟେତ ।
ଧର୍ମରେ ଜ୍ୟେଷ୍ଠଭାଇ ଶ୍ରୀରାମ ଅଟେ ତାର
ସେଥିରେ ଲଜ୍ୟାକଲା କୈକେୟୀ କୁମର ।
ସ୍ତ୍ରୀ ବୋଲି ନ ଘେନି ସକଳ ତେଜ୍ୟା କଲା
ରାମନାଥ ସୁମରିଣ ସେ ଦିନ ବଞ୍ଚିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଶ୍ରୀରାମ ଲକ୍ଷ୍ମଣ ପଞ୍ଚବଟୀରେ ବିହରି ।
ଦଶମଥା ଭଉଣୀର କାଟିଲେ ନାକ, କାନ
ରାବଣଙ୍କୁ ସୂର୍ପଣଖା କହିଲା ସେମାନ ।
ଖରଦୂଷଣ ତ୍ରିଶିରା ମରିବାର ଶୁଣି
ମନରେ ବିଚାର କଲା ବିଂଶପାଣି ।
ବୋଇଲା ନାରାୟଣ ମର୍ତ୍ତ୍ୟରେ ଅବତାର
ପିତା ବୋଲେ ରାମଚନ୍ଦ୍ର ଅଇଲେ ବନସ୍ତର ।
ଭାଇ ଭାରିଯାଙ୍କୁ ସେ ଆଣିଛି ସଙ୍ଗରେ
ନାରାୟଣ ଶବଦତ ରହିଛି ତାହାଠାରେ ।
ଅସୁର ମାରିବ ବୋଲି ହୋଇଛି ଅବତାର
ରାମ ସ୍ୱୟଂ ନାରାୟଣ ଶଙ୍ଖ ଚକ୍ରଧର ।
ଦେବଙ୍କର ଦୁଃଖ ସେ କରିବେ ନିବାରଣ
ଦେଖିବା କେତେ ବପୁଅଛି ତାର ପୁଣ ।
ଏହା ବିଚାରି ତାଡ଼କୀ ପୁତ୍ରକୁ ଗାଳିଦେଲା
ଅରଣ୍ୟର ଭିତରେ ସେ ଲୁଚିଣ ରହିଲା ।
ବୋଇଲା ରାମ ତୋତେ ମାରିବାର ବେଳେ
ତ୍ରାହି ଲକ୍ଷ୍ମଣ ବୋଲି ଡାକିବୁ ଉଚ୍ଚରେ ।
ଲକ୍ଷ୍ମଣ ଗଲେ ମୁଁ ଯେ ସୀତାକୁ ହରିନେବି
କେତେ ପାରିବାର ବଳ ତାହାର ଦେଖିବି ।
ଏତେ ବୋଲି ତାହାକୁ ରାବଣ ଭେଜିଦେଲା
ମାୟା ମୃଗ ରୂପ ଧରି ନିକଟକୁ ଗଲା ।
କନକ ମୃଗ ଯହୁଁ ଦେଖିଲେ ସୀତାସ୍ୱତୀ
ଶରଧାରେ ସୀତୟା ରାମଙ୍କୁ କହନ୍ତି ।
ଘରଣୀର ବୋଲରେ ରାମଗଲେ ବନ
ଦେଖିକରି ମାୟା ମୃଗ ପଶିଲା ଘୋରବନ ।
ଧନୁଶର ଧରି ରାମ ଗୋଡ଼ାଇଲେ ପଛେ
ପାଞ୍ଚଯୁଣ ପର୍ଯ୍ୟନ୍ତେ ପଳାଏ ମୃଗ ସାଥେ ।
ରାମଙ୍କର ବାଣରେ ସେ ହରାଇଲା ପ୍ରାଣ
ବୋଇଲା ସେ ଲକ୍ଷ୍ମଣ ରଖହେ ଆସିଣ ।

ସେ ଶବଦ ଶୁଭିଲ ସୀତାଙ୍କ ଶ୍ରବଣ
ଲକ୍ଷ୍ମଣଙ୍କୁ ଜାନକୀ ବୋଇଲେ ଯେ ଶୁଣ ।
ରଘୁନାଥଙ୍କୁ ବନରେ ପଡ଼ିଲା ବିପତ୍ତି
ବେଗେ ତୁମ୍ଭେ ଚଳିଯାଅ ଆହେ ସଉମିତ୍ରୀ ।
ଶୁଣିଣ ଲକ୍ଷ୍ମଣ ନ କଲେ ବୋଲ ତାର
କ୍ରୋଧରେ ସୀତା ଗାଳିଦେଲେ ଯେ ଅପାର ।
ଆମ୍ଭର ଦାସା ତୁହି ଚୋକ ପଣେ ଅଛୁ
ଆମ୍ଭ ବୋଲକୁ ତୁରେ ଅନ୍ୟଥା କରୁଛୁ ।
ତାହା ଶୁଣି ଲକ୍ଷ୍ମଣ ଶୋକଭର ହେଲେ
ବିହି ବିଧାତାକୁ ସେ ମନରେ ସୁମରିଲେ ।
କେବେହେଁ ଲକ୍ଷ୍ମଣ ଗଲେ ସୀତୟାଙ୍କୁ ଛାଡ଼ି
ବହୁତ ଧିକ୍‌କାର ଯେ କଲେ ମଇଥିଳୀ ।
ବୋଇଲେ ରାମ ମୋର ଯେବେ ନ ଆସିବେ
ତୋ ଉପରେ ହତ୍ୟାଭାବ ମୁହିଁ ହେବି ତେବେ ।
ନିରାଶ୍ରୟ ବଚନ ସଉମିତ୍ରୀ ଶୁଣି
ଚନ୍ଦ୍ର, ସୂର୍ଯ୍ୟଙ୍କୁ ସାକ୍ଷୀ କଲେ ବୀରମଣି ।
ଦଶଦିଗପାଳଙ୍କୁ ଗହିଁଣ ବଖାଣିଲା
ତାହାଙ୍କୁ କହି ବୀର ବେଗେ ଚଳିଗଲା ।
ଲକ୍ଷ୍ମଣ ଯାନ୍ତେ ରାବଣ ଭିକ୍ଷାସୀ ବେଶହୋଇ
ସୀତାଙ୍କୁ ଭିକ୍ଷା ମାଗନ୍ତେ କହିଲେ ବଇଦେହୀ
ରାମ ଆସିଲେ ତୋତେ ପୂଜିବେ ବୋଇଲେ
ସେ ଗାର ଡେଇଁ ସ୍ୱତୀ ଯତିଙ୍କି କହିଲେ ।
ଦୁଆର ଡେଇଁ ଯହୁଁ ଜାନକୀ ଅଇଲା
ଲକ୍ଷ୍ମଣ ଦୋଷ ଯେ ସେଠାରୁ କଟିଗଲା ।
ଲଙ୍କାର ରାବଣ ଯେ ଦେଖିଲା ଜାନକୀକି
ଅଗ୍ନିତେଜ ପରାଏ ବିରାଜେ ତା ଜ୍ୟୋତି ।
ତେଜସ୍କର ଭୟରେ ଛୁଇଁ ନ ପାରିଲା ।
କରବାଳ ଝମକାଇ ସୀତାକୁ ଡରାଇଲା ।
ଭୟରେ ବଇଦେହୀ ବସିଲା ରଥପରେ
ସେଠାରୁ ରଥ ରାବଣ ବାହିନେଲା ଖରେ ।
ପକ୍ଷୀଜଟା ଦେଖିଣ ତା ସଙ୍ଗେ ଯୁଦ୍ଧ କଲା
ତାର ଡ଼େଣା କାଟିବାରୁ ସେ ପଡ଼ି ରହିଲା ।
ସେଠାରୁ ରାବଣ ସୀତାକୁ ଘେନିଗଲା
ଅଶୋକବନ ଭିତରେ ନେଇଣ ରଖିଲା ।
ଛେଳିଆଣୀ ରହିଲା କହିଲୁ ତୁ ମିଛ
ଦେଲା ଲୋକକୁ କିଏ ମଣିଥିଲା ତୁଛ ।

ସ୍ନେହରେ ଜାନକୀକୁ ରାବଣ ଘେନିଗଲା
ଘରକୁ ନେଇ କିମ୍ପା ବନରେ ରଖିଲା ।
ଶୁଣିକରି ଛେଳି କହଇ ମୃଦୁବାଣୀ
ସେଥିରେ କାହାଣୀ ଶୁଣଲୋ ଘରଣୀ ।
ଜାନକୀନି ନ ଛୁଇଁ ବନରୁ ଘେନିଗଲା
ଲଙ୍କାଗଡ଼େ ସନ୍ତୋଷେ ମନ୍ତ୍ରୀକି ପଚାରିଲା ।
ବୋଇଲା ରଜସ୍ୱଳା ହୋଇଛି ଏହି ନାରୀ
ଅଗ୍ନିର ପ୍ରତାପରେ ଶରୀର ତାପ କରି ।
ଘରକୁ ନେବା କି ଯାକୁ ରଖିବା ବାହାରେ
ଶୁକ, ସାରଣ ବୋଇଲେ ରଖ ତୁ ବନରେ ।
ଶୁଦ୍ଧ ସ୍ନାନ କଲେ ତାକୁ ଘରକୁ ଘେନିଯିବୁ
ଶୁଣିକରି ରାବଣ ସନମତ ହେଲା ସବୁ ।
ଅଶୋକବନରେ ସେ ସୀତୟାକୁ ରଖି
ଅସୁରୀଙ୍କି ଜଗାଇ ମନରେ ହେଲା ସୁଖୀ ।
ପାଞ୍ଚଦିନରେ ଦେବୀ ଶୁଦ୍ଧ ସ୍ନାନ କଲା
ସେତେବେଳେ ରାବଣ ଦେଖିବାକୁ ଗଲା ।
ଅଗ୍ନିରେ ସ୍ନାନ କରିବା ଦେଖିଲା ରାବଣ
ଡରିକରି ଅଇଲା ନିଜପୁରେ ଜାଣ ।
ଅଗ୍ନି, ପବନ ଦୁହେଁ ସୀତାଙ୍କୁ ଜଗିରହି
ଅଗ୍ନିର ତେଜରେ ରାବଣ ନ ଛୁଅଇଁ ।
ରାବଣ ବୁଦ୍ଧିବଳରେ ରାମଙ୍କୁ ଜିଣିଲା ।
ଲକ୍ଷ୍ମଣ କଥା ନ ମାନି ଜାନକୀ ଲଙ୍କା ଗଲା ।
ମୃଗରୂପ କେଉଁଠାରେ ସୁବର୍ଣ୍ଣରେ ହୋଇ
ଏକଥାକୁ ବିଚାର ନ କଲେ ରଘୁସାଇଁ ।
ଏଣୁ ଶ୍ରୀରାମ ଦଶରଥର ସମ ସରି
ଲକ୍ଷ୍ମଣର ବୋଲକୁ ଜାନକୀ ନ କରି ।
ସେ ଯୋଗରୁ ସୀତୟା କୈକେୟୀ ପ୍ରାୟହେଲା
ବୁଦ୍ଧିଥିବା ଲୋକସିନା ସବୁଦିନେ ଭଲା ।
ତୁ ମୋତେ ବୋଇଲୁ ଯେ ବାମ୍ପୀକି ଏବେଯିବା
ବାମ୍ପୀରୁ ଜଳ ଖାଇଲେ ସନ୍ତୋଷ ହୋଇବା ।
ଦେଖ ଏବେ ଶ୍ରୀରାମ ଲକ୍ଷ୍ମଣ ଆସନ୍ତି
ଯାହାଙ୍କୁ ଦେଖି ଶବରୀ ସ୍ୱର୍ଗକୁ ଗଲାଟି ।
ଯାହାର ହସ୍ତେ ଗରି ରାବଣ ଯିବେ ନାଶ
ଯାହାର ହସ୍ତରେ ଲଙ୍କାପୁର ହେବ ଧ୍ୱଂସ ।
ଯେଉଁ ରାମ ସମୁଦ୍ରରେ ବାନ୍ଧିବେ ସେତୁବନ୍ଧ
ଯାହାର ପାଦ ବନ୍ଦନ୍ତି ସୁରମୁନି ସିଦ୍ଧ ।

ଏକା କାଣ୍ଡକରେ ଯେହୁ ବାଳିକି ମାରିବ
ସୀତାଙ୍କୁ ଉଦ୍ଧାରକରି ନିଜପୁରେ ଯିବ ।
ଲଙ୍କାରେ ଝରିଭାଇ ହୋଇବେ ଯେ ମେଳ
ସମସ୍ତେ ମିଶି ଦୈତଙ୍କୁ କରିବେ ନିର୍ମୂଳ ।
ଲକ୍ଷେକ ରାଜା ଲଙ୍କାପୁରକୁ ଯେ ଯିବେ
ସଭାକରି ଜାନକୀ ରାମଙ୍କୁ ଆଣିବେ ।
ନର ବାନର ଦେବତା ଅସୁର ନାଗବଳ
ଝରି ରାବଣ ମାରିବାକୁ ସମସ୍ତେ ହେବେ ଠୁଳ ।
ଏହି ରାମ ଚରଣରେ ସମସ୍ତେ ସେବିବେ
ଅସୁରଙ୍କୁ ମାରି ଲଙ୍କା ଗଡ଼ରୁ ସେ ଯିବେ ।
ଅଯୋଧ୍ୟାରେ ଜାନକୀଙ୍କି ଘେନିଣ ରହିବେ
ତିନିପୁର ଦିଗବିଜେ କରିଣ ସାଧିବେ ।
ଦୁଷ୍ଟ ଦଳନକରି ବୈକୁଣ୍ଠ ପୁର ଯିବେ
ସପତପୁରର ଭାଗ ଉଶ୍ୱାସ କରିବେ ।
ଶବରୀ ଗଲା ସ୍ୱର୍ଗ ଆମ୍ବର ସେହି ମୂଳ
ଗଲାବେଳେ ଉପକାର କଲା ସେ କେବଳ ।
ଛେଳି ଛେଳିଆଣୀ ଯେ ଅଟନ୍ତି କାମଧେନୁ
ଏହାଙ୍କୁ ଉଦ୍ଧାର କରିବେ ରାମ ତେଣୁ ।
କହିକରି ଯିବାର ମୋତେ ଅଛି ଜଣା
ଏହିକ୍ଷଣି ସ୍ୱର୍ଗେ ଯିବ କେବେ ନୁହଁ ବଣା ।
ସ୍ତିରୀର ବୋଲ ପରା ଏହି ରାମ କଲା
ଦେଖ ଏ କେତେ ଦୁଃଖ ହୃଦରେ ସହିଲା ।
ଆଗେ ତାର ବାପ ଘରଣୀ ବୋଲକଲା
ତୁମ ଆସିବାରେ ସେବାରେ ଦିନଗଲା ।
ମୁଁ ଯେବେ ତୋର ବୋଲ କରିଥାନ୍ତି ସଖୀ
ଶ୍ରୀରାମଙ୍କୁ ଆଉ ମୁଁ ନପାରନ୍ତି ଦେଖି ।
ତେଣୁକରି ବାପପୁଏ ହେଲେ ଏତେ ସରି
ଶୁଣିଣ ସନ୍ତୋଷ ହୁଅରେ ସୁନ୍ଦରୀ ।
ବୁଦ୍ଧି ଥିଲେ ଘଡ଼ିକରେ ମରନ୍ତା ରାବଣ
ଏବେ ଚଉଦମାସରେ ମାରିବେ ତାକୁ ପୁଣ ।
ସ୍ତିରୀ ବୋଲରେ ରାମ ଏତେସରି ହୋଇ
କେତେକଥା ରାମ ହୃଦରେ ସହିବଇଁ ।
ଶୁଣିକରି ଛେଳିଆଣୀ ମନରେ ତୋଷ ହେଲା
ସ୍ୱାମୀର ଚରଣେ ଓଳଗି ହୋଇଲା ।
କଇଁଥ ଗଛ ମୂଳରେ ରାମ ଶୁଣୁଥିଲେ
ଛେଳିର ତୁଣ୍ଡେ ଅଯୋଗ୍ୟ ହେଲି ମୁଁ ବୋଇଲେ ।

ସେଠାରୁ ବେନିଭାଇ ବେଗେ ଚଳିଗଲେ
ଛେଳି ଛେଳିଆଣୀର ପାଶରେ ମିଳିଲେ ।
ବୋଇଲେ ସୁଜନ୍ତୁ ତୁ ବୁଦ୍ଧିରେ ଅନର୍ଗଳା
ଏତେକଥା ତୋରଭଲା ମନରେ ଚେତାଥିଲା ।
ଶୁଣିକରି ଛେଳି କହେ ଶୁଣ ହେ ନାରାୟଣ
ଅସୁରଙ୍କୁ ମାରିବାକୁ ଜନମିଛ ଜାଣ ।
ତଳପରେ ବାସୁକୀ ରୋଦନ କରେ ନିତି
ମଥା ଭାରି ହେବାରୁ ତୋତେ ସେ ଚିନ୍ତଇଟି ।
ତାହାର ଚିନ୍ତାକୁ ଦେବତା ଗରୁ କଲେ
ତୁମ୍ଭଙ୍କୁ ତେଣୁ ମର୍ତ୍ତ୍ୟରେ ଜାତ କରାଇଲେ ।
ଝରି ରାବଣ ମରିଲେ ପୃଥ୍ୱୀର ଭାର ସରେ
ଅନେକ ଅସୁର ଯେ ମରିବେ ତୋର କରେ ।
ଶୁଣିକରି ଶ୍ରୀରାମ ଛେଳିକି ପଚାରିଲେ
ପୂର୍ବଜନ୍ମ କଥା ତୋର ଅଛି କି ମନରେ ।
କେଉଁରୂପ ପୂର୍ବରେ ହୋଇଥିଲୁ ତୁହି
ଚେତା ତୋର ଥିଲେ କହରେ ବୁଝାଇ ।
ଛେଳି ସୁରଭୀ ବୋଇଲା ଶୁଣ ଦାଶରଥି
ସେକଥାମାନ ମୁଁ ଯେ ଅଲଗେ ଶୁଣିଛି ।
ଶବରୀ ମତିକି ଯେ ଋଷିମାନେ କହି
ତାହାର ସଙ୍ଗତରେ ଥିଲି ଏଥି ମୁହିଁ ।
ତାକୁ ଋଷି କହନ୍ତେ ସେକଥା ଜାଣିଲି
ମୋହର ଘରଣୀକି ସେକଥା ପଳାଇଲି ।
ମୋହର ପୂର୍ବକଥା ପଚାରୁ ଅନ୍ତର୍ଯ୍ୟାମୀ
କାମଧେନୁର ଦୁହିତା ଅଟେ ମୋ ଘରଣୀ ।
ମୁଁ ଅଟଇ ଇନ୍ଦ୍ରଙ୍କର ପୁତ୍ରଟି ଗଂଧର୍ବ
କାମଧେନୁର ଦୁହିତା ସେ ବରିଲା ମୋତେ ଭାବ
ତେଣୁ ସେହି ମୋହର ଘରଣୀ ହୋଇଲା
କିଛିଦିନ ଏପରି ସୁଖରେ ବହିଗଲା ।
ଚିତ୍ରସେନ ଗଂଧର୍ବର ଅଟେ ମୁହିଁ ଭାଇ
ମଧୁବନ ତୋଟାରେ ନିଶ୍ଚିନ୍ତେ ରହଇ ।
ଶବରୀର ତପସିଦ୍ଧି ଦେଖି ଇନ୍ଦ୍ରଗଲା
ମୋହର ଘରଣୀକି ବୁଝାଇ କହିଲା ।
ବୋଇଲା ମର୍ତ୍ତ୍ୟପୁରକୁ ଯାଅ ତୁ ବହନ
ଶବରୀ ଋଷିପାଶେ ରହିବୁ ଯାଇଣ ।
ମାତାର ଅଂଶରେ ସକଳ ତାକୁ ଦେବୁ
ଶ୍ରୀରାମଙ୍କୁ ଦେଖିଲେ ସ୍ୱର୍ଗକୁ ଆସିବୁ ।

ଶୁଣି ମୋର ଘରଣୀ ଇନ୍ଦ୍ରଙ୍କୁ କହିଲା
ମୋହର ସ୍ୱାମୀ ତ ଏକା ହୋଇଣ ରହିଲା ।
ଇନ୍ଦ୍ର ବୋଇଲା ତୁମ୍ଭେ ବେନି ଚଳିଯାଅ
ଛେଳିରୂପ ହୋଇ ବେନି ସେହିଠାରେ ରହ ।
ଆଜିଠାରୁ କାମଧେନୁ ଛେଳିରୂପ ଜାଣ
ସ୍ତିରୀ ତପ କଲାଠାରେ ତୋତେ ବରଗିଣ ।
ତାହାଙ୍କର ବୋଲରେ ସେଠାରୁ ଆସିଲୁ
ଶବରୀ ଋଷିଙ୍କର ପାଶରେ ରହିଲୁ ।
ଦୁଇଯୁଗ ପରିଯନ୍ତେ ତା ପାଶେ ରହିଲୁ
ସେ ଯାହା ବୋଇଲା ତାହା ତାକୁ ଦେଲୁଁ ।
ଏବେ ତୋତେ ଦେଖିଣ ସ୍ୱର୍ଗପୁରେ ଗଲା
ଆମ୍ଭଙ୍କୁ ସଙ୍ଗେ ନନେଇ ଏ ବନେ ଛାଡ଼ିଲା ।
କେମନ୍ତେ ବଞ୍ଚିବୁ ଆମ୍ଭେ ଏ ବନେ ଦେହଧରି
ଶୁଣିକରି ହରଷ ହେଲେ ଚାପଧାରୀ ।
ସେ ଦୁଇଜଣଙ୍କୁ ରାମ ଦୟା କଲେ
ତାହାଙ୍କୁ ଧରିଣ ଶ୍ରୀରାମ ଆଉଁସିଲେ ।
ରାମଙ୍କ ହସ୍ତ ଲାଗନ୍ତେ ଛାଡ଼ିଲେ ସେ ଦେହ
ଦୁଇଜଣଙ୍କ ତୁଣ୍ଡରେ ରାମଚନ୍ଦ୍ର ବ୍ୟୁହ ।
ବେନି ଜଣଙ୍କର ଯହୁଁ ହୋଇଲା ମରଣ
ଶୂନ୍ୟରୁ ରଥ ଆସି ମିଳିଲା ତକ୍ଷଣ ।
ରଥପରେ ବସିଣ ଦୁହେଁ ସ୍ୱର୍ଗେଗଲେ
ଗଲାବେଳେ ଶ୍ରୀରାମଙ୍କୁ ବଚନ କହିଲେ ।
ଆମ୍ଭର ବୋଲରେ ଏବେ ଯାଅ ରଘୁମଣି
ଋଷ୍ୟମୁକ ପର୍ବତରେ ସୁଗ୍ରୀବି ଭେଟପୁଣି ।
ମନରେ କିଛି ଚିନ୍ତା ତୁମ୍ଭେ ଯେ ନକର
ଅନେକ ସୁଖ ତୁମ୍ଭଙ୍କୁ ମିଳିବ ରଘୁବୀର ।
ତିନି ଭୁବନେ ଯଶ ହୋଇବ ତୁମ୍ଭର
ଦେବେ ସୁଖୀ ହୋଇବେ ବାସୁକୀ ହେବ ସ୍ଥିର ।
ଏତେକହି ଦୁଇଜଣ ସ୍ୱର୍ଗପୁରେ ଗଲେ
ଇନ୍ଦ୍ର ଦେବତାଙ୍କୁ ସେ ଓଳଗି ହୋଇଲେ ।
ମଧୁବନ ତୋଟାରେ ରହିଲେ ବେନିଜନ
ଏଥୁ ଅନନ୍ତରେ ପାର୍ବତୀ ଦେବୀ ଶୁଣ ।
ଶ୍ରୀରାମ ଲକ୍ଷ୍ମଣ ତାଙ୍କାଠାରୁ ଶୁଣି
ବିଚାରିଲେ ସେ କଥାକୁ ମନରେ ସେ ପୁଣି ।
ଆମ୍ଭର ହିତକଥା ବହୁତ କହିଲେ
ନିଜରୂପ ଧରିଣ ସେ ସ୍ୱର୍ଗକୁ ଗଲେ ।

ଏତେ ବୋଲି ଅଗ୍ନିଶର ଧରି ରାମରାଣ
ସେହି ବେନିଙ୍କ ପିଣ୍ଡକୁ ଭସ୍ମକଲେ ଜାଣ ।
ସେଠାରୁ ବେନିଭାଇ ବେଗେ ଚଳିଗଲେ
ପମ୍ପା ସରୋବର ପାଶରେ ମିଳିଲେ ।
ସେ ସରୋବର ଗୋଟି ଅମୃତମୟ ଜଳ
କଳନା ନୁହେଁ ତହିଁ ନାହିଁ ଥଳକୂଳ ।
ସୁସ୍ୱାଦ ନିରିମଳ ତହିଁରେ ପଙ୍କ ନାହିଁ
ଚାରି ବର୍ଣ୍ଣରେ ପଦ୍ମ ଫୁଟିଣ ଅଛଇ ।
ରଙ୍ଗକୁ ମୁଦ ଫୁଲ ହୋଇ ପନ୍ତି ପନ୍ତି
ପୁଷ୍ପମାନଙ୍କର ବାସ ଶୂନ୍ୟକୁ ଟହଟନ୍ତି ।
ମର୍କତ ପାବଚ୍ଛ ବନ୍ଧା ଚଉକତି
ନାନା ବର୍ଣ୍ଣରେ ପୁଷ୍ପ ଚୌପାଶେ ଶୋଭାପାନ୍ତି ।
ନାଗେଶ୍ୱର ପାଟଳି ଅଶୋକ କରୁଣୀ
ଚମ୍ପା, ବକୁଳ, କିଆ, କେତକୀ, ଛୁରିଅନା ।
ପୋଲାଙ୍ଗ, ଜାଇ, ଯୁଈ, ମାଳତୀ, ଅପାର
ମଲ୍ଲୀ, ସେବତୀ ଯେ ତରାଟ, କନିଅର
ଏମନ୍ତେ ଅନେକ ପୁଷ୍ପ ଅଛଇ ସେଠାରେ
କୋକିଳ ପାରୁଅ ବଣୀ ହଂସାଦି ପକ୍ଷୀତୁଲେ ।
ସର୍ବଦା ସେ ସ୍ଥାନକୁ ବହଇ ବସନ୍ତ
ଶ୍ରୀରାମଙ୍କୁ ଘୋଟିଲା ବିରହ ବାଧାତ ।
ସୀତାଙ୍କୁ ସୁମରି ରାମ ଅନେକ ଚିନ୍ତାକଲେ
ଭୂମିପରେ ବସିଣ ସେ ଢଳିଣ ପଡ଼ିଲେ ।
ଲକ୍ଷ୍ମଣ ତୋଳିଣ ଧରିଲେ ବେଗହୋଇ
କପାଳରେ କରମାରି କାନ୍ଦନ୍ତି ରଘୁସାଇଁ ।
ଆହା ମୋର ସୀତୟା ଗୋ କେଣେ ଛାଡ଼ିଗଲୁ ।
ଦୁଃଖ ପାଇବାରୁ ଅବା ଘରକୁ ସୁମରିଲୁ ।
ମୋହର ସ୍ନେହ ତୋତେ ଦିନେ ଛାଡ଼ିନାହିଁ ।
ମୋତେ ତେଜି ସଖୀରେ ଗଲୁ କାହିଁପାଇଁ ।
ଶ୍ରୀରାମ କାନ୍ଦିବାରୁ ଲକ୍ଷ୍ମଣ ତିଆରି
କିମ୍ପାଇ ବାତୁଳ ତୁମ୍ଭେ ହେଉଛ ଚାପଧାରୀ ।
ରାଜାର ପୁତ୍ର ହୋଇ ବନବାସ କଲ
କର୍ମର ଅବଳକୁ ଘରଣୀ ହରାଇଲ ।
କେତେଲୋକ କହିଲେ ରାବଣ ଘେନିଗଲା
ପକ୍ଷୀଜଟା କବନ୍ଧ ଶବରୀ କହିଲା ।
ଏକଥାକୁ ବିଚାରି କରିବଟି କାର୍ଯ୍ୟ
ଏବେ କିମ୍ପା ଆତୁର ହେଉଛ ରଘୁରାଜ ।

ଶ୍ରୀରାମ ବୋଇଲେ ଶୁଣ ଆରେ ଭାଇ
ଏହିକ୍ଷଣି ସୀତା କି ମୋର ମନରୁ ଯାଇ ।
ପ୍ରିୟବତୀ ଭାରିଯା ମୋ ପାଶରୁ ଗଲା
ଆଶାକୁ ଭାଙ୍ଗି ମୋର ଘେନିଗଲା ।
କେଉଁଠାରେ ପାଇବି ମୁଁ ଜନକ ଦୁଲଣୀ
ଏତେ ବୋଲିଣ ରୋଦନ କରନ୍ତି ରଘୁମଣି ।
ଫୁଲର ଲତା ତଳକୁ ନିରୋପି ଚାହାଁନ୍ତି
ଘୋର ଗିରିକନ୍ଦରରେ ଅଛି କି ବୋଲନ୍ତି ।
ସେଠାରେ ବେନିଭାଇ ସ୍ନାହାନ ସାରିଲେ
ବନରୁ ଫଳମୂଳ ଲକ୍ଷ୍ମଣ ଆଣି ଦେଲେ ।
ବେନିଭାଇ ବସିଣ ଭୋଜନ ତହିଁ କଲେ
ଆଞ୍ଚୋବନ ସାରିଣ ସେଠାରୁ ଚଳିଗଲେ ।
ପାର୍ବତୀ ବୋଇଲେ ଶୁଣ ହେ ଈଶ୍ୱାନ
ଶବରୀ ଋଷି ଯେ ସ୍ୱର୍ଗେ ଗଲେ ଜାଣ ।
ପୂର୍ବରେ କେଉଁଠାରେ ଥିଲେ ମୋତେ କହ
ସେକଥା ଶୁଣିବାକୁ ହେଉଛି ମୋର ସ୍ନେହ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ପୂର୍ବର ଶବରୀ ଯେ ଅପ୍‌ସରୀ ଜାତି ।
ସ୍ୱର୍ଗର ଅପ୍‌ସରୀ ଅମ୍ବିକା ତାର ନାମ
ମେନକା ଅପ୍‌ସରୀ ଦୁଲଣୀ ସେ ଜାଣ ।
ତାହାର ଜ୍ଞହସ୍ତ ଯେ ଚନ୍ଦ୍ରର କୁମର
ନିରନ୍ତରେ ସେବିଥାଇ ବୁଧର ପୟର ।
ଏକଦିନେ ସେ ନାରୀ ଶୂନ୍ୟ ଗଙ୍ଗାକୁ ଗଲା
ଗଙ୍ଗା ଜଳରେ ପଶି ସ୍ନାହାନ ସେ କଲା ।
ଏମନ୍ତ ସମୟରେ ଧର୍ମକେତୁ ଋଷି
ସେ ସ୍ଥାନରେ ପ୍ରବେଶ ହୋଇଲେକ ଆସି ।
ଦେଖିଣ ଅମ୍ବିକା ତାକୁ ମାନ୍ୟ ଯେ ନୋହିଲା
ହାସ୍ୟରସ ଭାବ ଯେ ତହିଁ ପ୍ରକାଶିଲା ।
ନୟନକୁ ଢାଳି ଜାନୁ ଯୌବନ ଦେଖାଇ
ଉତ୍‌ପାତ ହୋଇଣ ସେ ସ୍ନାହାନ କଲା ତହିଁ ।
ଋଷିଙ୍କି ବୋଇଲା ତୁମ୍ଭେ ଆସିଲ କେଉଁଠାରୁ
ଏଡ଼େ ଋଷି ହୋଇ କିମ୍ପା ହେଉଅଛ ଭୀରୁ ।
ଧର୍ମକେତୁ ବୋଇଲେ ଶୁଣ ନାରୀବର
ଆମ୍ଭେ ବ୍ରହ୍ମମୁନି ତୁ କହୁ ଅବେଭାର ।
ଅମ୍ବିକା ବୋଇଲା ତୁମ୍ଭଠାରେ ମୋର ଆଶ
ତେଣୁ ସେ କଥା ମୁଁ ଯେ କହିଲି ବିଶେଷ ।

ଧର୍ମକେତୁ ବୋଇଲେ ଯେ ସେଥିରେ ନାହିଁଧର୍ମ
ସ୍ତିରୀଙ୍କି ଛୁଇଁଲେ ମୋର ନାଶଯିବ କର୍ମ ।
ଅମ୍ବିକା ବୋଇଲା ମୋତେ ଘରଣୀ ତୁମ୍ଭକର
ଶୁଣିଣ ଧର୍ମକେତୁ ମନରେ ହେଲେ ଖର ।
ବୋଇଲେ ଚଣ୍ଡାଳୁଣୀ ମର୍ତ୍ତ୍ୟପୁରେ ଥାଅ
ନୀଚଯୋନିରେ ତୁହି ଜନମ ଯେ ହୁଅ ।
କିଛିଦିନ ରମଣ ଭୋଗ ତହିଁ କର
ଗୃହସ୍ଥ ମରିବାରୁ ଯତିରୂପ ଧର ।
ସାତଯୁଗ ପରିଯନ୍ତେ ତପ ତୁ କରିବୁ
ଶ୍ରୀରାମଙ୍କୁ ଭେଟିଲେ ସ୍ୱର୍ଗକୁ ଆସିବୁ ।
ସେଠାରୁ ଅମ୍ବିକା ମର୍ତ୍ତ୍ୟପୁରକୁ ଗଲା
ଜମ୍ବୁଦ୍ୱୀପ ଦକ୍ଷିଣ ଦିଗରେ ଜନ୍ମ ହେଲା ।
ରାଧାନାଥ ପଲ୍ଲୀରେ ଶବରର ଘରେ
ଜନମ ହୋନ୍ତେ କିଛି ଦିନର ଉତ୍ତାରେ ।
ନବଯୁବା ହୁଅନ୍ତେ ଗୃହସ୍ଥ ସେ କଲା
କାଳୁରୀ ଶବରୀକି ଘେନିଣ ରହିଲା ।
ଦଶସସ୍ର ବର୍ଷ ତାର ସଙ୍ଗେ ହେଲା ମେଳ
ସେ ଶବର ମଲା ଯେ ପୂରିଲା ତାର କାଳ ।
ଘର ତେଜି ଶବରୀ କିମ୍ପା ସରୋବରକୁ ଗଲା
ଋଷିମାନଙ୍କୁ ଦେଖି ସେଠାରେ ରହିଲା
ଋଷିଙ୍କଠାରୁ ଦୀକ୍ଷା ପାଇଣ ତପ କଲା
ଶାବରୀ ଋଷି ତାର ନାମ ତେଣୁ ହେଲା ।
ଶ୍ରୀରାମଙ୍କୁ ଦେଖିବାରୁ ସ୍ୱର୍ଗକୁ ସେ ଗଲା
ନିଜରୂପ ପାଇଣ ନିଶ୍ଚିନ୍ତେ ରହିଲା ।
ପୂର୍ବର ସ୍ୱାମୀ ପାଶେ ରହିଲା ସେ ବରି
ଏପରି ଶବରି କଥା ଶୁଣ ହେତୁ କରି ।
ଶୁଣିକରି ସନ୍ତୋଷ ହୋଇଲାଟିକି ମନ
ସନ୍ତୋଷରେ ପାର୍ବତୀ ବୋଲନ୍ତି ବଚନ ।
ସେଠାରୁ ରାମ ଲକ୍ଷ୍ମଣ କିସ ପୁଣି କଲେ
ସେହିକଥା ମୋର ଆଗେ କହ ଏବେ ଭଲେ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସରୋବର ଠାରୁ ରାମ ଲକ୍ଷ୍ମଣ ଚଳିଯାନ୍ତି ।
ବନଗିରି ଭିତରେ ଚଳିଯାନ୍ତି ପୁଣ
ଋଷିଙ୍କର ମଢ଼ିଆ ଦେଖିଲେ ଯାଇଣ ।
ଲକ୍ଷ୍ମଣଙ୍କୁ ଚାହିଁଣ କହନ୍ତି ରଘୁନାଥ
କେବଣ କେବଣ ମୁନି ଅଛନ୍ତି କହତ ।

ଶୁଣିକରି ତତକ୍ଷଣେ ଗଲେ ରାମଭାଇ
ମଢ଼ିଆମାନଙ୍କରେ ପଶିଣ ଦେଖଇ ।
ଦେଖିଲେ ପର୍ଣ୍ଣକୁଟୀ ହୋଇଅଛି ତୁଚ୍ଛା
ଫେରି ଲକ୍ଷ୍ମଣ ଅଇଲେ ମନକରି ନିଚ୍ଛ ।
ଶ୍ରୀରାମଙ୍କ ଆଗରେ ବୁଝାଇ କହିଲେ
ମୁନି ନାହାନ୍ତି ତୁଚ୍ଛା ମଢ଼ିଆ ଅଛି ଭଲେ ।
ଶୁଣିକରି ଶ୍ରୀରାମ ଯେ ବିଚଳିତ ମନ
ବିଚାରିଲେ ଋଷିମାନେ ଗଲେ କେଉଁ ସ୍ଥାନ ।
ଏମନ୍ତ ବିଚାରି ସେ ଦକ୍ଷିଣଦିଗେ ଚାହିଁ
ପର୍ବତ ଗୋଟିଏ ଉଚ୍ଚରେ ଦିଶେ ତହିଁ ।
ଭାବିଲେ ଏହି କି ଋଷ୍ୟମୂକ ପର୍ବତ
ଅଷ୍ଟମନ୍ତ୍ରୀ ଘେନି ତହିଁ ଅଛି ରବିସୁତ ।
ଏମନ୍ତ ବିଚାର ଶ୍ରୀରାମ ମନେ କଲେ
ସେଠାରୁ ବନଗିରି ଲତାରେ ପଶିଲେ ।
ଏଥୁ ଅନନ୍ତରେ ଯେ କହନ୍ତି ଶୂଳପାଣି
ଶ୍ୟାମବେଦରୁ ଜାତ ଏ ଋଷ୍ୟଶୃଙ୍ଗ ଭଣି ।
ବନଗିରି ଲତାରେ ବେନି ଭାଇ ପଶି
ଜାନକୀଙ୍କି ତହିଁରେ ନିରେଖି ଖୋଜନ୍ତି ।
କୋମଦ ସରୋବର ତୀରେ ପ୍ରବେଶ
ସରୋବରକୁ ଦେଖି ଶ୍ରୀରାମ ସନ୍ତୋଷ ।
ସେ ସରୋବର ଗୋଟି ଅଟଇ ବିସ୍ତାର
ଚାରିଯୂଣ ଦୀର୍ଘ ପ୍ରତି ଅଟଇ ତାହାର ।
ଶ୍ରୀରାମ ବୋଇଲେ ଧନ୍ୟ ଧନ୍ୟ ସରୋବର
ଅନେକ ଜନ୍ତୁ ଏଥିରେ ଅଛନ୍ତି ଜଳଚର ।
ପଦ୍ମ, ଉତ୍ପଳ ସେ କୁମୁଦ, ଶିଉଳି
ଜୀବଜନ୍ତୁତ ନାହିଁ କେ ନେବ ଅଉ ତୋଳି ।
ଏଥିର ଜୀବମାନେ ଯେମନ୍ତେ ପୁଷ୍ପହାସ
ଆନକୁ ଏ ପୁଷ୍ପ ବାସ ନୁହଇ ସରସ ।
କୁସୁମରେ ଲୋଭୀ ଯେ ଅଟଇ ଜାନକୀ
ସେ ଅବା ଏଥିରେ ଲୁଚିଥାଇ ନିକି ।
ପକ୍ଷୀମାନଙ୍କୁ ଦେଖି ପଚାରିବା ଏଥି
ଲକ୍ଷ୍ମଣ ବୋଇଲେ ନୁହଇ ଏ ଯେ କିଛି ।
ପାଣିର ଭିତରେ କି ମନୁଷ୍ୟ ଥାଏ ପଶି
କେମନ୍ତେ ଏକଥାକୁ ବିଚାର ରଘୁବଂଶି ।
ଜଟାୟୁଷ କହିଲା ରାବଣ ଘେନିଗଲା
କବନ୍ଧ କାହିଲା ଯେ ଦଶମଥା ନେଲା ।
ଶାବରୀ କହିଲା ନେଲା ଦଶାନନ
ଛେଳି ଛେଳିଆଣୀ କହିଲେ ଯେ ପୁଣ ।
ଏମାନଙ୍କ କଥା ଯେବେ ମନକୁ ନ ଆସି
ନେଲା ଲୋକ ଏଥିରେ ଛାଡ଼େ କି ଶୁଭ୍ରକେଶୀ ।
ଜ୍ଞାନପ୍ରାୟେ ତୁମ୍ଭେ କହୁଛ ରଘୁମଣି
ସୀତାଙ୍କୁ ନ ଦେଖିଣ ବାତୁଳ ହୁଅ ପୁଣି ।
ବୁଦ୍ଧିବଳ ହରାଇଣ କହୁଛୁ କାହିପାଇଁ
ଦେବଙ୍କର କୂଟ ହେଲା ଶୁଣ ରଘୁସାଇଁ ।
ଅସୁରଙ୍କୁ ମାରିବାକୁ ଦେବେ ବିଚାରିଲେ
ତୁମ୍ଭର ନାରୀଙ୍କି ତେଣୁ ଦୈତ୍ୟହସ୍ତେ ଦେଲେ ।
ଶୁଣିକରି ଶ୍ରୀରାମ ଯେ କହନ୍ତି ବଚନ
ଥୟ ଆଉ ହେଉନାହିଁ ଏବେ ମୋର ମନ ।
କଳିଯୁଗକୁ କଥା ଥିବ ମୋର ପୂଣ
ଏମନ୍ତ ବଚନ ସେ କହିଲେ ରଘୁରାଣ ।
ଶୁଣିକରି ଲକ୍ଷ୍ମଣ ବୋଲନ୍ତି ବଚନ
ବାଳୁତପ୍ରାୟେ କିମ୍ପା ହେଉଛ ଅଜ୍ଞାନ ।
ରାବଣ ନାମ ଯେ ଲଙ୍କାର ଅଧିପତି
ସେ ଏବେ ଚୋରାଇନେଲା ତୁମ୍ଭର ଯୁବତୀ ।
ସେ ବାରତା ପାଇଲେ ଚାରିଜଣଙ୍କଠାରୁ
ଆଉ କେଉଁ କଥାକୁ ପ୍ରଭୁ ବିଚାର କରୁ ।
ଶ୍ରୀରାମ ବୋଇଲେ ଶୁଣ ସଉମିତ୍ରୀ
ବୋଲୁଛୁ ଯେ ରାବଣ ନେଲା ଦୀର୍ଘନେତ୍ରୀ ।
ଚାରିଜଣ କହିଲେ। ସୀତାର ବାରତା
ଲଙ୍କାର ନୃପତି ଯେ ଘେନିଗଲା ସୀତା ।
ସେ କଥାମାନ ସବୁ ଶୁଣି ତଥ୍ୟକରି
ତଥାପି ଦେଖିଲାର ଜନକୁ ପଚାରି ।
ପୂର୍ବରେ ବୃତାସୁରକୁ ଇନ୍ଦ୍ର ନାଶ କଲା
ସେହି ବୃତାସୁର ଯେ ରାଜାକୁ ଗିଳୁଥିଲା ।
ଅସୁରକୁ ଡରି ଇନ୍ଦ୍ର ସେଠାରୁ ପଳାଇଲା
ମାନ ସରୋବର ଭିତରେ ତପ କଲା ।
ତାହାର ଘରଣୀ ଯେ ଶଚୀ ଦେବୀ ଜାଣ
ନ ଦେଖି ଦେବଙ୍କୁ ସେ ପୁଚ୍ଛେ ପ୍ରତିଦିନ ।
ସମସ୍ତ ଦେବତାଏ କହିଲେ ଆଗରେ
ମାନ ସରୋବରେ ତେର ସ୍ୱାମୀ ତପକରେ ।
ଚିତ୍ତବୋଧ ନୋହିଲା ଶଚୀଦେବୀ ଜାଣ
ସ୍ୱାମୀଙ୍କୁ ଦେଖିବାଯାଏ ପଚାରୁଥାଏ ପୁଣ ।

ସ୍ୱାମୀକି ଦେଖିବାରୁ ତା ମନ ଶାନ୍ତି ହେଲା
ନ ପଚାରିଲେ ସେ କଥା ନୁହଇ ଶୃଙ୍ଖଳା ।
ସେଥିର ସକାଶେ ମୁଁ ପଚାରୁଅଛି ଏତେ
ସେ କଥାକୁ ଭାଇରେ ନିରୋଧୁ କିମ୍ପା ମୋତେ ।
ଏହି ଜୀବମାନେ ଏ ସରୋବରରେ ଥାନ୍ତି
ଦୁଃଖରେ ପେଟ ପୋଷନ୍ତି କାହିଁ ନ ଯାଆନ୍ତି ।
ଏ ଅବା ମୋର ସ୍ୱତୀର ବାରତା ଥିବେ ଜାଣି
କେଣେ ଗଲା ସଖୀ ମୋର ଜାତି କମଳିନୀ ।
ଏତେ କହି ଶ୍ରୀରାମ ବନରେ ଯାଇ ବସି
ମଦନରେ ଭୋଳ ହୋଇ ବଚନ ପ୍ରକାଶି ।
ଶୁଣ ତୁମ୍ଭେ ପକ୍ଷୀହେ ଜଳଚର ଗଣ
ଦଶରଥ ନନ୍ଦନ ଶ୍ରୀରମା ମୋର ନାମ ।
ସାବତ ଜନନୀ କଲା ମୋତେ ହିଂସା
ତେଣୁ ମୁଁ ବନବାସୀ ହୋଇଥାଏ କଷ୍ଟା ।
ଭାଇନାମ ଲକ୍ଷ୍ମଣ ଯେ ଘରଣୀ ନାମ ସୀତା
ପଞ୍ଚବଟୀବନେ ମୋତେ ଲାଗେ ଘୋର ଚିନ୍ତା ।
ମାୟାମୃଗ ଦେଖିବାରୁ ତାକୁ ଗଲି ମାରି
କେହୁ ମୋ ଘରଣୀକି ନେଲା ଚୋରୀକରି ।
ତେଣୁ ମୁଁ ତୁମ୍ଭଙ୍କୁ ପଚାରେ କୁଶଳରେ
ଜାଣିଥିଲେ କହ ତୁମ୍ଭେ ମୋହର ଆଗରେ ।
ପକ୍ଷୀମାନେ ନ ଶୁଣିଲେ ଶ୍ରୀରାମଙ୍କ ବାଣୀ
ପୁଣ ପୁଣ ପୁଚ୍ଛା କରନ୍ତି ରଘୁମଣି ।
ତହିଁ ପୁଣ ପଚାରନ୍ତେ ଚକ୍ରବାକ ଖଗ
ଘରଣୀ ସଙ୍ଗରେ କରେ ରତିରଙ୍ଗ ।
ରମଣୀ ଭାଗିବାରୁ ମନ ବିମୁଖ ପାଇ
ରତି ଛାଡ଼ିଣ ସେ ରାମଙ୍କୁ କୋପ ହୋଇ ।
ଶ୍ରୀରାମକୁ ବୋଲଇ ଦୁଃଖ ତୁ ଦେଉ ଆସି
ଯତିରୂପ ଧରି ଅଛୁ କାମରେ କିମ୍ପା ରସି ।
ଦେଶ ଛାଡ଼ିଣ ତୁ ଯେ ବୁଲୁଛୁ ବନ ଘୋରେ
ଆବର ଘରଣୀ କଥା ପଚାରୁ ଆମ୍ଭରେ ।
ଫଳମୂଳ ଖାଇଣ କସାବସ୍ତ୍ର ପିନ୍ଧୁ
ଜଳରଜୀବ ଆମ୍ଭେ ଆମ୍ଭଙ୍କୁ କିମ୍ପା ରୁନ୍ଧୁ ।
ଆମ୍ଭର ଆହାର ଆମ୍ଭେ କରୁ ଏଥେ ଥାଇ
ବିନୋଦଭାବ କରୁଛୁଁ ରମଣୀ ସଙ୍ଗେ ରହି ।
ନାନାସୁଖରେ ଦିନକାଳ ଏଥି ହରୁ
ଏଠାକୁ ଆସିଣ ତୁ ଆମ୍ଭ ସୁଖ ହରୁ ।

ପକ୍ଷୀଜୀବ ହୋଇ ଆମ୍ଭେ ଘରଣୀ ନ ଛାଡୁ
ଯୁବତୀକି ଘେନିଣ ଆମ୍ଭେ ସଦା କ୍ରୀଡୁ ।
ତୁ ଯେବେ ଘରଣୀକି ସମ୍ଭାଳି ନ ପାରିଲୁ
କେଉଁ ଗୁଣେ ସଙ୍ଗରେ ତୁ ବନକୁ ଆଣିଲୁ ।
ଯେବେ ସଙ୍ଗେ ଆଣିଲୁ ନ ଥିଲୁ କିରେ ଜଗି
ତେବେ ତୁ କିମ୍ପା ହେଲୁ ନାରୀ ଅନୁରାଗୀ ।
ନ ଜାଣୁ କି ବନରେ ଚୋର ତସ୍କର ଥାନ୍ତି
ବାଟପଡ଼ା ହୋଇଣ ଖଣ୍ଡ ସେ ମାରନ୍ତି ।
ସେ କଥାମାନ ତୋତେ ନାହିଁକିରେ ଜଣା
ଆଖି ଥାଉ ଥାଉ ଯତି ହୋଇଲୁ କିରେ କଣା ।
ଯେବେ ତୁ ଘରଣୀକି ସଭ୍ୟରେ ଆଣିଥିଲୁ
ସଙ୍ଗରେ ନ ନେଇ କିମ୍ପା ମୃଗ ମାରିଗଲୁ ।
ଜାଣୁ ତ ମୋ ସଙ୍ଗରେ ଅଛି ସ୍ନେହ କରି
ସେ କଥା ମନେ ବିଚାର ନ କଲୁ ଚାପଧାରୀ ।
ଏବେ ମୋର ଘରଣୀକି ଦେଖିକରୁ ଶ୍ରଦ୍ଧା
ପକ୍ଷୀଆଣିକି ଦେଖିଣ କରୁ କାମ ବାଧା ।
ତୋହର ସଙ୍ଗରେ ଏହି ଅଛି ପରା ଭାଇ
ଯତି ହେଲା ଦିନୁଁ ତାର ମନ ସୁଖନାହିଁ ।
ସ୍ତିରୀଙ୍କି ସଙ୍ଗେ ଘେନି ନ କରି ବନବାସ
ବିଦେଶୀ ଦେଶାନ୍ତରୀ ନ ଛାଡ଼େ ସ୍ତିରୀପାଶ ।
ସ୍ତିରୀପାଶୁ ଗଲେ ଯେ ସ୍ତିରୀକି ଆନ ନେଇ
ସ୍ତିରୀ ଅବଳା ବଳିଯ ଯାଇ ପାଣି ହୋଇ ।
ନଦୀ ସରୋବର ଯେ ଆକଟ ବନ୍ଧେ ଥାଇ
ଯେଣିକି ବଳାଇବ ତେଣେ ବହିଯାଇ ।
ଦେଖ ଏବେ ସଙ୍ଗରେ ମୁଁ ଯେ ଜଗିଥାଇ
ଛାଡ଼ିଲେ ମୋ ଘରଣୀ ଅନ୍ୟ ସଙ୍ଗେ ଯାଇ ।
ଆମ୍ଭେ ଉଡନ୍ତାଜୀବ ଆମ୍ଭର ଏ ବିଚାର
ତୁମ୍ଭେ ସୁଜ୍ଞାନୀ ପରା କଲକି ବିଚାର ।
କି କାରଣେ ବନକୁ ଆଣୁଥିଲ ନାରୀ
ବାଳୁତ ପ୍ରାୟେ ଏବେ ହେଉଛ ଜଟାଧାରୀ ।
ପାରିଲେ ଶତ୍ରୁକୁ ଏବେ କର ହେ ବିନାଶ
ଅଧର୍ମ କଲା ଯେବେ ବଂଶ ତାର ନାଶ ।
ପାରିବାର ପଣ ଯେବେ ଅଛି ହେ ତୁମ୍ଭର
ମାର ତୁ ଅଧର୍ମ କିଛି ହିଁ ନ ବିଚାର ।
ଯତି ହୋଇଣ ତୁମ୍ଭେ ଧନୁଶର ଧର
ଆବର ରତିରଙ୍ଗ ବିଷୟ ଅନୁସର ।

ପର ରତି ଦେଖିଣ ଆପଣେ ହୁଅ ରଞ୍ଜି
ଅହଁନ୍ତା କରି ତୁମ୍ଭେ ସୁରତି ରଙ୍ଗ ଭାଞ୍ଜି ।
ଶାସ୍ତ୍ର ପୁରାଣ ତୁମ୍ଭେ କର୍ଣ୍ଣ ନାହିଁକି ଶୁଣି
ପରର ରତି ଦେଖିଲେ ଦୋଷ ଲାଗେ ଜାଣି
ପରର ଯୁବତୀର ନ ଦେଖିବ ଯୋନି
ଦେଖିଲେ ଅବଶ୍ୟ ଆୟୁଷ ହୁଏ ହାନି ।
ପଶୁ ଜନ୍ତୁମାନଙ୍କର କ୍ରୀଡ଼ା ହିଁ ନ ଦେଖି
ଯେହୁ ଦେଖନ୍ତି ସେହୁ ହୁଅନ୍ତି ମହାପାପୀ ।
ଯୁବତୀ ସ୍ତିରୀ ଯେବେ ଉଲଗ୍ନ ହୋଇଥିବ
ଯତ୍ନକରି ତାକୁ ଯେ ପୁରୁଷ ନ ଦେଖିବ ।
ପରର ଶୃଙ୍ଗାର ନେତ୍ରରେ ନ ଦେଖିବ
ଯେ ଦେଖିବ ସେହୁ ନିଶ୍ଚେ ନରକ ଭୋଗିବ
ରମଣକାଳେ ମିଳେ ସ୍ୱର୍ଗପ୍ରାୟେ ଭୋଗ
ଅନ୍ୟ ଲୋକ ଦେଖିଲେ ଭାବଇ ସରଗ ।
ଯୁଆ ଖେଳିବାର ଦେଖିବା ନ ଯୋଗାଇ
ଦୁର୍ଜନ ଦୁଷ୍ଟ ସଙ୍ଗରେ ଗଣିତା ସେ ହୋଇ ।
ରମଣ ଦେଖିଲେ ଅଶୁଭ ନିଶ୍ଚେ ଜାଣ
ଶତେ ଜନ୍ମ ପରିଯନ୍ତେ ଅନ୍ଧ ସେ ହୁଏ ପୁଣ ।
ଅଯୋଗେ ଦେଖିଲେ ସୂର୍ଯ୍ୟଙ୍କୁ ଦେଖିବ
ତେବେ ସେ ବାସୁଦେବ ଘେନନ୍ତି ଯେ ଭାବ ।
ତୁମ୍ଭେ ଜଟାଧାରୀ ହେ ବଡ଼ ଯେ ଅଜ୍ଞାନ
ପକ୍ଷୀଙ୍କର କ୍ରୀଡ଼ା ଦେଖ ନ ଜାଣ ପାପପୁଣ୍ୟ ।
ତୋ ଭାରିଯାକୁକେ ନେଲା ନ ଜାଣୁ ସେକଥା
ଲୋକରେ ଉପହାସ ଅଟଇ ସେ କଥା ।
ମନୁଷ୍ୟଙ୍କ ଭାଷା ସିନା ମନୁଷ୍ୟଙ୍କୁ ପୁଛି
ତୁମ୍ଭେ ବଡ଼ ଅଜ୍ଞାନ ପକ୍ଷୀଙ୍କି ବାର୍ତ୍ତା ପୁଛି ।
ଆପଣାର ମନରେ ଏ କଥାମାନ ବିଚାର
କୁବୁଦ୍ଧି ପୁଣ ତୁମ୍ଭର ଅନ୍ୟାୟ ଅବିଚାର ।
ଶ୍ରୀରାମ ଶୁଣିକରି ହୋଇଲେ ସଂକୋଚ
ଲକ୍ଷ୍ମଣଙ୍କୁ ସେ କଥା ହୋଇଲା ପରପଞ୍ଚ ।
ବୋଇଲେ ଚଣ୍ଡାଳରେ ପକ୍ଷୀଜନ୍ତୁ ଛାର
ବିଶେଷ ଜାଣୁକିରେ ପୁରାଣ ଶ୍ରୁତିସାର ।
ପୋକ ଯୋକ ଖାଇ ତୁ ଗୃହସ୍ଥ ବୋଲାଉ ।
ଆଜୁ ଏ ଘରଣୀ ତୋତେ ଯୋଗ ନୋହୁ ।
ତୀକ୍ଷ୍ଣଶର ପେଶିଣ ଛେଦନ୍ତି ତୋର ଶିର
ପଶୁଜନ୍ତୁ ବଧିବାର ନୁହଇ ବେଭାର ।

ଏବେ ମୃତ୍ୟୁ କାରଣ ହେଲାଣି ତୋତେ ଯୋଗ
ନିଜ ଭାରିଜା ରମଣ ନୋହିବା ତୋତେ ଭୋଗ ।
ଏହିପରି ଲକ୍ଷ୍ମଣ କହିବାରୁ ବାଣୀ
ଚକ୍ରବାକ ପକ୍ଷୀ କହୁଅଛି ଶୁଣି ।
ସୁଜ୍ଞାନୀ ହୋଇ ତୁମ୍ଭେ ଅଧର୍ମକୁ କହ
ବୁଝାଇ କହିବାରୁ ଅବିଗୁଣ ପାଅ ।
ଅଜ୍ଞାନ ଅଯୋଗ୍ୟରେ ମୋତେ ଶାପଦେଲୁ
କେଉଁ ଦୋଷ ମୋହର ତୁହି ଯେ ଦେଖିଲୁ ।
ଯେତେ ଖଗ ପୁଣିରେ ଏ ସଂସାରେ ଛନ୍ତି
ମନୁଷ୍ୟ ଦେବତା ଏକ ଯାଇ ପାରନ୍ତି ।
ଖଗଜୀବ ମୁଁ ଯେ କେମନ୍ତେ ଦେଲୁ ଶାପ
ତୋତେ ଯୋଗ ହେବରେ ବାନରୀର ଶାପ ।
ମୁହିଁ ସିନା ଅଜ୍ଞାନ ତୁମ୍ଭେ ତ ସୁଜ୍ଞାନ
ସେବେଳେ ଜାଣିବ ଦଶରଥର ନନ୍ଦନ ।
ଶୁଣିକରି ଶ୍ରୀରାମ ପଛକୁ ଲେଉଟିଲେ
ଖଗର କଥା ଶୁଣି ବିଷାଦ ଯୋଇଲେ ।
ବୋଇଲେ କେଡ଼େ କଥା କହେ ଖଗବର
ଆପଣାର ବିଚାରେ ମୁଁ ହେଉଅଛି ପର ।
ଏହାକୁ ଯେବେ ଘରଣୀ ନୋହିବ ପରାପତ
ତେବେ ମୋତେ ନ ମିଳିବ ଜନକ ଦୁହିତ ।
ଏମନ୍ତ ବିଚାର ଶ୍ରୀରାମ ମନେ କଲେ
ଚକୁଆ ଚକୋଇଙ୍କି ପାଶକୁ ଡାକିଦେଲେ ।
ଶ୍ରୀରାମ ଡାକିବାରୁ ବେନି ପକ୍ଷୀ ଗଲେ
ଚରଣର ତଳେ ପାଏ ପଡ଼ି ସେ ଶୋଇଲେ ।
ବୋଇଲେ ଭୋ ଦେବ ଆମ୍ଭଙ୍କୁ ରକ୍ଷାକର
ଦୁସ୍ତରୁ ଶାପରୁ ବାରେକ ଉଦ୍ଧର ।
ଘରଣୀ ସୁଖ ମୋର ଆଜିଠାରୁ ଗଲା
ସନ୍ତତି ନୋହିଲେ କୁଳହିଁ ବୁଡ଼ିଲା ।
ଆବର ଜୀଇ କରି କରିବି ମୁଁ କିସ
ପାରିଲେ ଦେବ ମୋର ରକ୍ଷାକର ବଂଶ ।
ଶୁଣିକରି ଶ୍ରୀରାମ ବୋଲନ୍ତି ଉତ୍ତର
ମୋହର ଶାପ ବାବୁ ଅଟେ ଗୁରୁତର ।
କହିବା କଥା ମୋର ନୁହଁଇ ଯେ ଆନ
ଅଂଶ ରହିବାକୁ ଦେବା ଯେ ପରିତ୍ରାଣ ।
ଯାହା ତୁ ନ ବୁଝି କହିଲୁରେ ଖଗ
ରାତ୍ରରେ ଶୃଙ୍ଗାର ପୀରତି ନୁହଁ ଭାବ ।

ଏତକ ଯେବେ ପକ୍ଷୀରେ କହିଲୁ ତୁ ପୁଣ
ତେଣୁ ସେ ହୃଦେ ଦୟା ବସିଲା ମୋର ଜାଣ ।
ମୋହର ଶାପରେ ରଜନୀ ପ୍ରୀତି ଭାଗୁ
ନିଜପୁରେ ଘରଣୀ ତୋର ମନରଞ୍ଜୁ ।
ସୂର୍ଯ୍ୟ ଥିବାଯାଏ ତୁମ୍ଭେ କରିବ ରତିରସ
ରଜନୀରେ ଛୁଇଁଲେ ତୁ ଯିବୁ ନିଶ୍ଚେ ନାଶ ।
ଯେତେଦିନ ଏ ପୃଥ୍ୱୀରେ ରାମ ନାମ ଥିବ
ମୋହର କଥା ଯେ ମେଣ୍ଟଣ ନ ଯିବ ।'
ଚକୋଇ ପକ୍ଷୀକି ସେ କହି ଚଳିଗଲେ
ଶୁଣିକରି ବେନି ପକ୍ଷୀ ଲେଉଟି ଅଇଲେ ।
ଚକୋଇ ବୋଇଲା ତୁରେ ମନ୍ଦ କର୍ମ କଲୁ
ଆକାଶରେ ବଇଦେହୀ ଯିବାର ଦେଖିଲୁ ।
ଅଣ୍ଡିର କୋକିଳ ପ୍ରାୟେ ରୋଦନ କରଇ
ତାହାର ବାରତା ସିନା ଶ୍ରୀରାମ ପଚରଇ ।
ତୁ ତାଙ୍କୁ ଗରବ କରି ଯହୁଁ ନ କହିଲୁ
ରଜନୀ କାଳରେ ତେଣୁ ନିରିମାଖି ହେଲୁ ।
ଏମନ୍ତେ କୁହାକୁହି ବେନି ପକ୍ଷୀ ହେଲେ
କୋମଦର ସରୋବରେ ପ୍ରବେଶ ହୋଇଲେ ।
ନିଜସ୍ଥାନେ ଦୁଇପକ୍ଷୀ ହେଲେ ପରବେଶ
ହରଷରେ ବେନି ପ୍ରାଣୀ କଲେ କ୍ରୀଡ଼ାରସ ।
ଏମନ୍ତ ସମୟରେ ବ୍ୟାଧ ଯାଇମିଳି
ସରୋବରୁ ପାଣିପିଇ ପକ୍ଷୀଙ୍କୁ ଅନୁସରି ।
ଚକୁଆ ଚକୋଇ ଦୁଇପକ୍ଷୀଙ୍କି ଦେଖିଲା
ତେଣୁ ସେ ବ୍ୟାଧ ତାର ଉପାୟ ପାଞ୍ଚିଲା ।
ମାରିବାର ଉପାୟ କଲା ସେହୁ ବ୍ୟାଧ
ଦୁରରୁ ଚଡାଇଲା ଅଠାକି ଯୁଆଦ ।
ଜାଉଁଳିର ଅଠାରେ ଦୁଇଗୋଟି
ଧାଇଁଆସି ବ୍ୟାଧ ତାଙ୍କୁ ଧରିଲା ସାଉଁଟି ।
ଅଠାକୁ ଛଡ଼ାଇଣ ସେ ପେଡ଼ାରେ ପୂରାଇଲା
କାଠପେଡ଼ା ଭିତରେ ମୁଦିଣ ରଖିଲା ।
ବୋଇଲା ଘରକୁ ମୁଁ ବେଗେ ଗଲେ ପୁଣ
ସହରକୁ ନେଇଣ ବିକିବ ଯାଙ୍କୁ ଜାଣ ।
ମନେ ମନେ ବିଚାର କରିଣ ଏମନ୍ତ
ଏକା ହୋଇଣ ଯେ ବ୍ୟଧ ଚଳିଲା ବନପଥ ।
ଯାଉ ଯାଉ ଶାର୍ଦ୍ଦୂଳ ଦେଖିଲା ବାଟରେ
ଚମକି ବ୍ୟାଧକୁ ମାଡ଼ି ବସିଲା ସେଠାରେ ।
ବ୍ୟାଧକୁ ଧରିଣ ସେ ନିଶ୍ଚିନ୍ତେ ଭକ୍ଷିଲା
ଏମନ୍ତ ସମୟରେ ରଜନୀ ହୋଇଲା ।
ଚକ୍ରବାକ ପକ୍ଷୀ ପେଡ଼ାଭିତରେ ରହିଲେ
ରଜନୀ ହେବାରୁ ସେ ମନରେ ବିଚାରିଲେ ।
ଆମ୍ଭଙ୍କୁ ବ୍ୟାଧ ଧରି ଆଣିଲା ଯେ ଜାଣ
ଉତପାତ କଥା ଏବେ ଘଟିଲା ଯେ ପୁଣ ।
ବ୍ୟାଧକୁ ବ୍ୟାଘ୍ର ଖାଇଲା ଆମ୍ଭେ ଏଥି ରହି
ବଡ଼ ଦୁର୍ଘଟଣା କଥା ଘଟିଲା ଏଠାଇଁ ।
ନିଶ୍ଚୟ ଏଥି ଆମ୍ଭର ପରାଣଟି ଯିବ
ବେନି ପକ୍ଷୀ ଏମନ୍ତ ବିଚାର କଲେ ଭାବ ।
ଦଇବକୁ ସୁମରି ରହିଲେ ଏକାଠି
ଚିନ୍ତାରେ ମନ ତାଙ୍କର ବିକଳ ହୁଅଇଟି ।
ଆଣି ଏକତ୍ର ବନ୍ଦୀ କଲାତ ବିଧାତା
ଆମ୍ଭଙ୍କୁ ଆଶ୍ୱାସିବ କେବଣ ମହାତ୍ମା ।
ଭୋଧର୍ମ ଦେବତା ଏବେ ଏଥିରୁ ପାରିକର
ଏ ଘୋର ସଂକଟରୁ ବାରେକ ଉଦ୍ଧର ।
ମହାବିତ୍‌ପାତ ଯେ ଘଟିଲା ଆଜଦିନ
ଆମ୍ଭଙ୍କୁ ଶାପଦେଲେ ଶ୍ରୀ ରଘୁନନ୍ଦନ ।
ଏବେ ବ୍ୟାଧର ହସ୍ତେ ବନ୍ଧନ ପଡ଼ିଲୁ
ଏ ଜନ୍ମର ଆଶା ଆମ୍ଭେ ନିଶ୍ଚୟ ଛାଡ଼ିଲୁ ।
ବ୍ୟାଧ ଯେ ଆମ୍ଭଙ୍କୁ ଆଣି ବନ୍ଦୀକଲା
ଏ ବନସ୍ତ ମଧ୍ୟରେ ପରାଣ ହରାଇଲା
ମାଂସରେ କାରଣ ନାହିଁ କରେ ଜୀବହତ୍ୟା
ତେଣୁ ବ୍ୟାଧକୁ ଖାଇଲା ଶାର୍ଦ୍ଦୂଳଟା ।
ବ୍ୟାଧବନ୍ଦୀ କରିଣ ଯମପୁରେ ଗଲା
ଶ୍ରୀରାମଙ୍କ ବଚନ ତ ବିଅର୍ଥ ହୋଇଲା ।
ଜୟ ଜୟ ଶ୍ରୀରାମ ତ୍ରୈଲୋକ୍ୟର ନାଥ ।
ଜୟ ଜୟ ରଘୁପତି ଜାନକୀଙ୍କ କାନ୍ତ ।
ଜୟ ଜୟ ଶ୍ରୀରାମ ହେ କରୁଣା ସାଗର
ଜୟ ଜୟ ଶ୍ରୀରାମ ହେ ପ୍ରତିଜ୍ଞା ସାର୍ଥକର ।
ଶ୍ରୀରାମଙ୍କୁ ସୁମରନ୍ତେ ପେଡ଼ା ଫିଟିଗଲା
ବେନି ପକ୍ଷୀ ଉଡ଼ିଗଲେ ଶାପଟି ସିଦ୍ଧହେଲା ।
ସେହି ଶ୍ରୀରାମ ଯେ ପରମ ବ୍ରହ୍ମ ହରି
ଜଗତର ହିତେ ସେ ମାନବ ରୂପଧରି ।
ଶ୍ରୀରାମଙ୍କ ଚରଣରେ ମୋର ନିତ୍ୟେ ଆଶ
ବଳରାମ ଦାସକୁ ରଖ ହେ ଜଗଦୀଶ ।

ଋଷ୍ୟଶୃଙ୍ଗ ଯାହା ବର୍ଣ୍ଣିଲେ ଆଗକରି
ସେ କଥା ଭାଳି ମନେ ରାମାୟଣ କରି ।
ପାର୍ବତୀଙ୍କ ଆଗରେ କହନ୍ତି ତ୍ରିଲୋଚନ
ଶୁଣିଣ ହିମାଳୟ ସୁତା ତୋଷ ମନ ।
ଏଥୁ ଅନନ୍ତରେ କହନ୍ତି ଭଗବତୀ
କଥାରେ ଛନ୍ଦ କିମ୍ପା ରଖିଲ ପଶୁପତି ।
ଚକ୍ରବାକ ପକ୍ଷୀଠାରୁ ରହିଲା କଥା ପୁଣ
ମୋର ଆଗେ ପ୍ରକାଶ କର ହେ ଶଙ୍କର୍ଷଣ ।
ଶ୍ରୀରାମ ତାହାଙ୍କୁ ଯେ ଶାପଦେଇ ଗଲେ
ସୁଦୟା କରି ପୁଣି ପକ୍ଷୀକି ବର ଦେଲେ ।
ବ୍ୟାଧର ହସ୍ତରେ ବନ୍ଧନେ ପଡ଼ିଥିଲେ
ଶ୍ରୀରାମଙ୍କୁ ସୁମରିବାରୁ ସେ ମୁକ୍ତି ଦେଲେ ।
କେତେକାଳ ବଞ୍ଚିଲେ କି ରୂପେ ରାତ୍ରେ ରହି
ଏ କଥାକୁ ଦେବ ମୋତେ କହ ହେ ବୁଝାଇ ।
ପାର୍ବତୀଙ୍କ ବଚନେ କହନ୍ତି ଶୂଳଧର
ଧୀର ଚିତ୍ତ ହୋଇଣ ସେ କଥା ଶ୍ରୁତିକର ।
ଦୁଇପକ୍ଷୀ ଯାଇଣ ସରୋବରେ ରହି
ଦିବସରେ ଏକଠାବ ରାତ୍ରରେ ଭିନ୍ନ ହୋଇ ।
ଶତହାତ ଅନ୍ତରେ ରହନ୍ତି ବେନି ଜନ
ରଜନୀ ପାହିଲେ ଏକଠାବ ହୋନ୍ତି ଜାଣ ।
ଏହିରୂପେ ସପତ ଯୁଗ ବହିଗଲା
ପୁତ୍ର ଦୁହିତା ତାଙ୍କର ଯୋଡ଼ିଏ ଜାତହେଲା ।
ପୁତ୍ର ଦୁହିତାଙ୍କୁ ସେ ବୁଝାଇ କହିଲେ
ରଜନୀରେ ଦୁଇଠାବ କରିଣ ରଖିଲେ ।
ଦୁଇଠାବ କରିଣ ଦିଅନ୍ତି ଆହାର
କେତେଦିନ ଉତ୍ତାରୁ ଚଳିଲେ ଦୁଇ ବାଳ ।
ପିତା ପାଶେ ପୁତ୍ର ମାତା ପାଶରେ ଦୁହିତା
ଦୁହିଁଙ୍କି କହିଲେ ସେ ପୂର୍ବର ଶାପ କଥା ।
ଦିବସରେ ଏକଠାବ ରାତ୍ରରେ ହେବଛଡ଼ା
ଏତେକହି ବେନି ପକ୍ଷୀ ମୃତ୍ୟୁ କଲେ ଲୋଡ଼ା ।
ସେ କାଳରୁ ଚକୁଆ ଚକୋଇ ବାରଣ
ସନ୍ତୋଷ ହେଲେଟିକି ଶୁଣି ଏ କଥାମାନ ।
ଏଥୁ ଅନନ୍ତରେ ପାର୍ବତୀ ଦେବି କହି
ସେଠାରୁ ଶ୍ରୀରାମ, ଲକ୍ଷ୍ମଣ ଗଲେ କାହିଁ ।
ସେ କଥା ମୋର ଆଗେ କହ ପଞ୍ଚାନନ
ଶୁଣିଲେ ସେ କଥା ମୋର ତୃପତି ହେବ ମନ

ଈଶ୍ୱର ବୋଇଲେ ଶୁଣ ଗୋ ହିମବନ୍ତୀ
ସେଠାରୁ ଶ୍ରୀରାମ ଲକ୍ଷ୍ମଣ ଚଳିଯାନ୍ତି ।
ଅରଣ୍ୟ ମଧ୍ୟରେ ଗମିଲେ ବେନି ଭାଇ
ମନବର ବିମୁଖରେ ଯାନ୍ତି ପଥବାହି ।
ଲକ୍ଷ୍ମଣଙ୍କୁ କହିଲେ ପ୍ରଭୁ ରଘୁସୁତ
କ୍ଷୁଧାରେ ଦେହ ମୋର ହେଲା ବିଚଳିତ ।
ଆହାର ଖାଇଲେ ଯେଦେହ ମୋର ସ୍ଥିର
ନୋହିଲେ ଜୀବନ ଯେ ନ ରହଇ ମୋର ।
ସୀତୟା ଗଲା ଦିନୁ ଆହାର ସୁସ୍ଥ ନାହିଁ
ଶବରୀ ଆମ୍ବ ଦେଲାବେଳେ ମୁଁ ଖାଇବଇ ।
ଶ୍ରୀରାମ ବୋଇଲେ ଶୁଣରେ ସଉମିତ୍ରୀ
ଏ ଜନ୍ମ ଆବର ଅଟଇ ନିଃସ୍ୱାର୍ଥୀ ।
ପୂର୍ବରେ ଆମ୍ଭେ ଯେବେ ଦେଇଥାନ୍ତେ ଜାଣ
ତେବେ ଆମ୍ଭେ ସୁଖରେ ନିଅନ୍ତେ ଯେ ଦିନ ।
କ୍ଷଣକରେ ନିଧିଜାତ କ୍ଷଣକେ ଦୁଃଖ ଜାତ
ଯେ ଯାହା ଦେଇଥାଇ ତାହା ପରାପତ ।
ଆମ୍ଭଙ୍କୁ ଭୋକକଲା କେ ଦେବ ଆହାର
ଏତେ ବୋଲି ବିସ୍ମୟ ହୋଇଲେ ରଘୁବୀର ।
ଥୋକାଏ ଦୂରରେ ଦେଖିଲେ ଚରୁଛନ୍ତି ଗାଈ
ଦେଖିକରି ବିଚାର କରନ୍ତି ରଘୁସାଇଁ ।
ଏହିଠାରେ ଗୋପାଳମାନଙ୍କର ଗୋଷ୍ଠୀ
ଏମାନଙ୍କୁ ସମ୍ବାଦ କରିବା ଯାଇଟି ।
ଲକ୍ଷ୍ମଣଙ୍କୁ ବୋଇଲେ ଶୁଣ ଆରେ ଭାଇ
ଗୋଗୋଷ୍ଠରୁ ଦୁଧ ଯେ ଆଣିବା ମଗାଇ ।
ଲକ୍ଷ୍ମଣ ବୋଇଲେ ଦେବ ଗୋପାଳଙ୍କୁ ମାରି
ସବୁ ଗୋରୁଙ୍କ ଆମ୍ଭେ ନେବା ଅଡ଼ାଇକରି ।
ମୁହିଁ ପଛେ ଗୋରୁ ଜଗି କରିବି ଦୋହନ
ଆପଣ କ୍ଷୀର ଖାଇ କାଟିବେ ଯେ ଦିନ ।
ବନରେ ଥିବାଯାକ ଦୁଃଖ ନ ସହିବା
କ୍ଷୀରପାନ କରିଣ ସୁଖରେ ବଞ୍ଚିବା ।
ଶ୍ରୀରାମ ବୋଇଲେ ସେଥିରେ କାର୍ଯ୍ୟନାହିଁ
ଏତେ ଗୋରୁ ନେଇ ଆମ୍ଭେ ସମ୍ଭାଳିବା କାହିଁ ।
ପରଦ୍ରବ୍ୟ ହରିବାର ନୁହଇ ଉଚିତ
ଗୋପାଳମାନେ ଅଟନ୍ତି ସହଜେ ନିଆଶ୍ରିତ ।
ଗାଈଙ୍କର କ୍ଷୀରରେ ପ୍ରତିପୋଷଣ ହୋନ୍ତି
ତାହାଙ୍କର ବେଉସାରେ ନାହିଁ ଅନ୍ୟଗତି ।

ବନ୍ଧୁ ବର୍ଗଙ୍କ ନିମନ୍ତେ ଖୋରାକ ପୋଷାକ
କୁଟୁମ୍ବଦିଙ୍କ ଜଞ୍ଜାଳ ବୁଝନ୍ତି ସମସ୍ତ ।
ତାଙ୍କର ଦାନାପାଣି ଅଟେ ଏ ଗୋରୁ ତ
ତାଙ୍କ ଦାନା ନାଶିବାର ନୁହଇ ଉଚିତ ।
ଏମନ୍ତେ ବେନିଭାଇ କୁହାକୁହି ହେଲେ
ଧୀର ଧୀର ହୋଇଣ ସେଠାରୁ ଚଳିଗଲେ ।
ଯିବାର ପଥରେ ରାମ ଲକ୍ଷ୍ମଣଙ୍କୁ କହି
ଅଦୋଷୀ ଜନକୁ ମାରିବାର ନ ଯୋଗାଇ ।
ପୂର୍ବର ଅର୍ଜିଲା କର୍ମ ଭୁଞ୍ଜୁ ଅଛେଁ ଏବେ
ଏ ଜନ୍ମରେ ପାପକଲେ କ୍ଷୟନୁହେଁ କେବେ ।
ଏଡ଼େ ବଡ଼ପଣରେ ନାହିଁ ମୋର କାର୍ଯ୍ୟ
ଜାନକୀଙ୍କି ଘେନି ଗଲା ବିଶର୍ବା ତନୁଜ ।
ତାହାକୁ କିଛି ତ ମୁଁ ନ ପାରିଲି କରି
ଅଦୋଷୀ ଲୋକଙ୍କୁ କିମ୍ପା ପକାଇବା ମାରି ।
କ୍ଷୁଧାର ନିମନ୍ତେ ତାଙ୍କୁ ମାଗିବା ଯେ କ୍ଷୀର
ଦୟା ବସଇ ଯେବେ ହୃଦରେ ତାଙ୍କର ।
ଦେଲେ ସେ ପାନକରି ଯିବା ଆମ୍ଭେ ଚଳି
ନଦେଲେ ସନ୍ତୋଷ ମନରେ ଯିବା ଫେରି ।
ବନରୁ ଫଳ ମୂଳ ଆଣିବା ଯାଇଣ
ଭୋଜନ କରିବା ସୁଖେ ନ ପାଅ ଅବିଗୁଣ ।
ଏତେଭାବି ବେନିଭାଇ ଗୋଷ୍ଠ ପାଶେ ମିଳି
ଗୋରୁଙ୍କୁ ଦେଖିକରି ନମସ୍କାର କରି ।
ବୋଇଲେ ସୁରଭୀ ଗୋ ମାତା ନାମ ତୋର
ଏକରୁ ଅନେକ ରୂପ ତୋହର ବିସ୍ତାର ।
ବିପତ୍ତିର କାଳରେ ଆମ୍ଭଙ୍କୁ ସାହା ହୁଅ
ତୋର କ୍ଷୀରେ ଆମ୍ଭର ବୋଧ ହେବ ଦେହ ।
ଏମନ୍ତେ ବେନିଭାଇ ଗୋରୁଙ୍କୁ ସ୍ତୁତିକରି
ମନର ସନ୍ତୋଷରେ ଶ୍ରୀରାମ ବିଚାରେ ।
ଗୋପାଳମାନେ ଅବା ମାଗିଲେ ନ ଦେବେ
ଆମ୍ଭେ ଛଳ ଉବ୍ୟ ବୁଦ୍ଧି କରିବା ଏଠାବେ ।
ଏମନ୍ତ ବିଚାରିଣ ରଘୁ କୁଳ ରାଣ
ଅଙ୍ଗୁଷ୍ଠିରୁ ବସା ମୁଦି କାଢ଼ିଲେ ତକ୍ଷଣ ।
ଗୋପାଳମାନଙ୍କୁ ସେ ଡାକନ୍ତି ନାମ ଧରି
ସୁସ୍ୱରେ ଶ୍ରୀରାମ ଯେ ସମ୍ବାଦ ତାଙ୍କୁ କରି ।
ଆହେ ବ୍ରଜସୁତମାନେ ଶୁଣ ଆମ୍ଭ ବାଣୀ
ନ ଶୁଣିବାରୁ କୋପକଲେ ରଘୁମଣି ।

ରଘୁ ନନ୍ଦନ କୋପ କରିବାର ଶୁଣି
ଗୋପାଳମାନେ ଯେ କହିଲେ ହାସ୍ୟବାଣୀ ।
ଶୁଣିକରି ଶ୍ରୀରାମ ବୋଇଲେ ବଚନ
ହାସ୍ୟ ନ କର କ୍ଷୀର ଦିଅ ହେ ବହନ ।
ମୋହର ବସା ମୁଦି ନେଇଣ ତୁମ୍ଭେ ରଖ
କ୍ଷୀର କିଛି ଦେଇଣ ଆମ୍ଭଙ୍କୁ କର ସୁଖ ।
ଶ୍ରୀରାମ ବଚନ ଶୁଣିଣ ଗୋପାଳେ
ବୋଇଲେ ଏ ମୁଦ୍ରିକା କେଉଁଗଛେ ଫଳେ ।
ଆମ୍ଭେ କିମ୍ପା ତୁମ୍ଭଙ୍କୁ ମାଗଣା ଦୁଧ ଦେବୁଁ
ଏ ଦୁଧ ବିକିଲେ ଆମ୍ଭେ କୁଟୁମ୍ବ ପୋଷିବୁ ।
ଦୁଧରୁ ଦଧି ଯେ ଦଧିରୁ ହେବ ଘୃତ
ଏକା ଦୁଧରୁ ତିନି ପ୍ରକାର ଦ୍ରବ୍ୟ ଜାତ ।
ବିକା କିଣା କରିଣ ଆସନ୍ତି ଗୋପାଳୁଣୀ
ସେହିମାନେ ଆମ୍ଭର ଅଟନ୍ତି ଘରଣୀ ।
ଧାନ, ଚାଉଳ ଯେ ମାଣ୍ଡିଆ ସୁଆଁପୁଣ
ବିରି, ମୁଗ, ହରଡ଼, ବରଗୁଡ଼ି ଜାଣ ।
କଉଡ଼ି, ପଇସା, ଟଙ୍କା ଯେତେ ଭଲ
ଗୋପାଳୁଣୀ ଜାଣନ୍ତି ଏମାନଙ୍କ ମୂଲ ।
ଆମ୍ଭେ ଏ କଥାମାନ ନ ଜାଣୁ ନ ଦେଖୁଟି
କେଉଁ ଗଛ ଫଳ ଏ ଯେ ତାହା ନ ଜାଣୁଟି ।
ରତ୍ନ ମୁଦି ନେଇ ଆମ୍ଭେ କି କରିବୁଁ ପୁଣ
କେଉଁ ଗଛ ଫଳ ଏ ତ କହ ବେନିଜଣ ।
ରାମଚନ୍ଦ୍ର ବୋଇଲେ ଏ ଅଟନ୍ତି ଗଣ୍ଡଜାତି
ମୁଦିକି ଦେଖି କହୁଛି କି ଗଚ ଫଳ ଏଟି ।
ଶୁଣିକରି ଲକ୍ଷ୍ମଣ ବୋଲନ୍ତି ବଚନ
ବଡ଼ଦୁଷ୍ଟ ଗଉଡ ଏ ମାଡୁଆ ଜାତି ଜାଣ ।
ଦୁଷ୍ଟକୁ ଶାନ୍ତି କଥା ନୁହଁଇ ପଉରୁଷ
ଦୁଷ୍ଟପଣ ଦେଖିଲେ ଏ ଆମ୍ଭଙ୍କୁ ହେବେ ବଶ ।
ଏତେକହି ସଉମିତ୍ରୀ କୋପମନ ହେଲେ
ଅଧର କମ୍ପାଇଣ ଶାପ୍ୟ ତାଙ୍କୁ ଦେଲେ ।
ଯେତେ କ୍ଷୀର ତୁମ୍ଭେରେ କରିବ ଦୋହନ
ଦେଖିଲା ବେଳକୁ ସବୁ ରୁଧିର ହେବ ଜାଣ ।
ଆମ୍ଭର କଥା କେବେ ମେଣ୍ଟଣ ନୋହିବ
ଯେତେ ଉପାୟ କଲେରେ ପାଲଟ ନୋହିବ ।
ଏତେ କହି ବେନିଭାଇ ସେଠାରୁ ଚଳିଲେ
ଉତାଦଣ ଯାଇ ବୃକ୍ଷ ମୂଳରେ ବସିଲେ ।

ସେ ବୃକ୍ଷର ନାମ ଅଟେ କରମଙ୍ଗା
ସେ ଫଳମାନ ପଡ଼ି ହୋଇଛି ଗଦା ଗଦା ।
ଦେଖିକରି ବେନିଭାଇ ହରଷ ହୋଇଲେ
ଶ୍ରୀରାମ ଲକ୍ଷ୍ମଣଙ୍କୁ ଚାହିଁଣ କହିଲେ ।
ଏ ଫଳ ସୁଆଦ କିରେ ଅଟଇ ଏବେ ଦେଖ
ଏହାର ଦେହରେ ଶିରା ଅଛି ଯେ ଅନେକ ।
ଦେଖିଣ ସଉମିତ୍ରୀ ପାଚିଲା ଫଳ ଆଣି
ଶ୍ରୀରାମଙ୍କ ହସ୍ତରେ ଦେଲେ ସେ ନେଇ ପୁଣି ।
ଆନନ୍ଦରେ ଶ୍ରୀରାମ ତାହାକୁ ଭୁଞ୍ଜିଲେ
ଆମ୍ବିଳ କି ସୁଆଦ ଲକ୍ଷ୍ମଣ ପଚାରିଲେ ।
ରାମ ବୋଇଲେ ଆମ୍ବିଳ, ମଧୁର ମିଶ୍ରିତ
ଏହାକୁ ଭୁଞ୍ଜି ଉଦର କରିବାରେ ସୁସ୍ଥ ।
ଶୁଣିଣ ଲକ୍ଷ୍ମଣ ଯେ ଦୁଇଦନା ଆଣି
ବେନି ଠାବକରି ଫଳ ରଖିଲେ ସେ ପୁଣି ।
ଦୁଇଭାଇ ବସିଣ ତାହାକୁ ଭୁଞ୍ଜିଲେ
କର୍ମରେ ଏହା ଅଛି ଶ୍ରୀରାମ ବୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ବେନିଭାଇ ଗୋଗୋଷ୍ଠରୁ ଅଇଲେ ଯେ ଫେରି ।
ଅଇଲାବେଳେ ଲକ୍ଷ୍ମଣ ଶାପଦେଲେ ତାଙ୍କୁ
ରକତ ହେଉ କ୍ଷୀର କହିଲେ ତାହାଙ୍କୁ ।
ସେହି କଥାଗୋଟି କେବେ ନ ଗଲା ମେଣ୍ଟଣ
ଅଚେତାରେ ଗୋପାଳେ ହାସ୍ୟକଲେ ଜାଣ
ଯେତେକ ଗାଈ ଯେ ଅଦୁହାଁ ତହିଁଥିଲେ
ଛନ୍ଦ ଲଗାଇ ଗୋପାଳେ ତାହାଙ୍କୁ ଦୁହିଁଲେ ।
ଦୁହିଁଲାବେଳକୁ ରକତ ହେଲା ଜାତ
ଦେଖିକରି ଗୋପାଳେ ହେଲେ ସ୍ତମ୍ଭୀଭୂତ ।
ଯେତେ ଦୁଧ ଦୁହିଁଲେ ରଖିଥିଲେ ପୁଣ
ଦେଖିଲାବେଳକୁ ରକ୍ତ ହୋଇଛି ସେ ଜାଣ ।
ଦେଖିକରି ଗୋପାଳ ହୋଇଲେ ଚକିତ
ଏକାଳକୁ ଏମନ୍ତ ହେଲା ବିପରୀତ ।
କେ ବୋଲଇ ଆହେ କରିବା କିସ ବୁଦ୍ଧି
ଏତେକହି ବସିଣ ହେଲେ କନ୍ଦାକନ୍ଦି ।
ବୋଇଲେ ବେନିଜନେ ମାଗିଲେ ଯେ କ୍ଷୀର
ନ ଦେବାରୁ ସେ ବେନି ହୋଇଲେ କ୍ରୋଧଭର ।
କହିଲେ ଗାଈ ତୁମ୍ଭର ରକତ କ୍ଷୀର ଦ୍ୟନ୍ତୁ
ହାସ୍ୟରସ ଏଠାରୁ ଛାଡ଼ ହେଉ ହେତୁ ।

ଏମନ୍ତ କହିଣ ସେ ବେନିଜନ ଗଲେ
ଆମ୍ଭର ଗୋକୁଳ ଅନାଥ ଏବେ ହେଲେ ।
କି ବୁଦ୍ଧି କରିବା ଯିବା ଯେ କେଣିକି
ଶୋକଭର ହୋଇଣ ଗୋପାଳେ କାନ୍ଦନ୍ତି ।
ଏକଇ ବୃଦ୍ଧ ଗୋପାଳ ଥାଇଣ ବୋଇଲା
ନ ବୁଝି ହାସ୍ୟ ତୁମ୍ଭେ କାହିଁକି କଲଭଲା ।
କେଣେଗଲେ ସେହିବେନି ଚାଲଯିବା ପୁଣ
ଗୋପାଳେ ଆସିବାର ଦେଖିଲେ ଲକ୍ଷ୍ମଣ ।
ଶ୍ରୀରାମଙ୍କୁ କହନ୍ତି ସଉମିତ୍ରୀ ଚାହିଁ
ଲଉଡ଼ି ଧରି ଗୋପାଳେ ଆସୁଛନ୍ତି ଧାଇଁ ।
ଶ୍ରୀରାମ ବୋଇଲେ ଧନୁରେ ଚଢ଼ାଗୁଣ
ତୀକ୍ଷ୍ଣ ଶର ଘେନିଣ ବସିଥାଅ ପୁଣ ।
ଆମ୍ଭ ସଙ୍ଗେ କଳହ କରିବେଟି ଯେବେ
ଶରରେ ସମସ୍ତଙ୍କୁ ହାଣିବାଟି ତେବେ ।
ଶୁଣିଣ ସଉମିତ୍ରୀ ଧନୁରେ ଗୁଣଦେଲେ
ତୀକ୍ଷ୍ଣଶର ଧରିଣ ନିଶ୍ଚିନ୍ତେ ରହିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
କରମଙ୍ଗା ଗଛମୂଳେ ମିଳିଲେ ଗୋପାଳେଟି ।
ଶ୍ରୀରାମ ଲକ୍ଷ୍ମଣଙ୍କର ଚରଣ ତଳେପଡ଼ି
ଅତି ବିନୟରେ ସେ କହିଲେ କରଯୋଡ଼ି ।
ଗଉଡ଼ ବାଉଡ଼ ଆମ୍ଭେ ହାଉଡ଼ି ତିନିଜାତି
ଗଣ୍ଡ ଗୋପାଳିଆ ଗୋଖା ସମସ୍ତେ ବୋଲନ୍ତି ।
ବନକନ୍ଦର ପଦାରେ ଆମ୍ଭେ ରହୁ ପୁଣ
ଗୋରୁଙ୍କ ସଙ୍ଗରେ ଗୋରୁ ଅଟୁ ଜାଣ ।
ଆଡ଼ ଉହାଡ଼ରେ ଗୋରୁଙ୍କୁ ଚରାଉ
ବୁହାଭାତ ଖାଇଣ ବନସ୍ତେ ଦିନ ନେଉ ।
ଆମ୍ଭ ଉପରେ ବଡ଼ ଆମ୍ଭ ସ୍ତିରୀମାନେ
କାରବାର ହାଟବାଟ କରନ୍ତି ସେମାନେ ।
ସାମନ୍ତ, ପାତ୍ର, ମନ୍ତ୍ରୀମାନଙ୍କୁ ବୋଧକରି
ଉଚ୍ଚ, ନୀଚ କଥାକୁ ସେ ରଖନ୍ତି ସମ୍ଭାଳି ।
ବୁଦ୍ଧିହୀନ ଆମ୍ଭର ନ ଜାଣୁଁ କିଛି ଆମ୍ଭେ
ଅତିଥିଙ୍କୁ କ୍ଷୀରପାନ ନ ଦେଲୁଁ ମତଗର୍ବେ ।
କେଉଁକାର୍ଯ୍ୟ ଆମ୍ଭର ଜୀବନରେ ପୁଣ
ଏ କଥାକୁ ବିଚାର କର ହେ ଆପଣ ।
କେବଳ ଗୋମାତା ଆମ୍ଭଙ୍କୁ ହୁଏ ସଖା
ବନ ଜୀବଙ୍କ ସଙ୍ଗରେ ଆମ୍ଭେ ଅଟୁଁ ଲେଖା ।

ତେଣୁ ସେ ଉଦରକୁ ପ୍ରତିପୋଷଣ କରୁ
ଏ କଥାକୁ ବିଚାର କର ହେ ମହାମେରୁ ।
ଏମନ୍ତେ ଅନେକ ନିଉନ ଭାବେ କହି
କାନ୍ଦନ୍ତି, ଗଡ଼ନ୍ତି ଶ୍ରୀରମା ପାଦ ଧାୟି ।
ଦେଖିଣ ଶ୍ରୀରାମ ଯେ ତାହାଙ୍କୁ ଦୟାକଲେ
କିଛି ନ କହିଣ ସେ ମନରେ ବିଚାରିଲେ ।
ପୁଣି ସେ ଗୋପାଳେ କହନ୍ତି ଯୋଡ଼ିକର
କୋଦଣ୍ଡ କାଣ୍ଡଧାରୀ ଆମ୍ଭଙ୍କୁ ଦୟାକର ।
ଶୁଣିଣ ଶ୍ରୀରାମ ଯେ ହୋଇଲେ ହରଷ
ବୋଇଲେ ମୁଁ କ୍ଷମାକଲି ତୁମ୍ଭର ଯେ ଦୋଷ ।
ସୁସ୍ୱାଦ କ୍ଷୀର ଯେ ଦିଅନ୍ତୁ ତୁମ୍ଭେ ଗାଇ
ରୁଧିରଯାକ ସବୁ ଯାଉ ବଦଳ ହୋଇ ।
କ୍ଷୁଧାରେ ପୀଡ଼ା ଯେ ପାଇଲା ମୋର ଭାଇ
ତେଣୁକରି ତୁମ୍ଭଙ୍କୁ ଦୁଧ ମାଗିଲି ମୁହିଁ ।
ନ ଦେବାରୁ ସଉମିତ୍ରୀ କୋପମନ କଲା
କ୍ଷୀର ରକତ ହେଉ ବୋଲିଣ ଶାପ ଦେଲା ।
ତୁମ୍ଭ ସନମାନରୁ କୋପଗଲା ମୋର
ତୁମ୍ଭେ ଯେ ବିନୟରେ କହିଲ ଅପାର ।
ଦୁଧ ଦୁହିଁକରି ହୁଅ ତୁମ୍ଭେ ସୁଖୀ
ଦୟାକଲି ଆଉ ତୁମ୍ଭେ ନୋହିବ ଯେ ଦୁଃଖୀ ।
ଶୁଣ ହେ ଗୋପାଳେ ଆମ୍ଭର ଏ ବାଣୀ
ମାଗିଲା ଲୋକକୁ ତୁମ୍ଭେ ଦେବ ଦୁଧ ଆଣି ।
କ୍ଷୀରବ୍ୟୟ ତୁମ୍ଭେ ଯେ କର ଗୋଗୋଷ୍ଠରେ
ନକରିବ ନିରାଶ ମାଗିବା ଲୋକରେ ।
ପ୍ରଥମରୁ କାଣ୍ଡେକ ଭୂମିକୁ ଦୁହିଁଦେବ
ମୋ କହିବା କଥାମାନ ମନେ ରଖ ସର୍ବ ।
ଦୁହିଁସାରି ଘରକୁ ଯିବାର ବେଳରେ
ଦେବତାଙ୍କୁ ଦୁଧଦେବ ଯେ ସ୍ନେହରେ ।
ପ୍ରଥମେର ମାଗିଲା ତାକୁ ହାସ୍ୟକଲ
କଳିଯୁଗ ଶେଷକୁ ଭୁଞ୍ଜିବ ତୁମ୍ଭେ ଭଲ ।
ଲକ୍ଷେ ଅରଜିଲେ ତୁମ୍ଭେ ଭୁଞ୍ଜିବ ପକ୍ଷେ ପୁଣି
ଦୁଧରୁ ସର ଭୁଞ୍ଜିବେ ତୁମ୍ଭର ରମଣୀ ।
ଶୋକ ସନ୍ତାପ ପୁଣି ନ କରିବେ କେହି
ରାଜାଘର ଲୋକ ସକଳ ନେବେ ବୋହି ।
ବିକଳ ନ ମାନିବ କାହାର ଦେହେ ଜାଣ
ତୁମ୍ଭଙ୍କୁ ବୋଲିବେ ଖଳ ଯେ ବଚନ ।
ତୁମ୍ଭର କୁଳବଧୂ ଯୁବାସ୍ତିରୀଗଣ
ଘୃତ ସର ଲବଣୀ ବଜାରେ ବିକିବେଣ ।
ବୃଦ୍ଧା ସ୍ତିରୀମାନେ ଯେ ରହିବେ ଘରେ ଜଗି
ସେ କଥାରେ ଲଜ୍ୟାନାହିଁ ତୁମ୍ଭର ସଦ୍‌ଭାବି ।
ଏସନକ କଥାମାନ ଅବଶ୍ୟ ହୋଇବ
ମୋହର ବଚନ ଯେ ଅନ୍ୟଥା ନୋହିବ ।
ଭାଗ୍ୟଥିଲା ଦ୍ରବ୍ୟମାନ ପରକୁ ନେଇ ଦେବ
ଅଭାଗ୍ୟବନ୍ତ ପ୍ରାଣୀ ମାଗିଣ ଯେ ନେବ ।
ତୁମ୍ଭେ ଗୋପାଳ ହେ ଅଟ ପୁଣ୍ୟବନ୍ତ
ଦୁର୍ଭିକ୍ଷ ବେଳେ ତୁମ୍ଭର ନଥିବ ଚିନ୍ତାତ ।
ନଦେଲେ ନ ଅଣ୍ଟିବ ଦେଲେ ହେବ ସୁଚୀ
କ୍ଷୀରଦାନ ଦେଲେ ଯେ ସେଥିରେ ଧର୍ମ ଅଛି ।
ଗୋଗୋଷ୍ଠରୁ କେହି ଯେ ନୋହିବେ ନିରାଶ
ଏ ବଚନ କହି ରାମ ହୋଇଲେ ସନ୍ତୋଷ ।
ସାମାନ୍ୟ ମହିଁମା କି ବୋଲିବା ତୁମ୍ଭର
ତୁମ୍ଭେ ମାଗିବାରୁ ଦୁଧ ନ ଦେଲୁ ଆମ୍ଭେ ଛାର ।
ଏତେକହି ଗୋପାଳେ ରାମଙ୍କୁ ସ୍ତୁତି କଲେ
ନିର୍ଦ୍ଦୋଷ ଦଶ ଗାଈର କ୍ଷୀର ରାମଙ୍କୁ ଦେଲେ ।
ଶିଆଳୀ ପତ୍ରଆଣି ସିଇଁଲେ ଦୁଇଦନା
ଶ୍ରୀରାମଙ୍କ ମନକୁ ପ୍ରବୋଧ କଲେ ସିନା ।
ତାଙ୍କର ସ୍ନେହ ଭାବ ଘେନିଣ ରଘୁନାନ
ଦୁଇଭାଇ ଦୁଧ ତହିଁ କରିଲେ ଯେ ପାନ ।
ବେନିଭାଇ ସନ୍ତୋଷ ଦେଖିଲେ ଗୋପାଳ
ବୋଇଲେ ଆମ୍ଭଙ୍କୁ ଦୟା କର ରଘୁବାଳ ।
ଆମ୍ଭର ଦୋଷ ଗୁଣ ମନରେ ନ ଧର
ଗରିବକୁ ଦୟା କରି ଶଙ୍ଖଚକ୍ର ଧର ।
ଯାହା ବୋଇଲୁ ବାରେ ଦୋଷ ନ ଘେନିବା
ନିରନ୍ତର ଆମ୍ଭର ସେବାହିଁ ଘେନିବା ।
ତୁମ୍ଭ ମୁଦ୍ର କାକୁ ଆମ୍ଭେ କରିଥାନ୍ତୁ କିସ
ବନରେ ବୁଲୁଁ ଆମ୍ଭେ ପଶୁଙ୍କ ସଦୃଶ ।
ଶୁଣିକରି ଶ୍ରୀରାମ ହରଷ ହୋଇଲେ
ଗୋପାଳକୁ ବୋଇଲେ ତୁମ୍ଭେ ଯାଅ ଭଲେ ।
ଏତେବୋଲି ଶ୍ରୀରାମ ସେଠାରୁ ଉଠିଗଲେ
ଦେଖିକରି ଗୋପାଳେ ଚରଣେ ଓଳଗିଲେ ।
ସେଠାରୁ ଶ୍ରୀରାମ ଯେ ଦକ୍ଷିଣ ମୁଖେ ଚଳି
ଲକ୍ଷ୍ମଣ ଅଛନ୍ତି ସଙ୍ଗରେ ତାଙ୍କରି ।

ଗୋପାଳ ଘରିଜଣ ପଛରେ ଗୋଡ଼ାଇ
ଲକ୍ଷ୍ମଣଙ୍କୁ ଶ୍ରୀରାମ କହିଲେ ରହ ତୁହି ।
ପଛରେ କିମ୍ପାଇଁ ଗୋପାଳେ ଗୋଡାନ୍ତି
ତାଙ୍କର କଥା ଆମ୍ଭେ ବୁଝିବା ଝଟତି ।
ଶୁଣିକରି ସ୍ଥିର ହୋଇ ରହିଲେ ଲକ୍ଷ୍ମଣ
ଏଥୁ ଅନନ୍ତରେ ପାର୍ବତୀ ଦେବୀ ଶୁଣ ।
ଗୋପାଳଙ୍କୁ ଘହିଁଣ ଶ୍ରୀରାମ ପଘରି
ଗୃହକୁ ନଯାଇ ଅଇଲ କିମ୍ପା ଫେରି ।
ଗୋପାଳେ କରଯୋଡ଼ି ଶ୍ରୀରାମଙ୍କୁ କହି
ଗୁପତ କଥା ଏକ ଆମ୍ଭର ଅଛଇ ।
କିହଲେ ଦେବ ଦୋଷ ହୋଇବ ଆମ୍ଭର
ନକହିଲେ ତାହା ନାହିଁ ତ ନିସ୍ତାର ।
ଶ୍ରୀରାମ ବୋଇଲେ ତୁମ୍ଭେଭୟ ଯେ ନକର
ଆମ୍ଭ ମନ ଶାନ୍ତ କଲେ ଦେଇଣ ଯେ କ୍ଷୀର ।
ପିତା ଦଶରଥଙ୍କ ସମାନେ ଅଟେ ମୋର
ମାଗ ଯାହା ଇଚ୍ଛା ବର ନକର ଉଛୁରି ।
ବୃଦ୍ଧ ଗୋପାଳକେ ବୋଲେ ପୁତ୍ରମୋର କାହିଁ
ସେହି ସକାଶରେ ତୁମ୍ଭ ପଛରେ ଗୋଡ଼ାଇ ।
କର ଅନୁଗ୍ରହ ସନ୍ତାନ ମୋତେ ଦିଅ
ଯଦ୍ୟପି ମୋର ସେବା ଘେନିଲେ ରଘୁପୁଅ ।
ଗୋପାଳ ବାଣୀ ଶୁଣି ବୋଇଲେ ରଘୁପତି
ଏ ଯୁଗରେ ତୁମ୍ଭର ନାହିଁ ଯେ ସନ୍ତତି ।
ଦୁଧ ଦେଇ ତୁମ୍ଭେ ଆମ୍ଭା ତୋଷିଲ ମୋହର
ଷୋଳଯୁଗ ଅନ୍ତରେ ପିତା ହେବ ମୋର ।
ଦୁଷ୍ଟବଳ ମାରିବାକୁ ମୁଁ ପୁଣି ଜନ୍ମହେବି
ସେତେବେଳେ କ୍ଷୀରଦାନ ଦେବାର ସୁଝିବି
ଦ୍ୱାପରେ ମଥୁରାରେ ଆମ୍ଭେ ହେବୁ ଜାତ
ତୁମ୍ଭର କୁମର ଯେ ହୋଇଲୁଁ ସେ କାଳେତ
ନୋହିଲେ ତୁମ୍ଭ କ୍ଷୀର ସୁଝିଣ ନପାରି
ଦେହ ଥିଲା ଯାକରେ ଯେତେ ପୁଣ୍ୟକରି ।
ଏଥିରେ କାରଣ ହେବ ଗୋପାଳ ନିକର
ଆଜଦିନଠାରୁ ଆମ୍ଭେ ତୋ ଧର୍ମ କୁମର ।
ବୃନ୍ଦାବନ ବୋଲିଣ ମଥୁରା ସନ୍ନିକଟେ
ଗୋପପୁର ବୋଲିଣ ଅଛଇଁ ପାଟଣାଟେ ।
ନବଲକ୍ଷ ଘର ଯେ ତହିଁରେ ବସେ ପୁଣ
ଛତିଶ ପାଟକ ଯେ ଘରିଜାତ ଜାଣ ।
ଦୁଇଲକ୍ଷେ ବତିଶ ସହସ୍ର ଗୋପାଳ
ସେହି ନଗ୍ରରେ ତୁ ଯେ ହେବୁ ମହୀପାଳ ।
ଏହାଙ୍କ କୋଳରେ ପଦ୍ମରୂପ ବର୍ଣ୍ଣ
ପଦ୍ମବନୁ ଆଣି ଦୁହିତା କରିବୁ ଯେ ପୁଣ ।
ପଳିଲା ଝିଅକରି ଘରରେ ରଖିବ
ଗାଇଆ ଗୋପାଳ ପୁଣି ମନୁସେଣା ହେବ ।
ତାହାର କୁମର ଯେ ହୋଇବ ଚନ୍ଦ୍ରସେଣା
ସେ ମହାଖ୍ୟାତ ହେବ ଗୋପ ଯେ ପାଟଣା ।
ସେ ପଦ୍ମିନୀ ନାମ ଯେ ରାଧିକା ଦେଇ ଥିବୁ
ମନୁସେଣା ପୁଅକୁ ବିବାହ କରାଇବୁ ।
ବୃନ୍ଦାବନରେ ସେ ଯେ ହେବ ଠାକୁରାଣୀ
ଗିରସ୍ତ ତାର ନପୁଂସକ ହେବ ପୁଣି ।
ଚନ୍ଦ୍ରସେଣାର ଭଉଣୀ ଯଶୋଦା ନାମେ ନାରୀ
ତାହାକୁ ତୁମ୍ଭେ ବିଭା ହୋଇବ ମହୀଧାରୀ ।
ନନ୍ଦରାଜା ବୋଲି ନାମ ତୋହର ହୋଇବ
ଏଗାର ବରଷ ତୋ ଘରେ ଦିନଯିବ ।
ଏ ଗୋପାଳର ନାମ ହେବ ଗୋବର୍ଦ୍ଧତି
ତାହାର ଘରଣୀ ହେବ ଚନ୍ଦ୍ରାବଳୀ ନାମ ।
ସେହି ମୋର ଭାଉଜ ଲେଖାରେ ହୋଇବ
ପଦ୍ମିନୀ ଅଂଶ ଘେନି ଜନ୍ମ ହୋଇଥିବ ।
ତୁମ୍ଭର ସଙ୍ଗରେ ଯେ ଆରେକ ଗୋପାଳ
ତାହାଙ୍କ ନାମ ଗୋପେ ହୋଇବ ଭୂପାଳ ।
ତାହାର ଘରଣୀ ଯେ ଶ୍ରୀମତୀ ନାମ ହେବ
ସେ ପଦ୍ମିନୀ ଅଂଶରେ ଜାତ ହୋଇଥିବ ।
ସେ ଜନ୍ମରେ ଜ୍ୟେଷ୍ଠ ମୋର ହୋଇବ ଲକ୍ଷ୍ମଣ
ବଳରାମ ବୋଲି ନାମ ବହିବଟି ଜାଣ ।
ଏ ଜନ୍ମରେ ମୋତେ ଦୁଃଖ ରାବଣେଶ୍ୱର ଦେଲା
ଅଦୋଷରେ ଶତ୍ରୁ ହୋଇ ମୋ ସଙ୍ଗେ ଲାଗିଲା ।
ରାବଣକୁ ମାରି ମୁଁ ଅଯୋଧ୍ୟା ଯିବାବେଳେ
ଅବଶ୍ୟ ଅଯୋଧ୍ୟାକୁ ଯିବରେ ଗୋପାଳେ ।
ଏତେକହି ରାମ ଗୋପାଳଙ୍କୁ ଲେଉଟାଇ
ସନ୍ତୋଷରେ ଗୋପାଳେ ଓଳଗି ମେଲାଇ ।
ରାମଙ୍କଠାରୁ ଶୁଣି ଗୋପାଳେ ଚଳିଗଲେ
ଅ ପଣାର ଗୋଷ୍ଠରେ ପ୍ରବେଶ ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସେଠ ରୁ ଶ୍ରୀରାମ, ଲକ୍ଷ୍ମଣ ଗଲେ ଚଳି ।

ଝଲ ଝଲ ସରୋବରରେ ସ୍ନାନବିଧି କଲେ
ଗୋପାଳଙ୍କ ଦୁଧପିଇ ତାଙ୍କୁ ବରଦେଲେ ।
ସେଠାରୁ କେଳି କଦମ୍ବ ମୂଳରେ ପରବେଶ
ନିର୍ମଳ ଶଉଚ ଯେ ଅଟଇ ବିଶେଷ ।
ବିସ୍ତାର ତରୁବର ପୁଷ୍ପ ଅଛି ଫୁଟି
ପଡ଼ିବାର ଫୁଲକୁ ଶ୍ରୀରାମ ସାଉଁଟି ।
କରେ ଧରି ଶ୍ରୀରାମ ପ୍ରଶଂସା କରନ୍ତି
ସୁବର୍ଣ୍ଣର ଗୁଣାରେ ଖଞ୍ଜିଲା ପ୍ରାୟ ମୋତି ।
ସେ ପୁଷ୍ପଗୋଟି ବାସ ଅତି ମନୋହର
ସେ କୁସୁମକୁ ନିତ୍ୟେ ଚୁମ୍ବଇ ଭ୍ରମର ।
ଏତେ କହି ସେ ପୁଷ୍ପର ଡେମ୍ଫକୁ ଦେଖିଲେ
ସେହି ଡେମ୍ଫଟିକୁ ରାମ ଛିଣ୍ଡାଇ ପକାଇଲେ ।
କେଉଁଠାରେ ଥିଲା ଡେମ୍ଫ ନିରେଖି ଚାହିଁଲେ
କୌଣସି ସ୍ଥାନେ ଡେମ୍ଫ ଚିହ୍ନି ନ ପାରିଲେ
କେଶରକୁ ନିରୋପିଣ ଦେଖନ୍ତି ପୁଣି ପୁଣି
ଠାବ କରି ନ ପାରିଲେ ରଘୁକୁଳମଣି ।
ଏମନ୍ତ ବିଚାର କରନ୍ତି ରଘୁକୁଳ ନାନ
ଏହି ରୂପରେ କଥା ହୁଏ ଅନୁମାନ ।
ମୋ ଘରଣୀ ଜାନକୀ ମୋର ସଙ୍ଗେ ଥିଲା
ଖୋଜି ନ ପାଇଲି ତାକୁ କେଉଁକତି ଗଲା ।
ଆହା ମୋ ପ୍ରାଣସଖୀ ଶରତଚନ୍ଦ୍ର ମୁଖୀ
ନୀଳ ଉତ୍ପଳ ପରାୟେ ବେନି ଆଖି ।
ତିଳ ପୁଷ୍ପକୁ ଜିଣି ଦିଶେ ତୋର ନାସା
ଚକୋର ମୁଖ ଗୋଟି କେ ନେଲା କରିହିଂସା
ଏସନକ ବିଧାତା କଲାକ ସମତୁଲ
ଏକଠାବ କରିଣ ଥୋଇଲେ ଗରିଫୁଲ ।
ସେ ଫୁଲ ଚୁମ୍ବିବାକୁ ଅଟେ ମଧୁକର
ଏବେ ଏହାକୁ ତୁ ଯେ ଦେଉ ଉପହାର ।
ସେ ମଧୁକର ଅଟେ ମୋହର ଅଂଶ ପୁଣି
ସକଳ ପୁଷ୍ପକୁ ସେ ଚୁମ୍ବଇ ବାସ ଜାଣି ।
ମଧୁକର ଚୁମ୍ବିଲେ ସେଥିରେ ହୁଏ ଫଳ
ତୋଳିଦେଲେ ପୁଷ୍ପତ ନ ଫଳ ଆଉ ଫଳ ।
ସେହିରୂପେ ମୋହର ଜାନକୀ ହୋଇଲା
ମୋର ସଙ୍ଗେ ଥିଲା ସେ କେଣିକି ଏବେ ଗଲା ।
ବିରହରେ ବାତୁଳ ହେଲେ ରାମରାଣ
କରେ ଧରିଛନ୍ତି ସେ କୋଦଣ୍ଡ ଦାଣ୍ଡ ପୁଣ ।

ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରଘୁପତି
ଏହିକ୍ଷଣି ଆଣିଦିଅ ମୋହର ଯୁବତୀ ।
ତୋହର ଯୋଗରୁ ହଜିଲା ମୋର ସୀତା ।
ତୁହି ମୋତେ ବିଚାରି କରିଛୁ ଅହନ୍ତା ।
ଆଣି ଦିଅ ମୋର ପ୍ରାଣପ୍ରିୟା ବଇଦେହୀ
ନ ଦେଲେ ଆଜି ତୋର ପ୍ରାଣ ଯେ ନପାଇ ।
କରଯୋଡ଼ି ଲକ୍ଷ୍ମଣ କହେ ଧୀର କରି
ଏହିକ୍ଷଣି ଆଣି ଦେବୀ ଜନକ କୁମାରୀ ।
ଏତେକହି ସଉମିତ୍ରୀ ଗଲେ ପିଠି ଦେଇ
ବନର ଉହାଡ଼ରେ ଅନ୍ତର ହେଲେ ସେହି ।
ବିଚାରିଲେ ଦେବତାଏ ନଟକୁଟ କଲେ
ଜାନକୀକୁ ରାବଣକୁ ନେଇ ସମର୍ପିଲେ ।
ରାମଙ୍କୁ ଅଜ୍ଞାନ ସେ କରାଇଲେ ପୁଣ
ଆଗେ ଜାନକୀର ହସ୍ତେ ମୋତେ ପ୍ରାଭବ ଜାଣ ।
ପଛେ ଶ୍ରୀରାମ ମୋତେ ଦିଅନ୍ତୁ ପରାଭବ
ମୁହିଁ ଛାଡ଼ିଗଲେ ନବର୍ତ୍ତିବେ ରାମ ଦେବ ।
ଯଦ୍ୟପି ଦାଶରଥି ମୋ ପ୍ରତି କୋପ ହେଲେ
ଅପାଣ୍ଡୁକ କଥା ହୃଦ ମଧରେ ଧଇଲେ ।
ତେବେ ମୁହିଁ ଦେବତାଙ୍କୁ କରିବି ଯେ ନାଶ
ଏତେକହି ଲକ୍ଷ୍ମଣ ରାଗିଲେ ବିଶେଷ ।
ଗଙ୍ଗଗୁଜାରୀ ଶରକୁ ଗୁଣରେ ବସାଇଲେ
ତ୍ରିଦଶ ଦେବତାଙ୍କର ନାମ ଉଚ୍ଚାରିଲେ ।
କ୍ରୋଧରେ ଜର ଜର ଦଶରଥ ସୁତ
ଶୂନ୍ୟରେ ଦେବତାଏ ଜାଣିଲେ ସମସ୍ତ ।
ବିଚାରିଲେ ସ୍ୱର୍ଗତ ହେବ ଭସ୍ମ ରାଶି
ରାବଣ ନ ମରୁ ଆମ୍ଭେ ମରିବା ଆଜଟି ।
ଏତେ ବିଚାରିଣ ସରସ୍ୱତୀଙ୍କୁ ଦେଲେ କହି
ଶ୍ରୀରାମଙ୍କ କଣ୍ଠରେ ବିଜେ କର ଯାଇ ।
ଶ୍ରୀରାମଙ୍କୁ ଶାନ୍ତ କରି ଲକ୍ଷ୍ମଣ ଅଙ୍ଗେ ଯିବୁ
ଅନନ୍ତଙ୍କୁ ଶାନ୍ତ କରି ସ୍ୱର୍ଗକୁ ଆସିବୁ ।
ଶୁଣିକରି ସରସ୍ୱତୀ ବେଗେ ଚଳିଗଲେ
ଶ୍ରୀରାମଙ୍କ ଅଙ୍ଗରେ ପ୍ରବେଶ ହୋଇଲେ ।
ପ୍ରବେଶ ହୁଅନ୍ତେ ରାମ କୋପ ସଂହାରିଲେ
ନିର୍ଦ୍ଦୋଷ ଭାଇକି ଗାଳିଦେଲି ସେ ଭାବିଲେ ।
ରାମଜ୍ଞାନ ପାଇବାରୁ ସରସ୍ୱତୀ ଗଲେ
ଲକ୍ଷ୍ମଣଙ୍କ ଅଙ୍ଗରେ ତକ୍ଷଣେ ମିଳିଲେ ।

ସରସ୍ୱତୀ ପ୍ରବେଶ ଅଙ୍ଗରେ ହେବାରୁ
ଶାନ୍ତି ହୋଇଣ ସଉମିତ୍ରୀ ମନରେ ହେଲେଗରୁ ।
ଶ୍ରୀରାମ ଡାକଦେଲେ ଲକ୍ଷ୍ମଣ ନାମହିରି
କେଣେଗଲ ଭାବରେ ମୋତେ ଏକାକରି ।
ଜାନକୀ କେଣେଗଲା ତୁହିତ ଗଲ କେଣେ
ନିରେଖ ହୋଇ ମୁଁ ଏକା ରହିଲି ଘୋରବଣେ
ଏତେ ବିଚାରି ଶ୍ରୀରାମ ଲକ୍ଷ୍ମଣ ନାମଧରି
କେଣେ ଗଲ ସଉମିତ୍ରୀ ମୋତେ ଦୂରକରି ।
ଶ୍ରୀରାମଙ୍କ ବାଣୀ ଯେ ଶୁଣିଣ ଲକ୍ଷ୍ମଣ
ବିଚାରିଲେ ଅଧୈର୍ଯ୍ୟ ହେଲେ ରାମ ରାଣ ।
ବିଚାରି ସଉମିତ୍ରୀ ଲେଉଟି ଆସି ବେଗେ
କରଦୁଇ ଯୋଡ଼ିଣ ମିଳିଲେ ରାମ ଆଗେ ।
ଶ୍ରୀରାମ ପଚାରିଲେ ଥିଲୁ ବାବୁ କାହିଁ
ଲକ୍ଷ୍ମଣ କହନ୍ତି ଯେ ଶୁଣିବ ଗୋସାଇଁ ।
ପଞ୍ଚବଟୀ ବନରେ ହରାଇଲ ସୀତା
ପକ୍ଷୀଜଟା କହିଲା ଯେ ସିଦ୍ଧାନ୍ତ ବାରତା ।
ଲଙ୍କାର ନୃପତି ଯେ ସୀତାଙ୍କୁ ନେଲାହରି
ବାଟରେ କହିଲେ ଯେ କବନ୍ଧ ଶବରୀ ।
ସେ କଥା ଶୁଣି ଚେତା ନୋହିଲା ତୁମ୍ଭର
ମୋତେ ପୁଣି କୋପୁଅଛ ପ୍ରଭୁ ରଘୁବୀର ।
ତୁମ୍ଭେ ବୋଇଲ ବେଗେ ସୀତାଙ୍କୁ ଆଣ ତୁହି
ନୋହିଲେ ଆଜରେ ପ୍ରାଣରେ ମାରିବଇଁ ।
କଠୋରକଥା ଯହୁଁ ଶୁଣିଲି ତୁମ୍ଭର
ତେଣୁ ସେ ଜାନକୀଙ୍କୁ ଲୋଡୁଛି ବନଘୋର
ରାମ ବୋଇଲେ ସୀତାଙ୍କୁ ପାଇବା ଆଉ କାହିଁ
ମୋହର ହୃଦରେ ଯେ ଅଜ୍ଞାନ ଘୋଟିଛଇଁ ।
ଛଳ ନକର ମୋର କଥାକୁ ସଉମିତ୍ରୀ
ଅନେକ ବିପଦ ମୋତେ ଦେବତା ଦେଲେଟି ।
ଖଳ କତୁରୀ ମୋର ହୃଦରେ କହେ ଭେଦ
ନପୁଣ ବେନିଭାଇରେ ଲଗାଇଲେ ଦ୍ୱନ୍ଦ୍ୱ ।
ଏକଥାକୁ ଜାଗ୍ରତ ହୁଅରେ ବୀରମଣି
କେଉଁଠାରେ ପାଇବା ଜନକ ଦୁଲାଣୀ ।
ଏମନ୍ତ ବଚନ ଯହୁଁ ଶ୍ରୀରାମ କହିଲେ
ଶୁଣିକରି ଲକ୍ଷ୍ମଣ ତୃପତି ହୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାମ ଲକ୍ଷ୍ମଣ ହୃଦରୁ ସରସ୍ୱତୀ ଫେରି ।

ସ୍ୱର୍ଗପୁରରେ ଦେବୀ ହେଲେ ପରବେଶ
ଦେଖିକରି ତ୍ରିଦଶ ଦେବତା ହେଲେ ତୋଷ ।
ସରସ୍ୱତୀ ବୋଇଲେ ତୁମ୍ଭର ବୋଲେ ଗଲି
ଶ୍ରୀରାମ ଲକ୍ଷ୍ମଣଙ୍କୁ ଶାନ୍ତି କରାଇଲି ।
ଏବେ ବାଳି ମାରିବାକୁ କର ହେ ବିଚାର
କିଷ୍କିନ୍ଧ୍ୟା ନିକଟେ ମିଳିଲେ ରଘୁବୀର ।
ଶୁଣିକରି ସକଳ ଦେବତା ଠୁଳ ହେଲେ
ବାଳିକି ମାରିବାକୁ ବିଚାର ସେ କଲେ ।
ଖଳ ପୁରୁଷକୁ ସେ କହିଲେ ବଚନ
ମର୍ତ୍ତ୍ୟପୁରକୁ ତୁମ୍ଭେ ଯାଅ ହେ ବହନ ।
ଶ୍ରୀରାମଙ୍କ ଅଙ୍ଗରେ ହୋଇବ ପ୍ରବେଶ
ଯେମନ୍ତେ ବାଳିକି ରାମ କରିବେ ବିନାଶ ।
ସେ ବିଚାର କରଯାଇ ଶ୍ରୀରାମଙ୍କଠାରେ
ଯେମନ୍ତେ ସେ ଉପରୋଧ ନକରିବେ ତାରେ ।
ଶୁଣିକରି ଖଳ ଯେ ବେଗେ ଚଳିଗଲା
ଶ୍ରୀରାମ ଲକ୍ଷ୍ମଣଙ୍କ ହୃଦରେ ମିଳିଲା ।
ଖଳ ମିଳିବାରୁ ଯେ ଶ୍ରୀରାମ କ୍ରୋଧମନ
ବିଚାରିଲେ ଦୁଷ୍ଟଙ୍କୁ ମୁଁ କରିବି ନିଧନ ।
ଏମନ୍ତ ବିଚାରି ସେ ସେଠାରୁ ଚଳିଗଲେ
ଗଲାବେଳେ ଶ୍ରୀରାମ ଏମନ୍ତେ କହିଲେ ।
ବୋଇଲେ କଦମ୍ବ ବୃକ୍ଷ ମୋହର ତୁ ପ୍ରୀତି
ତୋହର ପୁଷ୍ପରେ ମୁଁ ଅଭେଦ ଦେଖିଲିଟି ।
ଦ୍ୱାପର ଯୁଗରେ ମୁଁ ହେବି ଅବତାର
ଷୋଳଯୁଗ ଅନ୍ତରେ ମଥୁରା ରାଜ୍ୟର ।
ଜନମ ହୋଇଣ ମୁଁ ବୃନ୍ଦାବନେ ଯିବି
ନିଜ ପିତାମାତାଙ୍କୁ ମଥୁରାରେ ଛାଡ଼ିବି ।
ଶ୍ରୀବୃନ୍ଦ ବନ ଭିତରେ ଗୋପ ଯେ ପାଟଣା
ନନ୍ଦ ଗୋପାଳଘରେ କରିବି ମୁଁ ଠଣା ।
ଧର୍ମମାତା ମୋର ଯେ ହେବେ ଯଶୋବନ୍ତୀ
ସହସ୍ର ଗୁଣେ ମୋତେ ପାଳିବେ ସେ ତଥି ।
ଦୁଧସର, ଲବଣୀ ବହୁତ ଖୁଆଇବେ
ରାତ୍ରି ଦିବସ ମୋଠାରୁ ସ୍ନେହ ନ ଛାଡ଼ିବେ ।
ଏଗାର ବରଷ ଯେ ଷଡମାସ ଜାଣ
ବୃନ୍ଦାବନରେ ମୋର ଲୀଳାଟି ପ୍ରମାଣ ।
ଯମୁନା କୂଳରେ ଜନ୍ମ ହୋଇଣ ତୁ ଥିବୁ
ତୋର ମୂଳେ ତାଳେ ମୋର ଲୀଳା ହେବ ସବୁ ।

ଷୋଳ ସସ୍ର ଗୋପୀ ତହିଁ ଜାତ ହୋଇଥିବେ
ଚନ୍ଦ୍ରାବଳୀ ଶ୍ରୀମତୀ ରାଧିକା ଜାତ ହେବେ ।
ମାୟାସୀତା ଚନ୍ଦ୍ରାବଳୀ ଜାନକୀ ରାଧିକା
ଶ୍ରୀମତୀ ଯେ ଗୋଲୋକ ଅଂଶରେ ଜାତ ଏକା
ସେମାନଙ୍କର ଗୃହସ୍ଥ ନପୁଂସକ ହେବେ
ମୋହର ସଙ୍ଗରେ ପ୍ରୀତି ସେମାନେ କରିବେ ।
ଅନେକ ଲୀଳା ତୁ ଯେ ଦେଖିବୁ ବଂଶୀ ବଟ
ତୋହର ନାମଟି ହୋଇବ ସର୍ବ ଶ୍ରେଷ୍ଠ ।
ରାଧାକୃଷ୍ଣଙ୍କ ଲୀଳା ଦେଖିବୁ ସେଥି ରହି
ପୂର୍ଣ୍ଣ ରାମ ମୁରତି ଦେଖିବୁ ଯେ ତହିଁ ।
ସେହି ବ୍ରଜ ବନରେ ରହିବୁ ନିଶ୍ଚଳେ
ଯୁଗେ ଯୁଗେ ନାମ ତୋର ରହିବ ପୁରାଣରେ ।
ଏତେକହି ରାମ ଯେ ପଥ ବାହିଗଲେ
ମନଦୁଃଖେ ବେନି ଚଳନ୍ତି ସଧୀରେ ।
ଏଥୁ ଅନନ୍ତରେ ପାର୍ବତୀ ଦେବୀ କହି
ଶୁଣ ହେ ବିଶ୍ୱନାଥ କଥା ଏ ରହିଲାଇଁ ।
ଯେତେକ ଗୋପାଳ ଯେ ରାମଙ୍କ ପାଶେଗଲେ
ଦେଖିଣ ଶ୍ରୀରାମ ତାହାଙ୍କୁ ଦୟାକଲେ ।
ସେ ଗୋପାଳ ମାନେ ଯେ ପୂର୍ବରେ କିଏ ସେ
କମଳାର ଅଂଶ କିମ୍ବା ତାଙ୍କଠୁ ପ୍ରକାଶେ ।
ସେକଥା ମୋର ଆଗେ କହ ଦିଗମ୍ବର
ସେକଥା ଶୁଣିବାକ ଶରଧା ମୋହର ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସେ ଚରି ଗୋପାଳ ଯେ ପୂର୍ବରେ ନିଧିପତି ।
ବିଷ୍ଣୁଙ୍କ ଭଣ୍ଡାରେ ସେ ଅଟନ୍ତି ପରୀକ୍ଷା
ଆୟ ଦାୟ ରତନ ଉପରେ ମନଇଚ୍ଛା ।
ତେଣୁ ସେ ନାରାୟଣ ଅଟନ୍ତି ଭାବ ଜାଣ
ସବୁଦିନେ ଥାଆନ୍ତି ବୈକୁଣ୍ଠପୁରେଣ ।
ଏକଦିନେ ମହାଲକ୍ଷ୍ମୀ ବୋଇଲେ ତାଙ୍କୁ ଚହିଁ
ଅଳଙ୍କାର ଭଣ୍ଡାର ଫେଡ଼ ତୁମ୍ଭେଯାଇ ।
ଆଜ୍ଜୁ ମୁଁ ଭୂଷଣ ହେବି ଅଳଙ୍କାର
ପ୍ରଭୁଙ୍କର ପାଶକୁ ଯିବାକୁ ବିଚାର ।
ଶୁଣିକରି ନିଧିପତି କମଳାଙ୍କୁ କହି
ପ୍ରଭୁଙ୍କ ଆଜ୍ଞା ନୋହିଲେ ଭଣ୍ଡାର ନ ଫିଟଇ ।
ଶୁଣିଣ ସିନ୍ଧୁ ଦୁହିତା ହେଲେ କ୍ରୋଧଚିତ୍ତ
ବୋଇଲେ ତୁମ୍ଭଠୁ ଗୁଣ୍ଡ ନାହିଁ କେ ଆଉତ ।

ପ୍ରଭୁଙ୍କ ଆୟ ଦାୟ କି ମୋହର ନୁହଇ
ତୁମ୍ଭର ବିଚାରେ ମୁଁ ବେଗଳ ଅଟଇ ।
ତେଣୁ ସେ ଜଣାଗଲା ତୁମ୍ଭର ଭବ୍ୟପଣ
ମୋହର ଶାପ ଏବେ ଘେନ ଚାରିଜଣ ।
ଗୋପାଳ ରୂପରେ ତୁମ୍ଭେ ସାତଜନ୍ମ ହୁଅ
ଗୋରୁ ଜଗି ପେଟ ପୋଷ ଗଣ୍ଡ ମୂର୍ଖ ହୁଅ ।
ଚିନ୍ତାରେ ତୁମ୍ଭେ ଯାଇ ରହ ମର୍ତ୍ତ୍ୟପୁର
ଧର୍ମ ଅଧର୍ମ କଥା ନୋହିବ ବିଚାର ।
ସାତ ଜନମ ଉତ୍ତାରେ ବୃନ୍ଦାବନେ ପୁଣ
ଜନମ ହୋଇଣ ଯେ ପାଇବ କାରଣ ।
ଶୁଣିକରି ଚାରିନିଧି ଆରତ ହୋଇଲେ
ନାରାୟଣଙ୍କ ଶୟନ ସ୍ଥାନରେ ମିଳିଲେ ।
ଅନେକ ସ୍ତୁତି କରି ଜଣାଣ ତହିଁ କଲେ
ଜାଣିଣ ବାସୁଦେବ ନିଦ୍ରାରୁ ଉଠିଲେ ।
ବୋଇଲେ କି କାରଣେ ଆରତ ହୋଇ ଭଜ
ନିଧି ବୋଇଲେ ଠାକୁରାଣୀଙ୍କ କଥା ବୁଝ ।
ଭଣ୍ଡାର ଖୋଲିବାକୁ ଆମ୍ଭଙ୍କୁ ଆଜ୍ଞାଦେଲେ
ତାଙ୍କର ବୋଲେ ଭଣ୍ଡାର ନ ଖୋଲିଲୁ ଭଲେ ।
ବୋଇଲୁ ପ୍ରଭୁ ଆଜ୍ଞା ନ କଲେ ଆମ୍ଭରେ
ଭଣ୍ଡାର ନ ଫେଡ଼ିବ ତମ୍ଭର ବୋଲରେ ।
ସେ ବୋଇଲେ ପ୍ରଭୁଙ୍କ ଭଣ୍ଡାର ଯେ ମୋର
ତୁମ୍ଭେମାନେ ମୋତେ ଯେ କରିଲ ବେଗଳ ।
ଏତେକହି ଦେବୀ ଯେ କ୍ରୋଧଭର ହେଲେ
ତେଣୁ ଆମ୍ଭମାନଙ୍କୁ ଶାପ ଯେ ବିହିଲେ ।
ବୋଇଲେ ସାତଜନ୍ମ ଗୋପାଳ ତୁମ୍ଭେ ହୁଅ
ଶତଜନ୍ମ ଯିବା ପରେ କାରଣ ତୁମ୍ଭେ ପାଅ ।
ସେଥିର ସକାଶରୁ ଜଣାଉ ତୁମ୍ଭର ଆଗେ
କିସ ଆଜ୍ଞା ଆମ୍ଭଙ୍କୁ ଦିଅ ହେ ପ୍ରଭୁ ଏବେ ।
ବାସୁଦେବ ବୋଇଲେ ନ ଯିବ ମେଣ୍ଟଣ
ଠାକୁରାଣୀଙ୍କ କଥା ଲଭିବ ତୁମ୍ଭେ ଜାଣ ।
ଜଣାଗଲା ଗର୍ବିତ ହୋଇଲ ତୁମ୍ଭେମାନେ
ଆମ୍ଭଠାରେ ବିମୁଖ ହେଉଛ କିମ୍ବା ମନେ ।
ମୋର ସୁଖ ଭାଙ୍ଗିବାକୁ ତୁମ୍ଭର ମନେ ଇଚ୍ଛା
ଭୂଷଣ ହେଲେ ଦେବୀ ପୁରାଏ ମନବାଞ୍ଛା ।
ମନବାଞ୍ଛା ସଂପୂର୍ଣ୍ଣରେ ମୋଠାରେ ଆସନ୍ତା
ସୁରତି ରଙ୍ଗକରି ମୋ ମନ ତୋଷନ୍ତା ।

ତେଣୁ ବନ୍ଦ ହୋଇଲା ତାର ମୋର ପ୍ରୀତି
ମୋ ଲାଗି ଶାପ ତାର ନୋହିବ କ୍ଷୟବୃଦ୍ଧି ।
ସାତଜନ୍ମ ପରେ ଆମ୍ଭେ ମଥୁରାରେ ଜନ୍ମ
ଗୋପରେ କଂସ ଡରେ ରହିବୁ ଯାଇଣ ।
ନନ୍ଦ, ଗୋବର୍ଦ୍ଧନ, ବୃଷଭାନୁ, ଚନ୍ଦ୍ରସେଣା
ଏ ଚରିନାମ ତୁମ୍ଭର ସେଠାରେ ହେବସିନା
ନପୁଂସକ ଲକ୍ଷଣେ ସେଠାରେ ଜନ୍ମ ହେବ
ତୁମ୍ଭ ଅଂଶରୁ ତ୍ରିଲକ୍ଷ ଗୋପାଳ ସମ୍ଭବ ।
ସେମାନଙ୍କ ଘରେ ଷୋଳ ସହସ୍ର ନାରୀ ଜାଣ
ଜନମ ହୋଇଲେ ସେ କମଳା ଅଂଶେଣ ।
ସେମାନେ ମୋର ସଙ୍ଗେ କରିବେ ପ୍ରୀତିଭାବ
ସେମାନଙ୍କୁ କେବଳ ଆଦରି ତୁମ୍ଭେ ଥିବ ।
ମୋହର ଲୀଳାରୂପ ଦେଖିବ ସେଠାରେ
ତେବେ ସେ ମୁକତି ଲଭିବ ସେ ଜନ୍ମରେ ।
ଶୁଣିଣ ଚରିଜଣ ତହୁଁ ଚଳିଗଲେ
ମର୍ତ୍ତ୍ୟପୁରେ ଗୋପାଳ ହୋଇଣ ଜାତହେଲେ ।
ଏବେ ସେ ରାମଙ୍କୁ ଦେଖିଲେ ଯେ ପୁଣ
ପୂର୍ବର କାରଣ ତାଙ୍କୁ କହିଲେ ରଘୁରାଣ ।
ପାର୍ବତୀ ବୋଇଲେ ସେ କଥା ଶୁଣିଲି
ଚରିନିଧି ସେଠାରୁ ବେଗେ ଗଲେ ଚଳି ।
ଈଶ୍ୱର ବୋଇଲେ ଶୁଣଗୋ ଗୋସାମଣି
ଭଣ୍ଡାର ନିଧିପତି ସେଥିରୁ ଗଲେ ପୁଣି ।
କମଳାଙ୍କୁ ତଦନ୍ତେ ଶ୍ରୀହରି ଡକାଇଲେ
ସେବାକାରୀ ଲୋକଙ୍କୁ ଦଶା ଦେଲ ଭଲେ ।
ଏବେ କିଏ ସମ୍ଭାଳି ରଖିବ ଭଣ୍ଡାର
ଏବେ କେହି କଥାକୁ ମନରେ ବିଚର ।
କମଳା ବୋଇଲେ ଦାସୀ ଜଗିବେ ଭଣ୍ଡାର
ମୋହ ସୁଖକେହି ଯେ ନ କଲେ ବିଚର ।
ଶୁଣିକରି ବାସୁଦେବ ହରଷ ହୋଇଲେ
ଆମ୍ଭଠାରେ ରଜନୀରେ ଭେଟିବ ଆସି ଭଲେ ।
ଶୁଣିଣ କମଳା ଯେ ବେଗେ ଚଳିଗଲେ
ସମସ୍ତ ଦାସୀଙ୍କୁ ନିଜପୁରକୁ ଡକାଇଲେ ।
ବୋଇଲେ ଭଣ୍ଡାର ଘର ଭିତରେ ପଶ
ମୋହର ପଦ୍ମବେଶ ବେଗେ ଘେନିଆସ ।
ପ୍ରଭୁ ରଘୁନାଥଙ୍କର ବେଶକୁ ଯେ ଆଣ
ବେନିବେଶ ଦେଖିବା କେମନ୍ତେ ତ୍ୱରାପୁଣ ।
ଆଜ୍ଞାପାଇ ଦାସୀମାନେ ଭଣ୍ଡାର ଘରେ ପଶି
ପଦ୍ମବେଶ ଗୋଟିକି ଆଣିଲେ ସେ ବାଛି ।
ପୁଣି ରଘୁନାଥଙ୍କର ବେଶକୁ ଆଣିଲେ
କୋଟି କୋଟି ତେଜରୂପ ସେଥିରେ ଦେଖିଲେ ।
କମଳା ବୋଇଲେ ଦାସୀ ମୋ ବଚନ ଶୁଣ
ମୋ ବେଶକୁ ନେଇଯାଅ ପ୍ରଭୁଙ୍କ ପାଶେଣ ।
ପାଲଟ ବେଶ ଆଜ କରାଅ ପ୍ରଭୁଙ୍କୁ
ଯେମନ୍ତେ ସ୍ତିରୀ ରୂପ ଘଟିବ ତାହାଙ୍କୁ ।
ଆଜ୍ଞାପାଇ ଦାସୀଗଣ ବହନ ଚଳିଗଲେ
ଶ୍ରୀହରିଙ୍କ ପାଶରେ ପ୍ରାବେ ହୋଇଲେ ।
କରଯୋଡ଼ି ହରିଙ୍କ ଛାମୁରେ ଜଣାଇଁ
ପାଲଟ ବେଶ ଆଜ ହୋଇବ ଗୋସାଇଁ ।
ବାସୁଦେବ ବୋଇଲେ ତାଙ୍କର ଯେବେ ସୁଖ
ଆଜି ନିଶ୍ଚେ ଆମ୍ଭେ ହୋଇବା ପଦ୍ମମୁଖ ।
ବୋଇଲେ ଦାସୀମାନେ ବେଗେ କର ତ୍ୱରା
ଶୁଣିଣ ଦାସୀମାନେ ବେଶ କଲେ ପରା ।
ଶ୍ରୀହରିଙ୍କି ସୁବେଶ କଲେ ସର୍ବେ ଘେରି
ମୟୂର ଚନ୍ଦ୍ରିକା ପ୍ରାୟେ ଦିଶନ୍ତି ଶ୍ରୀହରି ।
ପାଦର ଅଙ୍ଗୁଷ୍ଠିରେ ଝୁଣ୍ଟିଆ ନେଇ ଦେଲେ
ପାହାଡ଼ ନୂପୁର ବଳା ଚରଣେ ଖଞ୍ଜିଲେ ।
ପୟରରେ ଅଳତା ଦେଲେ ଚିତ୍ରରେଖା
କଟି ମେଖଳା କଟୀରେ ସାଜେଣିକଲେ ରେଖା
ରତନ କାଞ୍ଚୁଲା ଯେ ହୃଦୟରେ ପିନ୍ଧାଇଲେ
ପଦକ ଚପସରି ହୀରା ଯେ ଖଞ୍ଜିଲେ ।
ମୁକୁତା ପୁଞ୍ଜି ପୁଞ୍ଜି ନନାରତ୍ନେ ମାଳ
ବକ୍ଷସ୍ଥଳରେ ନେଇ ଲମ୍ବାଇଲେ ହାର ।
ନାସାରେ ରତ୍ନଗୁଣା ସିନ୍ଧୁଫଳ ଖଞ୍ଜି
ତାହିଁ ସଙ୍ଗେ ମଣିରତ୍ନ ନୋଥ ଯେ ବିରାଜି ।
କର୍ଣ୍ଣରେ ମଲ୍ଲି କଢ଼ୀ କାନ ଯେ ଫାଶିଅ
ଝଲକ ଫିରି ଫିରା ଖଞ୍ଜିଲେ ବନ୍ଦିଆ ।
ନୟନରେ କଜ୍ଜଳ ଲାଞ୍ଜ ସେ ଟାଣିଲେ
ଶରୀରରେ ଅଳକା ନେଇଣି ବାନ୍ଧିଲେ ।
ମଥାରେ ମଥାମଣି ଦେଲେ ନେଇକରି
ଚନ୍ଦନର ଟୋପି ଯେ ଦେଲେକ ଚତୁରୀ
ସିନ୍ଦୂର ବିନ୍ଦୁ କପୋଳେ ଦେଲେ ନେଇଣ
ଭ୍ରୂଲତା ପରେ କଜ୍ଜଳ ରେଖା ଦେଲେ ପୁଣ ।

ହସ୍ତରେ ତାଡ଼ବିଜ, ବାହୁଟି ବାଜୁବନ୍ଧ
ଅଷ୍ଟରତ୍ନ ଚୁଡ଼ି ଯେ ଲଗାଇ ପୁଣଛନ୍ଦ ।
ଆଗୁଳ ଝଟକ କଙ୍କଣ ନେଇ ଦେଲେ
ଶ୍ରୀହରିଙ୍କି ବେଶ ବଦଳ କରାଇଲେ ।
ପଦ୍ମବ୍ୟୁହ ଭିତରେ ନେଇ ବସାଇଲେ
ବେଶସାରି ଦାସୀମାନେ ତହୁଁ ଚଳିଗଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
କମଳାଙ୍କୁ ଦାସୀମାନେ ବେଶ ଯେ କରନ୍ତି ।
ଚରଣରେ ଘୁଙ୍ଗୁର ବାଜେଣୀ ପାହୁଡ଼
ହସ୍ତରେ କଙ୍କଣ ଯେ ଅଷ୍ଟରତ୍ନ ତାଡ଼ ।
ବାହୁଟି ବାନ୍ଧିଣ ଯେ କାଞ୍ଚୁଲା ପିନ୍ଧାଇଲେ
ହୃଦରେ ହାରମାନ ଦେଇଣ ଖଞ୍ଜିଲେ ।
ବେନିକର୍ଣ୍ଣେ ବୀରବଲ୍ଲୀ ମୁକୁତା ରତ୍ନସାର
ଉତ୍ତମ ଅଞ୍ଜନାକୁ ରଞ୍ଜିଲେ ନେତ୍ରର
ଲୋଟଣା ଛନ୍ଦରେ ବାନ୍ଧିଲେ ଜୁଡ଼ାପଣ
ଚମ୍ପଧାରୀ ବେଶ ଯେ କଲେ ଦାସୀଗଣ ।
ପଦ୍ମକେଶର ଅମଳାଣ କାଛି ପିନ୍ଧାଇଲେ
ଉପରାଣ କରିଣ ଦୋଷଡ଼ା ନେଇ ଦେଲେ ।
ପହଣ୍ଡ ମଣାଇ ଦାସୀମାନେ ଘେନିଗଲେ
ଆଗରେ ଶ୍ୱେତ ଚାମର ବିଞ୍ଚଣା ଢାଳିଲେ ।
ବାସୁଦେବଙ୍କ ଛାମୁରେ ନେଇ ପ୍ରବେଶ କଲେ
ଦେଖିକରି ବାସୁଦେବ କୋଳେ ବସାଇଲେ ।
ହାସ୍ୟରସ କରିଣ ମୁଖେ ଚୁମ୍ବଦେଲେ ।
ନାନା ପରିବନ୍ଧରେ ସୁରତୀ ସାରିଲେ ।
ନାନାବନ୍ଧେ ରତିକ୍ରୀଡ଼ା ହୋଇଲା ସେଠାରେ
ରଜନୀ ପୁହାଇଲେ ସନ୍ତୋଷ ମନରେ ।
ରଜନୀ ଶେଷରେ କମଳା ଚଳିଗଲେ
ବେଶ ଉଲାଗିହୋଇ ସ୍ନାହାନ ସେ କଲେ ।
ଅମଳାଣ ପିନ୍ଧିଣ ନିଜବେଶ ହେଲେ
ପାକଶାଳେ କମଳା ହରଷେ ବିଜେକଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବାସୁଦେବ ବଦଳ ରୂପଥିଲେ ଧରି ।
ଦାସୀମାନେ ଯାଇଣ ବେଶ ଉଲାଗିଲେ
ମାଜଣା ବିଧିକରି ସ୍ନାହାନ କରାଇଲେ ।
ନିତ୍ୟକର୍ମ ସାରିଲେ ନିଜବେଶ ଧରି
ନିଜପୁରେ ବାସୁଦେବ ଭୋଜନ ପାନକରି ।

ଏହିରୂପେ ସହସ୍ରେ ବରଷ ଲୀଳାକଲେ
ଯେଉଁଦିନ ଯେଉଁ ବେଶ ମନକୁ ରୁଚେ ଭଲେ
ସହସ୍ରେ ବରଷ ଯିବାରୁ ନାରାୟଣ
ଅନନ୍ତ ଶୟନରେ ବିଜେକଲେ ପୁଣ ।
ପାର୍ବତୀ ବୋଇଲେ ମୁଁ ସେକଥା ଶୁଣିଲି
ମନର କଳ୍ପଣା ଯେ ହୃଦରୁ ତେଜିଲି ।
ପୁଣି କିସକଲେ ରାମ। ଲକ୍ଷ୍ମଣ ବେନିଭାଇ
ସେକଥା ମୋର ଆଗେ କହ ହେ ବୁଝାଇ ।
ଈଶ୍ୱର ବୋଇଲେ ଶୁଣ ଗୋ ହେମବତୀ
କଦମ୍ବ ବୃକ୍ଷ ମୂଳରୁ ଗଲେ ଯେ ରଘୁପତି ।
ଦେବତାଏ ପାଞ୍ଚଣ ଖଳକୁ ଭେଦିଦେଲେ
ବାଳିର ମରଣ କଥା ଦେବତା ପାଞ୍ଚିଲେ ।
ପୁଣି ଦୁର୍ବଳକୁ ଭେଦିଦେଲେ ମର୍ତ୍ତ୍ୟପୁର
ବୋଇଲେ ବାଳି ହୃଦରେ ବିଶ୍ରାମ ତୁ କର ।
ଯେଉଁରୂପେ ବାଳିକି ହୋଇବ ମରଣ
ଆଗକରି ଅଧର୍ମ କରିଛି ବାଳି ଜାଣ ।
ଭାଇକି ଘଉଡି ଦେଇ ରାଜ୍ୟ ଭୋଗକଲଶ
ପୁଣି ସେ ଭାଇ ବୋହୂକୁ ବଳେଣ ହରିଲା ।
ସେହିଦିନୁ ବିଧାତା ବିପକ୍ଷ ତାର ହୋଇ
ଏଡ଼େ ଅଧର୍ମ କଲା କିଷ୍କିନ୍ଧ୍ୟାରେ ସାଇଁ ।
ତେଣୁ ମୃତ୍ୟୁ ହେବାର ଅଟଇଟି ସାର
ଏମନ୍ତେ ବୋଲି ଦେବେ କଲେ ଯେ ବିଚାର ।
ଶୁଣିଣ ଦୁର୍ବଳ ଯେ ବେଗେ ଚଳିଗଲା
ବାଳି ରାଜାର ହୃଦରେ ବିଶ୍ରାମ ସେ କଲା ।
ତେଣୁ ସେ ବାଳିରାଜା ଦୁର୍ବଳ ବେଶଧରି
ପୂର୍ବର ପ୍ରତାପ ସେ ହୃଦରୁ ତେଜ୍ୟାକରି ।
ବିହ୍ୱଳ ଭାବମାନ ନକର ମନେ ଧୋକା
ବିପତ୍ତିକାଳେ ଭାଇରେ କେହି ନୁହେଁ ସଖା ।
ଏତେବେଳେ ମୋହର ଥୟନାହିଁ ମନ
ମୋହର ଭର୍ତ୍ସନାକୁ ମନରେ ନ ଘେନ ।
ଶୁଣିଣ ଲକ୍ଷ୍ମଣ ଯେ ହୋଇଲେ ସନ୍ତୋଷ
ତୁମ୍ଭେ ତ ପ୍ରଭୁ ଅଟ କହ କେମନ୍ତେ ଭାଷ ।
ଏମନ୍ତେ ବେନିଭାଇ ପଥ ବହିଯାନ୍ତି
ବାଟରେ ଏ କଥାମାନ କୁହାକୁହି ହୋନ୍ତି ।
ଲକ୍ଷ୍ମଣ ବୋଇଲେ ଶୁଣ ହେ ଦାଶରଥି
କେଉଁଠାରେ ପାଇବା ଜନକ ଦୁହିତୀ ।

ଘେନିଗଲା ଅସୁର କି ଏ ବନରେ ଅଛି
ଚିନ୍ତାକଲେ ଆମ୍ଭଙ୍କୁ କି ମିଳିବ ରକ୍ଷିବସ୍ତି ।
ଉପାୟ କରି ଯେହ୍ନେ ମାରିବା ଅସୁର
ସେକଥା ବିଚାରକର କୋଦଣ୍ଡ କାଣ୍ଡଧର ।
କିଏ ସେ ନେଲା କାହାକୁ ପଚାରିବା ଯାଇଁ
କେହି ନ ଦେଖିଲେ ଯେ ସୀତା ଅଛି କାହିଁ ।
ଏହିପରି କଥା ହୋଇ ବୁଲନ୍ତି ସେ ବନ
କିମ୍ବା ସରୋବର ପାଶେ କରନ୍ତି ଭ୍ରମଣ ।
ପୁଣି ତୁଚ୍ଛ ପର୍ଣ୍ଣକୁଟୀ ପାଶରେ ମିଳିଲେ
ମୁନିଙ୍କ ମଢ଼ିଆ ଦେଖି ଲକ୍ଷ୍ମଣ ବୋଇଲେ ।
ଏଥିରେ କିବା ଲୁଚିଅଛ ବଇଦେହୀ
ଦେଖକିନା ଭାଇରେ ମଢ଼ିଆକୁ ଯାଇ ।
ଲକ୍ଷ୍ମଣଙ୍କୁ କହିଲେ ଥିଲେ ଘେନିଆସ
ସୀତାଙ୍କୁ ମୋତେ ଦେଇ ମୋ ମନକୁ ତୋଷ ।
ଶ୍ରୀରାମ ଆଜ୍ଞାରେ ଲକ୍ଷ୍ମଣ ଚଳିଗଲେ
ମୁନିମାନଙ୍କର ମଢ଼ିଆ ଦେଖିଲେ ।
ସୀତାଙ୍କୁ ନ ଦେଖିଣ ଲକ୍ଷ୍ମଣ ଫେରିଲେ
ଶ୍ରୀରାମଙ୍କ ଛାମୁରେ ପ୍ରବେଶ ହୋଇଲେ ।
ବୋଇଲେ ଏଠାରେ ନ ଦେଖିଲି ବଇଦେହୀ
କେଉଁଦିଗେ ଗଲେ ସୀତା ବୁଦ୍ଧି ନ ଦିଶଇ
ଶୁଣିକରି ରଘୁନାଥ ଚିନ୍ତା ଗୁରୁତର
ବୋଇଲେ ଏ ବନରେ ନାହିଁ ସୀତା ମୋର ।
ସେଠାରୁ ବେନିଭାଇ ବେଗେ ଚଳିଗଲେ
କିମ୍ବା ସରୋବର କୂଳରେ ମିଳିଲେ ।
ବକ ଗୋଟିଏ ସେଠାରେ ଚରୁଛି ଦେଖିଲେ
ସୀତାର ସନ୍ଦେଶ ତାକୁ ପଚାରିଲେ ।
ବୋଇଲେ ଧବଳବକ ଶୁଣ ମୋର ବାଣୀ
ମୋର ସୀତାକୁ ନେଲା କେ ଦେଖିଛକି ପୁଣି ।
ବକ ବୋଇଲା ଏ ଯେ ଅଟଇ ସଂସାର
ନରବାନର ଅସୁର ଏଥିରେ ଯେ ସାର ।
କିଏ କେଣେ ଯାଇ ଆସଇ ତକ୍ଷଣି
ଯାନବାହନ ତାଙ୍କର ଅଛଇ ଯେ ପୁଣି ।
କେହୁ ଶୂନ୍ୟରେ ଯାଏ କେହୁ ଯାଏ ଚାଲି
ସେମାନଙ୍କ କଥା ତୁମ୍ଭେ ଆମ୍ଭଙ୍କୁ ପଚାରି ।
ଶ୍ରୀରାମ ବୋଇଲେ ବକ କହିଲୁ ଯେଉଁ ବାଣୀ
ସେକଥା ମିଛ ନୁହେଁ ସତ ଅଟେ ପୁଣି ।

ବକ ବୋଇଲା ନର ଅସୁର ବଡ଼ ଲୋଭୀ
ଉଦର ପୋଷି ପୁଣି ସଞ୍ଚଇ ସେ ନିଧି ।
ମରିଗଲେ ତାକୁ ନେଇ ଆନ ଯେ ରଖଇ
ସେକଥାରେ ପ୍ରାପତ କିଛି ତାକୁ ନାହିଁ ।
ଯାହା ପାଉ ତାହ କରୁ ଯେ ଭୋଜନ
ସଞ୍ଚିବାକୁ ଆମ୍ଭର ତେଣେ ନୁହେଁ ମନ ।
ଶ୍ରୀରାମ ବୋଇଲେ ସେକଥା ଅଟେ ସତ
ଭୁଞ୍ଜିବାରୁ ସଞ୍ଚିବାର ନୁହଇ ଉଚିତ ।
ବକ ବୋଇଲା ଦେବ ସେଥିରୁ ଲୋଭ ହେଲା
ଲୋଭରୁ ପାପ ଜାତ ମୃତ୍ୟୁକୁ ଲଭିଲା ।
କୁଟ କପଟ ଯେ ସେଥିରୁ ଛନ୍ଦଜାତ
କ୍ରୋଧ, ହିଂସା, ତାମସ ସେଥିରୁ ଉତ୍ପାତ ।
ଯେଉଁଦିନ ମାତାଠାରୁ ମୁହିଁ ଜାତ ହେଲି
କିଛିଦିନ ମାତାର ଆହାରେ ବଞ୍ଚିଲି ।
ଚେତା ଜ୍ଞାନ ହେବାରୁ ମୁଁ ପଚାରିଲି ପୁଣି
ପିତାମୋର କେଣେ ଅଛି ନଦେଖେ ମୁଁ ପୁଣି ।
ମାତା ବୋଇଲା ପିତା ଛାଡ଼ିଣ ତୋତେ ଗଲା
ଭୁଷଣ୍ଡ କାକ ସଙ୍ଗରେ ଯାଇଣ ରହିଲା ।
ମୁଁ ବୋଇଲି ତୋତେ କିମ୍ପା ଛାଡ଼ିଣ ସେ ଗଲା
ମାତା ବୋଇଲା ସେ ବୈରାଗ୍ୟ କରାଇଲା
ମୁଁ ବୋଇଲି କାହାକୁ ଭାଜିଲେ ମନରେ
କେହୁ ସେ ଆଦିମୂଳ କହ ତା ବୁଝାଇ ।
ମାତା ବୋଇଲେ ବଳାରେ ବ୍ରହ୍ମା ବିଷ୍ଣୁ ହର
ତାଙ୍କନାମ ଭଜିଲେ ସବୁ ହୋନ୍ତି ପାର
ମୁଁ ବୋଇଲି ଏକାନାମ କିମ୍ପା ନ ଭଜିଲେ
ହର ବ୍ରହ୍ମା ବିଷ୍ଣୁଙ୍କର ମନରେ ଧ୍ୟାନ କଲେ ।
ଜନନୀ ବୋଇଲେ ଶୁଣରେ କୁମର
ଏକାନାମ ଗୋଟି ଯେ ରାମନାମ ସାର ।
ରାମନାମ ଭଜିଲେ ପିଅର ତୋହର
କାଳଯୁଗ ପରିଯନ୍ତେ ହୋଇଲେ ଅମର ।
କାଳଯୁଗ ପରିଯନ୍ତେ ଅମର ହୋଇ ରହି
ରାମନାମ ଗୋଟିଏ କେହି ତ ସରିନାହିଁ ।
ମୁଁ ବୋଇଲି କରତା ଅଟେ ନାରାୟଣ
ରାମନାମ ପଦ କିମ୍ପା ନୋହିଲା କାରଣ ।
ମାତା ବୋଇଲେ ସେ ପରଂବ୍ରହ୍ମ ପୁଣ
ସେହିଟି ରାମରୂପେ ହୋଇବେ ଜନମ ।

ଅସୁରମାନେ ଯେ ବଡ଼ ଦୁଷ୍ଟ ହେବେ
ତାହାଙ୍କୁ ମାରିବାକୁ ଶ୍ରୀହରି ଜନମିବେ ।
ଅବତାର ହୋଇଣ ସେ ମାରିବେ ଅସୁର
ରଚ୍ଛି ରାବଣ ମାଇଲେ ପୃଥିବୀ ହେବ ସ୍ଥିର ।
ଅଯୋଧ୍ୟା ନଗ୍ରରେ ଦଶରଥ ଘରେ
ରାମନାମ ବହିଣ ଜନ୍ମିବେ ସେଠାରେ ।
ପିତାଙ୍କ ସତ୍ୟପାଳି ରାମ ବନକୁ ଯିବେ
ଭାଇ ଭାରିଯାଙ୍କୁ ସେ ସଙ୍ଗତରେ ନେବେ ।
ଗୋଦାବରୀ କୂଳରେ ପଞ୍ଚବଟୀ ବନେ
ପତ୍ରକୁଡ଼ିଆ କରିଣ ରହିବେ ସେ ସ୍ଥାନେ ।
ସେହିଠାକୁ ରାବଣ ଆସିବ ଶୁଣିଣ
ଶ୍ରୀରାମ ଘରଣୀକି ହରି ନେବ ଜାଣ ।
ଘରଣୀ ଛଳେ ରାମ ରାବଣ ନାଶ କରି
ତେବେ ସେ ଉଶ୍ୱାସ ହୋଇବ ବସୁନ୍ଧରୀ ।
ଜନନୀଠାରୁ ଶୁଣି ତାଙ୍କୁ ମୁଁ ବୋଇଲି
କେଉଁଠାରେ ରହିଲେ ଦେଖିବି ମୁଁ ହରି ।
ମାତା ବୋଇଲେ ପୁତ୍ରରେ ଦକ୍ଷିଣ ଦିଗେ ଚଳ
କିଷ୍କିନ୍ଧ୍ୟା ନିକଟରେ କିମ୍ପା ସରୋବର ।
ସେଠାରେ ବସାକରି ରହିବୁ କୁମର
ତେବେ ତୁ ଶ୍ରୀରାମଙ୍କୁ ଦେଖିବୁ ନୟନର ।
ମାତାର ବଚନରେ ଏ ସ୍ଥାନରେ ମିଳି
ତିନିଯୁଗ ହେଲା ଏଥିରେ ଅଛି ଗୃହ କରି ।
ଆଜି ପରିଯନ୍ତେ ମୁଁ ନ ଦେଖିଲି ରାମ
ତେଣୁ ମୁଁ ଚିନ୍ତା କରି ରହିଛି ଏଥି ପୁଣ ।
ଦିନଦାଶ ଏଗାରର କଥା ଏବେ ଶୁଣ
ଶୂନ୍ୟରେ ରୋଦନ ଶୁଭିଲା ଯେ ଜାଣ ।
ସେ ଶବଦ ଶୁଣି ମୁଁ ଉପରକୁ ଚହିଁ
ରଥର ଉପରେ ଏକନାରୀ ଯେ କାନ୍ଦଇ ।
ରାମନାମ ତୁଣ୍ଡରେ ଉଚ୍ଚାରେ ସେ ପୁଣ
ଡାକଦିଏ ଉପରେ ଜୀବଜନ୍ତୁ ଶୁଣ ।
ଲଙ୍କାରେ ରାବଣ ଯେ ମୋତେ ଘେନିଗଲା
ଶ୍ରୀରାମ ପଚ୍ଛରିଲେ କହିବ ବୋଇଲା ।
ସେତେବେଳେ ଉପରକୁ ମୁହିଁ ଚହିଁଦେଲି
ମୋ ଉପରେ ଅଶ୍ରୁଜଳ ପଡ଼ିଲା ତାହାରି ।
ତେଣୁ ଧବଳ ରୂପ ହୋଇଲା ମୋହର
ତୁମ୍ଭେ କିଏ ଅଟ ମୋତେ କହ ହେ ନିରାଧାର ।

ଶ୍ରୀରାମ ବୋଇଲେ ଧବଳ କାକଶୁଣ
ଯେଉଁ ରାମନାମ ଧରି କହୁଥିଲୁ ପୁଣ ।
ସେହି ରାମ ମୁହି ମୋ ଘରଣୀ ନାମ ସୀତା
ଘଟିଲା ଏବେ ତୋର ମାତା କହିବା କଥା ।
ଶୁଣିଣ କାକ ପକ୍ଷୀ ଓଳଗି ମେଲାଇଲା
ଶ୍ରୀରାମଙ୍କ ଚରଣେ ପ୍ରଣମିତ ହେଲା ।
ବୋଇଲା ଏତେକାଳେ ନିସ୍ତରିଲି ମୁହିଁ
ମୋଠାରେ ସୁଦୟ କର ହେ ରଘୁସାଇଁ ।
ତୋହର ଘରଣୀକି ରାବଣ ଘେନିଗଲା
ରଥର ଉପରେ ସତୀ ରୋଦନ କରୁଥିଲା ।
ଦକ୍ଷିଣମୁଖ ହୋଇ ଗଲା ସେହି ଚଳି
ଋଷ୍ୟମୁକ ପର୍ବତ ଉପରେ ଯାଇ ମିଳି ।
ସୁଗ୍ରୀବର ସଙ୍ଗତରେ ପୀରତି ଭାବ କରି
ରାବଣକୁ ମରିଣ ଆଣ ତୁମ୍ଭ ନାରୀ ।
ତିନିପୁରରେ ଯଶ ମହିମା ତୋର ରହୁ
କାଳଯୁଗକୁ କଥା ପୁରାଣରେ ଥାଉ ।
ଦେବଙ୍କର ଦୁଃଖ ଯିବ ବାନରେ ହେବେ ସୁଖ
ନାଗରାଜାର ମସ୍ତକ ଉଶ୍ୱାସ ହୋଇବଟି ।
ପୃଥିବୀ ସ୍ଥିର ହେବ ମୁନି କରିବେ ଯାଗ
ସନ୍ତୁଷ୍ଟରେ ଦେବତାଏ ପାଇବେ ହବିର୍ଭାଗ ।
ଶୁଣିକରି ରଘୁନାଥ ହରଷ ହୋଇଲେ
ବରମାଗ କାକରେ ସନ୍ତୁଷ୍ଟ ହେଲି ତୋରେ ।
କାକ ବୋଇଲା ଦେବ ମୁଁ ପିତାଙ୍କ ପାଶେଯିବି
ଯେତେଦିନ ଥିବି ରାମନାମ ସ୍ମରୁଥିବି ।
ଶୁଣି ଶ୍ରୀରାମ ବୋଇଲେ ବର ଦେଲି ତୋତେ
ଚତୁର୍ଭୁଜ ହୋଇଯାଅ ପିତାର ଅଗ୍ରତେ ।
ସେଠାରୁ କାକପକ୍ଷୀ ଚତୁର୍ଭୁଜ ହେଲା
ଶ୍ରୀରାମ ଲକ୍ଷ୍ମଣଙ୍କୁ ଓଳଗି ଚଳିଗଲା ।
ପିତାର ଅଗ୍ରତେ ମିଳିଲା ଯାଇକରି
ବିଭାଣ୍ଡକ ନଗ୍ରରେ ଭୁଷଣ୍ଡ ଘରକରି ।
ଯାଇ ପିତାମାତାଙ୍କୁ ନମସ୍କାର କଲା
ତାହାଙ୍କ ସଙ୍ଗତରେ ନିଶ୍ଚିନ୍ତେ ରହିଲା ।
ଏଥୁ ଅନନ୍ତରେ ପାର୍ବତୀ ଦେବୀ କହି
କାକ ତ ଗଲା ରାମ କି କଲେ ପୁଣି ତହିଁ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସେହି ସରୋବର କୂଳେ ଶ୍ରୀରାମ ଅଛନ୍ତି ।

ସେଠାରେ ରାମ ଲକ୍ଷ୍ମଣ ଦେଖିଲେ ଜଳଫିମ୍ପି
ବୋଇଲେ ମୋହର ସୀତାଙ୍କୁ ଦେଖିଛକି ।
ଜଳଫିମ୍ପି ଖଗ କହେ ଅଟ ତୁମ୍ଭେ ବାଇ
ଜଳର ଭିତରେ କି ମନୁଷ୍ୟ ଲୁଚଇ ।
ଯେତେବେଳେ ଯାହାକୁ ବିଧାତା ଜାତକଲା
ଜଳ, ସ୍ଥଳ, ବନଗିରି, ଲତାରେ ସ୍ଥାନଦେଲା ।
ଯାହାକୁ ଯେଉଁପରି ଦେଲା ସେହୁ ସ୍ଥାନ
ଯେ ଯାହାର ସ୍ଥାନରେ ରହିଲେ ଯାଇଣ ।
ଅଚଳନ୍ତି ଗିରିଲତା ତରୁମାନେ ଜାଣେ
ଏମାନେ ରହିଲେ ନିଶ୍ଚଳେ ଯେଝାସ୍ଥାନେ ।
ଚଳନ୍ତି ଜୀବମାନେ ଯେ ଯାହା ସ୍ଥାନେ ଚଳି
ବାନର, ଭାଲୁ ଯେଝା ସ୍ଥାନରେ ବିହରି ।
ଏରୂପେ ଋରିଜାତି ରହିଲେ ଭିନ୍ନେ ଭିନ୍ନେ
ଯେ ଯାହା କୁଳ ଘେନି ରହିଲେ ଜୀବମାନେ ।
ନାଗବଳ, ଅସୁର, ଦେବତା, ନର ଜାଣ
ଏ ଋରିଜାତିଙ୍କର ରୀତି ଭିନ୍ନ ଭିନ୍ନ ।
ଦେବତାଏ ସପତ ପୁରକୁ ପାଳନ୍ତି
ନାଗବଳ ସପତ ସୁରକୁ ଧରନ୍ତି ।
ଅସୁରେ ସପତ ପୁରରେ ବିହରନ୍ତି
ନରମାନେ ସକଳ ପୁରରେ ରହିଛନ୍ତି ।
ନରଙ୍କର ଉପରେ ନରରାଜା ସାର
ପାଳନ୍ତି ମାରନ୍ତି ଯେ ତାଙ୍କର ବେଭାର ।
ଦେବତାଙ୍କ ଉପରେ ଦେବତା ରାଜାହୋଇ
ଦେବତାଙ୍କୁ ଘେନି ସେ ବିଋର କରଇ ।
ଦୈତ୍ୟଙ୍କର ଉପରେ ଯେହୁ ବଳବନ୍ତ
ଦୈତ୍ୟମାନଙ୍କର ସେହୁ ଅଟଇ ରାଜାତ ।
ଏମାନେ ସୁଜାଣ ବୋଲି ଅନେକ କରେକେଳି
ଯେ ଯାହାକୁ ପାରଇ ସେ ତାହାକୁ ମାରି ।
ଶ୍ରୀରାମ ବୋଇଲେ ଯେ ସେକଥା ଅଛି ଜଣା
ମୋହର ଘରଣୀ ଜାନକୀ ଅଟେ ସିନା ।
ପିତାଙ୍କ ସତ୍ୟପାଳି ମୁଁ ବନକୁ ଅଇଲି
ଗୋଦାବରୀ କୂଳେ ଘରଣୀକି ହରାଇଲି ।
ତେଣୁକରି ତୁମ୍ଭମାନଙ୍କୁ ପଋରଇ
ଜାଣିଥିଲେ ସେକଥା ମୋତେ ଦିଅ କହି ।
ଜଳଫିମ୍ପି ବୋଇଲା ବେନିଜନେ ଶୁଣ
ରଥର ଉପରେ ବସିଥିଲା ଏକ ଜଣ ।
ତ୍ରିଭୁବନ ସୁନ୍ଦରୀ ସେ ଉଚ୍ଚେ ରୋଦନ କରେ
କେବଳ ଭାଷା କହେ ରଥର ଉପରେ ।
ଦଶରଥଙ୍କ ବୋହୂ ଯେ ମୋ ନାମଟି ସୀତା
ଶ୍ରୀରାମଚନ୍ଦ୍ରଙ୍କର ମୁଁ ଅଟଇ ବନିତା ।
ପଋରିଲେ କହିବଟି ଦଶାନନ ନେଲା
ସମୁଦ୍ର ଭିତରେ ଲଙ୍କାଗଡ଼କୁ ସେ ଗଲା ।
କାହାର ଘରଣୀ ସେ ଯେ ପୁଷ୍ପକ ରଥେଯାଏ
ନ ଚିହ୍ନଇଁ ମୁହିଁ ଯେ ପଋରଇ ତୁମ୍ଭେ କିଏ ।
କେବଳ ସେ ରଥ ଉପରେ ଯିବାବେଳେ
ରୋଦନ ଶବ୍ଦ ଶୁଣି ଉପରେ ଋହିଁବା ବେଳେ ।
ଯାହା ସେ କହୁଥିଲା କହିଲି ତୋର ଆଗେ
ଏ କଥାକୁ ହେତୁକର ବେନିଜନ ଏବେ ।
ଆମ୍ଭରେ କାର୍ଯ୍ୟ ନାହିଁ ଯାଅ ଏବେ ଚଳି
ତୋହର ଭଳି ଲୋକ ଦେଖିଲେ କରମେଳି ।
ଶୁଣିକରି ଶ୍ରୀରାମ ସନ୍ତୋଷ ମନ ହେଲେ
କେତେ ସାଧାରଣ କଥା କହିଲା ଏ ଭଲେ ।
ଶ୍ରୀରାମ ବୋଇଲେ ତୁହି ଶୁଣରେ ପକ୍ଷୀଟି
ତୋହର ବଚନ ମୋତେ ଲାଗିଲା ଶୀତଳଟି ।
ମୁଁ ଏବେ କହୁଅଛି ସ୍ୱର୍ଗକୁ ଚଳ
ମୁହିଁଟି ନାରାୟଣ ମୋ ନାମ ରଘୁବୀର ।
ଯେଉଁ ସୀତା ରଥର ଉପରେ ଯାଉଥିଲା
ସେହି ମୋର ଘରଣୀ ସୀତା ଅଟେ ପରା ।
ଦଶରଥ ନାମ ସେ ଯେ କହିଲା ଯାହାଙ୍କୁ
ସେ ମୋର ପିତା ଅଟନ୍ତି ଗଲେଣି ସ୍ୱର୍ଗକୁ ।
ତୁହି ମୋତେ ସୁସାର ବଚନ କହିବାରୁ
ସ୍ୱର୍ଗ ପ୍ରାପତ ତୋତେ ହେଲା ମୋ ଆଜ୍ଞାରୁ
ଜଳଫିମ୍ପି ବୋଇଲା ଶୁଣ ହେ ରଘୁନାନ
ମୋତେ ଯେବେ ସ୍ୱର୍ଗପୁରେ ନେଇ ଦେଲ ସ୍ଥାନ
ମୋହର ଜାତି ଅଂଶକୁ ବର ତୁମ୍ଭେ ଦେବ
ଯେତେଦିନ ଥିବେ ସେହୁ ହେବେ ସୁଜାଣ ଜୀବ ।
ଶ୍ରୀରାମ ବୋଇଲେ ସେ କଥା ହେଉ ସତ
ମୋହର ବଚନ କେବେ ନୁହେ ମେଣ୍ଟଣତ ।
ଏମନ୍ତ ସମୟରେ ଶୂନ୍ୟରୁ ରଥ ଆସି
ପମ୍ପାସରୋବର କୂଳରେ ପ୍ରବେଶି ।
ଦେଖିଣ ଜଳଫିମ୍ପା ଓଳଗି ମେଲାଇଲା
ଘରଣୀକୁ ଘେନିଣ ସେ ରଥରେ ବସିଲା ।

ପକ୍ଷୀରୂପ ଛାଡ଼ିଣ ସେ ଦେବତନୁ ବହି
ରବିର ତେଜପ୍ରାୟ ଶରୀର ପ୍ରକାଶଇ ।
ଶ୍ରୀରାମଙ୍କୁ ଓଳଗି ମେଲାଇ ଚଳିଗଲା
ସ୍ୱର୍ଗପୁରରେ ଯାଇ ପ୍ରବେଶ ହୋଇଲା ।
ଗନ୍ଧର୍ବଙ୍କ ସଙ୍ଗରେ ରହିଲେ ବେନିଜନ
ପାର୍ବତୀ ବୋଇଲେ ଶୁଣହେ ପଞ୍ଚାନନ ।
ସେ ଜଳଫିମ୍ପି ଖଗ ପୂର୍ବରେ କିସଥିଲା
ସେ କିମ୍ପା ଉଡ଼ନ୍ତା ପକ୍ଷୀରେ ଜନ୍ମହେଲା ।
ଈଶ୍ୱର ବୋଇଲେ ଶୁଣଗୋ ହୈମବନ୍ତୀ
ବିଶର୍ବା ଗନ୍ଧର୍ବର ଅଟେ ସେ ପୁତ୍ରଟି ।
ପିତାର ବୋଲ ଯେ ନକଲା ସେ ପୁଣ
ପିତା ତାର ଶାପଦେଲା ହୁଅ ଖଗଜନ୍ମ ।
ପମ୍ପା ସରୋବରର ନିକଟରେ ଥିବୁ
ଶ୍ରୀରାମଙ୍କୁ ଦେଖିଲେ ମୁକତ ହୋଇବୁ ।
ଏମନ୍ତ ଶାପ ତାର ପୂର୍ବରୁ ଯେ ଥିଲା
ଶ୍ରୀରାମଙ୍କୁ ଦେଖିବାରୁ ନିଜସ୍ଥାନ ଗଲା ।
ଶୁଣି ପାର୍ବତୀ ପରମ ସନ୍ତୋଷ ହୋଇଲେ
ବଳରାମ ଦାସ ସେ ଚରଣେ ସେବେ ଭଲେ ।
ଶ୍ରୀରାମ ସୀତାପାଦେ ରହୁ ମୋର ମତି
ବଳରାମ ଦାସକୁ ଉଦ୍ଧାର ଦାଶରଥି ।
ଈଶ୍ୱର କହନ୍ତି ଶୁଣ ଗୋ ପ୍ରାଣସହୀ
ଶ୍ରୀରାମ ଲକ୍ଷ୍ମଣ ବେନି ରହିଲେ ଯେ ତହିଁ ।
ପମ୍ପା ସରୋବର ଜଳରେ ସ୍ନାନ କଲେ
ନିତ୍ୟକର୍ମ ତର୍ପଣ ବିଧି ବଢ଼ାଇଲେ ।
ବନରୁ ଫଳ ମୂଳ ଆଣିଲେ ଲକ୍ଷ୍ମଣ
ଭୁଞ୍ଜିଣ ବେନିଭାଇ ସୁସ୍ଥ ହେଲେ ଜାଣ ।
ଭୋଜନ ସାରିଣ ସେ ମୁଖ ପଖାଳିଲେ
ଅଳ୍ପ ବିଶ୍ରାମ କରି ସେଠାରୁ ଚଳିଗଲେ ।
ଦକ୍ଷିଣ ମୁଖ ହୋଇଗଲେ ରାମରାଣ
ଋଷ୍ୟମୁକ ପର୍ବତକୁ ନିକଟେ ଦେଖିଣ ।
ଲକ୍ଷ୍ମଣଙ୍କୁ ଶ୍ରୀରାମ ବୋଇଲେ ଚାହିଁଣ
ଏହିଟି ଋଷ୍ୟମୁକ ପର୍ବତଟି ଜାଣ ।
ଏହିଠାରେ ରହିବା ନ ଯିବା ଗିରିପରେ
ଜାମ୍ବୁଗଛ ମୂଳରେ ରହିଲେ ରଘୁବୀରେ ।
ସେ ବୃକ୍ଷ ମୂଳ ଲକ୍ଷ୍ମଣ ଓଳାଇଣ ଦେଲେ
କୋମଳ ପତ୍ର ଆଣିଣ ସେଠାରେ ପାରିଲେ ।

ସେହି ଶଯ୍ୟା ଉପରେ ବସିଲେ ରାମ ଯାଇ
ଲକ୍ଷ୍ମଣ ଧନୁଧରି ଉଜାଗରେ ରହି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଆରଣ୍ୟକ କାଣ୍ଡ ପଦ ଏଠାରୁ ଗଲା ସରି ।
ଆରଣ୍ୟକ କାଣ୍ଡ ଏ ଯେ ଅମୃତ ରସ ବାଣୀ
ଈଶ୍ୱର କହିବାରୁ ପାର୍ବତୀ ଦେବୀ ଶୁଣି ।
ଋଷ୍ୟମୁକ ପର୍ବତ ତଳରେ ରାମ ରହି
ତାହାଙ୍କର ସଙ୍ଗରେ ଲକ୍ଷ୍ମଣ ଛନ୍ତି ରହି ।
ବଳରାମ ଦାସ ଜଗନ୍ନାଥ ପରସନ୍ନେ
ଶ୍ରୀରାମ ଚରିତକୁ କହିଲା ଭାବି ମନେ ।
ଆରଣ୍ୟକ କାଣ୍ଡ ଯେ ସମ୍ପୂର୍ଣ୍ଣ ହୋଇଲା
ପ୍ରସନ୍ନ ମୋତେ ଯହୁଁ ଦଶରଥ ବଳା ।
ଈଶ୍ୱର ପାର୍ବତୀଙ୍କର ସାହାରେ ବର୍ଣ୍ଣିଲି
ନବୀନ କେଶରୀ ପଦ ଏଥିରେ ସମ୍ଭବ କଲି ।
ଲଙ୍କାର ବିପ୍ରବର ଲଙ୍କାର କେଶରୀ
ସୀତୟା ଯିବାରୁ ସେ ମନରେ ବିଚାରି ।
ସୁନାଟକ ସାତଶ ପଚାଶ ଅଟେ ଶ୍ଳୋକ
ଆରଣ୍ୟକ କାଣ୍ଡଠାରୁ ସୁନ୍ଦରା ପର୍ଯ୍ୟନ୍ତ
ରାମ, ଲକ୍ଷ୍ମଣ, ସୀତା ମହିମା ବର୍ଣ୍ଣିଲା
ଋଷ୍ୟଶୃଙ୍ଗ ଅସ୍ତବେଳରେ ନେଇ ଦେଲା ।
ବିଭାଣ୍ଡକ ସୁତ ଯେ ଆପଣା ସମ୍ଭବରେ
ପୁରାଣ କରିଣ ତାହା ରଖିଲେ ପୁସ୍ତକରେ ।
ବଳରାମ ଦାସ ଯେ ମନରେ ସୁମରିଲେ
ତେଣୁକରି ଭଗବତୀ ଆସି କହିଦେଲେ ।
ନିର୍ବିଘ୍ନରେ ଏ କାଣ୍ଡଟି ହୋଇଗଲା ଶେଷ
ରାମଙ୍କୁ ଅଜ୍ଞାନ ଘୋଟେ ଏଗାର ଦିବସ ।
ରାବଣ ମରିବା କଥା ଏବେତ ରହିଲା
ବଳରାମ ଦାସ ସୀତାଙ୍କ ପାଦେ ଖଟିଲା ।
ତେରମାସ ଏକବିଂଶ ଦିନେ ମରିବ ରାବଣ
ଦେବତାଙ୍କ କୂଟରେ ମାରିବେ ରାମରାଣ ।
ସେ କୁଟୁମ୍ବ ମରାଇ ଯିବେ ନିଜସ୍ଥାନ
ବିଭୀଷଣଙ୍କୁ ରାଜା କରିବେ ରଘୁନାନ ।
ଅଠରସସ୍ର ଚବିଶ ପଦରେ ଏ ସରି
ଜାମ୍ବୁଗଛ ମୂଳରେ ରହିଲେ ଚାପଧାରୀ ।
ବଳରାମ ଦାସ ଯେ ସେ ପାଦେ ଶରଣ
ସାଧୁ ସୁବୁଦ୍ଧି ଜନେ ସୁମର ଅନୁକ୍ଷଣ ।

**- ଆରଣ୍ୟକ କାଣ୍ଡ ସମ୍ପୂର୍ଣ୍ଣ -**

# ବିଜ୍ଞାପନ

| | |
|---|---|
| ଶ୍ରୀ ନାରଦ ପଞ୍ଚରାତ୍ର | ଟ. ୪୫ |
| ମାଠରାମାୟଣ ବା ରଘୁନାଥ କୀର୍ତ୍ତନ | ଟ. ୨୨୦ |
| ବିଶ୍ୱାମିତ୍ର ପୁରାଣ | ଟ. ୩୫ |
| ମହିମା ଅଲେଖ ପୁରାଣ | ଟ. ୬୦ |
| ପର୍ଶୁରାମ ପୁରାଣ ସେଟ୍ | ଟ. ୬୫ |
| ବିଚିତ୍ର ହରିବଂଶ | ଟ. ୩୦ |
| ଚଉପଦୀ ରତ୍ନମାଳା | ଟ. ୨୦ |
| ହିନ୍ଦୁ ଧର୍ମ ସର୍ବସ୍ୱ | ଟ. ୩୦ |
| ନିମ୍ବାର୍କ ଦର୍ଶନ | ଟ. ୪୦ |
| ଶ୍ରୀରାମ ଚରିତ୍ରାମୃତ | ଟ. ୬୫ |
| ନୈଷେଧ କାବ୍ୟ | ଟ. ୩୫ |
| ଅଦ୍ଭୁତ ରାମାୟଣ | ଟ. ୫୦ |
| ଗୃହସ୍ଥ ଯୋଗୀ | ଟ. ୪୦ |
| ଚକ୍ରଧର ପଦ୍ୟାବଳୀ | ଟ. ୨୦ |
| ରତ୍ନାଦିଧାରଣେ ଗହଦୋଷ ଶାନ୍ତିବିଧାନ | ଟ. ୨୫ |
| ମହାଭାରତ କଥା | ଟ. ୩୦ |
| ରହସ୍ୟମୟ ଶ୍ରୀଜଗନ୍ନାଥ | ଟ. ୨୫ |



ମୁଦ୍ରଣ : ବିଶ୍ୱବିଦ୍ୟା ପ୍ରେସ୍, ଅଲିଶା ବଜାର, କଟକ- ୨



## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି । କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ । ଏଥିରେ ସ୍ୱତନ୍ତ୍ର କମିଶନ ବ୍ୟବସ୍ଥା ଅଛି ।

- ତୁଳସୀ ଦାସଙ୍କ କୃତ ରାମଚରିତ ମାନସ ବା ତୁଳସୀ ରାମାୟଣ
- ରଘୁନାଥ କୀର୍ତ୍ତନ ବା ମାଠ ରାମାୟଣ
- ଭାଗବତ ପ୍ରସାଦ ଦାନ୍ ରାମାୟଣ
- ଆଦର୍ଶ ତୁଳସୀ ରାମାୟଣ
- କ୍ଷେତ୍ର ମୋହନ ରାମାୟଣ
- ଚନ୍ଦ୍ର ମୋହନ ରାମାୟଣ
- ଆନନ୍ଦ ରାମାୟଣ
- ବିଲଙ୍କା ରାମାୟଣ
- ଆଧ୍ୟାତ୍ମ୍ୟ ରାମାୟଣ
- ଟୀକା ରାମାୟଣ
- ରାବଣ ରାମାୟଣ
- ବିଚିତ୍ର ରାମାୟଣ
- ଅଦ୍ଭୁତ ରାମାୟଣ

ପ୍ରକାଶକ :
ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶା ବଜାର, କଟକ - ୨
ଫୋନ୍ : (୦୬୭୧) ୨୬୦୮୨୯୬